# ଆମେରିକାରୁ ଆସିଲି

ଚିତ୍ତରଞ୍ଜନ ଦାସ

 ଏସ୍‌ବି ପବ୍ଲିକେଶନ୍‌ସ୍

ଭରତିଆ ଟାୱାର
ବାଦାମବାଡ଼ି, କଟକ - ୭୫୩ ୦୦୯

ବିନୋଦ ବିହାରୀ
କଟକ - ୭୫୩ ୦୦୨

# ଆମେରିକାରୁ ଆସିଲି

*ଲେଖକ :*

**ଚିତ୍ତରଞ୍ଜନ ଦାସ**

*ପ୍ରକାଶକ :*

**ନଳିନୀକାନ୍ତ ନନ୍ଦ**

**ଏସ୍‌ବି ପବ୍ଲିକେଶନସ୍**

. ବିନୋଦ ବିହାରୀ, କଟକ - ୭୫୩ ୦୦୨

. ଭରତିଆ ଟାୱାର, ବାଦାମବାଡ଼ି, କଟକ - ୭୫୩ ୦୦୯

# AMERIKARU ASILI

*by*

**Chittaranjan Das**

*Published by*

**Nalinikanta Nanda**

**SB PUBLICATIONS**

Binod Behari, Cuttack - 753 002

Bharatia Tower, Badambadi, Cuttack - 753 009

**1st Edition : 2000**

D.T.P. : MICRO GRAF-X, *Cuttack* - 2

Printed at : SHYAM Printers

**Price : Rs. 100.00**

**ISBN 81 7404 050 1**

........ ଆମେରିକାର ରହଣି ସମୟରେ ଶ୍ରୀଯୁକ୍ତ ମନୋରଞ୍ଜନ ପଟ୍ଟନାୟକ ସର୍ବାଧିକ ସମୟ ଆମସହିତ ରହିଥିଲେ : ଆମର ପଣ୍ଡା ହୋଇଥିଲେ, ଆମ ଆଖି ପରି କାର୍ଯ୍ୟ କରିଥିଲେ । ତାଙ୍କ ସହିତ ସେହି ପିଲାଦିନରୁ ପରିଚୟ, ଆତ୍ମୀୟତା ଏବଂ ହୃଦୟର ସମ୍ପର୍କ । ଆମେ ଦୁହେଁ ଗୋଟିଏ ଗାଆଁର ।

ଶ୍ରୀମତୀ ମିନତି ପଟ୍ଟନାୟକ ଆମ ଗାଁର ବୋହୂ । ଆମେରିକାରେ ଡାକ୍ତର । ଘର ସମ୍ଭାଳନ୍ତି, ରୋଗୀ ସମ୍ଭାଳନ୍ତି ଏବଂ ଘରକୁ ମନ୍ଦିରଟିଏ କରି ରଖିଥାନ୍ତି । ଜୀବନରେ କିଛି ବିଶେଷ ଆଶିଷ ଲାଭ କରିଥିଲେ ଯାଇ ମଣିଷ ସହଜ ହୋଇ ଏତେ ଏତେ କଥାକୁ ସମ୍ଭବ କରିପାରେ ।

ଆମେରିକାରୁ ଆସିବା ପରେ ସେହି ଦୁହିଁଙ୍କ କଥା ସବାଆଗ ମନେ ପଡ଼ିଛି । ବହିଟି ଲେଖିବାର ଆରମ୍ଭରୁ ଶେଷଯାଏ ସେହିମାନେ ପାଖରେ ବସିଥିବା ପରି ଲାଗିଛି । ପ୍ରସ୍ତୁତ ବହିଟିକୁ ମୁଁ ସେହି ଉଭୟଙ୍କ ହାତରେ ସମର୍ପଣ କରୁଛି ।

-ଚିରଜୀବ

ଆମ ଇତିହାସ ବହିମାନେ କହୁଛନ୍ତି ଯେ ଶ୍ରୀ ଖ୍ରୀଷ୍ଟୋଫର୍ କଲମ୍ବସ୍ ୧୪୯୨ ଖ୍ରୀଷ୍ଟାବ୍ଦରେ ଆମେରିକା ଆବିଷ୍କାର କରିଥିଲେ । ତାହା ଆଜିକୁ କଣ୍ଟାକଣ୍ଟି ପାଞ୍ଚଶହ ବର୍ଷ ତଳର କଥା । ଆମେରିକା ଆଗରୁ ମଧ୍ୟ ଥିଲା, ସେଠାରେ ମଧ୍ୟ ମନୁଷ୍ୟମାନେ ବାସ କରୁଥିଲେ । ତେଣୁ, କୁହାଯାଇ ପାରିବ, ଇଉରୋପ ହିଁ ୧୪୯୨ ଖ୍ରୀଷ୍ଟାବ୍ଦରେ ଆମେରିକାକୁ ଆବିଷ୍କାର କଲା । ଅର୍ଥାତ୍, ଇଉରୋପର ଲୋକମାନେ ପ୍ରଥମ କରି ଆମେରିକାରେ ଯାଇ ପହଞ୍ଚିଲେ । ସେତେବେଳେ ପୃଥିବୀଟା ଗୋଲ୍ ବୋଲି ଇଉରୋପବାସୀଙ୍କର ଦୃଢ଼ ଧାରଣା ହୋଇ ନଥିଲା । ଇଉରୋପର ପଶ୍ଚିମ ଦିଗ୍‌ବଳୟ ହୋଇ ରହିଥିବା ଆଟଲାଣ୍ଟିକ୍ ମହାସାଗର ପ୍ରକୃତରେ ଯେ କେଉଁଠି ଶେଷ ବି ହୋଇଛି ଏବଂ ତା'ପରେ ଏକ ବୃହତ୍ ସ୍ଥଳଖଣ୍ଡ ରହିଛି, ସାନ ଓ ପାଲଟଣା ପାଣି ଜାହଜମାନଙ୍କର ସେହି ଯୁଗରେ ଇଉରୋପୀୟ ମାନସରେ ସେପରି ଧାରଣା କରିବା ଆଦୌ ସହଜ ନଥିବ । ଏବେ ଅବଶ୍ୟ ଇତିହାସ କହୁଛି ଯେ ସେହି ପଞ୍ଚଦଶ ଶତାବ୍ଦୀର ବହୁ ପୂର୍ବରୁ ଦୁଇ ଆମେରିକାରେ ମନୁଷ୍ୟମାନେ ରହିଥିଲେ । ସେମାନଙ୍କର ଏକ ସଭ୍ୟତା ରହିଥିଲା । ଏବର ଏସିଆ ମହାଦେଶରୁ ଉତ୍ତର ସାଗରର ବେରିଙ୍ଗ୍ ପ୍ରଣାଳୀ ପାରି ହୋଇ ମନୁଷ୍ୟମାନେ ଆରପଟର ଭୂଖଣ୍ଡଟିରେ ଯାଇ ଯେ ପ୍ରବେଶ କରିଥିଲେ, ସେକଥାକୁ କେହି ନିର୍ଭୁଲ ଭାବରେ ହିସାବ କରି ଆଦୌ କହି ପାରିବନାହିଁ ।

ଆର୍ଯ୍ୟମାନେ ଭାରତବର୍ଷରେ ପ୍ରବେଶ କରିବା ସମୟରେ ଭାରତବର୍ଷରେ ଅନ୍ୟ ମନୁଷ୍ୟମାନେ ରହିଥିଲେ । ହୁଏତ ଦ୍ରାବିଡ଼ମାନେ ଥିଲେ । ଅଥବା, ସେତେବେଳେ ଯେଉଁମାନେ ଥିଲେ, ସେମାନଙ୍କୁ ଆମେ ଏବେ ଦ୍ରାବିଡ଼ ବୋଲି କହୁଛୁ । ଦ୍ରାବିଡ଼ମାନଙ୍କ ପୂର୍ବରୁ ଅଷ୍ଟ୍ରିକ୍‌ମାନେ ଥିଲେ । ଏମାନଙ୍କୁ ଆମେ ବର୍ତ୍ତମାନ ଆଦିବାସୀ ବୋଲି କହିଲୁଣି । ଅତ୍ୟନ୍ତ ସୌଭାଗ୍ୟର କଥା ଯେ ଆର୍ଯ୍ୟ ବା ଦ୍ରାବିଡ଼ମାନେ ଏକଦା କେବେ ଭାରତ ଆବିଷ୍କାର କରିଥିଲେ ବୋଲି କେହି କହୁନାହାନ୍ତି । ଠିକ୍ ସେହି ହିସାବରେ ଆମେ କହିପାରିବା ଯେ ଗୋରାମାନେ ଅଷ୍ଟ୍ରେଲିଆ ଆବିଷ୍କାର କରି ନ ଥିଲେ ଅଥବା ଆଫ୍ରିକାକୁ ମଧ୍ୟ ଆବିଷ୍କାର କରି ନଥିଲେ । ସେସବୁ ଭୂଭାଗ ପୂର୍ବରୁ ରହିଥିଲା ଓ ସେଠାରେ କେଉଁ ପ୍ରଥମ କାଳରୁ ହିଁ ମନୁଷ୍ୟମାନେ ବାସ କରୁଥିଲେ ଓ ଗୋରାମାନେ ପରେ ଯାଇ ସେଠାରେ ପହଞ୍ଚିଥିଲେ । ଗୋରାମାନେ ଆଫ୍ରିକାରେ ଯାଇ ପହଞ୍ଚିବା ପୂର୍ବରୁ ଆଫ୍ରିକା ମହାଦେଶ ମୋଟେ ତୁଚ୍ଛା ଅନ୍ଧାର ଦ୍ୱାରା ଆଚ୍ଛନ୍ନ ହୋଇ ରହିନଥିଲା । ଗୋରାମାନଙ୍କୁ ହୁଏତ ତାହା ତୁଚ୍ଛା ଅନ୍ଧାର ପରି ଦେଖା ଯାଇଥିଲା ଏବଂ ସେହି କାରଣରୁ ସେମାନେ ତାହାକୁ ଏକ dark continent ବୋଲି କହିଥିଲେ । ମଣିଷ ବା ମଣିଷମାନେ ଯେତେବେଳେ କେବଳ ନିଜକୁ ହିଁ ଦେଖନ୍ତି ଏବଂ ତେଣୁ ଅନ୍ୟମାନଙ୍କୁ ଦେଖି ପାରନ୍ତିନାହିଁ, ସେତେବେଳେ କୌଣସି ଅପରିଚିତ ନୂଆ ଭୂଭାଗକୁ ଆସିଲେ ସେମାନଙ୍କୁ ସବୁ ଖାଲି ଅନ୍ଧାର ଦେଖାଯାଏ । ସେହି ଭୂମିଟିକୁ ଦଖଲ

କରିନେଇ ପାରିଲେ ଯାଇ ସେମାନେ ଭ୍ରମ ସଂଶୋଧନ କରନ୍ତି । ନିଜକୁ ଦେଖନ୍ତି ଏବଂ ନିଜର ଦର୍ପଣ ଉପରେ ହିଁ ଆଲୁଅ ଦିଶି ପାରୁଥିବା ପରି ଅନୁଭବ କରନ୍ତି । ଦୀର୍ଘ ବହୁଶହ ବର୍ଷ ତଳେ ରୋମ୍‌ର ସମ୍ରାଟ ରାଜ୍ୟ ଜୟ କରି କରି ଯାଇ ଇଂଲଣ୍ଡରେ ପହଞ୍ଚିଲେ ଏବଂ ଇଂଲଣ୍ଡକୁ ଶାସନ କଲେ । ସେହି ଘଟଣାକୁ କ'ଣ ଆମେ ତା' ବୋଲି ରୋମାନ୍‌ମାନଙ୍କ ଦ୍ୱାରା ଇଂଲଣ୍ଡର ଆବିଷ୍କାର ବୋଲି କହିବା ? ଇଉରୋପରେ ସାଂସ୍କୃତିକ ମଥା ରହିଥିବା ମଣିଷମାନେ ସମ୍ଭବତଃ ସ୍ଥଳେ ସ୍ଥଳେ ଏବେ ମଧ୍ୟ ସେହିଭଳି ବିଚାର କରୁଥିବେ । ଇଉରୋପୀୟ କେହି ଅଧିବାସୀ ବା ଅଧିବାସୀମାନେ ପୃଥିବୀର କୌଣସି ଖଣ୍ଡରେ ଯାଇ ପହଞ୍ଚିବା ପରେ ଯାଇ ସେହି ଖଣ୍ଡଟିର ଆବିଷ୍କାର ହେଲା, ଏହି ଉକ୍ତିଟାକୁ ଆମ ସାଂସ୍କୃତିକ ଇତିହାସର କ୍ଷେତ୍ରରେ ପ୍ରାୟ ଏକ ମଧ୍ୟଯୁଗୀୟ ଔଦ୍ଧତ୍ୟର ପରିଚୟ ବୋଲି କୁହାଯାଇ ପାରିବ ।

କଲମ୍ବସ ଓ ତାଙ୍କ ଦଳର ଆମେରିକାର ସ୍ଥଳଭାଗକୁ ଯାତ୍ରା,- ଏହାକୁ ଆମେ ପ୍ରାୟ ସବୁଯାକ ଅର୍ଥରେ ଏକ ଆକ୍ରମଣ ବୋଲି କହି ପାରିବା । ଉପନିବେଶ ସ୍ଥାପନ ଏବଂ ତଥାକଥିତ ଧର୍ମପ୍ରସାରର ସେହି କାଳପର୍ଯ୍ୟାୟଟାରେ ଇଉରୋପୀୟମାନେ ପୃଥିବୀର ଯେତେ ଯେଉଁଠାକୁ ଯାଇଛନ୍ତି,ସେହି ଅଘଟଣାଟିକୁ ଆମେ ହୁଏତ ଅନେକ ପରିମାଣରେ ଗୋଟିଏ ଗୋଟିଏ ଆକ୍ରମଣ ବୋଲି ହିଁ କହିବା । ଏବଂ, ସେହି ଇଉରୋପୀୟ ବିବରଣଗୁଡ଼ିକୁ ଆଧାର କରି ଖ୍ରୀଷ୍ଟୋଫର୍ କଲମ୍ବସ୍‌ଙ୍କୁ ଯେଉଁ ମହତ୍ତ୍ୱ ଓ ମାନ୍ୟତା ଦିଆଯାଇଛି, ସେହି ଅନୁସାରେ ତାଙ୍କରି ନାମ ଅନୁସାରେ ମଧ୍ୟ ସିଏ ପହଞ୍ଚିଥିବା ଏହି ଭୂଖଣ୍ଡଟିର ସମ୍ଭବତଃ ଅଧିକ ଯୁକ୍ତି ସହିତ କଲମ୍ବିୟା ବୋଲି ନାମକରଣ କରା ଯାଇଥାନ୍ତା । ମାତ୍ର ସେପରି ନହୋଇ ତାହାକୁ ଆମେରିକା ବୋଲି କୁହାଗଲା କାହିଁକି ? ଏପରିକି ସମଗ୍ର ପଶ୍ଚିମ ଗୋଲାର୍ଦ୍ଧଟିକୁ କ୍ରମେ ଦୁଇ ଖଣ୍ଡରେ ବିଭକ୍ତ କରି ଉତ୍ତର ଆମେରିକା ଏବଂ ଦକ୍ଷିଣ ଆମେରିକା ବୋଲି କୁହାଯାଇ ଆସିଛି । ଆମେରିକା ଶବ୍ଦଟି ପଛରେ ଆମେରିଗୋ ଭେସ୍‌ପୁଚି (Amerigo Vespucci) ନାମକ ଆଉଜଣେ ବ୍ୟକ୍ତିଙ୍କର ନାମ ରହିଛି । ସନ୍ଦର୍ଭଟିଏ ଖୋଜିବାକୁ ଯାଇ ସୂଚନା ମିଳୁଛି ଯେ, ୧୫୦୭ ଖ୍ରୀଷ୍ଟାବ୍ଦରେ ଲେଖା ହୋଇଥିବା ପୁସ୍ତକର ଲେଖକମାନେ ହିଁ ଏପରି ଗୋଟିଏ ସିଦ୍ଧାନ୍ତ କରିଥିଲେ ଯେ, ଇଉରୋପର ଆମେରିକାରେ ଯାଇ ପହଞ୍ଚିବା ଏବଂ ଉପନିବେଶ ସ୍ଥାପନ କରିବାର ସମଗ୍ର କାହାଣୀଟିରେ କଲମ୍ବସ୍‌ଙ୍କ ଅପେକ୍ଷା ଆମେରିଗୋ ଭେସ୍‌ପୁଚିଙ୍କର ହିଁ ଅଧିକ ଅବଦାନ ଏବଂ ପ୍ରତିଷ୍ଠା ରହିଛି ଓ ତେଣୁ ଭୂଭାଗଟିର ନାମକରଣ ତାଙ୍କରି ନାମ ଅନୁସାରେ କରାଯିବା ଉଚିତ । କ୍ରମେ ଅନ୍ୟମାନେ ମଧ୍ୟ ତାଙ୍କର ବିଚାରଟିକୁ ଗ୍ରହଣ କରି ନେଇଥିଲେ । ସେହି ଅନୁସାରେ ପ୍ରଥମେ ତଳ ଭାଗଟିକୁ ଦକ୍ଷିଣ ଆମେରିକା ଏବଂ ଉପର ଭାଗଟିକୁ ଉତ୍ତର ଆମେରିକା ବୋଲି କହିବାର ରିବାଜଟି ଆରମ୍ଭ ହେଲା । ମାତ୍ର, ସେତେବେଳେ ପୃଥିବୀର ସେହି ଅଂଶଟିରେ ସର୍ବାଧିକ ପରିମାଣରେ ସଂଶ୍ଳିଷ୍ଟ ହୋଇ ରହିଥିବା ଉଭୟ ଦେଶ, ସ୍ପେନ୍ ଓ ପର୍ଟୁଗାଲ୍, ଅଷ୍ଟାଦଶ

ଶତାବ୍ଦୀ ପର୍ଯ୍ୟନ୍ତ ଏହି ନାମଟିକୁ ଗ୍ରହଣ କରି ନଥିଲେ । ମାତ୍ର, ଆଲୋଚିତ ଲେଖକମାନେ କଲମ୍ବସ୍ ଓ ଅନ୍ୟମାନଙ୍କର ତୁଳନାରେ ଆମେରିଗୋ ଭେସ୍‌ପୁଚିଙ୍କୁ କ'ଣ ପାଇଁ ଅଧିକ ମହତ୍ତ୍ୱ ଦେଲେ, ତାହାର କିଛିତ କାରଣ ମଧ୍ୟ ଅବଶ୍ୟ ସନ୍ଧାନ କରାଯାଇ ପାରିବ ।

ହୁଏତ ସର୍ବପ୍ରଥମ କାରଣଟି ହେଉଛି ଯେ, କଲମ୍ବସ୍ ନୁହନ୍ତି, ଶ୍ରୀଯୁକ୍ତ ଆମେରିଗୋ ହିଁ ଇଉରୋପୀୟ ଅଭିଯାନକାରୀମାନଙ୍କ ମଧ୍ୟରେ ସବାଆଗ ଯାଇ ସେହି ପୃଥିବୀଟିର ପ୍ରଧାନ ସ୍ଥଳଅଂଶଟିରେ ଯାଇ ପହଞ୍ଚି ପାରିଛନ୍ତି । ତଥ୍ୟ କହୁଛି, ୧୪୯୨-୯୩ ଓ ୧୪୯୩-୯୬ର ଆପଣାର ପ୍ରଥମ ଦୁଇ ଜଳଯାତ୍ରାରେ କଲମ୍ବସ୍ ମେକ୍‌ସିକୋ ଉପସାଗରର ସୀମାରେ ଅବସ୍ଥିତ କେତୋଟି ଦ୍ୱୀପରେ ହିଁ ପହଞ୍ଚିଥିଲେ । କେବଳ ୧୪୯୭ର ଶେଷଭାଗରେ ହିଁ ସିଏ ନିଜର ତୃତୀୟ ବାର ଜଳଯାତ୍ରାରେ ମହାଦେଶୀୟ ଭୂଖଣ୍ଡକୁ ସ୍ପର୍ଶ କରି ପାରିଥିଲେ । ଅନ୍ୟ ପକ୍ଷରେ ଶ୍ରୀଯୁକ୍ତ ଆମେରିଗୋ ସେହି ୧୪୯୭ ମସିହାରେ ହେଲେ ମଧ୍ୟ କେତେ ମାସ ପୂର୍ବରୁ ତାଙ୍କର ପ୍ରଥମ ଜଳଯାତ୍ରା ଶେଷରେ ଯାଇ ସେଠାରେ ପହଞ୍ଚି ଯାଇଥିଲେ । ଅବଶ୍ୟ ଏକଥା ମଧ୍ୟ ସତ ଯେ ସେହି ସଫଳତାଟି ବିଷୟରେ ସ୍ୱୟଂ ଆମେରିଗୋ ଲେଖିଥିବା କେବଳ ଗୋଟିଏ ମାତ୍ର ଚିଠି ବ୍ୟତୀତ ଅନ୍ୟ କୌଣସି ପ୍ରମାଣ ଅଦ୍ୟାବଧି ହସ୍ତଗତ ହୋଇ ପାରିନାହିଁ । ଏବଂ, ଘଟଣାଟି ସତ୍ୟ ହେଉଥିଲେ ମଧ୍ୟ ତଥାପି ଆପତ୍ତି କରାଯାଇ ପାରିବ ଯେ, ଜଳଯାତ୍ରାର ଉକ୍ତ ଅଭିଯାନଟିରେ ଆମେରିଗୋ ସେନାପତି କିମ୍ବା ମୁଖ୍ୟ ନଥିଲେ । ଏବଂ, ସଫଳ ଜଳଯାତ୍ରାଟି ପ୍ରକୃତ ମୁଖ୍ୟଙ୍କୁ ବାଦ୍ ଦେଇ ତାଙ୍କ ନାମରେ ଅଭିହିତ କିପରି ହୋଇଛି କେଜାଣି ? କେତେ ପରିମାଣରେ ଏପରି ବି ଅନୁମାନ କରାଯାଉଛି ଯେ, କଲମ୍ବସ୍ ଯେତେବେଳେ ୧୪୯୪ରେ ନିଜ ଜଳଯାତ୍ରାର ଶେଷ ଚରଣକୁ ଆସି ସ୍ଥଳଭାଗରେ ପାଦ ଦେଲେ, ତାହାକୁ ସେ ମନେ ମନେ ଏସିଆ ମହାଦେଶରେ ଆସି ପହଞ୍ଚି ଯାଇଛନ୍ତି ବୋଲି ଭାବୁଥିଲେ ଏବଂ ସେହି ସ୍ଥାନଟିକୁ କିଉବା ନାମକ ଏକ ଦ୍ୱୀପ ବୋଲି ସ୍ୱୀକାର କରିବାକୁ ଆଦୌ ରାଜୀ ହୋଇନଥିଲେ ।

କଲମ୍ବସ୍ ଓ ଆମେରିଗୋଙ୍କ ମଧ୍ୟରେ ପ୍ରକୃତରେ ଏତିକି ଫରକ୍ ଦେଖି ହେଉଛି ଯେ କଲମ୍ବସ୍ ଯେଉଁ ସ୍ଥଳଭାଗଟିରେ ଯାଇ ପହଞ୍ଚିଲେ, ନିଜର ପୂର୍ବ ପ୍ରତ୍ୟାଶାଟି ଅନୁସାରେ ତାହାକୁ ସେ ଏସିଆ ବୋଲି ହିଁ ଭାବୁଥିଲେ ; ମାତ୍ର ଆମେରିଗୋ ସେପରି କୌଣସି ଭ୍ରମ ମଧ୍ୟରେ ଆଦୌ ନଥିଲେ । ୧୪୯୭ ଆଡ଼କୁ ଯାଇ କଲମ୍ବସ୍ ଜାଣି ପାରିଲେ ଯେ ସିଏ ପ୍ରକୃତରେ ଇଉରୋପରୁ ପଶ୍ଚିମମୁହାଁ ଜଳଯାତ୍ରା କରି ଏସିଆ ମହାଦେଶକୁ ଆସିନାହାନ୍ତି । ଏସିଆ ତ ପୃଥ୍ୱୀ-ଗୋଲକଟିର ଉତ୍ତର ପାଖକୁ ଅବସ୍ଥିତ ଏବଂ ସିଏ ଆରମ୍ଭରୁ ହିଁ ଦକ୍ଷିଣମୁହାଁ ହୋଇ ହିଁ ଜଳଯାତ୍ରା କରି ଆସିଛନ୍ତି । ଏତେବେଳେ ଯାଇ ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ସିଏ ଏକ ନୂତନ ଭୂଖଣ୍ଡରେ ଆସି ପଦାର୍ପଣ କରିଛନ୍ତି । ଅର୍ଥାତ୍, କଲମ୍ବସ୍ ଓ ଆମେରିଗୋ ଉଭୟେ ଅଚିରେ ଭଲ କରି ଜାଣି ପାରିଲେ ଯେ ସେମାନେ ଏକ ନୂଆ ଭୂଖଣ୍ଡରେ ଆସି ପହଞ୍ଚିଛନ୍ତି,- ଏପରି ଏକ ଭୂଖଣ୍ଡ ଯାହା ବିଷୟରେ ଇଉରୋପରେ

କେହି ପୂର୍ବରୁ କିଛିହେଲେ ଜାଣିନଥିଲେ । ମାତ୍ର, କଲମ୍ବସ୍‌ଙ୍କୁ ବର୍ଜନ କରି ଆମେରିଗୋଙ୍କ ଅନୁସାରେ ଭୂଖଣ୍ଡଟିର ନାମକରଣ ହେଲା ଓ ସେଇଟି ଯେ କାଳକାଳକୁ ପୃଥ୍ୱୀ-ଭୂଗୋଳରେ ସ୍ଥାୟୀ ହୋଇ ରହିଲା, ସେହି ସଂଶୟଟି ତଥାପି ଅବଶ୍ୟ ରହିଯିବ । ସ୍ପଷ୍ଟ କରି କିଛି ଜାଣିବାର ସମ୍ଭାବନା ନଥିବାରୁ କେହି କେହି ଅନୁମାନକୁ ଭିତ୍ତି କରି ଏବଂ ସେହି ଅନୁମାନକୁ ସ୍ପଷ୍ଟ କରି ପାରୁଥିବା କେତେକ ଅନୁକୂଳ ତଥ୍ୟ ବତାଇ ଦେଇ ଆମକୁ ଯାହା ବୁଝାଇବାର ଚେଷ୍ଟା କରିଛନ୍ତି ।

ଗୋଟିଏ ଅନୁମାନ କହୁଛି ଯେ ଶ୍ରୀ କଲମ୍ବସ୍ ତାଙ୍କର ଯେଉଁ ଚିଠିରେ ତାଙ୍କ ଦ୍ୱାରା ଆବିଷ୍କୃତ ନୂଆ ମହାଦେଶୀୟ ଭୂଭାଗଟିର ସମ୍ବାଦ ଦେଇଥିଲେ, ତାହା ସେତେ ଭଲ ଭାଷାରେ ଅର୍ଥାତ୍ ସେତେ ସୁଚାରୁରୂପେ ଲେଖା ହୋଇ ନଥିଲା । ଅନ୍ୟ ପକ୍ଷରେ ଶ୍ରୀ ଆମେରିଗୋଙ୍କର ଚିଠିର ବର୍ଣ୍ଣନାତ୍ମକ ବିବରଣୀଟି ଅଧିକ ଭଲ ଥିଲା । ତେଣୁ ଅଧିକ ଆକର୍ଷକ ବି ଲାଗୁଥିଲା । କଲମ୍ବସ୍‌ଙ୍କର ଚିଠିରେ କୌଣସି ଶୈଳୀ ହିଁ ନଥିଲା । ସିଏ ତାଙ୍କ ଜଳଯାତ୍ରାର ଏକ ମାମୁଲି ବର୍ଣ୍ଣନା ଦେଇଥିଲେ, ସିଏ ଆସି ପହଞ୍ଚିଥିବା ଦୁଇଟିଯାକ ଦ୍ୱୀପ,- ହେଇଟି ଏବଂ କିଉବାର ପ୍ରାକୃତିକ ଦୃଶ୍ୟରାଜିର କିଛି ବିବରଣ ଦେଇ ସେଠା ଅଧିବାସୀମାନଙ୍କର ମଧ ମୋଟାମୋଟି କିଛି ପରିଚୟ ପ୍ରଦାନ କରିଥିଲେ । ତା'ପରେ କିଞ୍ଚିତ୍ ସ୍ଥାନୀୟ ଭୂଗୋଳ ଏବଂ, ସିଏ ପରିଚିତ ହୋଇଥିବା 'ଭାରତୀୟ'ମାନଙ୍କ ବିଷୟରେ କିଛି ମନ୍ତବ୍ୟ । ସେହିସବୁ ନୂତନ ଭୂମିରେ ପ୍ରଚୁର ସମ୍ପଦ ଭରି ରହିଛି ବୋଲି କେଡ଼େ ହୃଷ୍ଟ ହୋଇ ସେ ରାଜାମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ଏବଂ ଇଉରୋପରୁ ଜଳଯାତ୍ରାରେ ଆସି ଏହିସବୁ ଭୂମିକୁ ଆବିଷ୍କାର କରିବାର ଅବସରଟି ତାଙ୍କୁ ମିଳିଥିବାରୁ ସିଏ ଭଗବାନଙ୍କୁ ଧନ୍ୟବାଦ ଦେଇଥିଲେ ।

କିନ୍ତୁ ଶ୍ରୀଯୁକ୍ତ ଆମେରିଗୋଙ୍କର ଭାଷା ନିର୍ବିବାଦ ଭାବରେ ଅଧିକ ସୁନ୍ଦର ଏବଂ ସୁଗଠିତ ଥିଲା । ନିଜ ପତ୍ରର ପ୍ରଥମ ଭାଗରେ ସିଏ ଜଳଯାତ୍ରାର ଗୋଟିଏ ବିଶଦ ବିବରଣୀ ଦେଇଥିଲେ ଏବଂ ଜାହଜର ନାବିକ ହିସାବରେ ଆପଣାର ଦକ୍ଷତା ବିଷୟରେ ମଧ ବେଶ୍ ଏକ ସୂଚନା ପ୍ରଦାନ କରିଥିଲେ । ଦ୍ୱିତୀୟ ଭାଗରେ ନୂଆ ଭୂମିଟିର ବାସିନ୍ଦା, ଗଢ଼ଣ ଓ ଆକାଶ ବିଷୟରେ ଯାହାସବୁ ଲେଖିଥିଲେ, ତାହା ପାଠକର ମନକୁ ଖୁସୀ କରି ଦେବାପାଇଁ ସୁଅନୁକୂଳ ହୋଇ ରହିଥିଲା । ସିଏ ଯାହାସବୁ ଲେଖିବେ, ତାହା ଯେପରି ପାଠକମାନଙ୍କୁ ଅତ୍ୟନ୍ତ ଭଲ ଓ ସରସ ଲାଗିବ, ଆମେରିଗୋ ସେଥିପାଇଁ ସକଳ ପ୍ରକାରର ଚେଷ୍ଟା କରିଥିଲେ । ନୂଆ ଭୂଖଣ୍ଡଟିରେ ଯାଇ ପହଞ୍ଚିଥିବା ବିଷୟରେ କଲମ୍ବସ୍ ତେଣୁ ଯେତେ ଯାହା ପତ୍ର ଲେଖିଛନ୍ତି, ସେହି ସବୁଥିରେ ସେ ସ୍ପେନ୍‌ର ତତ୍କାଳୀନ ରାଜା ଓ ରାଣୀ ଫର୍ଡ଼ିନାଣ୍ଡ୍ ଓ ଇସାବେଲାଙ୍କୁ ଉଲ୍ଲେଖ କରିଛନ୍ତି ; ଆଟଲାଣ୍ଟିକ୍ ମହାସାଗରର ସେକାନିରେ ରହିଥିବା ଭୂଭାଗରେ କେତେ କେତେ ଧନସମ୍ପଦ ଯେ ଭର୍ତ୍ତି ହୋଇ ରହିଛି ଓ ତେଣୁ ସେହି ଅଞ୍ଚଳଟିକୁ କିପରି ଅଧିକ ଆବିଷ୍କାର-ଅଭିଯାନମାନ ପଠାଇବାକୁ ହେବ, କଲମ୍ବସ୍ ତୁହାକୁ ତୁହା ସେହି

କଥାଟିର ଚର୍ଚ୍ଚା କରିଛନ୍ତି । ସତେଅବା ରାଜା ଓ ରାଣୀ ସେସବୁ କରାନ୍ତୁ ବୋଲି ଅତ୍ୟନ୍ତ ଉତ୍ସାହର ସହିତ ସୂଚନା ଦେଇଛନ୍ତି । ଅନ୍ୟ ପକ୍ଷରେ ଆମେରିଗୋଙ୍କ ପତ୍ରରେ ଏସବୁ ଆଦୌ କିଛି ନାହିଁ । ସିଏ ଧନସମ୍ପଦ ସକାଶେ ନୁହେଁ, ଗୌରବ ନିମନ୍ତେ ଜଳଯାତ୍ରାରେ ଯାଇଛନ୍ତି । ତାଙ୍କର ସାହସିକ ଯାତ୍ରାଟି ବିଷୟରେ ଯେପରି ଇଉରୋପର ଅଧିକ ଲୋକ ଜାଣିବାକୁ ପାଇବେ, ସିଏ ସେଥିଲାଗି ନିଜର ପତ୍ରବିବରଣୀଟିକୁ ଲାଟିନ୍ ଭାଷାରେ ଅନୁବାଦ ବି କରାଇଛନ୍ତି ।

ଇଉରୋପର ସେହି ପୃଥ୍ୱୀ-ଆବିଷ୍କାରର ଯୁଗରେ ଇଉରୋପୀୟମାନେ ପ୍ରାୟ ଲଗାମଛଡ଼ା ହୋଇ କେତେ କ'ଣ କଳ୍ପନା କରି ଯାଉଥିଲେ । କଲମ୍ବସ ତ କେଡ଼େ ଉଦ୍‌ବୁଦ୍ଧ ହୋଇ ଏହି ନୂତନ ସ୍ଥଳାଞ୍ଚଳଟିକୁ ଧରାପୃଷ୍ଠରେ ଅବସ୍ଥିତ ସ୍ୱର୍ଗ ବୋଲି ଅଭିହିତ କରିଥିଲେ । ଏବଂ, ଆମେରିଗୋ ପ୍ରକୃତରେ କୌଣସି ଜଳଯାତ୍ରା କରିଥିଲେ ନା ଏହି ଇଉରୋପରେ ଥାଇ ଅତ୍ୟନ୍ତ ବୁଦ୍ଧିମତା ସହିତ ଭାଷାକୁ ଭାଷା ଓ ଚିତ୍ରକୁ ଚିତ୍ର ଫାନ୍ଦି କରି ତାଙ୍କ ପତ୍ରବିବରଣୀକୁ ଲେଖିଥିଲେ, ସେହି ବିଷୟରେ ମଧ୍ୟ ସନ୍ଦର୍ଭଟିକୁ ବିଶଦ ଭାବରେ ଅଧ୍ୟୟନ କରିଥିବା ଛାତ୍ରମାନଙ୍କ ମନରେ ବହୁତ ସନ୍ଦେହ ରହିଯାଇଛି । ଭୂଆବିଷ୍କାରର କେତେ ଶତାବ୍ଦୀ ପରେ ସେହି ଆମେରିକାର ଜଣେ ପ୍ରଖ୍ୟାତ ଲେଖକ ଓ ଚିନ୍ତାନାୟକ ଶ୍ରୀଯୁକ୍ତ ଏମର୍‌ସନ୍ (Ralph Waldo Emerson) ସତେଅବା ବଡ଼ ବ୍ୟଙ୍ଗ କରି କହିଛନ୍ତି : ''ପ୍ରକୃତରେ କେଡ଼େ ବିଚିତ୍ର କଥା ଯେ ଆମେରିକା ନାମକ ଏହି ନୂତନ ବୃହତ୍ ପୃଥିବୀଟିର ନାମ ଗୋଟିଏ ଚୋରର ନାମ ସହିତ ଯୋଡ଼ି ଦିଆଯାଇଛି ।'' ବଡ଼, ତାଚ୍ଛିଲ୍ୟ କରି ସେ କହିଛନ୍ତି ଯେ ଆମେରିଗୋ ଭେସ୍‌ପୁଚି ନାମକ ଏବଉ ସେହି ପ୍ରଖ୍ୟାତ ମନୁଷ୍ୟଟି ତା' ଦେଶରେ ଜଣେ ଅଖ୍ୟାତ ଆଚାରବେପାରୀ ଭାବରେ ଜୀବନ ନିର୍ବାହ କରୁଥିଲା ; ସିଏ କୌଣସି ଏକ ଜାହଜରେ ଏକ ଅତ୍ୟନ୍ତ ତଳ ପାହିଆର ଜଣେ କର୍ମଚାରୀ ରୂପେ ଯୋଗ ଦେଇଥିଲା ଏବଂ ସେହି ଜାହଜ ହୁଏତ କେବେହେଲେ ଜଳଯାତ୍ରାରେ ବାହାରି ଆଟ୍‌ଲାଣ୍ଟିକ୍ ପାରି ହୋଇ ଏପାଖକୁ ଆସିନଥିଲା । ଅର୍ଥାତ୍ ଜଳଯାତ୍ରାର ଗୋଟିଏ ମିଛ ବର୍ଣ୍ଣନା ଦେଇ ସିଏ କଲମ୍ବସ୍‌ଙ୍କୁ ଚିତା କାଟିଦେଲା ଏବଂ ନିଜର ନାମ ସହିତ ଗୋଟାଏ ପୂରା ଗୋଲାର୍ଦ୍ଧକୁ ଗଅଁଠାଇ ଦେଇ ପାରିଲା । କିଏ ଅସ୍ୱୀକାର କରିପାରିବ ଯେ ସତକୁ ସତ ସାଗର ପାର ହୋଇ ପୃଥିବୀ ବିଷୟରେ ଇଉରୋପର ଅନ୍ଦାଜକୁ ଏକ ବିଶେଷ ମହତ୍ତ୍ୱପୂର୍ଣ୍ଣ ପ୍ରସାରଣ ଆଣି ଦେଇଥିବା ନିଜେ ଖ୍ରୀଷ୍ଟୋଫର କଲମ୍ବସ୍‌ଙ୍କର ଆତ୍ମା କାଳର ଏହି ପ୍ରତାରଣା ଦେଖି ଏବେ ମଧ୍ୟ ମୁଣ୍ଡ ବାଡ଼େଇ ହେଉଥିବ ।

ପୃଥିବୀର ଏ ଖଣ୍ଡଟା ସେପାଖର ଖଣ୍ଡଟାରେ ଯାଇ ପହଞ୍ଚିବା ସମୟରେ ସେଖଣ୍ଡରେ ବି ମଣିଷମାନେ ବାସ କରୁଥିଲେ । ସେମାନେ କୋଉ ଆଦିମ କାଳରୁ ସେଠାରେ ଆସି ପହଞ୍ଚି ସାରିଥିଲେ । ସେତେବେଳେ ସେମାନେ ନିଜକୁ କୋଉ ନାମ ଦେଇ ଏକ ସମଷ୍ଟିରୂପେ ଚିହ୍ନୁଥିଲେ କେଜାଣି ? ସେହି ଭୂଖଣ୍ଡଟିର ମଧ୍ୟ ଏମାନେ କିଭଳି

ନାମକରଣ କରିଥିଲେ ? ଇଉରୋପରୁ ନବାଗତମାନଙ୍କର କୃପାରୁ ସେସବୁ କଥା ଚିରକାଳ ଲାଗି ବିସ୍ମୃତିର ଗର୍ଭରେ ଲୀନ ହୋଇ ରହିଗଲା । କଲମ୍ବସ୍ ଭାରତବର୍ଷର ସନ୍ଧାନରେ ପଶ୍ଚିମକୁ ଜଳଯାତ୍ରା କରି ବାହାରିଥିଲେ ଏବଂ ଦୈବଦୁର୍ଯୋଗରୁ ଅଥବା ଯୋଗରୁ ଯେଉଁ ସ୍ଥଳଭାଗଟିକୁ ଭେଟିଲେ, ଅତ୍ୟନ୍ତ ସଂଗତି ସହିତ ସିଏ ତାହାକୁ ଭାରତ ତଥା ସେଠା ବାସିନ୍ଦାମାନଙ୍କୁ ଭାରତୀୟ ବୋଲି ଅନୁମାନ କରି ନେଇଥିଲେ । ଏବଂ, ସେମାନଙ୍କର ଦେହର ରଙ୍ଗଟାର ସ୍ୱତନ୍ତ୍ରତାରୁ ସେ ଓ ତାଙ୍କର ସଙ୍ଗୀମାନେ ସେମାନଙ୍କୁ ଲୋହିତ ଭାରତୀୟ ବୋଲି କହିଥିଲେ । ମାତ୍ର, ସେହି ଭୂମିଟା ଯେ ଭାରତବର୍ଷ ନୁହେଁ, ସେହି ସତ୍ୟଟି ଅଚିରେ ଧରା ପଡ଼ି ଯାଇଥିଲା । ପ୍ରାୟ ସେହି ପର୍ଯ୍ୟାୟରେ ପ୍ରକୃତ ଭାରତବର୍ଷରେ ଆସି ପହଞ୍ଚି ପାରିବା ନିମନ୍ତେ ଆଫ୍ରିକାର ଦକ୍ଷିଣ ମୁନଟିକୁ ସ୍ପର୍ଶ କରି ଏକ ଜଳପଥ ଆବିଷ୍କୃତ ବି ହୋଇ ଯାଇଥିଲା । ତେଣୁ, ପ୍ରାଥମିକ ଭ୍ରମଟି ଦୂର ହେବା ପରେ ତଥାପି ଆଦିମ ସେହି ଅନ୍ୟ ଗୋଲାର୍ଦ୍ଧଟିର ଅଧିବାସୀମାନଙ୍କୁ ଲୋହିତ ଭାରତୀୟ ବୋଲି କାହିଁକି ବା କୁହାଗଲା ? ଏବଂ, ଆହୁରି ଅଧିକ ବିଡ଼ମ୍ବନାର ବିଷୟ ହେଉଛି, ସେହି ଅଧିବାସୀମାନେ କାଳକ୍ରମେ ଆଧୁନିକ ସଭ୍ୟତା ମଧ୍ୟକୁ ସଂକ୍ରମିତ ହୋଇ ଆସିବା ପରେ ମଧ୍ୟ ନିଜର ସେହି 'ଭାରତୀୟ' ପରିଚୟଟିକୁ କାହିଁକି ତଥାପି ସ୍ଥାୟୀ କରି ରଖିଲେ ?

ଆମର ଏହି ଶତାବ୍ଦୀର ଜଣେ ଭାରତୀୟ ଗବେଷକ ସମ୍ଭବତଃ ଏହିପରି ଏକ ସନ୍ଦେହଦ୍ୱାରା ପ୍ରେରିତ ହୋଇ ଦୀର୍ଘଦିନ ଧରି ମେକ୍ସିକୋ ଓ ମଧ୍ୟ-ଆମେରିକାକୁ ଯାଇ ସେଠା ଜନଜୀବନର ଅଧ୍ୟୟନ କରିଥିଲେ । ତଦ୍ୱାରା ତାଙ୍କୁ ମିଳିଥିବା ତଥ୍ୟଗୁଡ଼ିକରୁ ସିଏ ସିଦ୍ଧାନ୍ତ କଲେ ଯେ, ଆମେରିକାରେ ଇଉରୋପୀୟ ମାନଙ୍କର ପ୍ରବେଶ ଘଟିବା ପୂର୍ବରୁ ଭାରତୀୟମାନେ ହିଁ ସେହି ଭୂଭାଗରେ ଯାଇ ବସତି ସ୍ଥାପନ କରିଥିଲେ । ସେମାନଙ୍କ ପୂର୍ବରୁ ମଧ୍ୟ ଆଉ କୌଣସି ମନୁଷ୍ୟଗୋଷ୍ଠୀ ସେଠାରେ ବାସ କରୁଥିଲେ କି ? ପୂର୍ବରୁ ରହିଥିବା ସେହି ଅଧିବାସୀ ଓ ନବାଗତ ଏମାନଙ୍କ ଭିତରେ ସେପରି କୌଣସି ଯୁଦ୍ଧବିଗ୍ରହ ଘଟିଥିଲା କି ? ଆଲୋଚ୍ୟ ଗବେଷକ ମେକ୍‌ସିକୋର ସାମାଜିକ ଜୀବନରୁ ଏପରି ଅନେକ ବିଧି ଓ ଚଳଣିର ପ୍ରମାଣ ପାଇଛନ୍ତି, ଯାହା ସହିତ ଆମ ଭାରତବର୍ଷର ବହୁ ଚଳଣିର ସାମଞ୍ଜସ୍ୟ ରହିଥିବାର ସିଏ ଲକ୍ଷ୍ୟ କରି ପାରିଛନ୍ତି । ତାଙ୍କର ସେହି ଅନୁମାନଗୁଡ଼ିକୁ ଅଧିକ ପ୍ରତୀତି ଦେବା ନିମନ୍ତେ ଅବଶ୍ୟ ତାଙ୍କ ପରେ ସେପରି କୌଣସି ଗବେଷଣା ଆଉକେହି କରିନାହାନ୍ତି । ମାତ୍ର, ଅତ୍ୟନ୍ତ ସ୍ପଷ୍ଟଭାବରେ ପ୍ରମାଣିତ ହୋଇଯାଇଛି ଯେ, ସେହି ଭୂଖଣ୍ଡରେ, ଅନ୍ତତଃ ବର୍ତ୍ତମାନର ମଧ୍ୟ-ଆମେରିକାରେ ଏବଂ ଦକ୍ଷିଣ ଆମେରିକାର ଉତ୍ତର ଅଂଶରେ ସେହି ପ୍ରଥମ ଅଧିବାସୀମାନଙ୍କର ସଭ୍ୟତାସବୁ ରହିଥିଲା । ଏବେ ସେହିସବୁ ସଭ୍ୟତାକୁ Inca, Aztek ଓ Maya ବୋଲି କୁହାଯାଉଛି । ସେହି ସଭ୍ୟତାଗୁଡ଼ିକର କିଛିତ୍ ଭଗ୍ନାବଶେଷ ଏବେ ମଧ୍ୟ ଦୃଷ୍ଟିଗୋଚର ହୋଇ ପାରୁଛି । ପୃଥିବୀରେ ଗୋଟିଏ ସମଷ୍ଟି ବା ଗୋଷ୍ଠୀକୁ ଗିଳି ପକାଇବା ଦ୍ୱାରା ହିଁ ଅନ୍ୟ ଗୋଷ୍ଠୀଟିଏ ଯଦି ନିଜର ଅସ୍ତିତ୍ୱକୁ ପ୍ରତିଷ୍ଠିତ

କରିବାର ମନ୍ଦବୁଦ୍ଧି ଦେଖାଉ ନଥାନ୍ତା, ତେବେ ଆମେ ଏକ ସମଗ୍ର ମନୁଷ୍ୟଜାତି ହିସାବରେ କାଳାନୁକ୍ରମେ ଆମକୁ ପୁଷ୍ଟ କରି ଆଣିଥିବା ଚେରଗୁଡ଼ିକୁ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଅନୁଭବ କରି ପାରୁଥାନ୍ତୁ । ଏବେ ଖାସ୍ ଯୁକ୍ତରାଜ୍ୟ ଆମେରିକାରେ ମଧ୍ୟ ଆଧୁନିକ ନୃତତ୍ତ୍ୱବିଦ୍‌ମାନେ ସେହି ଭୂମିରେ ବାସ କରୁଥିବା ଭିନ୍ନ ଭିନ୍ନ ଲୋହିତ-ଭାରତୀୟ ପ୍ରଜାତିମାନଙ୍କର ଅଧ୍ୟୟନ କଲେଣି । ସେଥିରୁ ଆଧୁନିକ ମନୁଷ୍ୟର ଏହି ଅସ୍ତବ୍ୟସ୍ତ ପୃଥିବୀ ନିମନ୍ତେ ମଧ୍ୟ କେତେ ମୂଲ୍ୟବାନ୍ ପ୍ରଜ୍ଞା ଓ ପ୍ରେରଣା ମିଳିପାରୁଛି । ପୃଥିବୀକୁ ଏକ ସୁସ୍ଥ ସଦନରୂପେ ଗଢ଼ି ଆଣିବାର କ୍ଷେତ୍ରରେ ଆମେ ଇଚ୍ଛା କଲେ ସେହି ପ୍ରଜ୍ଞା ଓ ଅନ୍ତର୍ଦୃଷ୍ଟିଗୁଡ଼ିକ ଆମର ପ୍ରକୃତରେ ବହୁତ କାମରେ ଆସି ପାରନ୍ତେ ।

ଏବେ ଆମେରିକା କହିଲେ ଅନେକ ମଣିଷ କେବଳ ଏହି ବର୍ତ୍ତମାନର କ୍ଷଣଟିକୁ ଏତେ ଅମୁହାଁ ଭାବରେ ଦେଖିବାକୁ ଆରମ୍ଭ କରନ୍ତି ଯେ, ସେମାନେ ସେହି ଭୂମିରେ ମୂଳରେ ବା ମୂଳରୁ ଯାହାସବୁ ଥିଲା, ସେଗୁଡ଼ିକୁ ଦେଖିବାକୁ ଅଥବା ସ୍ୱୀକାର କରିବାକୁ ସତେଅବା ଇଚ୍ଛା ହିଁ ପ୍ରକାଶ କରନ୍ତିନାହିଁ । ଯେଉଁ ଆଧୁନିକତା ସହୃଦୟତା ସହିତ ଭୂମିଗୁଡ଼ିକୁ ସ୍ୱୀକାର କରେନାହିଁ, ତାହା ଭିତରେ ଯାବତୀୟ ଜାକଜମକ ସତ୍ତ୍ୱେ ହୁଏତ କେଉଁଠି ଗୋଟାଏ ବ୍ୟାଧି ତାକୁ ଭାରି ଅସହଜ କରି ରଖିଥାଏ । ବୁଢ଼ା ବାପାମାଆଙ୍କୁ ଗାଆଁରେ ପକାଇ ଦେଇ ଯେଉଁମାନେ ଏକାବେଳେକେ ଏକ ଅନ୍ୟଭଳି ଆନନ୍ଦମୟ ଜୀବନର ଅଶ୍ୱରଥ ଉପରେ ବସି ଉଡ଼ିବୁଲିବେ ବୋଲି ସହରରେ ଆସି ଫୁଲେଇ ହୁଅନ୍ତି, ଇଏ ପ୍ରାୟ ସେଇମାନଙ୍କର କଥା ଭଳି ଗୋଟିଏ ବ୍ୟାପାର । ଏମାନେ ନିଜ ଭିତରେ ଭାରି ଦଦରା ହୋଇ ରହନ୍ତି । ସେମାନଙ୍କ ଭିତରେ କ'ଣ ଗୋଟାଏ ଅତ୍ୟନ୍ତ ନିଶ୍ଚିତ ଭାବରେ ଭାଙ୍ଗି ବି ଯାଇଥାଏ । ଭଙ୍ଗାଟାକୁ ବା ଭଙ୍ଗାଗୁଡ଼ାକୁ ଯୋଡ଼ିବାଲାଗି ବହୁ ବୁଦ୍ଧିମତ୍ତା ସହିତ ଏବଂ ବହୁ କୋଳାହଳରେ ହୁଏତ ମସ୍ତ ମସ୍ତ ପ୍ରସାଧନମାନ କରା ଯାଉଥାଏ ସତ, ମାତ୍ର ତଥାପି ଅସଲ ଖିଅଗୁଡ଼ିକୁ ଲୋଡ଼ିବାର କ୍ଷେତ୍ରରେ ଏକ ମସ୍ତ ଅସମର୍ଥତା ମଧ୍ୟ ଆଣ୍ଟ କରି ରହିଥାଏ । ଭାରି କଳବଲ କରାଏ ।

କଲମ୍ବସ୍ ଓ ତାଙ୍କର ଅବ୍ୟବହିତ ପରେ ଯେଉଁ ପୁରୋଗାମୀ ସନ୍ଧାନୀମାନେ ଇଉରୋପରୁ ସେହି ପ୍ରଥମ ପର୍ବରେ ଆଟ୍‌ଲାଣ୍ଟିକ ସେପାଖରେ ରହିଥିବା ସେହି ନୂତନ ଭୂଖଣ୍ଡରେ ଯାଇ ପହଞ୍ଚିଲେ, ତାଙ୍କ ସଂଖ୍ୟା ସର୍ବମୋଟ କେତେ ହୋଇଥିବ ? କେଉଁ ପୂର୍ବତନ କାଳରୁ ସେଠାରେ ଯେଉଁ ଜନସମୂହ ବାସ କରି ରହିଥିଲେ, ସେମାନଙ୍କର ସଂଖ୍ୟା ସହିତ ତୁଳନା କରି ଦେଖିଲେ ନବାଗତମାନଙ୍କର ସଂଖ୍ୟାକୁ ପ୍ରକୃତରେ ନଗଣ୍ୟ ବୋଲି ହିଁ କୁହାଯିବ । ଅଥଚ, ଭୂଖଣ୍ଡଟି ଯାହାର ସ୍ଥାୟୀ ଘର ହୋଇ ରହିଥିଲା, ସେମାନଙ୍କୁ ଏହି ବହିରାଗତମାନେ ନିକାଲି ଦେଇ ଅର୍ଥାତ୍ ନିର୍ମୂଳ କରିଦେଇ ସ୍ୱୟଂ ମାଲିକ ବନିପାରିଲେ କିପରି ? ହଁ, ପ୍ରକୃତରେ ନିର୍ମୂଳ ଓ ନିଃଶେଷ କରିଦେଇ । ଇତିହାସକାରମାନେ ନିଃଶେଷ କରିଦେବାର ସେହି ପ୍ରକ୍ରିୟାଟିକୁ ମାନବ-ଇତିହାସର ବୃହତ୍ତମ ନରସଂହାର ବୋଲି କହିଛନ୍ତି । ନରସଂହାର

ନଘଟାଇ ସେମାନେ ଭୂମିଟିରେ ପ୍ରବେଶ କରି ପାରିଥାନ୍ତେ କିପରି ? ଏବଂ, ଆଉଗୋଟିଏ ଅସମାହିତ ପ୍ରଶ୍ନ ମଧ ହେଉଛି ; ଯେଉଁମାନେ ଆଗରୁ ଥିଲେ, ସେମାନେ ତ ସେଠାରେ ସବୁଯାକ ଜାଗା ମାଡ଼ି ରହିନଥିଲେ, ତେଣୁ ଇଉରୋପୀୟ ଆଗନ୍ତୁକଦଳ ନିଜ ସକାଶେ ମଧ ସେଠାରେ ଅତ୍ୟନ୍ତ ଚମତ୍କାର ଭାବରେ ବାସଟିଏ ସମ୍ଭବ କରି ନେଇଥାନ୍ତେ ଓ ଦୁଇ ପକ୍ଷ ମଧରେ ହୁଏତ କୌଣସି ସଂଘାତ ଲାଗିବାର ଅବକାଶ ହିଁ ଆସିନଥାନ୍ତା । ଆମେରିକାରେ ସୁନା ଥିଲା ଓ ସ୍ପେନ୍ ଏବଂ ପର୍ତ୍ତୁଗାଲ୍‌ର ନାବିକମାନେ ମୁଖ୍ୟତଃ ସୁନାଲୋଭରେ ହି ସେହି ଭୂଖଣ୍ଡକୁ ଯାଇଥିଲେ । ଭୂଖଣ୍ଡର ମୂଳ ଅଧିବାସୀ ସୁନାର ମର୍ଯ୍ୟାଦା ଜାଣି ନଥିଲେ । ସେମାନେ ତ ଚଢ଼େଇର ପର ଓ ରଙ୍ଗଚକ୍‌ଚକ୍ ପଥରଗୁଡ଼ିକୁ ହିଁ ଦେହର ଆଭରଣରୂପେ ବ୍ୟବହାର କରୁଥିଲେ । ସୁନା କୁଆଡ଼େ ଭୂଇଁ ଉପରେ ପଡ଼ିଥିଲା, ମାତ୍ର ସେମାନଙ୍କୁ ଆଦୌ ଆକୃଷ୍ଟ କରୁନଥିଲା ।

କ୍ରିଷ୍ଟୋଫର୍ କଲମ୍ବସ୍ ତାଙ୍କର ଏକାଧିକ ବିବରଣୀରେ ବାର ବାର ସେହି ସୁନାର କଥା ହିଁ କହିଛନ୍ତି । ନୂଆ ଦେଶରେ ପହଞ୍ଚି ସିଏ ସେଥିପାଇଁ ପରମପିତା ଭଗବାନଙ୍କ ପାଖରେ ପ୍ରାର୍ଥନା କରିଛନ୍ତି । ମୁଁ ଯୁଆଡ଼େ ଯିବି, ସେଠାରେ ଯେପରି ସୁନା ହିଁ ପାଉଥିବି ବୋଲି ସିଏ ଭଗବାନଙ୍କୁ ଗୁହାରି କରିଛନ୍ତି ଏବଂ ସୁନା ପାଇବାର ସମ୍ଭାବନା ଅନୁସାରେ ହିଁ ବାଟଗୁଡ଼ିକର ଆବିଷ୍କାର କରିଛନ୍ତି । ସୁନା ଗୋଟାଇବାର ଏହି ଉତ୍ସାହପୂର୍ଣ୍ଣ କାର୍ଯ୍ୟଟିରେ ତାଙ୍କ ଗହଣରେ ଥିବା ଲୋକମାନେ ସମ୍ଭବତଃ କଲମ୍ବସ୍‌ଙ୍କୁ ଆଦୌ ଯଥେଷ୍ଟ ବୋଲି ବୋଧ ହୋଇନାହାନ୍ତି ଓ ତେଣୁ, ତୃତୀୟ ଥର ପାଇଁ ସ୍ପେନ୍‌ରୁ ଆମେରିକାକୁ ଜାହଜଯାତ୍ରା କରିବା ସମୟରେ ସେ ନିଜ ଦେଶର ବନ୍ଦୀଶାଳାରେ ଥିବା କେତେକ ଅପରାଧୀଙ୍କୁ ମଧ ସାଙ୍ଗରେ ନେଇ ଯିବାପାଇଁ ରାଜାଙ୍କର ଅନୁମତି ପ୍ରାର୍ଥନା କରିଛନ୍ତି । ସେହି ଅପରାଧୀମାନଙ୍କୁ ବନ୍ଦୀଶାଳାରୁ ମୁକ୍ତ କରି ଦିଆଯିବ ଯେପରିକି ସେମାନେ ସ୍ୱେଚ୍ଛାସେବୀ ଭାବରେ ଆମେରିକା ଯାତ୍ରା କରି ପାରିବେ । କହିବା ବାହୁଲ୍ୟ ଯେ ସ୍ୱେଚ୍ଛାସେବୀ ହୋଇ ବାହାରିଲେ ସେମାନଙ୍କର ଅପରାଧକୁ ଓ ସେମାନେ ଭୋଗ କରୁଥିବା ସଜାକୁ ମଧ ମାଫ୍ କରି ଦିଆଯିବ ।

ନୂଆ ନୂଆ ଭୂଖଣ୍ଡକୁ ଯାଇ ଧନ ସାଉଁଟି ଆଣିବା ବ୍ୟତୀତ ସେତେବେଳେ ଏହିସବୁ ଯାତ୍ରାଭିଯାନର ଆଉଗୋଟିଏ ଅଭିପ୍ରାୟ ମଧ ରହିଥିଲା । ସେମାନେ ଆବିଷ୍କାର କରିଥିବା ଏହି ନୂଆ ପୃଥିବୀର ଅଧିବାସୀମାନଙ୍କୁ ସେମାନେ ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ କରିବାକୁ ଇଚ୍ଛା କରୁଥିଲେ । ଖ୍ରୀଷ୍ଟିଆନ୍ ଧର୍ମପୁସ୍ତକରେ ଏପରି ଗୋଟିଏ କଥା କୌଣସି ସ୍ଥାନରେ ଲେଖାହୋଇଛି ଯେ, କେବଳ ଖ୍ରୀଷ୍ଟିଆନ୍ ଧର୍ମାବଲମ୍ବୀମାନେ ହିଁ ମଲେ ସ୍ୱର୍ଗକୁ ଯାଇପାରିବେ । ବାଇବେଲ୍ ପୁସ୍ତକରେ ତ କେତେ କ'ଣ ଲେଖାଯାଇଛି; ମାତ୍ର ଖାସ୍ ଏଇ କଥାଟି ଯେଉଁମାନଙ୍କୁ ସବୁଠାରୁ ଅଧିକ ଓଜନ ଥିବା କଥା ପରି ଲାଗିଛି, ସେମାନେ ସାମ୍ରାଜ୍ୟବାଦୀ ଅଧିକାରବିସ୍ତାର ସହିତ ବିଭିନ୍ନ ଭୂଭାଗର ଅଧିବାସୀମାନଙ୍କୁ ଖ୍ରୀଷ୍ଟିଆନ୍ କରିବାରେ ହିଁ ସବାଆଗ ଧ୍ୟାନ ଦେଇଛନ୍ତି । ପୃଥିବୀରେ ବର୍ବରମାନଙ୍କୁ ଭଗବାନଙ୍କ ଆଡ଼କୁ

ମୋହିଁ ଆଣିବା ପାଇଁ ଅନେକ ସମୟରେ ବଳି ବଳି ବର୍ବର ଆଚରଣମାନ ପ୍ରଦର୍ଶନ କରିଛନ୍ତି । ସ୍ପେନ୍‌ର ରାଜାଙ୍କ ନିକଟକୁ ଲିଖିତ ତାଙ୍କର ଅନେକ ବିବରଣୀରେ କଲମ୍ବସ୍ ଧର୍ମଦୀକ୍ଷାର ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟଟିର ବହୁ ଉଲ୍ଲେଖ କରିଛନ୍ତି । ନାବିକମାନଙ୍କ ସଙ୍ଗେ ସଙ୍ଗେ ମିଶନାରୀମାନେ ମଧ୍ୟ ଆମେରିକାରେ ଯାଇ ପହଞ୍ଚି ଯିବାକୁ ଆଦୌ ଅଧିକ ଡ଼େରି ଲାଗିନାହିଁ । ପ୍ରାୟ ଏକ ରୋଗଗ୍ରସ୍ତ ପରମୋତ୍ସାହରେ ଯେଉଁମାନେ ପୃଥିବୀତମାମ ମଣିଷଙ୍କୁ ନିଜର ଖୁଆଡ଼ଟା ଭିତରକୁ ଟାଣି ଆଣିବେ ବୋଲି ଧାଇଁବାରେ ଲାଗିଥାନ୍ତି, ଭଗବାନ ସେମାନଙ୍କର କିପରି ବିଚାର କରନ୍ତି କେଜାଣି ?

ନିଜର ସଂଖ୍ୟା ଏତେ ଅଧିକ ଥାଇ ମଧ୍ୟ ଆମେରିକୀୟମାନେ ହାରିଗଲେ କିପରି ? ଏହା କ'ଣ ବିଧିନିର୍ଦ୍ଦିଷ୍ଟ ହୋଇ ରହିଥିଲା ବୋଲି ଘଟିଲା ? ଆର୍ଯ୍ୟମାନେ ମୁଥ ମୁଥ ହୋଇ ଭାରତବର୍ଷରେ ପ୍ରବେଶ କରିଥିବା ସମୟରେ ଦ୍ରାବିଡ଼ମାନେ ସଂଖ୍ୟାରେ ଅଧିକ ଥିଲେ । ଇଉରୋପୀୟ ବାଣିଜ୍ୟ କମ୍ପାନୀମାନେ ଭାରତବର୍ଷରେ ରାଜ୍ୟ ଅଧିକାର କରିଥିବା ସମୟରେ ମଧ୍ୟ ଭାରତୀୟମାନେ ସେମାନଙ୍କ ଠାରୁ ଶହ ଶହ ଗୁଣ ଅଧିକ ହିଁ ଥିଲେ । ତେବେ ଅଧିକ ହାରିଲେ ଓ ଅଳପ ଜିତିପାରିଲେ କିପରି ? ସର୍ବପ୍ରଥମ କାରଣଟି ହେଉଛି ଯେ ଏହି ଯାବତୀୟ କ୍ଷେତ୍ରରେ ବିଜେତାମାନଙ୍କ ପାଖରେ ବିଜିତମାନଙ୍କର ତୁଳନାରେ ଅଧିକ ଭଲ ଅସ୍ତ୍ରସରଞ୍ଜାମମାନ ରହିଥିଲା । ପଞ୍ଚଦଶ ଶତାବ୍ଦୀରେ ଆଜ୍‌ଟେକ୍‌ମାନେ ଅର୍ଥାତ୍ ମୂଳ ଆମେରିକୀୟମାନେ ଧାତୁର ବ୍ୟବହାର ଜାଣି ନଥିଲେ । ଆଗନ୍ତୁକ ଆକ୍ରମଣକାରୀମାନେ ତୋପ ବ୍ୟବହାର କରୁଥିଲେ, ଆଜ୍‌ଟେକ୍ ପକ୍ଷକୁ ଧନୁ ଓ ତୀର ଉପରେ ହିଁ ନିର୍ଭର କରିବାକୁ ପଡୁଥିଲା । ଏମାନଙ୍କ ପାଖରେ ସେଇ ପୁରୁଣା ଅମଳର ହୁଲି ଡ଼ଙ୍ଗାମାନ ଥିଲା; ମାତ୍ର ଅପର ପକ୍ଷଙ୍କ ନୌକାରେ ମାସ୍ତୁଲ ଲାଗିଥିଲା । ଆଗନ୍ତୁକମାନେ ଅଶ୍ୱାରୋହୀ ଥିଲେ, ଆଜ୍‌ଟେକ୍‌ମାନେ ପାଦରେ ଚାଲି ଚାଲି ଯାଉଥିଲେ ।

ଦ୍ୱିତୀୟ କାରଣଟି ହେଉଛି ବେମାରି । ଇଉରୋପୀୟ ମାନଙ୍କର ସଂସ୍ରବ ହେତୁ ଏହି ନୂଆ ଭୂମିକୁ ନୂଆ ନୂଆ ବେମାରିସବୁ ଆସି ପହଞ୍ଚିଲା । ବସନ୍ତ ରୋଗକୁ ଗୋରାମାନେ ଆମେରିକାକୁ ସାଙ୍ଗରେ ନେଇ ଆସିଥିଲେ । ଖଣିମାନଙ୍କରେ ସ୍ୱର୍ଣ୍ଣ ଉତ୍ତୋଳନର କାର୍ଯ୍ୟରେ ଆମେରିକୀୟ ଶ୍ରମିକମାନଙ୍କୁ ହିଁ ନିଯୁକ୍ତ କରା ଯାଉଥିଲା । କଷ୍ଟ ଓ ଅଧିକ କଷ୍ଟ ଶ୍ରମଗୁଡ଼ିକୁ ଗୋରାମାନେ କରିବାର କୌଣସି ପ୍ରଶ୍ନ ହିଁ ନଥିଲା । ଏବଂ ଯେଉଁ ଅସ୍ୱାସ୍ଥ୍ୟକର ପରିବେଶରେ ଶ୍ରମିକମାନେ କାମ ଖଟୁଥିଲେ, ତାହାରି ଫଳରେ ହିଁ ସେମାନେ ନୂଆ ନୂଆ ରୋଗଦ୍ୱାରା ଆକ୍ରାନ୍ତ ହେଉଥିଲେ, ଅଧିକ ଭୋଗୁଥିଲେ ଏବଂ ଅତ୍ୟଧିକ ସଂଖ୍ୟାରେ ମରୁଥିଲେ । ବସନ୍ତରୋଗ ସେମାନଙ୍କ ପାଇଁ ତ ସମ୍ପୂର୍ଣ୍ଣ ନୂଆ, ତେଣୁ ସେଥିରୁ ଭଲ ହେବାର ଉପଚାର ମଧ୍ୟ ସେମାନଙ୍କୁ ମାଲୁମ୍ ନଥିଲା । ଗୋଟିଏ ବିବରଣୀରୁ ଜଣାଯାଏ ଯେ, ମୂଳ ଅଗୋରା ଆମେରିକୀୟମାନେ ପ୍ରତ୍ୟହ ବହୁବାର ସ୍ନାନ କରିବାକେ ସର୍ବଦା ଅଭ୍ୟସ୍ତ ଥଲେ । ସୁସ୍ଥ ଅସୁସ୍ଥ କୌଣସି ଅବସ୍ଥାକୁ ମାନୁନଥିଲେ । ଏବଂ, ବସନ୍ତରେ ପଡ଼ିଥିବା ସମୟରେ

ମଧ୍ୟ ସେମାନଙ୍କର ଗାଧୋଇବା ବନ୍ଦ ହେଉନଥିଲା । ଫଳରେ ବହୁସଂଖ୍ୟାରେ ମୃତ୍ୟୁମୁଖରେ ପତିତ ହେଉଥିଲେ । ବେଳେ ବେଳେ ସମ୍ପୂର୍ଣ୍ଣ ପରିବାର ହୁଏତ ବସନ୍ତରେ ପଡ଼ି ଯାଉଥିଲା, ଯାହା ଫଳରେ ପଥ୍ୟ ରାନ୍ଧି ଦେବାକୁ ମଧ୍ୟ କେହି ବାକୀ ରହୁନଥିଲେ । ତେଣୁ, ସେହିସବୁ କ୍ଷେତ୍ରରେ ଉପାସଭୋକରେ ମଧ୍ୟ କମ୍ ମଣିଷ ମରିନଥିବେ । ବସନ୍ତ ସହିତ ମିଳିମିଳା ବି ଆସି ପହଞ୍ଚି ଯାଉଥିଲା । ଯୁଦ୍ଧ ସମୟରେ କ୍ଷେତରେ ବିହନ ବୁଣିବାକୁ ହୁଏତ କେହି ରହୁନଥିଲେ । ତଥାପି ଯେତିକି ବୁଣା ହେଉଥିଲା, ସେତିକିରୁ ଫସଲ ପାଚିଲେ ମଧ୍ୟ ସ୍ପେନୀୟମାନେ ତାହାକୁ ବଳପୂର୍ବକ କାଟି ନେଉଥିଲେ ଅଥବା ଲୁଟି କରି ନେଉଥିଲେ ।

ସ୍ଥାନୀୟ ଶ୍ରମିକମାନେ ଠିକ୍ ଭାବରେ କାମ କରୁଛନ୍ତି କି ନାହିଁ, ତାହା ଦେଖିବା ନିମନ୍ତେ ଯେଉଁ ଗୋରା ତତ୍ତ୍ୱାବଧାରକମାନେ ମୃତୟନ ରହୁଥିଲେ, ସେମାନଙ୍କର ଜୁଲମ ମଧ୍ୟ ଅତ୍ୟଧିକ ଥିଲା । କୌଣସି ଭୂମି ବା ଅଞ୍ଚଳ ଗୋରାମାନଙ୍କ ଅଧିକାରକୁ ଚାଲିଯିବା ପରେ ସ୍ଥାନୀୟ ବାସିନ୍ଦାମାନଙ୍କ ଠାରୁ ବଳପୂର୍ବକ ନାନା ଟିକସ ଓ ଖଜଣା ଆଦାୟ କରା ଯାଉଥିଲା । ମେକ୍ସିକୋ ନଗରୀର ନିର୍ମାଣରେ ସେମାନଙ୍କୁ ବେଠି ଖଟିବାକୁ ପଡୁଥିଲା । ମଜୁରି ମିଳିବାର ପ୍ରଶ୍ନ ତ ନଥିଲା, ବିଭିନ୍ନ ନିର୍ମାଣ- ସରଞ୍ଜାମ ସ୍ୱୟଂ ଯୋଗାଡ଼ କରି କାମକୁ ଆସିବାଲାଗି ସେମାନଙ୍କୁ ବାଧ୍ୟ କରା ଯାଉଥିଲା । ବେଠିଶ୍ରମିକ ମାନଙ୍କର ମୁହଁରେ ଚିଆଁ ମଡ଼ାଇ ସେମାନଙ୍କ ମାଲିକମାନଙ୍କର ନାମକୁ ଲେଖାଇ ଦିଆ ହେଉଥିଲା । ମୁହଁରେ ଜାଗା ନହେଲେ ଦେହର ଅନ୍ୟାନ୍ୟ ଅଂଶକୁ ମଧ୍ୟ ବ୍ୟବହାର କରା ଯାଉଥିଲା । ମାଲିକ ପରେ ମାଲିକଙ୍କ ଅଧୀନକୁ ଆସୁଥିବା ହେତୁ ଜଣେ ଜଣେ ଶ୍ରମିକଙ୍କ ଦେହରେ ତିନି ଚାରିଜଣ ମାଲିକଙ୍କର ନାମ ବି ଚିଆଁ ଦେଇ ଲେଖା ହୋଇଥିବାର ଦେଖିବାକୁ ମିଳୁଥିଲା । ମନୁଷ୍ୟମାନେ ଭଗବାନଙ୍କର ଅନୁକୃତିରେ ତିଆରି ହୋଇଛନ୍ତି ବୋଲି ସିନା ଧର୍ମପୁସ୍ତକରେ ଲେଖା ହୋଇ ରହିଛି, ମାତ୍ର ଏହି ଶ୍ରମିକମାନଙ୍କର ଶରୀର ଉପରେ ଦୃଷ୍ଟିପାତ କଲେ ସେମାନେ ସତେଅବା ଖଣ୍ଡେ ଖଣ୍ଡେ କାଗଜଫର୍ଦ୍ଦ ପରି ଦେଖା ଯାଉଥିଲେ ।

କେବଳ ଆର୍ଥିକ ଓ ରାଜନୀତିକ ସ୍ତରରେ ଉପଦ୍ରବ ନୁହେଁ, ଦେହର ଉପଭୋଗ ଏବଂ ସମ୍ଭୋଗସ୍ତରରେ ମଧ୍ୟ କମ୍ ଉପଦ୍ରବ ନଥିଲା । ଗୋଟିଏ ବିବରଣୀ ତ କହୁଛି ଯେ,ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ଏହି ନୂତନ ଭୂଖଣ୍ଡଟିରେ ଆସିବାର ମୁଖ୍ୟ ଆକର୍ଷଣଗୁଡ଼ିକର ତାଲିକାରେ ସ୍ୱର୍ଣ୍ଣଲୋଭ ପଛକୁ ଏହି ସମ୍ଭୋଗଲୋଭଟି ହିଁ ରହିଥିଲା । ଆଗନ୍ତୁକମାନେ ଓ ପରିବାରକୁ ସାଙ୍ଗରେ ନେଇ ଏଠାକୁ ଭୂଦଖଲ କରିବାକୁ ଆସିନଥିଲେ, ତେଣୁ, ଦେହଭୋଗର କ୍ଷେତ୍ରରେ ସେମାନେ ସତେଅବା ନିୟମତଃ ଅତ୍ୟନ୍ତ କ୍ଷୁଧାର୍ତ୍ତ ହୋଇ ରହୁଥିଲେ ଓ ବିଜିତମାନଙ୍କର ପାରିବାରିକ ସଂସାର ଭିତରକୁ ମଧ୍ୟ ବଡ଼ ସହଜରେ ଜିଭଗୁଡ଼ାକୁ ବଢ଼ାଇ ଦେଉଥିଲେ । ଅପର ପକ୍ଷରୁ ରହ ବୋଲି କହିବାର ଅଥବା ଆହା ବୋଲି କହିବାର ଅବକାଶ ନଥିଲା । ଗୋରା ପ୍ରତ୍ୟକ୍ଷଦର୍ଶୀ ବିବରଣୀମାନଙ୍କରେ ସେହିସବୁ କାହାଣୀ ଭରପୂର ହୋଇ ରହିଛି ଓ ସତେଅବା ଭାରି ଭଣଭଣ ହୋଇ ନାକକୁ ଆସି ରୁନ୍ଧି

ଦେଉଛି । କୁମାରୀ ଭୂମିଟିକୁ କୃଷିଯୋଗ୍ୟ କରିବାରେ ସ୍ଥାନୀୟମାନଙ୍କୁ ହିଁ ମୂଳିଆ ରୂପେ ଖଟା ଯାଉଥିଲା ଏବଂ ଗୋରାମାନେ ହିଁ ସେହି ଭୂମିର ଅଧିକାରୀ ହେଉଥିଲେ । ଏମାନେ କେବଳ ଫସଲଟାକୁ ଭୋଗ କରୁନଥିଲେ, ଜମିରେ ଶ୍ରମ ଖଟୁଥିବା ମୂଳିଆଣୀ ମାନଙ୍କୁ ମଧ୍ୟ ନିଜର ଭୋଗସମ୍ପତ୍ତି ରୂପେ ବ୍ୟବହାର କରୁଥିଲେ । ସେହି କାଳର ବିବରଣୀରୁ ଜାଣିବାକୁ ମିଳୁଛି, ସେହି ରୀତିଟା ପ୍ରାୟ ଏକ ନିୟମରେ ପରିଣତ ହୋଇ ଯାଇଥିଲା । ବିବାହିତା ବା ଅବିବାହିତା ବିଷୟରେ କୌଣସି ବାରଣ କରା ଯାଉନଥିଲା । ଦିନଟା ସାରା ଉପଭୋଗର ବସ୍ତୁଟି ଯେପରି ପାଖରେ ରହିପାରିବ, ସେଥିଲାଗି ସିଏ ନିଜର ମନ ମାନିଥିବା କୌଣସି ରମଣୀର ସ୍ୱାମୀକୁ ଏକ ଅକଠିନ କାମରେ ଦୂରକୁ ପଠାଇ ଦେଉଥିଲା । ସନ୍ଧ୍ୟା ସମୟକୁ ବିଚରା ଘରକୁ ଫେରି ଆସିବା ପରେ ଯଥେଷ୍ଟ କାମ କରିନାହିଁ ବୋଲି ତା'ଉପରେ ବେତପାହାର ପଡୁଥିଲା, କେବଳ ସେତିକି ନୁହେଁ, ମାତ୍ର ଅନେକ ସମୟରେ ତା'ର ହାତଗୋଡ଼କୁ ବାନ୍ଧି ଗୋଟାଏ କୁକୁର ପରି ତାକୁ ଖଟ ତଳକୁ ପକାଇ ଦିଆ ଯାଉଥିଲା ଏବଂ, ଠିକ୍ ତାହାରି ଉପରେ ଖଟରେ ପଡ଼ିଥିବା ବିଛଣାରେ ମାଲିକ ବିଚରାଟିର ଘରଣୀକୁ ନେଇ ରମଣ କରିବାରେ ଲାଗି ଯାଉଥିଲା ।

ସେହି ଗୋରାମାନେ ରଖି ଯାଉଥିବା ସେହି ସମୟର ବର୍ଣ୍ଣନାମାନ କହୁଛି, ମାଲିକମାନଙ୍କର କୁକୁରପଲ ଭୋକିଲା ହୋଇ ରଡ଼ି କଲେ ସ୍ଥାନୀୟ ଭାରତୀୟ ମାନଙ୍କର ଛାତିରୁ କଅଁଳ ପିଲାମାନଙ୍କୁ ଭିଡ଼ି ନେଇ ସେମାନଙ୍କ ଆଗରେ ପକାଇ ଦିଆ ଯାଉଥିଲା । ମାଆ ଅସହାୟା ହୋଇ ଅନାଇ ରହୁଥିଲା ଓ କୁକୁରମାନେ ପିଲାଟାକୁ ନେଇ ଭୋଜୀ କରିବାରେ ଲାଗି ଯାଉଥିଲେ । ଆହୁରି ବେଳେ ବେଳେ ଏପରି ହେଉଥିଲା ଯେ ପଲେ ଗୋରା କୁଆଡ଼େ ବାଟରେ ଗଲାବେଳେ ଝରଣାଟିଏ ପଡ଼ିଲେ ସେଥିରେ ଥିବା ପଥର ଉପରେ ନିଜର ଖଣ୍ଡାଗୁଡ଼ିକୁ ଘଷି ଦାଢ଼ କରୁଥିଲେ ଏବଂ, ଦାଢ଼ ଠିକ୍ ଭାବରେ ହେଲା କି ନାହିଁ, ସେକଥା ଜାଣିବାକୁ ପାଖରେ ଥିବା କୌଣସି ଗାଆଁ ଭିତରେ ପଶି ପିଲା, ବୁଢ଼ା, ସ୍ତ୍ରୀ, ପୁରୁଷ, ଯାହାକୁ ପାଉଥିଲେ, ଖଣ୍ଡାରେ ହାଣି ପକାଉଥିଲେ । ମନେ ହେଉଛି, ଇଉରୋପୀୟମାନେ ସେହି ନୂତନ ଭୂଭାଗରେ ଯାଇ ପହଞ୍ଚିବା ପରେ ଏହିସବୁ ନୃଶଂସ ଲୀଳା ପ୍ରାୟ ଏକ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ଚାଲିଥିଲା । ଏପରିକି ୧୫୫୦ ଖ୍ରୀଷ୍ଟାବ୍ଦରେ ମଧ୍ୟ ଇଉରୋପର ଜଣେ ପାଦ୍ରୀ ଏହି ବିଜେତା ବା Conquistador ମାନଙ୍କ ବିଷୟରେ ଲେଖିଥିଲେ : ସେମାନେ କେତେ ସ୍ଥାନୀୟ ବାସିନ୍ଦାଙ୍କୁ ଜୀଅନ୍ତା ନିଆଁରେ ପକାଇଦେଲେ, ଆଉ କେତେଜଣଙ୍କର ହାତ, ନାକ, ଜିଭ ଓ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗକୁ କାଟି ପକାଇଲେ, ଆଉ କେତେକଙ୍କୁ କୁକୁରମାନଙ୍କ ଆଗରେ ନେଇ ପକାଇଦେଲେ ଏବଂ ଆହୁରି କେତେ ସ୍ତ୍ରୀଲୋକଙ୍କର ସ୍ତନକୁ ମଧ୍ୟ କାଟି ପକାଉଥିଲେ । ବହୁତ ସ୍ଥାନରେ ଏକାବେଳେକେ ଅନେକ ସ୍ତ୍ରୀଲୋକଙ୍କୁ ଫାଶୀରେ ଟଙ୍ଗାଇ ଦିଆ ଯାଉଥିଲା ଓ ସେମାନଙ୍କର କୁନି ପିଲାମାନଙ୍କୁ ମଧ୍ୟ ମାଆମାନଙ୍କର ଗୋଡ଼ରେ ବାନ୍ଧି ଲଟକାଇ ଦିଆ ହେଉଥିଲା । ୧୫୬୦ ଖ୍ରୀଷ୍ଟାବ୍ଦରେ ମଧ୍ୟ

ଇଉରୋପର ସେହି ଅଞ୍ଚଳର ଜଣେ ବିଚାରପତି କେଡ଼େ ଦମ୍ଭ କରି ଲେଖିଥିଲେ : ଆମେରିକାରେ ଚାଷଜମି ମାନଙ୍କରେ ଯଦି ଗୋରା ମାଲିକମାନଙ୍କ ପାଇଁ କେତେବେଳେ ପାଣିର ଅଭାବ ପଡ଼ିବ, ତେବେ ମାଲିକମାନେ ହୁଏତ ନିର୍ମଳ ବିବେକର ସହିତ ସ୍ଥାନୀୟ ଅଧିବାସୀ ମାନଙ୍କର ରକ୍ତରେ ଜଳସେଚନର କାର୍ଯ୍ୟଟିକୁ ସମ୍ପନ୍ନ କରିବାକୁ କୌଣସି କୁଣ୍ଠା ପ୍ରକାଶ କରିବେନାହିଁ ।

ତଥାପି, ଏହି ସବୁକିଛି ହେଉଛି ଗୌଣ । ଅସଲ ଆକର୍ଷଣ ହେଉଛି ଧନଲାଭ, ସୁବର୍ଣ୍ଣର ଆକର୍ଷଣ । ସେହି କଥାଟି ହିଁ ନିମ୍ନୋକ୍ତ ଉକ୍ତିଟିରେ କେଡ଼େ ପ୍ରାଞ୍ଜଳ ଭାବରେ ବ୍ୟକ୍ତ ହୋଇ ପାରିଛି (ଉକ୍ତିଟି ମଧ ସେହି ସମୟର) : ଧନ ଥିଲେ ହିଁ ସେମାନେ ଯେତେବେଳେ ଯାହା ଆବଶ୍ୟକ ଅଥବା କାମନା କରିବେ, ତାହା ଅବଶ୍ୟ ଲାଭ କରିପାରିବେ,- ସମ୍ମାନ ପାଇବେ, ସମ୍ଭ୍ରାନ୍ତ ମର୍ଯ୍ୟାଦା ପାଇବେ, ଭୂମିର ମାଲିକ ହେବେ, ନିଜର ପରିବାରକୁ ସୁଖରେ ରଖିବେ । ସେମାନେ ଅତ୍ୟନ୍ତ ବିଳାସବ୍ୟସନରେ ରହିପାରିବେ, ବହୁମୂଲ୍ୟ ପୋଷାକ ମଧ ପିନ୍ଧି ପାରିବେ, ସୁସ୍ୱାଦୁ ଭୋଜନ ଉପଭୋଗ କରିପାରିବେ । ଯେତେ ଖୁସୀ ସେତେ ପାପଜନିତ ସୁଖର ଅଧିକାରୀ ହୋଇ ପାରିବେ, ଶତ୍ରୁମାନଙ୍କ ଉପରେ ପ୍ରତିଶୋଧ ନେଇ ପାରିବେ ଏବଂ ଜଣେ ଜଣେ ବ୍ୟକ୍ତି ହିସାବରେ ସେମାନଙ୍କୁ ସମସ୍ତେ କେତେ ନା କେତେ ଖାତିର ମଧ କରିବେ ।

ତୁମ ପାଖରେ ଅଧିକ ବୁଦ୍ଧି, ଅଧିକ ବିଦ୍ୟା ଓ ଅଧିକ ଜ୍ଞାନକୌଶଳ ରହିଥିବ । ତୁମରି ଜାତିଟା ଉପରେ ହିଁ ଈଶ୍ୱରଙ୍କର ଅଧିକ କରୁଣା ରହିଛି ବୋଲି ତୁମେ ଏକାବେଳେକେ ପିଲାଦିନୁଁ ବିଶ୍ୱାସ କରିବାକୁ ଶିକ୍ଷା ପାଇଥିବ, ଈଶ୍ୱର ଏହି ବିଶ୍ୱଚରାଚରକୁ ସୃଷ୍ଟି କରି ତୁମରି ଭୋଗ ନିମନ୍ତେ ପ୍ରସାରିତ କରି ରଖିଛନ୍ତି ବୋଲି ତୁମର ଧର୍ମପୁସ୍ତକ ମଧ ଘୋଷଣା କରିଥିବ । ତେବେ ପୃଥିବୀଯାକ ଆଉ ସମସ୍ତେ ତୁମକୁ ନ୍ୟୂନ ବୋଲି ଦିଶିବେ ହିଁ ଦିଶିବେ । ତୁମେ ପୃଥିବୀର ଯେଉଁଠାକୁ ଯିବ, ସେଠାରେ ନିଜକୁ ବିଜେତା ବୋଲି, ମାଲିକ ବୋଲି ଓ ଶାସକ ବୋଲି ଅବଶ୍ୟ ଧରିନେବ । ଏହି କଥାଟି ପୃଥିବୀର ପ୍ରତ୍ୟେକ ବିଜେତାଙ୍କର କ୍ଷେତ୍ରରେ ଅଳ୍ପବହୁତ ସର୍ବତ୍ର ଘଟିଛି ଏବଂ ଇଉରୋପୀୟ ବିଜେତାମାନଙ୍କ ବେଳକୁ ସମ୍ଭବତଃ ବିଶେଷ ଭାବରେ ଘଟିଛି । ଦୁଇ ହଜାରରୁ ଅଧିକ ବର୍ଷ ତଳେ ଗ୍ରୀସ୍‌ର ଆରିଷ୍ଟଟ୍‌ଲ୍‌ଙ୍କର ରଚନାରେ ମଧ ଆମକୁ ସେହି ମନୋଭାବଟିର ସୂଚନା ମିଳିଯିବ । ତାଙ୍କର ଗୋଟିଏ ବାକ୍ୟ କହୁଛି, ଯେପରି ଆତ୍ମାଠାରୁ ଶରୀରର ସ୍ଥାନ ଅତ୍ୟନ୍ତ ନିମ୍ନରେ, ଯେପରି ମନୁଷ୍ୟମାନଙ୍କ ଠାରୁ ପଶୁମାନଙ୍କର ସ୍ଥାନ ବି ନିମ୍ନରେ, ସେହିପରି ଭାବରେ କେତେକ ମଣିଷ ଅନ୍ୟମାନଙ୍କର ଦାସ ହୋଇ ଖଟିବାକୁ ହିଁ ପୃଥିବୀରେ ରହିଥାଆନ୍ତି । ମହାତ୍ମା ଆରିଷ୍ଟଟଲ୍‌ଙ୍କ ସମୟରେ ତାଙ୍କ ଗ୍ରୀସ୍ ଦେଶରେ ଅଥବା ତାଙ୍କର ସମକାଳୀନ ପୃଥିବୀରେ ଯେତେ ମଣିଷ ଏହିଭଳି ବିଶ୍ୱାସଟିଏ ପୋଷଣ କରୁଥିଲେ, ଷୋଡ଼ଶ ଶତାବ୍ଦୀରେ ଇଉରୋପ ତଥା ତତ୍କାଳୀନ ସମଗ୍ର ପୃଥିବୀରେ ଅତ୍ୟନ୍ତ ସୁନିଶ୍ଚିତ ଭାବରେ ତା'ଠାରୁ

କମ୍ ମଣିଷ ହିଁ ସେଭଳି ବିଚାର କରୁଥିଲେ । ତଥାପି ସେମାନେ ରହିଥିଲେ । ବିଂଶ ଶତାବ୍ଦୀରେ ସେମାନଙ୍କର ସଂଖ୍ୟା ଆହୁରି ବି କମ୍ ହୋଇଯିବଣି । ତଥାପି, ସେଭଳି ମଣିଷମାନେ ଅବଶ୍ୟ ରହିଛନ୍ତି ।

ଯିଏ ଜିତିଲା, ଅର୍ଥାତ୍ ଯାହାର ବଳ ଆଉ କାହାଠାରୁ ଅଧିକ ବୋଲି ପ୍ରମାଣିତ ହୋଇଗଲା, ସିଏ ବିଜିତ ପକ୍ଷଟିକୁ ସଚରାଚର ସାନ, ନ୍ୟୂନ ଅଥବା ନିମ୍ନ ବୋଲି ଦେଖି ଆସିଛି । ତେଣୁ, ଏକ ନୂଆ ଭୂଖଣ୍ଡରେ ବିଜୟୀ ବୋଲି ନିଜକୁ ପ୍ରମାଣିତ କରି ଦେଇଥିବା ଲାଟିନୋମାନେ ଯେ ପୂରାପୂରି ଆଖି ବୁଜି ସେହି ପୃଥିବୀଟାକୁ ନିଜର ଜମିଦାରୀ ପରି ଗ୍ରହଣ କରି ନେଇଥିବେ, ସେଥିରେ ଆଶ୍ଚର୍ଯ୍ୟ ହେବାର ପ୍ରକୃତରେ କିଛି ରହିବା ଉଚିତ ନୁହେଁ । ସେମାନେ ଭାବିଥିବେ ଯେ ସେଠାରେ ସେମାନେ ଯାହା ଇଚ୍ଛା କରିବେ ତାହା କରିପାରିବେ । ଏବଂ ପରବର୍ତ୍ତୀ କେତେଶହ ବର୍ଷର ଘଟଣାବଳୀ ତାହାହିଁ ପ୍ରମାଣ କରିଦେଉଛି । ବିଜୟୀମାନଙ୍କର ଦର୍ପଯାତ୍ରାଟି ହିଁ ସେଠାରେ ଅଧିକରୁ ଅଧିକ ଆଖିବୁଜା ଭାବରେ ଚାଲିଥିଲା । ଅଧିକରୁ ଅଧିକ ଭୂମି ଅଧିକାରକୁ ଆସିଥିଲା ଏବଂ ଅଧିକାରୀମାନେ ତାହାକୁ ହିଁ ଅଦୃଷ୍ଟର ବରାଦ ବୋଲି ଧରି ନେଇଥିଲେ । ତାହାରି ମାଧମରେ ନିଜ ଧର୍ମର ବିଜୟବାନା ଉଡ଼ାଇଲେ । ଯେଉଁ ମଣିଷମାନଙ୍କୁ କାବୁ କରି ଅଣାଗଲା, ସେମାନଙ୍କୁ କିପରି ଅଧିକରୁ ଅଧିକ କାମରେ ଖଟାଇ ନିଜପାଇଁ ଅଧିକରୁ ଅଧିକ ସମ୍ପନ୍ନତା ହାସଲ କରାଯାଇ ପାରିବ, ପ୍ରାୟ ଏକ ହତ୍ୟାକାରୀ ବୁଦ୍ଧିର ଆଶ୍ରୟ ନେଇ ସେହିଗୁଡ଼ିକର ଭିଆଣ ହେଲା । ହେଟାମାନେ ମେଷଶାବକ ମାନଙ୍କୁ ଖାଇବା ନିମନ୍ତେ ଅନୁରୂପ ଆଇନ୍‌ମାନ ତିଆରି କରିଦେଲେ । ଅନେକ ସମୟରେ ଇଉରୋପର ବିଜ୍ଞ ମସ୍ତିଷ୍କମାନେ ମଧ୍ୟ ସେଥିପାଇଁ ଆଇନ୍ ତିଆରି କରି ଦେଉଥିଲେ । ସ୍ପେନ୍‌ର ରାଜା ସେହିସବୁ ଅକର୍ମଲାଗି ଆଶୀର୍ବାଣୀ ଦେଉଥିଲେ ।

ଏଇଭଳି କିତାଏ ଆଇନ୍‌କୁ ଶାସନର ପରିଭାଷାରେ Requerimento ବୋଲି କୁହାଗଲା ଯାହାକୁ ବିଧିବିଧାନର ସମର୍ଥନ ଦେବାଲାଗି ଏକ ଅତିଗମ୍ଭୀର ଅଥଚ ଅତ୍ୟନ୍ତ ହାସ୍ୟାସ୍ପଦ ଯୁକ୍ତି ସହିତ ଏକାନ୍ତ ଯଥାର୍ଥ ବୋଲି ଦର୍ଶାଇ ଦିଆଗଲା । ତାହାର ଉପକ୍ରମରେ ସମଗ୍ର ମନୁଷ୍ୟଜାତିର ଇତିହାସ ବିଷୟରେ କିଞ୍ଚିତ୍ ଚର୍ଚ୍ଚା କରା ଯାଇଥିଲା । ଆଦିକାଳରୁ ମନୁଷ୍ୟ ଏକ ସମଷ୍ଟିରୂପେ କିପରି ଏକ ଉଦୟକ୍ରମରେ ଅଗ୍ରସର ହୋଇ ଏବଂ ପାବଚ୍ଛ ପରେ ପାବଚ୍ଛ ଉଠି ସବାଶେଷରେ ସର୍ବୋଚ୍ଚ ଥାନରେ ଯୀଶୁଖ୍ରୀଷ୍ଟଙ୍କ ପାଖରେ (appearance of Jesus Christ as culminating point) ଆସି ପହଞ୍ଚିଛି, ପ୍ରାୟ ଏକ ଗଣିତ କଷିବା ପରି ସେହି କଥାଟିକୁ ବ୍ୟାଖ୍ୟା କରି ଦିଆ ଯାଇଥିଲା । ତେଣୁ, ବିଧାନପୁସ୍ତକଟି ଘୋଷଣା କଲା, ଯୀଶୁ ହେଉଛନ୍ତି ସବାବଡ଼ କର୍ତ୍ତା, ମନୁଷ୍ୟଜାତିର ଏକୈବ ଅଧୀଶ୍ୱର । ଅର୍ଥାତ୍ ସମସ୍ତ ପୃଥିବୀ ସବାଶେଷକୁ ତାଙ୍କରି ଛତ୍ରତଳକୁ ଦିନେ ଆସିବ ହିଁ ଆସିବ । ତାହା କଦାପି ଅନ୍ୟଥା ହେବନାହିଁ । ତହିଁ ଉତାରୁ କୁହା ଯାଇଥିଲା, ଯୀଶୁଖ୍ରୀଷ୍ଟ ନିଜ ଅନ୍ତେ ସନ୍ଥ ପିଟର୍‌ଙ୍କୁ ପ୍ରତିଭୂରୂପେ ନିର୍ବାଚିତ କରି ନିଜର ସକଳ କ୍ଷମତା ତାଙ୍କ

ହାତକୁ ଟେକି ଦେଇଥିଲେ । (ଏଠାରେ ସ୍ମରଣ କରାଇଦେବା ଉଚିତ ଯେ, ରୋମାନ୍‌ମାନଙ୍କ ଦ୍ୱାରା ଶାସିତ ଇଉରୋପକୁ ସନ୍ଥ ପିଟର୍ ହିଁ ଜେରୁଜେଲମ୍‌ରୁ ଯୀଶୁ- ଧର୍ମସନ୍ଦେଶକୁ ବହନ କରି ଆଣିଥିଲେ ।) ସନ୍ଥ ପିଟର୍ ତାଙ୍କ ଅନ୍ତେ ପୋପ୍‌ମାନଙ୍କୁ ହିଁ ସେହି କ୍ଷମତା ଦେଇଗଲେ ଏବଂ ପରବର୍ତ୍ତୀ କାଳର ଜଣେ ପୋପ୍ ହିଁ ଆମେରିକା ନାମକ ଏହି ମହାଦେଶୀୟ ଭୂଭାଗଟିକୁ ସ୍ପେନ୍ ତଥା ପର୍ତ୍ତୁଗାଲ୍‌ର ଅଧିବାସୀମାନଙ୍କୁ ସମର୍ପଣ କରିଛନ୍ତି ।

''ତେଣୁ, ହେ ଆଦିମ, ଅନୁନ୍ନତ ଓ ଅନାଲୋକିତ ଏହି ଆମେରିକାର ଅଧିବାସୀମାନେ, ତୁମେମାନେ ଏବେ ଏହି ଭୂମିରେ ଆମର ରାଜତ୍ୱଟିକୁ ସ୍ୱୀକାର କରିନିଅ, ଆମକୁ ତୁମେ ପ୍ରଭୁରୂପ ମାନିନିଅ । ତା' ନହେଲେ ତୁମମାନଙ୍କୁ ଚରମ ଶାସ୍ତି ଦେଇ ସାଧ କରିବା ବ୍ୟତୀତ ଆମ ଆଗରେ ଆଉ ଆଦୌ କୌଣସି ରାସ୍ତା ନାହିଁ ।'' ବିଧାନବଳୀରେ ଲିପିବଦ୍ଧ ହୋଇ ରହିଥିବା ବାକ୍ୟଗୁଡ଼ିକୁ ଅଧିକ ସଂଗତି ସହିତ ଅନୁବାଦ କରି କହିଲେ, ''ଯଦି ତୁମେମାନେ ସେକଥା କରିବନାହିଁ, ତେବେ ତୁମମାନଙ୍କୁ ମୋତେ ବାଧ ହୋଇ କହିବାକୁ ପଡ଼ିବ ଯେ, ଆମେ ବଳପୂର୍ବକ ତୁମର ବାସଭୂମି ଭିତରେ ପ୍ରବେଶ କରିବୁ, ଆମେ ତୁମମାନଙ୍କ ସହିତ ଯୁଦ୍ଧ କରିବୁ, ଆମ ପାଖରେ ରହିଥିବା ସମସ୍ତ ଉପାୟ ଏବଂ କୌଶଳକୁ ପ୍ରୟୋଗ କରି ଆମେ ସେହି ଯୁଦ୍ଧରେ ଜୟଲାଭ କରିବୁ । ତୁମେମାନେ ତ ଖୁବ୍ ଭଲଭାବରେ ଜାଣି ପାରୁଥିବ ଯେ, ଏହି କାର୍ଯ୍ୟଟିରେ ଭଗବାନ ଆମକୁ ନିଶ୍ଚୟ ସାହାଯ୍ୟ ମଧ୍ୟ କରିବେ । ପରିଶେଷରେ, ତୁମମାନଙ୍କୁ ଆମେ ଆମର ପବିତ୍ର ଗୀର୍ଜା ଏବଂ ଆମ ଦେଶରେ ରାଜାଙ୍କର ଅଧୀନକୁ ନିଶ୍ଚୟ ଆଣିବୁ । ତୁମେମାନେ ସମସ୍ତେ ସେମାନଙ୍କର ଶାସନଦଣ୍ଡର ଅଧୀନକୁ ଅବଶ୍ୟ ଆସିବ । ପୁନଶ୍ଚ, ''ଆମେ ତୁମମାନଙ୍କୁ, ତୁମର ସ୍ତ୍ରୀ ଏବଂ ପିଲାମାନଙ୍କୁ ଆଣି ଆମର ଦାସ କରି ରଖିବୁ ।.... ଆମେ ତୁମମାନଙ୍କର ସମସ୍ତ ଧନସମ୍ପଦ ଛଡ଼ାଇନେବୁ । ଯେଉଁ ପ୍ରଜାମାନେ ଆମର ଅଧୀନତା ସ୍ୱୀକାର ନକରିବେ, ଆମେ ସେମାନଙ୍କର ସର୍ବପ୍ରକାରର ଅନିଷ୍ଟ କରିବୁ । ଯଦି ତୁମେମାନେ ଆମ ଆଇନ୍‌ଗୁଡ଼ିକୁ ଅମାନ୍ୟ କରିବ, କିମ୍ବା ସେଗୁଡ଼ିକର ପ୍ରତିରୋଧ କରିବ, ତେବେ ଆମେ ତୁମମାନଙ୍କର ସବୁପ୍ରକାରର କ୍ଷତି କରିବୁ ହିଁ କରିବୁ ।'' ଉଲ୍ଲେଖ କରି ରଖିବା ଉଚିତ , ତତ୍କାଳୀନ ସ୍ପେନ୍‌ର ଜଣେ ଆଇନ୍‌ବିତ୍ Palacios Rubias ୧୫୧୪ ଖ୍ରୀଷ୍ଟାବ୍ଦରେ ଏହି ବିଧିପୁସ୍ତିକାଟିର ରଚନା କରିଥିଲେ । ଏବଂ, ସେହି ବିଧାନଗୁଡ଼ିକୁ ଅନୁସରଣ କରିବାରେ ସ୍ପେନୀୟ ବିଜେତାମାନେ ଆମେରିକାରେ କୌଣସି କାର୍ପଣ୍ୟ କରିନଥିଲେ ।

ସତକୁ ସତ କେତେ ବିଶ୍ୱସ୍ତତା ସହିତ ବିଧାନଟିର ଅନୁସରଣ କରା ଯାଉଥିଲା, ବର୍ତ୍ତମାନ ଆମେ ସେଇଟି ସହିତ କିଞ୍ଚିତ୍ ପରିଚିତ ହେବାପାଇଁ ଚେଷ୍ଟା କରିବା । ବିଜେତାମାନେ ପ୍ରଥମେ ପ୍ରାୟ ଆକସ୍ମିକ ଭାବରେ କର୍ତ୍ତୃତ୍ୱ ପ୍ରଦର୍ଶନର ସମସ୍ତ ସାଧନ ଦ୍ୱାରା ସଜ୍ଜିତ ହୋଇ ସ୍ଥାନୀୟ ଆମେରିକୀୟ ମାନଙ୍କର କୌଣସି ବସତିରେ ଯାଇ ପହଞ୍ଚି ଯାଉଥିଲେ । ମଣିଷମାନଙ୍କୁ ରୁଣ୍ଡ କରାଇ ସେମାନଙ୍କୁ ଜଞ୍ଜିରରେ ବାନ୍ଧି ଦିଆ ଯାଉଥିଲା ।

ତା'ପରେ ଜଣେ ବ୍ୟକ୍ତି ଛିଡ଼ା ହୋଇ ରିକ୍ୱେରିମେଣ୍ଟୋର ନିର୍ଦ୍ଦେଶଗୁଡ଼ିକ ସେମାନଙ୍କୁ ଶୁଣାଇ ଦେଉଥିଲା । ଅତ୍ୟନ୍ତ କୌତୁକର ବିଷୟ ଯେ, ଲୋକଟି ସ୍ଥାନୀୟ ଭାଷା ଜାଣି ନଥିଲା । ସ୍ଥାନୀୟ ଅଧିବାସୀମାନେ ବି ସ୍ପେନ୍‌ର ଭାଷା ଜାଣନ୍ତେ ବା କିପରି ? ଏବଂ, ଅନୁବାଦ କରି ବୁଝାଇ ଦେବାକୁ ମଧ କୌଣସି ଦୋଭାଷିଆ ନଥିଲେ । ବିଚରାମାନଙ୍କୁ କର୍ତ୍ତାମାନଙ୍କ ତରଫରୁ ଏହି ଯେଉଁ ଫତୁଆ ଶୁଣାଇ ଦିଆ ଯାଉଥିଲା, ସେହି ବିଷୟରେ ବିଚରାମାନଙ୍କର ମଧ ହୁଏତ କିଛି କହିବାର ରହିଥିବ କି ନାହିଁ, ସେକଥା କର୍ତ୍ତାମାନେ କାହିଁକି ବା ଭାବନ୍ତେ ? ତା'ପରେ ଆଇନ୍ ନମାନିଥିବା ହେତୁ ସମସ୍ତଙ୍କୁ ବନ୍ଦୀ କରାଗଲା ବୋଲି ଘୋଷଣା କରା ଯାଉଥିଲା ଏବଂ ଯେଉଁମାନେ ବାକୀମାନଙ୍କ ସହିତ ସମାନ ବେଗରେ ଚାଲି ପାରୁନଥିଲେ ବୋଲି ପଛରେ ରହି ଯାଉଥିଲେ, ସ୍ପେନ୍‌ଦେଶୀ କର୍ତ୍ତାମାନେ ସେମାନଙ୍କୁ ବାଡ଼ି ସାହାଯ୍ୟରେ ଅଡ଼ାଇ ନେଉଥିଲେ ।

ହତ୍ୟାକାରୀ ସୈନ୍ୟବଳ ସହିତ ଧର୍ମବଳର ସନ୍ତକ ସ୍ୱରୂପ ପାଦ୍ରୀମାନେ ବି ସବୁବେଳେ ରହୁଥିଲେ । ଏମାନେ ଲୋହିତମାନଙ୍କୁ ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ କରୁଥିଲେ । ହତ୍ୟା ସମୟରେ ମଧ ସେମାନେ ମହଜୁଦ୍ ରହୁଥିଲେ ଏବଂ ଜୀବନ ଚାଲିଯିବା ପୂର୍ବରୁ ଯେଉଁ ଲୋହିତମାନେ ରାଜୀ ହେଉଥିଲେ, ପାଦ୍ରୀମାନେ ସେମାନଙ୍କୁ ବିଧି ଅନୁସାରେ ଖ୍ରୀଷ୍ଟିଆନ୍ ଧର୍ମଦୀକ୍ଷା ପ୍ରଦାନ କରୁଥିଲେ । ଏହିପରି ଦୃଷ୍ଟାନ୍ତଟିଏ ସେହି କାଳରେ ଲିଖିତ ଏକ ବିବରଣୀରୁ ଆମେ ଏଠାରେ ଉଲ୍ଲେଖ କଲେ କଥାଟି ନିଶ୍ଚୟ ସ୍ପଷ୍ଟ ହୋଇଯିବ । ଲୋହିତମାନଙ୍କ ସଂହାର କରିବାର ପର୍ବ ଚାଲିଥିବା ସମୟରେ ଜଣେ ଲୋହିତକୁ ସମ୍ମୁଖରେ ପାଇ ଜଣେ ସ୍ପେନୀୟ ତା' ପାଖରେ ଥିବା ତରବାରୀରେ ତା' ଅଣ୍ଟାରେ ଚୋଟେ ପକାଇଥିଲା । ସେହି ଆଘାତରେ ଲୋକଟିର ଅନ୍ତବୁଜୁଳା ମଧ ବାହାରକୁ ବାହାରି ଆସିଲା । ଲୋହିତ ମଣିଷଟି ମର୍ମାନ୍ତିକ ଯନ୍ତ୍ରଣାରେ ଚିତ୍କାର କରୁଥାଏ ଓ ଅନ୍ତଗୁଡ଼ାକୁ ଯେକୌଣସି ପ୍ରକାରେ ନିଜର ଦୁଇ ହାତରେ ଟେକି ଧରି ଦଉଡ଼ି ପଳାଇବାକୁ ଚେଷ୍ଟା କରୁଥାଏ । କିଛି ବାଟ ଯିବା ପରେ ଯୋଗକୁ ତାର ପାଦ୍ରୀସହିତ ମଧ ଭେଟ ହୋଇଗଲା । ପାଦ୍ରୀଟି ତ ଆଉ କିଛି କରି ପାରିନଥାନ୍ତା, ତେଣୁ ତାକୁ ଖ୍ରୀଷ୍ଟଧର୍ମକଥା ଶୁଣାଇବାକୁ ଆରମ୍ଭ କରିଦେଲା । ସାନ୍ତ୍ୱନା ଦେଇ କହିଥିଲା ଯେ, ଯଦି ସିଏ ଖ୍ରୀଷ୍ଟଧର୍ମର ବିଧି ଅନୁସାରେ ସେହି ଅନ୍ତିମ ମୁହୂର୍ତ୍ତଟିରେ ମଧ ଡୁବନ୍ ପାଇଁ ସମ୍ମତି ଦେବ, ତେବେ ସିଏ ଅବଶ୍ୟ ସ୍ୱର୍ଗକୁ ଯିବ ଓ ସ୍ୱର୍ଗ ରାଜ୍ୟରେ ଭଗବାନଙ୍କ ସହିତ ବାସ କରି ପାରିବ । ଦାରୁଣ ଯନ୍ତ୍ରଣାରେ ଛଟପଟ ହେଉଥିବା ବ୍ୟକ୍ତିଟି କ'ଣ ଭାବି ସେଥିରେ ରାଜୀ ହୋଇଗଲା ଏବଂ ପାଦ୍ରୀ ମନ୍ତ୍ର ପଢ଼ି ତା'ପାଇଁ ଡୁବନ୍‌କର୍ମଟି ସମ୍ପନ୍ନ କରିଦେଲେ । କହିବା ବାହୁଲ୍ୟ, ତା'ପରେ ସିଏ ମେଞ୍ଚାଟାଏ ହୋଇ ନଥି କରି ତଳେ ପଡ଼ିଗଲା ଓ ତା'ଦେହରୁ ପ୍ରାଣ ଚାଲି ଯାଇଥିଲା । ସେତିକିବେଳର ଏହି କାଣ୍ଡଗୁଡ଼ିକର ବର୍ଣ୍ଣନା କରି ଜଣେ ଲେଖିଛନ୍ତି ଯେ ପାଗାନ୍ ଅର୍ଥାତ୍ ଧର୍ମହୀନମାନଙ୍କୁ ଅଭିଆର ଭିତରକୁ ଆଣିବାଲାଗି ବନ୍ଧୁକରେ ଭର୍ତ୍ତି କରାଯାଉଥିବା ବାରୁଦ ପରମ ଈଶ୍ୱରଙ୍କର

ଉଦ୍ଦେଶ୍ୟରେ ଧୂପ ପ୍ରଦାନ କରିବାର କାର୍ଯ୍ୟଟିକୁ ହିଁ ସାଧନ କରୁଥିଲା । ସିଏ ପ୍ରକୃତରେ କେଡ଼େ ଦୁଃସାହସିକ ଭାବରେ ଉଲ୍ଲସିତ ହୋଇ ଏହି କଥାଟିକୁ ଲେଖି ନଥିବେ !

ଲୋହିତମାନଙ୍କ ସମ୍ପର୍କରେ ସେହି ପାଦ୍ରୀମାନେ ଦେଇ ଯାଇଥିବା ବିବରଣୀରୁ ମଧ ମଝିରେ ମଝିରେ ଏକାଧିକ ସୂଚନା ମିଳିଯାଇ ପାରିବ । ଲୋହିତମାନେ କ'ଣ ସତକୁ ସତ ବର୍ବର ଥିଲେ ? ସେମାନେ ପରସ୍ପରର ମାଂସ ଖାଇ ଯାଉଥିଲେ ବୋଲି କେହି କେହି ଲେଖିଛନ୍ତି । ମାତ୍ର, ଯେଉଁ ଦୁଇଟି କଥା ବିଷୟରେ ପ୍ରାୟ ସବୁଯାକ ବିବରଣୀ ସହମତି ହେଲାପରି ଉଲ୍ଲେଖ କରିଛନ୍ତି, ତାହା ହେଉଛି ଯେ, ଲୋହିତମାନେ ମିଛ କ'ଣ ଆଦୌ ଜାଣିନଥିଲେ । ଯେକୌଣସି ପରିସ୍ଥିତିରେ ମଧ ସତ୍ୟକଥା ହିଁ କହୁଥିଲେ । ଏବଂ, ସେମାନେ ଅନ୍ୟ କାହାରି ସମ୍ପତ୍ତି ଲୁଟି ନେଉନଥିଲେ । କେବେହେଲେ ଚୋରି କରୁନଥିଲେ । କୌଣସି ଜିନିଷ ବହୁଦିନ ଧରି ବାହାରେ ଅଥବା ରାସ୍ତା ଉପରେ ପଡ଼ି ରହିଥିଲେ ମଧ ତାକୁ କେହି ଉଠାଉ ନଥିଲେ । ସେମାନେ ପଥୁରିଆ ଅଞ୍ଚଳରେ ବାସ କରୁଥିବାରୁ ଦାରୁଣ ଶୀତର ସମ୍ମୁଖୀନ ହେଉଥିଲେ ଏବଂ, ଖାଦ୍ୟପଦାର୍ଥ ଯେପରି ଥଣ୍ଡା ହୋଇନଯିବ, ସେଥିପାଇଁ ଭୋଜନ ରହିଥିବା ପାତ୍ରଗୁଡ଼ିକୁ ଗୋଟିଏ ଗୋଟିଏ ଉହ୍ନେଇ ଉପରେ ରଖୁଥିଲେ । ଉହ୍ନେଇ ଭିତରେ ନିଆଁ ରଡ଼ ହୋଇ ରହିଥିଲା ଏବଂ ତଦ୍ୱାରା ଖାଦ୍ୟ ଉଷୁମ ରହି ପାରୁଥିଲା । ସେମାନଙ୍କର ଯିବାଆସିବା ରାସ୍ତାରେ ସେମାନେ ସରୁ କାଠବହ୍ଲା ଓ ଛଣ ବା ଘାସ ଦେଇ ଗୋଟିଏ ଗୋଟିଏ ଅଡ଼ା ତିଆରି କରି ରଖୁଥିଲେ । ସେହି ଅଡ଼ାଭିତରେ ହିଁ ସମସ୍ତେ ମଳତ୍ୟାଗ କରିବାକୁ ଯାଉଥିଲେ । ତା' ଭିତରେ ଏକାନ୍ତରେ ବସି ପାରୁଥିଲେ ଓ ଅନ୍ୟ ବାଟୋଇମାନେ ସେତେବେଳେ ସେମାନଙ୍କୁ ଆଦୌ ଦେଖି ପାରୁନଥିଲେ । ସେହି ସଂରକ୍ଷିତ ମଳ ଖତରୂପେ ବ୍ୟବହୃତ ହେଉଥିଲା ।

ବର୍ଣ୍ଣନାମାନ କହନ୍ତି ଯେ, କଲମ୍ବସ୍ ଖୁବ୍ ପ୍ରକୃତିପ୍ରେମୀ ଥିଲେ । ନୂତନ ଭୂମିର ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କୁ ଅତ୍ୟନ୍ତ ମୁଗ୍ଧ କରି ଦେଉଥିଲା । ସିଏ ଦେଶକୁ ପଠାଇଥିବା ବିବରଣୀ ଗୁଡ଼ିକରୁ ଏବଂ ଲେଖି ରଖୁଥିବା ଡ଼ାଏରୀରୁ ତାହାର ଭୂୟସୀ ଉଦାହରଣମାନ ମିଳିଯିବ । ଆଜଟେକ୍‌ମାନେ ନିଜର କାରିଗରୀ କୌଶଳ ସାହାଯ୍ୟରେ ଯେଉଁ ଅତି ସୁନ୍ଦର ଦ୍ରବ୍ୟମାନ ତିଆରି କରୁଥିଲେ, କଲମ୍ବସ୍ ସତେଅବା କେତେ କବିତ୍ୱ ସହିତ ସେଗୁଡ଼ିକର ଉଚ୍ଚ ଉଚ୍ଚ ପ୍ରଶଂସା କରି ଯାଇଛନ୍ତି । ଲୋହିତମାନଙ୍କର ଗୃହ, ନିତ୍ୟ ବ୍ୟବହାର୍ଯ୍ୟ ନାନା ଦ୍ରବ୍ୟ, ଯାହାସବୁର ପାରସ୍ପରିକ ବିନିମୟ ହେଉଥିଲା, ପରିଧାନ-ସାମଗ୍ରୀ, ସେମାନେ ବ୍ୟବହାର କରୁଥିବା ଅଳଙ୍କାର ଏବଂ ଆଭରଣମାନ,- ସିଏ ଏହି ସବୁକିଛିର ବିସ୍ତୃତ ବହୁ ବର୍ଣ୍ଣନା କରିଛନ୍ତି । ମାତ୍ର ସେଗୁଡ଼ିକୁ ତିଆରି କରୁଥିବା ଓ ବ୍ୟବହାରରେ ଲଗାଉଥିବା ମଣିଷମାନଙ୍କ ବିଷୟରେ କଲମ୍ବସ୍ ପ୍ରାୟ କିଛିହେଲେ କହିନାହାନ୍ତି । ମଣିଷକୁ ଅସ୍ୱୀକାର କରି ମଣିଷ ତିଆରି କରୁଥିବା ଦ୍ରବ୍ୟଗୁଡ଼ିକୁ କିପରି ସ୍ୱୀକାର କରିହୁଏ କେଜାଣି ? ତଥାପି, ବିଜେତାମାନଙ୍କର ଆଖି ସଚରାଚର ସତେଅବା ତାହାହିଁ କରିଛି । ଅନେକେ କହନ୍ତି,

ପୃଥିବୀର ଇତିହାସରେ ସଭ୍ୟତା ହିଁ ଅସଭ୍ୟତା ଉପରେ ଚିରକାଳ ବିଜୟ ଲାଭ କରି ଆସିଛି । ସଭ୍ୟତା ହିଁ ଚିରକାଳ ଅସଭ୍ୟତାକୁ ସଂହାର କରିଛି । ସଭ୍ୟତା ଅସଭ୍ୟତାକୁ ଆଦୌ ସହ୍ୟ କରି ପାରିନାହିଁ । ପରମ୍ପରା ଅର୍ଥାତ୍ ପୁରୁଣା ଭିତରେ ସଭ୍ୟ ସମ୍ପନ୍ନତର ମଣିଷ କେତେ କ'ଣ ଦେଖିଛି, ବିସ୍ମିତ୍ ହୋଇଛି ସିନା, ମାତ୍ର ତା' ଭିତରେ ଥିବା ମଣିଷମାନଙ୍କୁ ସିଏ ମୋଟେ ଦେଖି ପାରିନାହିଁ । ଏବେ ମଧ ଆଦିମ ସଂସ୍କୃତିର ଅଧ୍ୟୟନ ହେଉଛି, ଆଦିମ ସମାଜ ଯେ କେତେ ନା କେତେ ସରଳ, ସ୍ୱାଭାବିକ ଏବଂ ସହଜ ଥିଲା, ତାହାର ପ୍ରଶସ୍ତିମାନ ଗାନ କରାଯାଉଛି । ମାତ୍ର, ସେହି ଯାବତୀୟ ସଂସ୍କୃତିଟି ପଛରେ ଯେଉଁ ମନୁଷ୍ୟମାନେ ରହିଛନ୍ତି, ସେମାନଙ୍କୁ କେହି ସହି ପାରୁନାହାନ୍ତି ।

ହିସାବ କ'ଣ ପ୍ରକୃତରେ ସବୁକିଛି କହିପାରେ ? ସେହି ହିସାବଗୁଡ଼ାକୁ କିଏ କିପରି ଭାବରେ ସଂଗ୍ରହ କରେ କେଜାଣି ? ତଥାପି ସୁମାରିଦ୍ୱାରା ଜଣାଯାଉଛି ଯେ, ଆମେରିକାରେ କାଳକାଳରୁ ବାସ କରି ଆସୁଥିବା ଲୋହିତମାନଙ୍କ ମଧ୍ୟରୁ ଇଉରୋପର ଏହି ଆବିଷ୍କାର, ଅନୁପ୍ରବେଶ ଅର୍ଥାତ୍ ଆକ୍ରମଣ ଫଳରେ ମୋଟ ସାତକୋଟି ମଣିଷ ସଂହାରମୁହଁରେ ପଡ଼ିଛନ୍ତି । ହିସାବ ପୁନର୍ବାର କହୁଛି ଯେ ସେତେବେଳେ ସେହି ପୁରାତନ ଭୂମିରେ ଯେତେ ମଣିଷ ବାସ କରୁଥିଲେ, ସେମାନଙ୍କ ମଧ୍ୟରୁ ଶତକଡ଼ା ନବେ ଜଣ ହିଁ ସେହି ସଂହାର ଅଭିଯାନର ଶିକାର ହୋଇଛନ୍ତି । ଆହୁରି ଅଧିକ ବୁଝିପାରିବା ଭଳି କୁହାଯାଇଛି ଯେ, ୧୫୦୦ ଖ୍ରୀଷ୍ଟାବ୍ଦ ବେଳକୁ ପୃଥିବୀରେ ଯେଉଁ ୪୦ କୋଟି ମଣିଷ ବାସ କରୁଥିଲେ, ସେଥିର ଏକ ପଞ୍ଚମାଂଶ ଅର୍ଥାତ୍ ଆଠ କୋଟି ଉଭୟ ଆମେରିକାରେ ହିଁ ଥିଲେ । ଏବଂ ମାତ୍ର ପଚାଶବର୍ଷ ପରେ, ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଅଧା ବେଳକୁ ସେହି ଆଠ କୋଟିରୁ ମୋଟେ କୋଟିଏ ଲୋକ ବାକୀ ରହିଥିଲେ । ସ୍ପେନୀୟ ମାନଙ୍କର ବିଜୟ ପୂର୍ବରୁ କେବଳ ମେକ୍ସିକୋର ଲୋକସଂଖ୍ୟା ଅଢ଼େଇ କୋଟି ଥିଲା ଏବଂ ୧୬୦୦ ଖ୍ରୀଷ୍ଟାବ୍ଦ ବେଳକୁ ସେଠାରେ ମୋଟେ ଦଶଲକ୍ଷ ଲୋକ ବାସ କରୁଥିଲେ ।

ଯାହାକୁ ଆମେ ସଂପ୍ରତି ଆମେରିକା ବୋଲି କହୁଛୁ, ତାହାର ଇତିହାସଟା ଯେ ଏହିପରି ଭାବରେ ଆରମ୍ଭ ହୋଇଛି, ସେକଥାଟି ବିଷୟରେ ଅବଗତ ହେଉଥିବା ସମୟରେ କେଜାଣି କାହିଁକି ଭାରି ବୀତଶ୍ରଦ୍ଧ ବୋଧ ହୋଇଥାଏ । ଏପରି ହେବା କ'ଣ ପ୍ରକୃତରେ ଅବଶ୍ୟମ୍ଭାବୀ ଥିଲା ? ଇଂଲଣ୍ଡରୁ ମଧ ପ୍ରାୟ ସେହି ସମୟରେ ଗୋରାମାନେ ଅଷ୍ଟ୍ରେଲିଆରେ ଯାଇ ପହଞ୍ଚିଥିଲେ । ସେଠାରେ କେଉଁ ଆବହମାନ କାଳରୁ ମେଓରିମାନେ ବାସ କରୁଥିଲେ । ସେମାନେ ଶିକାର କରୁଥିଲେ, ଆଦିମ ଥିଲେ, ନାଚୁଥିଲେ, ଗୀତ ଗାଉଥିଲେ, ପୂଜା ଓ ଉପାସନା କରୁଥିଲେ । ସାମୁକାକୁ ଗୁନ୍ଥି ମାଳ କରି ଦେହରେ ପକାଉଥିଲେ । ନିଜର ଦେହକୁ ନାନା ରଙ୍ଗରେ ଚିତ୍ରିତ କରୁଥିଲେ । ପରସ୍ପର ଆଡ଼କୁ ଅନାଇ କେଡ଼େ ଉଲ୍ଲସିତ ହୋଇ ଯାଉଥିଲେ । ଭୂଗୋଳ ବହିରେ ଲେଖା ହୋଇଛି ଯେ, ସେତେବେଳେ ମାଟି ଉପରେ ସୁନା ଓ ବହୁମୂଲ୍ୟ ପଥରମାନ ପଡ଼ିଥିଲେ ମଧ ଏମାନେ ତେଣେ ଅନାଉ ନଥିଲେ ।

ଅଷ୍ଟ୍ରେଲିଆ ଗୋରାମାନଙ୍କର କରଗତ ହେଲା, ସଭ୍ୟତାର ଅଧିକାରକୁ ଆସିଲା । ଏବଂ, ସେହି ପ୍ରକ୍ରିୟାରେ ମେଓରିମାନେ ବିଲୁପ୍ତ ହୋଇଗଲେ । ଇତିହାସ ଅନୁସାରେ ସେତେବେଳକୁ ଇଉରୋପରେ ରେନେସାଁସ୍ ଯୁଗର ବହୁ କୋଳାହଳ ଆରମ୍ଭ ହୋଇ ଯାଇଥିଲା । ସେଥିରୁ ସେଠା ମନୁଷ୍ୟମାନଙ୍କୁ କୁଆଡ଼େ ଏକ ନୂତନ ଆଖି ପ୍ରାପ୍ତ ହୋଇଥିଲା । ମନୁଷ୍ୟବ୍ୟକ୍ତିକୁ ହିଁ ସାଲିଶ୍‌ବିହୀନ ସର୍ବୋଚ୍ଚ ସତ୍ୟ ବୋଲି ଘୋଷଣା କରାଗଲା । ନବବିଜ୍ଞାନର ଯୁଗ ଆରମ୍ଭ ହେଲା, ଶିଳ୍ପର କ୍ଷେତ୍ରରେ ଏକ ବିପ୍ଳବ ମଧ ଘଟିଲା । ବହୁ ଅନ୍ଧବିଶ୍ୱାସ ଅଲୋଡ଼ା ହୋଇ ପଳାଇଲେ । ହୁଏତ ଏହି ସବୁଥିରୁ ହିଁ କ୍ରମେ ଗଣତନ୍ତ୍ରର ପ୍ରଥମ ବିହନ ବୁଣା ହୋଇଥିଲା । ସେହି ଇଉରୋପର ମଣିଷ ନିଜର ଘରଟିକୁ ଏହିଭଳି ନୂଆ ନୂଆ ଅନ୍ଦାଜରେ ଗଢୁଥିବା ସମୟରେ ମହାସାଗର ଗୁଡ଼ାକୁ ଡେ଼ଇଁ ଯେତେବେଳେ ଅନ୍ୟାନ୍ୟ ଭୂଭାଗରେ ଯାଇ ଅବତରଣ କଲା, ସେତେବେଳେ ସିଏ ପୁନର୍ବାର ଏପରି ବର୍ବର ହୋଇଗଲା କିପରି ? ଠିକ୍ ପରବର୍ତ୍ତୀ ଭାଗଟିରେ ଆମେ ଏହି ଘଟଣାଟିର ଅଧିକ ବିବରଣୀ ଦେବା ଏବଂ ପ୍ରସଙ୍ଗଟିକୁ ଅଧିକ ନିରୀଖି ଦେଖିବା ।

ଇଉରୋପର ସେହି ଯୁଗଟିକୁ ଯୁଗନିର୍ଣ୍ଣାୟକମାନେ Age of Enlightenment ଅର୍ଥାତ୍ ଏକ ଆଲୋକନର ଯୁଗ ବୋଲି କହିଛନ୍ତି । ପରବର୍ତ୍ତୀ ପାଞ୍ଚୋଟି ଶତାବ୍ଦୀର ପରିପ୍ରେକ୍ଷୀରେ ଚାହିଁ ଦେଖିଲେ ତାହାକୁ ଆମେ ସମଗ୍ର ମନୁଷ୍ୟଜାତି ଲାଗି ମଧ ଏକାଧିକ ଅର୍ଥରେ ଏକ ବିଶ୍ୱାୟନର ଯୁଗ ବୋଲି କହିପାରିବା । ଆନୁଷ୍ଠାନିକ ଧର୍ମଦୌରାତ୍ମ୍ୟ ଭିତରୁ ମଣିଷମାନଙ୍କୁ ମୁକ୍ତ କରି ଆଣିବାର ପ୍ରାଥମିକ ସନ୍ଦେଶ ଗୁଡ଼ିକ କ୍ରମେ ଅଧିକ ସୋଚ୍ଚାର ହେବାକୁ ଲାଗିଲା । କଲମ୍ବସ୍ ପଶ୍ଚିମମୁହାଁ ହୋଇ ନୂଆ ପୃଥିବୀର ପ୍ରତ୍ୟାଶାରେ ଆଟଲାଣ୍ଟିକ୍ ମହାସାଗର ପାରି ହେଉଥିବା ବେଳେ ଜର୍ମାନୀର ଶ୍ରୀ ଗୁଟେନ୍‌ବର୍ଗ ମୁଦ୍ରଣଯନ୍ତ୍ର ଆବିଷ୍କାରର ପ୍ରଥମ ଦ୍ୱାରଟିକୁ ଉନ୍ମୋଚିତ କରି ଦେଇଥିଲେ । ବହିର ମହାନ୍ ଯୁଗଟି ସେହି ଘଟଣାରୁ ଆରମ୍ଭ ହେଲା ଓ ପୃଥିବୀଟାକୁ କେତେ କେତେ ମହତ୍ତର ସମ୍ଭାବନା ତଥା ପରିଚୟ ଆଡ଼କୁ ବାଟ କଢ଼ାଇ ନେଇଗଲା । ମାତ୍ର କେତେଟା ଦଶକ ପରେ ମାର୍ଟିନ୍ ଲୁଥର୍ ପୋପ୍‌ଙ୍କର ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ତାଙ୍କରି ଯୁଦ୍ଧସାଥୀ ଜଣେ ଇଉରୋପରେ ପ୍ରଥମ କୃଷକ ବିଦ୍ରୋହରେ ନେତୃତ୍ୱ ଦେଇଥିଲେ । ନୂଆ ଚେତନାରେ ନିଜକୁ, ସତ୍ୟକୁ ଏବଂ ବିଶ୍ୱକୁ ଅନ୍ୟ ଭାବେ ଅନୁଭବ କରିବାକୁ ଆରମ୍ଭ କରିଥିବା ମନୁଷ୍ୟମାନେ ଧର୍ମର ଦୌରାତ୍ମ୍ୟ ସହ୍ୟ କରିବାକୁ ଆଉ ଆଦୌ ରାଜୀ ହେଲେନାହିଁ । ସେମାନେ କୁଆଡ଼େ ଏକ ମୁକ୍ତ ବିବେକର ପିପାସୁ ହେଲେ । ସେତେବେଳକୁ ପଶ୍ଚିମ ଗୋଲାର୍ଦ୍ଧରେ ସ୍ଥାପିତ ହେଉଥିବା ନୂତନ ଇଉରୋପୀୟ ବସତିଟିର ସମ୍ବାଦ ସେମାନଙ୍କ କାନରେ ଆସି ଅବଶ୍ୟ ବାଜିଥିବ । ରାହା ପାଇଲା ପରି ସେମାନେ ମଧ ସେହି ନୂତନ ଭୂଖଣ୍ଡଟିର ଆକର୍ଷଣରେ ପଡ଼ି ଇଉରୋପ୍ ତ୍ୟାଗ କରିଥିଲେ । ଏହିପରି ଭାବରେ ଆମେରିକା ଦୁଇଥର ପାଇଁ ଇଉରୋପ ପାଇଁ ଜାଗା ଛାଡ଼ି ଦେଇଥିଲା । ପ୍ରଥମଟି ହେଉଛି ସ୍ପେନ ଓ ପର୍ଟୁଗାଲ୍‌ର ଇଉରୋପ ଏବଂ

ଦ୍ୱିତୀୟଟି ହେଉଛି ଆଙ୍ଗ୍ଲୋ-ସାକ୍ସନ ମାନଙ୍କର ଇଉରୋପ । ସ୍ପେନୀୟ ଭାଷାରେ ଏବେ ମଧ୍ୟ ଏହାକୁ ମନେ ପକାଇଦେଇ ଯଥାକ୍ରମେ America Latina ଏବଂ America Sajona ବୋଲି କୁହାଯାଏ ।

ସେତେବେଳେ ଇଉରୋପରେ ସ୍ପେନ୍ ହେଉଛି ଇଂଲଣ୍ଡର ସର୍ବପ୍ରଧାନ ଶତ୍ରୁ । ଦୁହେଁ ପ୍ରାୟ ସମାନ ଭାବରେ ପରାକ୍ରମୀ ଓ ପ୍ରତାପଶାଳୀ । ପ୍ରଧାନତଃ ସମୁଦ୍ର ଉପରେ ହିଁ ବଳ କଷାକଷି ଲାଗିଥାଏ ଓ ତାହାକୁ ଯୁଦ୍ଧ ବୋଲି କୁହା ଯାଉଥାଏ । ବେଳେ ଏପାଖ ହାରୁଥାଏ ତ ଆଉବେଳେ ସେପାଖ ଜୟଲାଭ କରୁଥାଏ ; ଏଠି ଏପଟ ଜିତୁଥାଏ ତ ସେଠି ସେପଟ ହାରି ଯାଉଥାଏ । ସ୍ପେନ୍ ଓ ପର୍ତ୍ତୁଗାଲ ଦୁଇ ଦେଶ କାଥୋଲିକ୍ । ରଜା କାଥୋଲିକ୍, ତେଣୁ ପ୍ରଜା ମଧ୍ୟ କାଥୋଲିକ୍ । ଇଂଲଣ୍ଡ ପ୍ରାୟ ଅଣକାଥୋଲିକ୍ । ତେଣୁ, ବଳକଷାକଷିର ଧର୍ମଗତ ପାର୍ଥକ୍ୟଟି ମଧ୍ୟ ହୁଏତ ଖୁବ୍ ବଳ ଯୋଗାଉଥିବ ଏବଂ ପ୍ରତ୍ୟେକ ପକ୍ଷ ନିଜପଟରେ ହିଁ ଧର୍ମ ତଥା ଭଗବାନ ରହିଛନ୍ତି ବୋଲି ଅବଶ୍ୟ ବିଶ୍ୱାସ କରୁଥିବ ଓ ସେଥିରୁ ଖୁବ୍ ଉତ୍ସାହ ମଧ୍ୟ ମିଳୁଥିବ । ସ୍ପେନ୍‌ର ନାବିକମାନେ ନୂଆ ଭୂଇଁ ଆମେରିକାରୁ ପୋତ ପରେ ପୋତ ଖାଲି ସୁନା ବୋଝେଇ କରି ଦେଶକୁ ବୋହି ଆଣୁଛନ୍ତି ବୋଲି ହେଉଥିବା ଜନରବ ଗୁଡ଼ାକ ସେତେବେଳେ ଇଂଲଣ୍ଡକୁ କମ୍ ଟିହାଉ ନଥିବ । ଅନେକ ସମୟରେ ଅଧିକ ବୁଦ୍ଧିଆ ପଡ଼ି, ଇଂଲଣ୍ଡର ତରୀମାନେ ସେହି ଆଟଲାଣ୍ଟିକ୍ ମହାସାଗରରେ କୋଉଠି ମଝିବାଟରେ ଆମେରିକାରୁ ସୁନା ଲଦି ଘରକୁ ଫେରୁଥିବା ସ୍ପେନୀୟ ଜାହଜମାନଙ୍କର ମୁକାବିଲା କରିବାକୁ ଯାଇ ହାବୁଡ଼ି ଯାଉଥିଲେ ଏବଂ ଯୁଦ୍ଧରେ ଜିତିଲେ ମାଲମତା ଗୁଡ଼ିକୁ ସେଇଠୁ ମଙ୍ଗ ମୋଡ଼ାଇ ଇଂଲଣ୍ଡକୁ ନେଇ ଆସୁଥିଲେ । ଇଂଲଣ୍ଡର ରାଣୀଙ୍କ ଠାରୁ ସେହି ଦୁଃସାହସିକତା ନିମନ୍ତେ ସେମାନେ ବିଶେଷ ପୁରସ୍କାର ଓ ପାରିତୋଷିକ ମଧ୍ୟ ପାଉଥିଲେ । ତରୀର ମୁଖ୍ୟ ନାବିକମାନେ ବିଶେଷ ଉପାଧିମାନ ଲାଭ କରୁଥିଲେ । ଥରେ ଏହିଭଳି ହାବୁଡ଼ା ହାବୁଡ଼ି ସମୟରେ ଦରିଆ ମଝିରେ ସ୍ପେନୀୟମାନେ ଇଂଲଣ୍ଡର ଜଣେ ନାବିକଙ୍କର କାନ କାଟି ନେଇଥିବାରୁ ସେହି ଦାରୁଣ ଅପମାନର ପ୍ରତିଶୋଧ ନେବା ସକାଶେ ଇଂଲଣ୍ଡର ପାର୍ଲିଆମେଣ୍ଟରେ ଭାରି ହଟ୍ଟଗୋଳ ମଧ୍ୟ ହୋଇଥିଲା ଓ ସେଥିପାଇଁ ଗୋଟିଏ ବିଶେଷ ଯୁଦ୍ଧ ଲଢ଼ା ଯାଇଥିଲା ବୋଲି ଆମେ ଇଂଲଣ୍ଡର ଇତିହାସରୁ ଜାଣିବାକୁ ପାଇଥାଉ ।

ଇଂଲଣ୍ଡ ପରେ ଇଉରୋପରୁ ଅନ୍ୟାନ୍ୟମାନେ ମଧ୍ୟ କ୍ରମେ ସେହି ନୂତନ ଭୂଖଣ୍ଡରେ ଯାଇ ପହଞ୍ଚିଥିଲେ । ଫରାସୀ ଗଲେ, ଜର୍ମାନୀ ଗଲେ, ଇଟାଲୀୟ, ଓଲନ୍ଦାଜ ଓ ଦିନାମାରମାନେ ମଧ୍ୟ ଯାଇ ପହଞ୍ଚିଲେ । ସେଠାରେ ଯିଏ ଯେଉଁଠାରେ ଯାଇ ପହଞ୍ଚିଲା, ସେହି ସ୍ଥାନଟି ତାହାର ହୋଇଗଲା । ଅଧିକ ବୁଦ୍ଧି ଓ ଅଧିକ ଭଲ ଅସ୍ତ୍ରର ବଳରେ ସ୍ଥାନୀୟ ଲୋହିତମାନଙ୍କୁ ଗିଳି ପକାଇବାଟା ଏମାନଙ୍କ ପାଇଁ ଆଦୌ କଷ୍ଟକର ହୋଇ ନଥିବ । ଲୋହିତମାନେ ଗୃହଚ୍ୟୁତ ହୋଇ କେଉଁସବୁ କନ୍ଦରା ଓ ଖୋଲ ଭିତରେ ଯାଇ ରହିଲେ ।

ଇଉରୋପୀୟମାନେ ଗୋଟାସୁଦ୍ଧା ପ୍ରଶସ୍ତ ହୋଇ ପଡ଼ିଥିବା ଏହି ପୃଥିବୀଟାରେ ଯୁଆଡ଼କୁ ଅନାଇଲେ, ସେଇଟାକୁ ନିଜର ଦଖଲ ବୋଲି ଧରିନେଲେ । ତଥାପି ଇଉରୋପୀୟ-ଇଉରୋପୀୟ ମଧ୍ୟରେ ବି ବେଶ୍ କେତେ କ୍ଷେତ୍ରରେ ଟକ୍କର ବି ଲାଗିଥିଲା । ଯୁଦ୍ଧରେ ଯିଏ ଜିତିଲା, ସିଏ ଅପର ପକ୍ଷଟାକୁ ସେଠାରୁ ଘଉଡ଼ାଇ ଦେଇ ପାରିଲା । ତଥାପି, ଭାଗ୍ୟଦେବୀଙ୍କର ବରାଦ ଅନୁସାରେ ଅନ୍ୟ ସମସ୍ତେ ହଟିଗଲେ, ଇଂଲଣ୍ଡ ରହିଗଲା । ଏକଦା ଭାରତବର୍ଷରେ ମଧ୍ୟ ଠିକ୍ ସେହି ଘଟଣା ଘଟି ନଥିଲା କି ? ଆମର ଏଠାରେ ମଧ୍ୟ ଆମ ସାନବଡ଼ ରାଜା ଓ ନବାବମାନେ ପରାଭୂତ ହୋଇଯିବା ପରେ ଏଠି ଫରାସୀ, ପର୍ତ୍ତୁଗୀଜ୍, ଇଂରାଜ, ଓଲନ୍ଦାଜ ଓ ଦିନାମାର୍‌ମାନେ ନିଜ ନିଜର ଖଣ୍ଡଗୁଡ଼ିକୁ ସାମ୍ରାଜ୍ୟରେ ପରିଣତ କରି ରହିଥିଲେ । ସେମାନଙ୍କ ଭିତରେ ଯୁଦ୍ଧ ହେଲା ଓ ଶେଷକୁ ଇଂଲଣ୍ଡ ହିଁ ମାଲିକ ହୋଇ ରହିଲା । ସବାବଡ଼ ପ୍ରତିଦ୍ୱନ୍ଦ୍ୱୀ ସ୍ପେନ୍ ମଧ୍ୟ ତେଣେ ଇଉରୋପରେ ଅଳ୍ପବଳ ହୋଇ ଆସିବା ସଙ୍ଗେ ସଙ୍ଗେ ପ୍ରକୃତ ସ୍ଥିତିଟିକୁ ସ୍ୱୀକାର କରି ନେଲାପରି ଆମେରିକାରେ ଉତ୍ତର ପଟଟାକୁ ଇଂଲଣ୍ଡକୁ ଛାଡ଼ିଦେଲା ଏବଂ ଆପେ ମଧ୍ୟ ଓ ଦକ୍ଷିଣ ଆମେରିକାକୁ ଆଦରି ରହିଲା ।

ଉତ୍ତର ଓ ଦକ୍ଷିଣ ଉଭୟ ଆମେରିକା ବେଶ୍ ବହୁବର୍ଷ ଧରି ଇଉରୋପରେ ଥିବା ନିଜ ନିଜର ମାଲିକ ଦେଶମାନଙ୍କର ଉପନିବେଶ ହୋଇ ରହିଥିଲେ । ଦୁହେଁ ଗୋରା ରକ୍ତର ହୋଇଥିଲେ ମଧ୍ୟ ଗୋଟିଏ ପଟ ଯେ ଅନ୍ୟ ପଟଟିର ଅଧୀନ ହୋଇ ରହିବ, ସେକଥା ସତେଅବା ବିଧାତାଙ୍କର ମନକୁ ଆଦୌ ପାଇନଥିବ । ଏକାଧିକ ଘଟଣାମୟ ଏକ ସଂଗ୍ରାମରେ ଏହିପରି ଭାବରେ ଉତ୍ତର ଆମେରିକାର ତେରଗୋଟି ରାଜ୍ୟାଞ୍ଚଳ ଇଂଲଣ୍ଡଠାରୁ ସମ୍ପର୍କ ବିଚ୍ଛିନ୍ନ କରି ସ୍ୱାଧୀନ ହେଲେ ଓ ଆପଣାକୁ ଯୁକ୍ତରାଜ୍ୟ ବୋଲି କହିଲେ । ପରେ ଅନ୍ୟ ରାଜ୍ୟମାନେ ମଧ୍ୟ ଏହି ଗୋଛାଟି ଭିତରେ ଆସି ପ୍ରବେଶ କଲେ । ବର୍ତ୍ତମାନ ଏହିପରି ଭାବରେ ପଚାଶଟି ରାଜ୍ୟ ଏକାଠି ଯେଉଁ ରାଷ୍ଟ୍ର ଶାସନରେ ଗୁନ୍ଥା ହୋଇ ରହିଛନ୍ତି, ଆମେରିକାର ଯୁକ୍ତରାଜ୍ୟ କହିଲେ ଆମେ ବର୍ତ୍ତମାନ ସେହିମାନଙ୍କୁ ହିଁ ବୁଝୁଛୁ । ସବୁ କିସମର ମନୁଷ୍ୟମାନଙ୍କୁ ମିଶାଇ ବର୍ତ୍ତମାନ ତାହାର ଲୋକସଂଖ୍ୟା ପଚିଶି କୋଟି ହୋଇଗଲାଣି । ଇଉରୋପର ଯେଉଁ ଅଞ୍ଚଳରୁ ଏକଦା ଯେଉଁମାନେ ଏଠାକୁ ଆସିଥିଲେ ଓ ସ୍ୱତନ୍ତ୍ର ଅଞ୍ଚଳମାନଙ୍କରେ ବସତି ସ୍ଥାପନ କରିଥିଲେ, ସେମାନେ ବର୍ତ୍ତମାନ ସମସ୍ତେ ଇଂରାଜୀ କହୁଛନ୍ତି । ସବୁଯାକ ପିଲା ଇଂରାଜୀକୁ ହିଁ ମୂଳଭାଷା ରୂପେ ଶିକ୍ଷା କରୁଛନ୍ତି । ନିଜନିଜର ଇଉରୋପୀୟ ମୂଳଭାଷାମାନ ବ୍ୟବହୃତ ହେଉ ନଥିବାରୁ କୋଉକାଳୁ ଭୁଲି ହୋଇଗଲାଣି । ତଥାପି ବିଭିନ୍ନ ସ୍ଥାନର ନାମଗୁଡ଼ିକରୁ କୋଉ ଭାଷାଭାଷୀ ପ୍ରଥମେ କେଉଁସବୁ ସ୍ଥାନରେ ବସବାସ କରିଥିଲେ, ତାହାକୁ ଅନେକ ପରିମାଣରେ ଅବଶ୍ୟ ଅନୁମାନ କରିହେଉଛି । ଇଉରୋପୀୟମାନେ ଏହି ଭୂଭାଗରେ ଆସି ପଦାର୍ପଣ କରିବା ପୂର୍ବରୁ ଏଠାରେ ବସତିଗୁଡ଼ିକର ଅବଶ୍ୟ ଗୋଟିଏ ଗୋଟିଏ ନାଆଁ ରହିଥିବ । ଏବଂ, ଏକଥା ମଧ୍ୟ

ଖୁବ୍ ସମ୍ଭବ ଯେ, ଆଗରୁ ଲୋହିତମାନେ ଯେଉଁସବୁ ସ୍ଥାନରେ ବସବାସ କରୁଥିଲେ, ବିଜେତା ଗୋରାମାନେ ସେହିସବୁ ସ୍ଥାନରେ ନରହି ନିଜପାଇଁ ଅଧିକ ଅନୁକୂଳ ଜାଗାଗୁଡ଼ିକୁ ଆବିଷ୍କାର କରି ନିଜର ଖାସ୍ ବସତିଗୁଡ଼ିକୁ ସ୍ଥାପନ କଲେ । ସେମାନେ ଇଉରୋପର ଯେଉଁ ଦେଶରୁ ବା ଯେଉଁ ଅଞ୍ଚଳରୁ ଆସିଥିଲେ, ଅନ୍ତତଃ ସେଗୁଡ଼ିକ ସହିତ ଏକ ଭାବସୂତ୍ର ଯୋଡ଼ିକରି ରଖିବାର ସରାଗରେ ସେମାନେ ଏଠାରେ ମଧ କେତେକ ଜାଗାକୁ ସେହି ଅନୁସାରେ ନାମିତ କରିଥିଲେ ।

ତେଣୁ, ଆମେରିକାରେ ଲଣ୍ଡନ୍ ଅଛି, ଏଡ଼ିନ୍‌ବରା ଅଛି, ବର୍‌ମିଙ୍ଗ୍‌ହାମ୍ ଓ ମାଞ୍ଚେଷ୍ଟର ବି ରହିଛି । କେଉଁଠି କର୍ଣ୍ଣଓ୍ୱାଲିସ୍ ବୋଲି ଜାଗାଟିଏ ଅଛି । ଏଥେନ୍ସ, ପାରିସ୍, ବର୍ଲିନ୍ ରହିଛନ୍ତି । ମିନିଆପୋଲିସ୍ ଏବଂ ଆନାପୋଲିସ୍ ମଧ ଅଛନ୍ତି । ଓ୍ୱାଟର୍‌ଲୁ ମଧ କାହିଁକି ରହି ନଥାନ୍ତା ! କୋଉଠି ୟର୍କଟିଏ ଥିଲା, ପରେ ଆଉଗୋଟିଏ ଥାନକୁ ନିଉୟର୍କ ବୋଲି କୁହାଯାଇଛି । ଆମେ ଯେତେବେଳେ ଉତ୍ତର କାରୋଲିନା ରାଜ୍ୟର ରାଜଧାନୀ ରାଲେରେ ଯାଇ ପହଞ୍ଚିଗଲୁ, ସେତେବେଳେ ବ୍ରିଟିଶ୍ ରାଣୀ ପ୍ରଥମ ଏଲିଜାବେଥ୍‌ଙ୍କ ସମୟର ଶ୍ରୀଯୁକ୍ତ ଓ୍ୱାଲ୍‌ଟର୍ ରାଲେଙ୍କ କଥା ମୋ'ର ତତ୍‌କ୍ଷଣାତ୍ ମନେ ପଡ଼ିଗଲା । ଜଣେ ବିଚକ୍ଷଣ ଜଳଦସ୍ୟୁ ହିସାବରେ ଶ୍ରୀ ରାଲେ ଇଂଲଣ୍ଡ ପାଇଁ ଆଟଲାଣ୍ଟିକ୍ ମହାସାଗରରେ ସ୍ପେନ୍‌ର ଘରଫେରନ୍ତା ତରୀଗୁଡ଼ିକରୁ ପ୍ରଚୁର ଧନସମ୍ପଦ ବୋହି ଆଣିଥିଲେ ବୋଲି ରାଣୀ ତାଙ୍କୁ Sir ଉପାଧିରେ ଭୂଷିତ କରିଥିଲେ । ନାଶ୍‌ଭିଲ୍ ପ୍ରଭୃତି ଯେଉଁସବୁ ସ୍ଥାନ ନାମରେ 'ଭିଲ୍' ଲାଙ୍ଗୁଳ ଲାଗିଛି, ସେଗୁଡ଼ିକ ଫରାସୀ ନାମଗୁଡ଼ିକର ଅବଶେଷ ଭଳି ବୋଧ ହେଉଛି । ଆମେରିକାର ଦକ୍ଷିଣ-ପଶ୍ଚିମ କୋଣକୁ ରହିଥିବା କାଲିଫର୍ଣ୍ଣିଆ ରାଜ୍ୟଟି ବହୁକାଳ ଧରି ସ୍ପେନୀୟ ଅଧିକାରରେ ରହିଥିଲା । ଇଂଲଣ୍ଡ ସେହି ରାଜ୍ୟଟିକୁ ସଉଦା କଲାପରି ସ୍ପେନ୍‌ଠାରୁ କିଣିଲା । ତଥାପି ସେଠାରେ ଥିବା ଅଗଣିତ ସ୍ଥାନନାମ ସେହିପରି ଅପରିବର୍ତ୍ତିତ ଭାବରେ ସ୍ପେନୀୟ ହୋଇ ରହିଗଲା । ସାନ୍ତା କ୍ଲାରା, ସାନ୍‌ଫ୍ରାନ୍‌ସିସ୍କୋ, ଲସ୍ ଆଞ୍ଜେଲସ୍, ଲାସ୍ ଭେଗାସ୍, ସାନ୍ତା ବାର୍ବାରା ଓ ଆହୁରି କେତେ କେତେ ନାମ ସେହି ସୂଚନାଟିକୁ ଦେଇଯାଉଛି ।

ତଥାପି ଲୋହିତ ମାନଙ୍କର ଅନେକ ନାମକୁ ମଧ ଯେମିତି ସେମିତି ଏବେ ମଧ କେତେକ କ୍ଷେତ୍ରରେ ରଖାଯାଇଛି । ଆରିଜୋନା, ଓହାଇଓ, କନେକ୍ଟି କଟ୍, ନେଭାଡ଼ା, ନେବ୍ରାସ୍କା ପ୍ରଭୃତି କେତେ କେତେ ଆଦିମ ନାମ ଅଖିଣ ଭାବରେ ଯେମିତି ସେମିତି ରହିଛି । କେତେ ଜାଗାରେ ପୁରୁଣା ନାମଟିର ଇଂରାଜୀ ଅନୁବାଦ କରି ବ୍ୟବହାର କରାଯାଉଛି ସିନା,ମାତ୍ର ତଥାପି ଲୋହିତମାନେ ଯେ ତାହାର ମୂଳ ନାମକରଣଟି କରିଥିଲେ, ତାହା ଅତ୍ୟନ୍ତ ସ୍ପଷ୍ଟ ହୋଇଯାଉଛି । ଥଣ୍ଡର୍ ବାର୍ଡ଼ ଓ ବଫାଲୋ ସମ୍ଭବତଃ ସେହିପରି ଦୁଇଟି ନାମ ହୋଇଥିବ ବୋଲି ମନେ ହେଉଛି । ସ୍ଥାନଗୁଡ଼ିକର ନାମ ପଛରେ ଯେ ସର୍ବଦା ଏକ ଇତିହାସ ରହିଥାଏ, ଏବେ ବହୁ ଅଧ୍ୟୟନରୁ ତାହା ପ୍ରତିପାଦନ କରାଗଲାଣି । ଓଡ଼ିଶାରେ ମଧ ସେହି ଦିଗରେ ଗୋଟିଏ ଦୁଇଟି ପ୍ରଚେଷ୍ଟା କରାଯାଇଛି ।

ଆମେରିକାର ପୂର୍ବପଟେ ଆଟଲାଣ୍ଟିକ୍ ମହାସାଗର ଏବଂ ପଶ୍ଚିମ ପଟେ ପ୍ରଶାନ୍ତ ମହାସାଗର । ପ୍ରଶାନ୍ତ ମହାସାଗର ଡ଼େଇଁଲେ ଏସିଆ ଏବଂ ଏସିଆର ବୃହତ୍ ସ୍ଥଳଭାଗଟିରେ ସବାଆଗ ଚୀନ୍ । ବିଗତ କେତେ ଶତ ବର୍ଷ ହେଲା ଚୀନ୍‌ରୁ ହଜାର ହଜାର ଲୋକ ଯାଇଛନ୍ତି ଯୁକ୍ତରାଜ୍ୟ ଆମେରିକାକୁ । ଇଉରୋପୀୟ ମାନଙ୍କ ପରି ସେମାନେ ସାମ୍ରାଜ୍ୟ ବିସ୍ତାର କରି ଯାଇନାହାନ୍ତି, ସେମାନେ ଜୀବିକାର ଅନ୍ୱେଷଣରେ ଯାଇଛନ୍ତି । ଜନବହୁଳ ଚୀନ୍‌ରେ ଏକାବେଳେକେ ଏତେ ମଣିଷଙ୍କ ସକାଶେ ସଂସ୍ଥାନଟିଏ ଯୋଗାଇଦେବା ହୁଏତ ସବୁଦିନେ ଏକ କଠିନ ସମସ୍ୟା ହୋଇ ରହିଛି ଓ ତେଣୁ ଚୀନାମାନେ ମହାସାଗର ପାରି ହୋଇ ଆମେରିକା ନାମକ ଏପଟର ଭୂଖଣ୍ଡଟିକୁ ଆସିବା ନିମନ୍ତେ ସବୁକାଳେ ମନ କରିଛନ୍ତି । ପ୍ରଶସ୍ତ ସ୍ଥଳଭାଗ ପଡ଼ି ରହିଛି, ତାହାର ଆବାଦ କରି ପାରିବାକୁ ହେଲେ ଯେଉଁ କଠିନ ଶ୍ରମର ପ୍ରୟୋଜନ ରହିଛି, ଇଉରୋପୀୟ ମାଲିକମାନେ ସମ୍ଭବତଃ ସେଥିଲାଗି ନିଜକୁ ଯଥେଷ୍ଟ ସମର୍ଥ ମନେ କରିନାହାନ୍ତି ବୋଲି ସେହି ମୂଳରୁ ହିଁ ବହିରାଗତ ମାନଙ୍କ ଉପରେ ନିର୍ଭର କରିଛନ୍ତି । ପଥର ଓ ପାହାଡ଼ମୟ ଭୂମି, ନଦୀଗୁଡ଼ିକ ବଡ଼ ଭୟଙ୍କର, ଅରଣ୍ୟମାନେ ଶ୍ୱାପଦସଙ୍କୁଳ । ଜଳବାୟୁଟା ମଧ୍ୟ ଇଉରୋପ ପରି ଏତେ ସହନୀୟ ନୁହେଁ । ବିଶେଷ କରି ଦକ୍ଷିଣାଞ୍ଚଳର ଇଲାକାଗୁଡ଼ିକରେ ଗ୍ରୀଷ୍ମର ପ୍ରାଦୁର୍ଭାବ ଅତ୍ୟନ୍ତ ଅଧିକ । ତେଣୁ, ପ୍ରାୟ ଏକ ବୃହତ୍ ବ୍ୟବସାୟ ରୂପେ ଆଫ୍ରିକାରୁ କିପରି ଅନେକାନେକ ମନୁଷ୍ୟଙ୍କୁ ଧରି ଅଣାଯାଇଛି ଏବଂ ପ୍ରାୟ ଏକ ଆଦିମ ନୃଶଂସତା ସହିତ ଖଣିରେ ଓ କୃଷିରେ ଏବଂ ବସତିନିର୍ମାଣରେ ପଶୁପରି ନିଯୁକ୍ତ କରାଯାଇଛି, ପୃଥିବୀର ଇତିହାସରେ ତାହା ଏକ ସ୍ୱତନ୍ତ୍ର ଅଧ୍ୟାୟ ପରି ଲେଖାହୋଇ ରହିଛି ।

ତା'ପରେ ଏବର ଶତାବ୍ଦୀମାନଙ୍କରେ ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରୁ ବା ଭାଗରୁ ମନୁଷ୍ୟମାନେ ଏହି ଯୁକ୍ତରାଜ୍ୟକୁ ଆସିଛନ୍ତି । ତେଣୁ କାଳକ୍ରମେ ଦେଶଟି ମିଶାମିଶି ଅନେକ ମଣିଷଙ୍କର ଏକ ଭୂମିରେ ପରିଣତ ହୋଇ ଯାଇଛି । ପୃଥିବୀର ମାନଚିତ୍ରରେ ମଧ୍ୟ ଯୁକ୍ତରାଜ୍ୟ ଆମେରିକା ନିଜର ନିକଟବର୍ତ୍ତୀ ପଡ଼ୋଶୀମାନଙ୍କ ସହିତ ଏପରି ଏକଣା ହୋଇ ରହିଆସିଛି ଯେ, ପୁରୁଣା ପୃଥିବୀରେ କେତେ କେତେ କୋଳାହଳ ଲାଗି ରହିଥିଲେ ମଧ୍ୟ ଆମେରିକାରେ ସେଗୁଡ଼ିକର ଆଘାତ ଖୁବ୍ କମ୍ ବାଜିଛି । ଯୁକ୍ତରାଜ୍ୟବାସୀ ଗୋରାମାନେ ସମସ୍ତେ ଏକଦା ଇଉରୋପରୁ ହିଁ ସେଠାକୁ ଯାଇଥିଲେ ମଧ୍ୟ ତଥାପି ସେମାନେ ସତେଅବା ନିଷ୍ପତ୍ତିଟିଏ କରିଥିବା ପରି ଇଉରୋପ ସହିତ ନିଜର ନାଡ଼ସୂତ୍ର ଗୁଡ଼ିକୁ ଯଥାସମ୍ଭବ କାଟି ଦେଇଛନ୍ତି ଏବଂ ଅର୍ଥନୀତିଠାରୁ ଆରମ୍ଭ କରି ସମରନୀତି ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ପୂରାପୂରି ସ୍ୱତନ୍ତ୍ର ଭାବରେ ନିଜର ନିଷ୍ପତ୍ତିଗୁଡ଼ିକୁ କରିଛନ୍ତି । ମଝିର ଏହି ପାଞ୍ଚୋଟି ଶତାବ୍ଦୀ ମଧ୍ୟରେ ଇଉରୋପରେ ଫରାସୀ ବିପ୍ଳବ ହୋଇଛି, ଋଷିଆରେ ଅକ୍ଟୋବର ବିପ୍ଳବ ମଧ୍ୟ ହୋଇଛି ଏବଂ ଏହି ତରଙ୍ଗଗୁଡ଼ିକର କିଛିବ୍ ଆଘାତ ଆଟଲାଣ୍ଟିକ୍‌ର ସେପଟେ ଯାଇ ବାଜିଥିଲେ ମଧ୍ୟ ତଥାପି ଯୁକ୍ତରାଜ୍ୟର ଏକ ସମଗ୍ର ଏକକରୂପେ ପୁଷ୍ଟ

ତଥା ବିକଶିତ ହୋଇ ଆସିବାରେ ସେମାନେ ସେପରି ମହତ୍ତ୍ୱପୂର୍ଣ୍ଣ କୌଣସି ଭୂମିକା ଗ୍ରହଣ କରି ପାରିନାହାନ୍ତି । ଯୁକ୍ତରାଜ୍ୟରେ ଫରାସୀ ବିପ୍ଳବ ଏବଂ ନେପୋଲିଅନ୍‌ଙ୍କ ସମ୍ବନ୍ଧରେ ବହୁତ ଚର୍ଚ୍ଚା ହୋଇଛି ଓ ଏବେ ମଧ ହେଉଛି; ଯୁକ୍ତରାଜ୍ୟ ଆମେରିକାରେ ଏକ କମୁନିଷ୍ଟ ପାର୍ଟି ବର୍ତ୍ତମାନ ମଧ ରହିଛି । ମାତ୍ର ଯୁକ୍ତରାଜ୍ୟ ଏଗୁଡ଼ିକର ସମ୍ପୂର୍ଣ୍ଣ ଖବର ରଖିଲେ ମଧ ନିଜର ବାଟଟିଏ ସ୍ଥିର କରିବାରେ ଆଦୌ ସେମାନଙ୍କ ଦ୍ୱାରକୁ ହୁଏତ ଲୁଣ ପୋଷେ ମଧ ମାଗିବାକୁ ଯାଇନାହିଁ ।

ଇଉରୋପରେ ଛୋଟ ବଡ଼ ବହୁତ ଦେଶ, ଛୋଟ ବଡ଼ ବହୁତ ଜାତି ଓ ବହୁତ ରାଷ୍ଟ୍ର । ଭାଷା ମଧ ବହୁପ୍ରକାରର । ସେମାନେ ପରସ୍ପର ଠାରୁ ନିଜନିଜର ସ୍ୱାତନ୍ତ୍ର୍ୟକୁ ବଜାୟ ରଖିବାରେ ହିଁ ସତେଅବା ନିଜର ସର୍ବାଧିକ କଲ୍ୟାଣ ରହିଛି ବୋଲି ଅନୁଭବ କରି ଆସିଛନ୍ତି । ଏବଂ, ଅପର ପକ୍ଷରେ, ଏହି ପ୍ରତ୍ୟେକ ଦେଶର କିଛି କିଛି ଅଧିବାସୀ ଅତୀତରେ ଆମେରିକାକୁ ଯାଇଛନ୍ତି ଏବଂ ସେହିଠାରେ ବସତିଟିଏ ସମ୍ଭାଳ ରହି ଯାଇଛନ୍ତି । ସେହି ସ୍ରୋତଟି ଏବେ ମଧ ବନ୍ଦ ହୋଇନାହିଁ । ମାତ୍ର, ସେମାନେ ସେଠାକୁ ଯାଇ ଆଉ ଅଲଗା ହୋଇ ରହିବାକୁ ମୋଟେ ମନ କରିନାହାନ୍ତି । ସେମାନେ ପରସ୍ପର ସହିତ ମିଶି ଯାଉଛନ୍ତି । ନିଜ ଭାଷାଗୁଡ଼ିକୁ ଛାଡ଼ି, ଇଂରାଜୀ ଭାଷା ଗ୍ରହଣ କରିବାରେ ସେମାନଙ୍କୁ ମୋଟେ ଭିଡ଼ିମୋଡ଼ି ହେବାକୁ ପଡ଼ିନାହିଁ । ଅଧିକାଂଶଙ୍କର ଆପଣାର ମୂଳ ଦେଶଟି ପ୍ରତି ଲାଗିଥିବା ସୂତାଗୁଡ଼ିକ କ୍ରମଶଃ ଛିନ୍ନ ହୋଇଯାଇଛି । ଆମେରିକାର ଜୀବନନାମକ ଗୃହଟିରେ ଏପରି କେଉଁ ଉପାଦାନମାନ ରହିଛି, ଯାହାଫଳରେ କି ସେକଥା ପ୍ରକୃତରେ ସମ୍ଭବ ହୋଇଛି ? ସେଠାରେ କୌଣସି ଡ଼ିକ୍ଟେଟର୍ ସେମାନଙ୍କୁ ସେପରି ହେବାକୁ ଆଦୌ ବାଧ କରିନାହିଁ । ଆମେରିକା ଯେ ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ଏପାଖଟା ଠାରୁ ଏତେ ଦୂରରେ ଯାଇ ରହିଛି, ଏହି କ୍ଷେତ୍ରରେ ଆମେ ତାହାକୁ ସବାବଡ଼ କାରଣ ବୋଲି କହିପାରିବା କି ? ଆମେରିକା କ୍ରମେ ପୃଥିବୀର ସବୁଠାରୁ ଅଧିକ ଧନୀ ଅର୍ଥାତ୍ ସବୁଠାରୁ ଅଧିକ ସୁଯୋଗ ରହିଥିବା ଦେଶ ବୋଲି ଯେ ପରିଗଣିତ ହୋଇଛି, କ'ଣ ଏହି କଥାଟି ସେଠାରେ ଯାଇ ପହଞ୍ଚି ପାରୁଥିବା ମଣିଷମାନଙ୍କୁ ଏକସୂତ୍ରତାର ସର୍ବବୃହତ୍ ଭରସାଟିକୁ ଯୋଗାଇ ଦେଇ ପାରୁଛି କି ? ଆମ ଏଠାରେ ଭାରତବର୍ଷରେ ମଧ ବହୁତ ଜାତି, ବହୁତ ଧର୍ମ, ବହୁବିଧ ସଂସ୍କୃତି, ବହୁସଂଖ୍ୟକ ଭାଷା ଏବଂ ବହୁବର୍ଣ୍ଣଯୁକ୍ତ ନାନା ଜୀବନଦୃଷ୍ଟି । ଭାରତବର୍ଷ ରାଜନୀତିକ ସ୍ୱାଧୀନତା ଲାଭ କରି ତଥାପି ଯେ ଗୋଟିଏ ପରସ୍ପରସଚେତନ ଏକରାଷ୍ଟ୍ରରେ ପରିଣତ ହୋଇ ପାରୁନାହିଁ ଏବଂ ଶିକ୍ଷା ତଥା ସଭ୍ୟତାର ସଂପ୍ରସାରଣ ସଙ୍ଗେ ସଙ୍ଗେ ଏଠି ଲୋକମାନେ ଯେ ଅଧିକରୁ ଅଧିକ ପରିମାଣରେ ସ୍ଥାନୀୟ ହୋଇ ଯାଉଥିବା ପରି ବୋଧ ହେଉଛନ୍ତି, ଏଠି ସବୁ ମଣିଷଙ୍କର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବାର କ୍ଷେତ୍ରରେ ବାଧା ହୋଇ ଛିଡ଼ା ହୋଇଥିବା ଆର୍ଥିକ ଦାରିଦ୍ର୍ୟଟିକୁ କ'ଣ ସର୍ବପ୍ରଧାନ କାରଣ ବୋଲି କୁହାଯିବ ? ଆମେରିକାକୁ ଦୃଷ୍ଟି ସମକ୍ଷରେ ରଖି ଆମେ ଭାରତବର୍ଷ ସମ୍ବନ୍ଧରେ ଏହି ଦିଗରେ ହୁଏତ ଅନେକ ଅନେକ ଚର୍ଚ୍ଚା କରିପାରନ୍ତେ ।

ଯୁକ୍ତରାଜ୍ୟ ଆମେରିକା ନାମକ ଏହି ଗୋଟିଏ ଦେଶରେ ଆମକୁ ପୃଥିବୀର ପ୍ରାୟ ସବୁ ପ୍ରକାରର ଜଳବାୟୁ ଅବଶ୍ୟ ଦୃଷ୍ଟିଗୋଚର ହେବ । ଆଲାସ୍କାରେ ମେରୁବୃତ୍ତର ଜଳବାୟୁ ଏବଂ ଆରିଜୋନାରେ ମରୁଭୂମିର ଜଳବାୟୁ । ଏବଂ, ମଝିରେ କଟିବନ୍ଧର ଯାବତୀୟ ବିଭାଗ କିମ୍ବା ଉପବିଭାଗରେ ଯେତେ ଯେତେ କଳ୍ପନା କରାଯାଇ ପାରିବ, ଆମେ ସେହି ସବୁକିଛିକୁ ଏହି ଗୋଟିଏ ଦେଶରେ ହିଁ କଳ୍ପନା କରିପାରିବା । ପଶ୍ଚିମରୁ ପୂର୍ବଯାଏ ଦେଶଟା ସତେଅବା କାହାର ଏକ ବିଶାଳଗର୍ଭ ବକ୍ଷ ପରି ଏପରି ପ୍ରସାରିତ ହୋଇ ରହିଛି ଯେ, ସେଠାରେ ଏକାବେଳେକେ ଚାରିଟା ମାନକ ସମୟ ନିର୍ଦ୍ଧାରଣ କରିବାକୁ ହୋଇଛି । ଅର୍ଥାତ୍,ପଶ୍ଚିମ ଉପକୂଳର କାଲିଫର୍ଣିଆରେ ଯେତେବେଳେ ସୂର୍ଯ୍ୟୋଦୟ ହେଉଥିବ ଅର୍ଥାତ୍ ସକାଳ ଛଅଟା ବାଜିଥିବ, ସେତେବେଳେ ପୂର୍ବ ଉପକୂଳର ନିଉୟର୍କ କିମ୍ବା ୱାଶିଙ୍ଗଟନ୍‌ରେ ସୂର୍ଯ୍ୟଦେବ ଉଦୟ ହୋଇସାରି ତିନିକାତ ଉପରକୁ ଉଠି ସାରିଥିବେ ଏବଂ ବେଳ ମଧ୍ୟ ନଅଟା ହୋଇ ସାରିଥିବ । ଏହି ଅନୁସାରେ ଅଲଗା ଅଲଗା ପ୍ରକାରେ ଅଫିସ୍‌ମାନ ଖୋଲୁଥିବ, ପିଲାଏ ଇସ୍କୁଲକୁ ଯାଉଥିବେ ଓ ଇସ୍କୁଲରୁ ଆସୁଥିବେ ଏବଂ ରେଡ଼ିଓ ଓ ଦୂରଦର୍ଶନର କାର୍ଯ୍ୟକ୍ରମମାନ ଆରମ୍ଭ ଓ ଶେଷ ମଧ୍ୟ ହେଉଥିବ । ତୁମେ ଫିଲାଡ଼େଲ୍‌ଫିଆ ବିମାନ ବନ୍ଦରରୁ ଖରାବେଳେ ବାହାରି ଆକାଶମାର୍ଗରେ ଛଅଘଣ୍ଟା ରହି ସାନ୍‌ଫ୍ରାନ୍‌ସିସ୍କୋରେ ଓହ୍ଲାଇବା ବେଳକୁ ସେଠାରେ ମଧ୍ୟ ଭାରି ଖରା କାଟୁଥିବ । ମଣିଷମାନେ ବି ବିଭିନ୍ନ ଜାଗାରେ କେତେ ପ୍ରକାର ଦିଶୁଥିବେ । କୌଣସି ବଡ଼ ସହରରେ ପିଲାଙ୍କର ଗୋଟିଏ ଇସ୍କୁଲ୍ ଭିତରକୁ ପଶିଗଲେ ତୁମେ ସେଠାରେ କେତେ ବୈଚିତ୍ର୍ୟ ଦେଖିବାକୁ ପାଇଯିବ । ଚୀନା ଅଂଶ ଥିବା ପିଲାମାନେ ଆଖିଗୁଡ଼ିକୁ ମିଟି ମିଟି କରି ତୁମ ଆଡ଼କୁ ଅନାଉଥିବେ ଏବଂ ସେମାନଙ୍କର ମୁଣ୍ଡରେ ଚକଚକ କଳା ବାଳ କେଡ଼େ ବାଗର ଦେଖା ଯାଉଥିବ । ସେହି ପିଲାଏ ଦାନ୍ତ ବାହାର କରି ନହସୁଥିଲେ ମଧ୍ୟ ସେହି କଳା ବାଳ, ଚଉଡ଼ା କପାଳ ଏବଂ କେଶହୀନ ଭୂଲତାରୁ ହିଁ ସେମାନଙ୍କର ମୁହଁଟିମାନ ତୋରା ଓ ହସହସ ଦିଶୁଥିବ ।

କେତେ କଳା ପିଲା ମଧ୍ୟ ଥିବେ, ଯେଉଁମାନେ ଠିକ୍ ମୁଗୁନି ପଥରରେ ଗଢ଼ା ହୋଇ ଥିବାପରି ମନେ ହେଉଥିବେ । ସମ୍ପୂର୍ଣ୍ଣ ଜଣେ ସୁଦକ୍ଷ ଓ ଶ୍ରଦ୍ଧାବାନ୍ ଶିଳ୍ପୀ ନହେଲେ କଦାପି ଏପରି ଉଜ୍ଜ୍ୱଳ ହସହସ ମଣିଷପ୍ରତିମାଟିଏ ହୁଏତ ସମ୍ଭବ କରି ପାରିନଥାନ୍ତା । ଏତେ ପଥର, ଚକି ପଥର, ବାଲି ପଥର, ମାଙ୍କଡ଼ା ପଥର ଓ ଆହୁରି କେତେ କ'ଣ ପଥର ଥାଉ ଥାଉ ଯିଏ କଳା ମୁଗୁନି ପଥରର କଳ୍ପନା ଓ ସର୍ଜନା କରିପାରିଲା, ସିଏ ମଧ୍ୟ ସତକୁ ସତ କେଡ଼େ ଶ୍ରଦ୍ଧାବାନ୍ ଓ ସୁଦକ୍ଷ ହୋଇନଥିବ ! ସେହି ମେଳରେ ଗୋରା ପିଲାଏ ମଧ୍ୟ ରହିଥିବେ । ଚିଲା ଚିଲା ଆଖି ଆଉ କହରା କେଶବିନ୍ୟାସରେ ସେମାନେ ବି କେଡ଼େ ଅନ୍ୟ ବାଗର ମାତ୍ର ତଥାପି ବାଗର ଦେଖା ଯାଉଥିବେ । ଯଦି ତୁମର ଆଖି ଥିବ, ତେବେ ଆମେରିକାର ଯେକୌଣସି ଲୋକଗହଳି ଭିତରେ ମଧ୍ୟ ତୁମକୁ ଠିକ୍ ଏହି ବୈଚିତ୍ର୍ୟଟି ଦେଖିବାକୁ ମିଳିବ ଓ ଜୀବନର ସେହି ବଜାରଟି ତଥାପି ଗୋଟିଏ ହୋଇ ଦେଖା ଯାଉଥିବ ।

ଆମେ ପୃଥିବୀର ଏପଟେ ଯାହାକୁ ଇତିହାସ ବୋଲି ବୁଝୁ, ସେହି ଦୃଷ୍ଟିରୁ ବିଚାର କଲେ ଆମେରିକାର ହୁଏତ ଆଦୌ କୌଣସି ଇତିହାସ ନାହିଁ । ଯେଉଁ ପ୍ରାକ୍-ଐତିହାସିକ ମଣିଷମାନେ ସେବେ ସେଠାରେ ବାସ କରୁଥିଲେ, ସେମାନଙ୍କର ଏକଲକ୍ଷାଂଶ ବଂଶଧର ଏବେ ମଧ୍ୟ ସେଠାରେ ଅଛନ୍ତି । ସେମାନଙ୍କ ବିଷୟରେ ପୂର୍ଣ୍ଣ ସହାନୁଭୂତି ସହିତ ଅଧ୍ୟୟନ ଏବଂ ବ୍ୟବସ୍ଥାମାନ ହେଉଛି ସତ, ମାତ୍ର ଆମେରିକୀୟ ଜୀବନରେ ଯେଉଁମାନେ ପ୍ରତିପତ୍ତି ସହିତ ପୁରୋଭାଗରେ ଅଛନ୍ତି,ଇତିହାସ କହିଲେ ଅତ୍ୟନ୍ତ ସହଜପ୍ରେରିତ ଭାବରେ ସେମାନେ ସ୍ଥୂଳତଃ କଲମ୍ବସ୍‌ଙ୍କ ଆଗମନଠାରୁ ହିଁ ଯାବତୀୟ ପ୍ରସଙ୍ଗର ଅନ୍ଦାଜ କରନ୍ତି । ସେହି ଭୂମିରେ ପ୍ରଥମେ ଲୋହିତ ଏବଂ ଶ୍ୱେତଙ୍କ ମଧ୍ୟରେ ଯେଉଁ ମୁହାଁମୁହିଁ ହୋଇଥିଲା, ସେଥିରେ ପରିଶେଷରେ ଲୋହିତମାନେ ନାମକୁ ମାତ୍ର ରହିଥିଲେ । ଆଫ୍ରିକାରୁ ଅଣା ଯାଇଥିବା କୃଷ୍ଣକାୟମାନେ ମଧ୍ୟ ଏବଠାରୁ ମୋଟେ ଦେଢ଼ଶହ ବର୍ଷ ପୂର୍ବ ପର୍ଯ୍ୟନ୍ତ ପ୍ରମୁଖ ବର୍ଗଟି ହାତରେ କେତେଭଳି ଲାଞ୍ଛିତ ଓ ନିର୍ଯ୍ୟାତିତ ହୋଇଛନ୍ତି । ଏବେ ମଧ୍ୟ ଦୃଶ୍ୟ ଓ ଅଦୃଶ୍ୟ ବହୁ ଦୂରତା ସେମାନଙ୍କ ମଧ୍ୟରେ ରହିଛି । ତଥାପି, ସେଠାରେ ଗୋଟିଏ ଦେଶ,ଗୋଟିଏ ସଂହତି ଏବଂ ଗୋଟିଏ ରାଷ୍ଟ୍ରଭାବନା କିପରି ସମ୍ଭବ ହୋଇ ପାରିଛି ? ଅନୁରୂପ ଉଦ୍ୟମ ସହିତ ସେହି ସଂହତିଟି ସମ୍ଭବ ହେଉନଥିଲେ ଆମେରିକା ଆପଣାକୁ ବୃହତ୍ତର ପୃଥ୍ୱୀଟିରେ କିପରି ଗୋଟିଏ ବୋଲି ପରିଚିତ କରାଉଥାନ୍ତା ?

ବିଗତ ଶତାବ୍ଦୀମାନଙ୍କରେ ମଝିରେ କେତେ ବର୍ଷ ଆମେରିକା ଏକ ରାଷ୍ଟ୍ର ହିସାବରେ ନିଜକୁ ଅବଶିଷ୍ଟ ଏହି ବୃହତ୍ତର ପୃଥିବୀରୁ ନାନାଭାବେ ଅଲଗା କରି ରଖିଥିଲା । ବିଶେଷତଃ ଇଉରୋପର ଦାଉରୁ ନିଜକୁ ବଞ୍ଚାଇ ରଖିବ ବୋଲି ଏପରି ଏକୁଟିଆ ହୋଇ ରହିବାର ପନ୍ଥା ଅବଲମ୍ବନ କରିଥିଲା କି ? ଆମେ ଏପଟେ ଆମ କଥା ଆପେ ବୁଝିବୁ, ଇଉରୋପର ଆମ ଏପାଖକୁ ଆସି ନଡ଼ବଡ଼ ହେବାର କୌଣସି ପ୍ରୟୋଜନ ନାହିଁ,- ନିଜକୁ ସେହି ପଶ୍ଚିମ ଗୋଲାର୍ଦ୍ଧରେ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ଦୃଢ଼ ପ୍ରତିଷ୍ଠିତ କରାଇବାକୁ ହୁଏତ ଆମେରିକାର ରାଷ୍ଟ୍ରଜ୍ଞମାନେ ଏଭଳି ଏକ କୂଟନୀତିର ମାର୍ଗକୁ ଗ୍ରହଣକରି ନେଇଥିଲେ । ଯାହାସବୁ ଝଡ଼ ହେବାର କଥା, ତାହା ସେଇପଟେ ହେଉଥାଉ, ମାତ୍ର ଏପାଖରେ ଆମେରିକାର ଛାଇଟା ପୂରା ସ୍ଥଳଭାଗଟାକୁ ଆକ୍ରାନ୍ତ କରି ରଖିଥାଉ, ସେତେବେଳେ ତାହାହିଁ ଯୁକ୍ତରାଜ୍ୟ ଆମେରିକାର ସମ୍ପୂର୍ଣ୍ଣ ମତଲବ ହୋଇ ରହିଥିଲା । ମଧ୍ୟ ଓ ଦକ୍ଷିଣ ଆମେରିକାରେ ସେତେବେଳ ପରି ଇହାଦେ ମଧ୍ୟ ଅଧଡ଼ଜନେ ସାନବଡ଼ ଦେଶ ରହିଛନ୍ତି । ଏହିସବୁ ଦେଶରେ ଖଣିଜ ଓ ପ୍ରାକୃତିକ ସମ୍ପଦ ଭରି ରହିଛି । ଆମେଜନ ଭଳି ନଦୀ-ଅବବାହିକା ରହିଛି । ଅରଣ୍ୟ ଓ ତୃଣଭୂମି ବିସ୍ତୃତ ହୋଇ ରହିଛି । ସେଠାରେ ବାସ କରୁଥିବା ଲୋକେ ଏକଦା ଏହି ଅଞ୍ଚଳଟିକୁ ସ୍ପେନ୍ ଏବଂ ପର୍ତ୍ତୁଗାଲ୍‌ରୁ ଆସିଥିଲେ, ଲୋହିତ ମୂଳବାସିନ୍ଦାଙ୍କୁ ନିପାତ କରି ସେଠାରେ ମାଲିକ ହୋଇଥିଲେ । ସେସବୁ ଦେଶରେ ଏବେ ମଧ୍ୟ ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ଭାଷା ହିଁ ଚଳୁଛି । ମାତ୍ର, ରାଜନୀତିକ ତଥା ଅର୍ଥନୈତିକ ଯାବତୀୟ ନିଷ୍ପତ୍ତି-

ନିର୍ଦ୍ଧାରଣରେ ସେମାନଙ୍କୁ ଆମେରିକା ହିଁ ଶାସନ କରୁଛି । ଆମେରିକାରୁ ବହୁଦେଶୀୟ ବଡ଼ କୋମ୍ପାନୀମାନେ ଯାଇ ସେହିସବୁ ଦେଶରେ ଯାବତୀୟ ଅର୍ଥନୈତିକ ମୀମାଂସାରେ ପ୍ରକୃତ ନିଷ୍ପତ୍ତିମାନ କରୁଛନ୍ତି । କେଉଁଠି କି ଫସଲ ହେବ ବା ନହେବ, ତାହାର ନିର୍ଣ୍ଣୟ ଦେଶବାସୀ ନୁହନ୍ତି, ଆମେରିକୀୟ କୋମ୍ପାନୀମାନେ ହିଁ କରୁଛନ୍ତି ।

ଉଦାହରଣ ସ୍ୱରୂପ, ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜରେ ଜାମାଇକା ଦ୍ୱୀପର ବ୍ଲୁ ମାଉଣ୍ଟେନ୍ ଅଞ୍ଚଳରେ ହିଁ ପୃଥିବୀର ସବୁଠାରୁ ଉତ୍କୃଷ୍ଟ କିସମର କଫି ହୁଏ ବୋଲି କଫିଜଗତର ତଦ୍‌ବିଦ୍‌ମାନେ ମତ ଦିଅନ୍ତି । ସେଠାରେ କଫି-ଉଦ୍ୟାନ ମାନଙ୍କରେ କାମ କରୁଥିବା ଶ୍ରମିକମାନେ ହୁଏତ ଜୀବନରେ କେବେହେଲେ ସେହି କଫିର ସ୍ୱାଦକୁ ଚାଖି ପାରନ୍ତିନାହିଁ । ସେମାନେ ନିଜର ଶ୍ରମ ଦେଇ ସବୁଠାରୁ ଭଲ ଯେଉଁ କଫିର ଉତ୍ପାଦନ କରନ୍ତି, ତାହାକୁ ସ୍ୱୟଂ କ୍ରୟ କରି ବ୍ୟବହାର କରିବାର ଆର୍ଥିକ ସାମର୍ଥ୍ୟ ହିଁ ସେମାନଙ୍କର ନଥାଏ । କଫି ଆମେରିକା ଚାଲିଯାଏ ତାହାକୁ ପ୍ରକୃତରେ କିଣିବାର ସାମର୍ଥ୍ୟ ଥିବା ଗରାହକମାନଙ୍କ ସକାଶେ । ଏହି ସନ୍ଦର୍ଭରେ ଆମେ କିଉବା ଦ୍ୱୀପର ଦୃଷ୍ଟାନ୍ତ ମଧ୍ୟ ନେଇପାରିବା । କିଉବାରେ ଗତ କେତେ ଶତାବ୍ଦୀ ଧରି ଆମେରିକାର କୋମ୍ପାନୀମାନେ ଆଖୁ ଓ ଧୂଆଁପତ୍ର ହିଁ ଚାଷ କରାଉଥିଲେ । ଏସବୁ ପଣ୍ୟ ଆମେରିକାକୁ ଚିନି ଓ ତମାଖୁ ଯୋଗାଇବାକୁ ଯାଉଥିଲା । କିଉବାର ରାଜଧାନୀ ହାଭାନାର ନାମ ଅନୁସାରେ ହାଭାନା ଚୁରୁଟ ପୃଥିବୀରେ ସର୍ବପ୍ରସିଦ୍ଧ ଥିଲା । ଆମର ଖାଇବା ପାଇଁ ଆଗ ଗହମ ଦରକାର, ଆମେ ଗହମ ଚାଷ କରିବୁ ଆମେରିକାର ଧନୀମାନଙ୍କର ଚାହିଦା ପୂରଣ କରିବାକୁ ଆଦୌ ଆଖୁ ଓ ଧୂଆଁପତ୍ର ଚାଷ କରିବାକୁ ବାଧ୍ୟ ହେବୁନାହିଁ, ଏତିକି କଥା ସଳଖ ଭାବରେ କହିପାରିଲେ ବୋଲି କିଉବାବାସୀ ଶ୍ରୀଯୁକ୍ତ ଫିଏଡ଼େଲ୍ କାଷ୍ଟ୍ରୋଙ୍କର ନେତୃତ୍ୱକୁ ଗ୍ରହଣ କଲେ ଓ ଏକ ତୁମୁଳ ପରିବର୍ତ୍ତନ ହୋଇ କୋମ୍ପାନୀମାନଙ୍କର ଆଧିପତ୍ୟ ଭାଙ୍ଗି ଯାଇଥିଲା । ସେହି ଦିନଠାରୁ ସବୁମନ୍ତେ ସ୍ୱାଧୀନ ହୋଇଥିବା ଏହି କିଉବା ହିଁ ଆମେରିକାର ଆଖିରେ ସବୁଠାରୁ ବଡ଼ ଭୂତ ହୋଇ ରହିଛି ଓ ତା' ଲାଗି ବହୁ ଶିରଃପୀଡ଼ାର କାରଣ ହେଉଛି । ରାଜନୀତିର କ୍ଷେତ୍ରରେ ମଧ୍ୟ ସମଗ୍ର ମଧ୍ୟ ଓ ଦକ୍ଷିଣ ଆମେରିକା ଯୁକ୍ତରାଜ୍ୟ ନାମକ ଅଭିଭାବକର ହସ୍ତମୁଦି ମାହାଲ ହୋଇ ରହିଛି ।

ସେହିସବୁ ଦେଶରେ କେଉଁ ଦଳ ବା କେଉଁମାନେ ଶାସନକ୍ଷମତାରେ ରହିବେ ବା ନରହିବେ, ସେକଥାଟି ମଧ୍ୟ ପରମ୍ପରା କ୍ରମେ ସେହି ଯୁକ୍ତରାଜ୍ୟର ଏକ ସୁନିଶ୍ଚିତ ଶିରଃପୀଡ଼ା ହୋଇ ରହିଛି । ଯୁକ୍ତରାଜ୍ୟ ହିଁ ପୃଥିବୀର ଏକ ବୃହଦ୍‌ଶକ୍ତି ହିସାବରେ ତାହାରି ବିଷୟରେ ପୃଥିବୀର ସମ୍ବାଦପତ୍ର ମାନଙ୍କରେ ଯାହାକିଛି ସମ୍ବାଦ ପ୍ରକାଶ ପାଇଥାଏ । ଅନେକ ସମୟରେ ମନେହୁଏ, ପୃଥିବୀର ସେହି ପାଖଟାରେ ସତେଯେପରି ଆଦୌ କେଉଁଠି କିଛିହେଲେ ଘଟେନାହିଁ । ଯୁକ୍ତରାଜ୍ୟର ବଳବାନ୍ ଗୋଇନ୍ଦା ବିଭାଗ ପୃଥିବୀଯାକ ଯାହା କରେ, ସେହି ଅଞ୍ଚଳଟାରେ ପ୍ରାୟ ପଚିଶିଗୁଣ ସିଦ୍ଧହସ୍ତ ଭାବରେ ହିଁ ତାହା କରିଥାଏ ।

ସେହିସବୁ ଦେଶରେ ରାଜନୀତିକ ହତ୍ୟାମାନ ପ୍ରାୟ ନିତ୍ୟନୈମିତ୍ତିକ ଘଟଣା ହୋଇ ରହିଥାଏ ଓ ସେଗୁଡ଼ିକ ପଛରେ ପ୍ରାୟ ପ୍ରତ୍ୟେକଟିର କ୍ଷେତ୍ରରେ ସେହି ଗୋଇନ୍ଦା ପ୍ରତିଷ୍ଠାନଟିର ହାତ ରହିଥାଏ । ସେସବୁ ଦେଶରେ ମଝିରେ ମଝିରେ ନିର୍ବାଚନମାନ ମଧ ହୁଏ, ମାତ୍ର ସବୁ ନିର୍ବାଚନରେ ଯୁକ୍ତରାଜ୍ୟର ଗୋଇନ୍ଦା ବିଭାଗଟା ହିଁ କାରପଟଦାର ହୋଇ ରହିଥାଏ ଏବଂ ମଙ୍ଗ ମୋଡ଼ିବାରେ ଲାଗିଥାଏ । କଲମ୍ବିଆ ଓ ଭେନେଜୁଏଲା ପ୍ରଭୃତି ଦେଶରେ ସେହି ଦୁଇ ଦେଶର ପ୍ରତିଷ୍ଠିତ ସରକାର ମାନଙ୍କର ପ୍ରାୟ ସମାନ୍ତର ଭାବରେ ମାଫିଆମାନେ କାର୍ଯ୍ୟ କରିଥାନ୍ତି ଏବଂ ସେହି ମାଫିଆ ଅକୀର୍ତ୍ତିଗୁଡ଼ିକ ପଛରେ ଆମେରିକୀୟ ଗୋଇନ୍ଦା ସଂଗଠନଟିର ଅସୁରୁଣୀହାତଟା ଅନୁକ୍ଷଣ ଅବଶ୍ୟ ରହିଥାଏ । ସମ୍ପୃକ୍ତ ସରକାରମାନେ ଯେତେ ଚେଷ୍ଟା କଲେ ମଧ ମାଫିଆଦଳଙ୍କୁ ସାମନା କରି ପାରନ୍ତିନାହିଁ ।

ଲୋକମୁଖରେ ସମଗ୍ର ପୃଥିବୀଯାକ ଆମେରିକା କହିଲେ ସାଧାରଣତଃ ଯେ କେବଳ ସେହି ଗୋଟିଏ ଦେଶ ଯୁକ୍ତରାଜ୍ୟକୁ ହିଁ ବୁଝାଇଥାଏ, ସମ୍ଭବତଃ ଏହିପରି ଭାବରେ ହିଁ ତାହାର ଏକ କାରଣର ଅନୁମାନ କରାଯାଇ ପାରିବ । ଅନ୍ୟ ଦେଶଗୁଡ଼ିକର ଯେପରି ଆଦୌ କୌଣସି ଅସ୍ତିତ୍ୱ ନାହିଁ ଏବଂ ସବୁଯାକ ରଜ୍ଜୁକୁ ନିଜ ହାତରେ ଧରି ସେହି ଗୋଟିଏ ଦେଶ ହିଁ ସମସ୍ତଙ୍କୁ ମୃଗୀ ପରି ନଚାଇବାରେ ଏବଂ ଅଡ଼ାଇବାରେ ହିଁ ଲାଗିଛି । ଗୋଟିଏ ଗୋଟିଏ ଜନସମୂହ ହିସାବରେ ଅନ୍ୟ ସେହିସବୁ ଦେଶ ଆର୍ଥିକ ଓ ରାଜନୀତିକ ବିକାଶର ଏକ ଅତିପଛ ଗାରରେ ଯାଇ ରହିଛନ୍ତି । ସେମାନଙ୍କ ତୁଳନାରେ ଆମେରିକା ଯାଇ କେତେ ଆଗରେ ରହିଛି ଓ ସେମାନେ ସତେଅବା ସେହି ଗାରଗୁଡ଼ିକୁ ମାନି ନେବାପାଇଁ ବାଧ ହେଉଛନ୍ତି । ଯେଉଁ ଦେଶରେ କୌଣସି ପ୍ରକୃତ ପରିବର୍ତ୍ତନ ନିମନ୍ତେ କିଛି ଉଦ୍‌ବେଳନ ଘଟୁଛି ଏବଂ ଅନ୍ୟ ପ୍ରକାରର ନେତୃତ୍ୱଟିଏ ଗୋଡ଼ କାଢ଼ି କିଛି କରିବ ବୋଲି ବାହାରୁଛି, ଯୁକ୍ତରାଜ୍ୟ ତାହାର ପଥରୋଧ କରିବାପାଇଁ ଯାଇ ପହଞ୍ଚି ଯାଉଛି । ଅଳ୍ପ କେତେବର୍ଷ ପୂର୍ବେ ଦକ୍ଷିଣ ଆମେରିକାର ଚିଲି ନାମକ ଦେଶରେ ହୁଏତ ଠିକ୍ ସେହିପରି କଥାଟିଏ ଘଟିଲା । ଜାତୀୟ ନିର୍ବାଚନରେ ଏପରି ଏକ ରାଜନୀତିକ ଦଳ ଜୟଲାଭ କରି କ୍ଷମତାକୁ ଆସିଲା, ଯାହାକି ଯୁକ୍ତରାଜ୍ୟ ଆମେରିକାର ସରକାରଙ୍କ ଗୋଡ଼ାଣିଆ ନଥିଲା । ବହୁତ ଅଧିକ ସଂଖ୍ୟାରେ ଲୋକସମର୍ଥନ ପାଇ ସେହି ଦଳ ସରକାର ଗଠନ କଲା । ଏବଂ, ସେହି ଦେଶର ଦୀର୍ଘ ଇତିହାସରେ ଅଭୂତପୂର୍ବ ହୋଇ ରହିଥିବା ପରିବର୍ତ୍ତନମାନ ଆଣିବାକୁ ଆରମ୍ଭ କଲା । ପୃଥିବୀର ଖାଲି ସେହି ଗୋଟିଏ ଖଣ୍ଡରେ ନୁହେଁ, ସମଗ୍ର ପୃଥିବୀରେ ଚହଳ ପଡ଼ିଗଲା । ଚିଲିର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀମାନଙ୍କୁ ନେଇ ଯୁକ୍ତରାଜ୍ୟ ଆମେରିକା ତତ୍ପର ହୋଇ ଉଠିଲା । ପ୍ରମାଦ ଗଣିଲା ।

ଚିଲିର ନୂଆ ରାଷ୍ଟ୍ରପତି ନିହତ ହେଲେ । ତାଙ୍କୁ ନିମିତ୍ତ କରି ସମଗ୍ର ଦକ୍ଷିଣ ଏବଂ ମଧ ଆମେରିକାର ଦେଶମାନଙ୍କରେ ଯେଉଁ ନୂତନ ଆଶାର ମୁକୁଳଟିଏ କଅଁଳି ଆସୁଥିଲା, ତାହାକୁ ଅତ୍ୟନ୍ତ ସୁପ୍ରଯୋଜିତ ଭାବରେ ମୋଡ଼ି ଫୋପାଡ଼ ଦିଆଗଲା । ଯୁକ୍ତରାଜ୍ୟ

ଆମେରିକାର ମନକୁ ନପାଇଲା ଭଳି କୌଣସି ସରକାର ବହୁମତ ଲାଭ କରି କ୍ଷମତାକୁ ଆସିବାର ସୂଚନା ମିଳିଲେ ତାହା ଉପରେ ଯେ କମୁନିଷ୍ଟ ବୋଲି ଗୋଟାଏ ମାର୍କା ନେଇ ଝୁଲାଇ ଦିଆଯିବ, ଏବେ ମଧ୍ୟ ଆମେରିକା ସରକାର ସେହିପରି ଏକ ଭୟ ଦ୍ୱାରା ପରିଚାଳିତ ହେଉଛନ୍ତି । କିଉବାରେ କମୁନିଷ୍ଟ ପତାକା ସହିତ ଶ୍ରୀଯୁକ୍ତ କାଷ୍ଟ୍ରୋ କ୍ଷମତାକୁ ଆସିବାପରେ ଯୁକ୍ତରାଜ୍ୟର ସରକାର ସତେଅବା ଆଉ ମୋଟେ ଶାନ୍ତିରେ ଶୋଇ ପାରିନାହାନ୍ତି । ସେହି ସରକାରକୁ ମୂଳ ସହିତ ତାଡ଼ି ଦେବାଲାଗି କେତେ କେତେ ଫିକର କରିଛନ୍ତି । ଆମେରିକାର ରାଷ୍ଟ୍ରପତି କେତେ ଆସିଲେଣି ଏବଂ କେତେ ଗଲେଣି, ତଥାପି କାଷ୍ଟ୍ରୋ ରହିଛନ୍ତି । ପୂର୍ବ ଇଉରୋପରୁ କମୁନିଷ୍ଟ ଦଳର ଆଧିପତ୍ୟ ଭୁଷୁଡ଼ି ପଡ଼ିଲାଣି, ତଥାପି କାଷ୍ଟ୍ରୋ ଯେ କାହିଁକି ରହି ପାରିଛନ୍ତି, ଭୂତ ଭୟରେ ସତ୍ୟଗୁଡ଼ାକୁ ଦେଖି ପାରୁନଥିବା ଆମେରିକା ଏବେ ମଧ୍ୟ ଅଲଗା ପ୍ରକାରେ ଦେଖିବାକୁ ନିଜକୁ ମୋଟେ ସମ୍ମତ କରାଇ ପାରୁନାହିଁ । ଚୀନ୍ ପରି ନିଦା କମୁନିଷ୍ଟ ଦେଶ ସହିତ ବନ୍ଧୁ ବାନ୍ଧିବାକୁ ମନ କରୁଛି ପଛକେ, କିଉବା ବେଲକୁ ମୋଟେ ସାହସ କରି ପାରୁନାହିଁ । ଚୀନ୍ ତ ବହୁ ଦୂରରେ, ତେଣୁ ଚୀନ୍ ବିଷୟରେ ଚିନ୍ତା ନକଲେ ମଧ୍ୟ ଅଲବତ ଚଳିବ । ମାତ୍ର, ଦକ୍ଷିଣକୁ ଅନାଇଦେବା ମାତ୍ରକେ ଏଡ଼େ ଟିକିଏ ଟାପୁ କିଉବା, ସେଠାରେ ଆମ ପରତେ ନଯାଉଥିବା ଶାସନଟାଏ ରହିଥିବା ପର୍ଯ୍ୟନ୍ତ ଆମେରିକା କଦାପି ନିଶ୍ଚିନ୍ତ ରହିପାରିବ ନାହିଁ । ୧୯୬୨ ମସିହାରେ ଯେତେବେଳେ କିଉବା ଉପରେ ଆମେରିକାର ଆକ୍ରମଣାତ୍ମକ ପଦକ୍ଷେପର ଜବାବରେ କମୁନିଷ୍ଟ ରୁଷିଆ କିଉବାର ପକ୍ଷ ନେଇ ରଣବେଳା ପ୍ରେରଣ କଲା, ସେତେବେଳେ ସତେଅବା କ'ଣ ନା କ'ଣ ଆଶଙ୍କା କରି ପୃଥିବୀଯାକର ମଣିଷ ଅଣନିଃଶ୍ୱାସୀ ହୋଇ ଅନାଇ ରହିଥିଲେ । ରୁଷିଆର ରଣତରୀମାନେ ଆଟଲାଣ୍ଟିକ୍ ମହାସାଗରରେ ଅଗ୍ରସର ହେଉଥାନ୍ତି ଓ ଆମେରିକା ପକ୍ଷ ସେମାନଙ୍କର ମୁକାବିଲା କରିବା ଲାଗି ସଜ୍ଜିତ ହୋଇ ରହିଥାଏ । ଅନ୍ତତଃ ଗୋଟାଏ ପକ୍ଷକୁ ବିବେକ ଛୁଇଁଲା ଏବଂ ରୁଷିଆ ପ୍ରାୟ ଶେଷ ମୁହୂର୍ତ୍ତରେ ଭେଳାଟିକୁ ଫେରାଇନେଲା । ସମସ୍ତେ ଆଶ୍ୱସ୍ତ ହେଲେ । ଆମେରିକାର ରାଷ୍ଟ୍ରମୂର୍ତ୍ତି ଜନ୍ କେନେଡ଼ି କହିଲେ ଯେ ରୁଷିଆ ହାରିଲା ଓ ଆମେରିକାର ଜିତାପଟ୍ ହେଲା । ଏବଂ, ରୁଷିଆ ତରଫରୁ ନିକିତା କୃଶ୍ଚଫ୍ କହିଥିଲେ ଯେ ପ୍ରକୃତରେ ମନୁଷ୍ୟଜାତିର ବିବେକ ହିଁ ଜୟଲାଭ କଲା ଏବଂ ଅବିବେକ ହାରିଗଲା । ଆମେରିକାକୁ ଯଦି ଗୋଟାଏ ବାଘ ପରି କଳ୍ପନା କରାଯାଏ, ତେବେ କିଉବା ହୁଏତ ତା'ର କଟା ଲାଙ୍ଗୁଡ଼ଟିଏ ବି ହେବନାହିଁ । ତଥାପି ଆମେରିକା କିଉବା ସହିତ ଏବେ ବି ଖୁରି ଖାଇବାରେ ଲାଗିଛି । ଆମେରିକା କିଉବାକୁ ଭାରି ଡ଼ରୁଛି ।

ନିଜକୁ ବହୁବର୍ଷ ଧରି ବହୁ ବିଶ୍ୱମଞ୍ଚନରୁ ଅଲଗା କରି ରଖିଆସିଛି ବୋଲି ଆମେରିକା ବିଶ୍ୱକୁ ଏତେ ଭୟ କରୁଛି କି ? ଯିଏ ତା'ପକ୍ଷରେ ଗୋଟାସୁଦ୍ଧା କଥାମାନି ବା ପୋଷା ମାନି ରହିଲା, ସମ୍ଭବତଃ କେବଳ ତାହାରି ଉପରେ ଆମେରିକାର ବିଶ୍ୱାସ ହେଉଛି ।

ଗଣତନ୍ତ୍ରରେ ଏତେ ଏତେ ଶତାବ୍ଦୀ ଧରି ନିଜ ଘରଟିକୁ ଚଳାଇ ଆସିଥିବା ନିଜ ଗୃହର ସୀମା ବାହାରେ ବହୁତ ସମୟରେ ଏତେ ଅଧିକ ପରିମାଣରେ ଭୟ ସଚେତନ ଭାବରେ ଆଚରଣ ଦେଖାଇଥାଏ, ମନେହୁଏ ସେହି କ୍ଷେତ୍ରରେ ଅସଲ ସାବାଳକତା ଅର୍ଜନ କରିବାରେ ପ୍ରକୃତରେ କୌଣସି ବାଧା ବା ବିଡ଼ମ୍ବନା ରହିଗଲା କି ? ଏଡ଼େ ବଡ଼ ବିଭବଶାଳୀ ଗୋଟାଏ ଦେଶ, ଏତେ ଶିକ୍ଷା ଓ ସଭ୍ୟତା, ଅବଶିଷ୍ଟ ପୃଥିବୀର ଅନ୍ଦାଜଗୁଡ଼ାକୁ ପ୍ରାୟ ଅବାକ୍ କରି ପକାଉଥିବା ଏତେଏତେ ସମ୍ପନ୍ନତା,-ତଥାପି ସତେଅବା ଅତି କମ୍ ଅଭିଜ୍ଞତା ଏବଂ ଆତ୍ମପ୍ରତ୍ୟୟ ରହିଥିବା ଗୋଟାଏ ନିହାତି ଡ଼ରକୁଳା ପିଲା କୋଉଠି ଭିତରେ ରହି ତାକୁ ସର୍ବଦା ଭାରି ସଂଶୟୀ କରି ରଖିଛି । ପୃଥିବୀର କେତେ ଦେଶକୁ ଆମେରିକା କୋଟି କୋଟି ପରିମାଣରେ କେତେ ସାହାଯ୍ୟ ଦେଉଛି, ପୃଥିବୀରୁ କ୍ଷୁଧା, ଅଶିକ୍ଷା ଓ ଅସହାୟତା ଦୂର କରିବାରେ ତା' ନିଜ ଘରୁ କେତେ ଯୋଜନା ପ୍ରାୟ ପୃଥିବୀଯାକ ଜାଲ ବିସ୍ତାରି ରହିଛି । ପୃଥିବୀର କେତେ କେତେ ଦେଶକୁ ଆମେରିକା ସାମରିକ ଚୁକ୍ତିମାନଙ୍କରେ ବାନ୍ଧି ରଖିଛି ଏବଂ, ଯେପରି କେହି କୌଣସି ପ୍ରକାରେ ରୁଷ୍ଟ ହୋଇ ମେଣ୍ଢ ଭିତରୁ ବାହାରି ଯିବାକୁ ଇଚ୍ଛା କରିବେନାହିଁ, ସେଥିଲାଗି ନାନା ଭାବରେ ଭାତିଆ ଯୋଗାଇ ଦେଉଛି । ନିଜର ତଥାକଥିତ ମିତ୍ରରାଷ୍ଟ୍ରମାନଙ୍କ ଲାଗି କେଡ଼େ ଉଦାର ଭାବରେ ନିଜର ଭଣ୍ଡାରକୁ ଖୋଲି ରଖିଛି । ତଥାପି ଡ଼ରୁଛି, ସନ୍ଦେହ କରୁଛି, ଗୋଇନ୍ଦା ଲଗାଉଛି । ସମଗ୍ର ପୃଥିବୀ ଏକ ସତକୁ ସତ ସକ୍ରିୟ ବିରାଦରୀ ଆଡ଼କୁ ଯିବ ବୋଲି ସଜ ହେଉଥିବା ସମୟରେ ପୃଥିବୀର ସବୁଠାରୁ ଅଧିକ ସମ୍ବଳବାନ୍ ଏବଂ ଅସ୍ତ୍ରସଜ୍ଜିତ ଦେଶଟା କାହିଁକି ଯେ ଏତେ ହାସ୍ୟାସ୍ପଦ ଭାବରେ ଆତ୍ମସଚେତନ ହୋଇ ପ୍ରାୟ ଗୋଟାସୁଦ୍ଧା ଖାଲି ନିଜର ନିରାପତ୍ତା ବିଷୟରେ ଭାବୁଛି, ସେହି କଥାଟି ପ୍ରକୃତରେ ଭାରି ଆଚମ୍ବିତ କରାଇ ଦେଇଥାଏ । ଯେକୌଣସି ଗାଆଁରେ ସବୁଠାରୁ ମୋଟା ଯେଉଁ ସାଆନ୍ତ, ଯଦି ସିଏ ସତକୁ ସତ ଗାଆଁର ଆଉ କାହାକୁ ନଦେଖି କେବଳ ନିଜକୁ ହିଁ ଦେଖୁଥିବେ ଓ ନିଜର ଦର୍ପଣଟା ଉପରେ ଗାଆଁଟାଯାକର ଆକଳନ କରୁଥିବେ, ତେବେ ସେହି ଗାଆଁର ଭାଗ୍ୟଟାକୁ ପ୍ରକୃତରେ ମନ୍ଦ ବୋଲି କୁହାଯିବ ।

ବିଶ୍ବର ଯାବତୀୟ ଉଦ୍‌ବେଳନକୁ ଆମେରିକା ପ୍ରାୟ ଦୂରରୁ ଥାଇ ଏକ ସଂଶୟାତ୍ମାର ନଜରରେ ଦେଖିଲା ଓ ନିଜର ଗୋଲାର୍ଦ୍ଧଟିରେ ସମସ୍ତଙ୍କ ଉପରେ ସରବରାକାର ହୋଇ ରହିଲା, ଏହାକୁ କେବଳ ଆମେରିକା ସକାଶେ ନୁହେଁ, ପୃଥିବୀର ଆମ ସମସ୍ତଙ୍କ ସକାଶେ ମଧ୍ୟ ଦୁର୍ଭାଗ୍ୟ ବୋଲି କୁହାଯାଇ ପାରିବ । ପୃଥିବୀକୁ ଗଣତନ୍ତ୍ର ଓ ଲୋକୋଦୟ ଆଡ଼କୁ ପରିଚାଳିତ କରି ନେଇଯିବାରେ ଆମେରିକା ସମଗ୍ର ମାନବଜାତି ଲାଗି ଜଣେ ବନ୍ଧୁରୂପେ କାର୍ଯ୍ୟ କରି ପାରିଥାନ୍ତା । ଦ୍ୱିତୀୟ ମହାଯୁଦ୍ଧ ପରେ ଯେତେବେଳେ ଉପନିବେଶମାନେ ରାଜନୀତିକ ସ୍ୱାଧୀନତା ଲାଭ କଲେ ଏବଂ ଔପନିବେଶିକ ଦାସତ୍ୱ ମଧ୍ୟରୁ ମୁକୁଳି ଆସିଲେ, ନିଜ ବିବର୍ତ୍ତନ ଏବଂ ବିକାଶର ପରବର୍ତ୍ତୀ ସୋପାନଗୁଡ଼ିକରେ

ନିର୍ଭରଯୋଗ୍ୟ ଭାବରେ ପାଦ ରଖି ପାରିବାକୁ ସେମାନେ ଆମେରିକା ଆଡ଼କୁ ହିଁ ସବାଆଗ ବହୁ ଆଶାରେ ଅନାଉଥିଲେ, ଆମେରିକା ହିଁ ସେମାନଙ୍କ ଲାଗି ପ୍ରକୃତ ସୋଦର ହେବ ବୋଲି ଅପେକ୍ଷା ରଖିଥିଲେ । ପ୍ରାୟ ଏକ ସମାନ କାରଣରୁ ହିଁ ଆମେରିକା ସେହି ଭୂମିକାଟିକୁ ଗ୍ରହଣ କରି ପାରିଲାନାହିଁ । ଉପନିବେଶ ଗୁଡ଼ିକରୁ ପ୍ରତ୍ୟାଖ୍ୟାତ ହୋଇ ଆସିଥିବା ଇଉରୋପୀୟ ଦେଶଗୁଡ଼ିକର ସେହି ଭୂମିକାଟିକୁ ଗ୍ରହଣ କରିବାଲାଗି ସେତେବେଳେ କୌଣସି ମୁହଁ ନଥିଲା, ଅଣ୍ଟାରେ କୌଣସି ତାକତ ମଧ ନଥିଲା । ଏକଦା ଆମେରିକା ମଧ ଫିଲିପାଇନ୍ ଦ୍ୱୀପପୁଞ୍ଜରେ ଔପନିବେଶିକ ଶାସନ ହୋଇ ରହିଥିଲା, ମାତ୍ର ଅଚିରେ ଭଲ ବୁଦ୍ଧି ହେବାରୁ ନିଜକୁ ସେଥିରୁ ମୁକ୍ତ ବି କରି ଆଣିଥିଲା । ଆମେରିକା ହିଁ ପ୍ରଧାନତଃ ସେହି କାରଣରୁ ସଦ୍ୟମୁକ୍ତ ନୂତନ ପୃଥିବୀର ନେତୃତ୍ୱ ନେଇଥାନ୍ତା ଓ ସମ୍ପୃକ୍ତ ସେମାନଙ୍କର ପ୍ରତ୍ୟୟଭାଜନ ହୋଇଥାଆନ୍ତା । ଏକ ରାଷ୍ଟ୍ର ହିସାବରେ ଆମେରିକା ନିଜର ସେହି ଭୂମିକାଟିକୁ ହାତଛଡ଼ା କରି ଦେଇଥିଲା ଏବଂ ତୃତୀୟ ବିଶ୍ୱର ଅଧିବାସୀଙ୍କୁ ସତେଅବା ନିରାଶ କରି ଦେଇଥିଲା । ରାଜନୀତିକ ମୁକ୍ତି ପରେ ପ୍ରତ୍ୟେକ ନବସ୍ୱାଧୀନ ଦେଶ ଓ ସମୂହର ପରବର୍ତ୍ତୀ କାର୍ଯ୍ୟକ୍ରମ ଥିଲା ଏକ ନୂତନ ଢ଼ାଞ୍ଚାରେ ଓ ଦେଶର ସବୁ ମଣିଷଙ୍କୁ ସ୍ୱୀକୃତି ଦେଇ ଆବଶ୍ୟକ ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନଟିକୁ ସମ୍ଭବ କରିବା । ସେଥିରେ ସମ୍ପୃକ୍ତ ଦେଶମାନଙ୍କରେ ପୁରାତନ ନ୍ୟସ୍ତସ୍ୱାର୍ଥ ଗୁଡ଼ିକ ବାଧା ଦେଉଥିଲେ । ସେତେବେଳର ଇତିହାସ ଆଡ଼କୁ ଦୃଷ୍ଟିପାତ କଲେ ଜଣାଯିବ ଯେ ଆମେରିକାର ରାଷ୍ଟ୍ର ସେହି ସମୟରେ ଅଧିକାଂଶତଃ ପୁରାତନ, ପରିବର୍ତ୍ତନ-ବିରୋଧୀ ନ୍ୟସ୍ତସ୍ୱାର୍ଥ ଗୁଡ଼ିକର ହିଁ ପକ୍ଷ ଗ୍ରହଣ କରିଥିଲା ।

ଆମେରିକା ଡ଼ରୁଥିଲା, ତେଣୁ ଯୁଦ୍ଧପରବର୍ତ୍ତୀ ପୃଥିବୀର ସବୁଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାଟି ସ୍ୱରୂପ ନୂଆ ହୋଇ ଜନ୍ମଲାଭ କରିଥିବା ଏହି ନୂଆ ପୃଥିବୀର ପ୍ରୟୋଜନଟିକୁ ସିଏ ଆଦୌ ବୁଝି ପାରିନଥିଲା । ସେମାନେ ଯେ ପ୍ରାୟ ସମସ୍ତେ ନେତୃତ୍ୱ ପାଇଁ, ମାର୍ଗଦର୍ଶନ ପାଇଁ ତା' ଆଡ଼କୁ ଅନାଇ ରହିଥିଲେ, ସିଏ ହୁଏତ ସେହି କଥାଟିକୁ ମୋଟେ ବୁଝି ପାରୁନଥିଲା । ସେତେବେଳକୁ ରୁଷିଆ ସହିତ ତାହାର ଶୀତଳ ଯୁଦ୍ଧଟି ପ୍ରାୟ ନିଦା ହୋଇ ଲାଗି ସାରିଥାଏ । ଆମେରିକା ଓ ରୁଷିଆ ବିଶ୍ୱଯୁଦ୍ଧରୁ ବିଜୟୀ ହୋଇ ବାହାରିଥିବା ପକ୍ଷରେ ଏକତ୍ର ହୋଇ ରହିଥିଲେ ; ତଥାପି, ରୁଷିଆ ହାତକୁ ମଧ ପରମାଣୁ ଅସ୍ତ୍ରର ଜ୍ଞାନସୂତ୍ର ଗୁଡ଼ିକ ଚାଲିଗଲାଣି ବୋଲି ଜାଣିସାରିବା ପରେ ଆମେରିକାର ବିଚାର ଭିତରେ ଭୂତ ପଶିଗଲା । ସିଏ ଏକୁଟିଆ ଏହି କୌଶଳଟାକୁ ଏକଚାଟିଆ କରି ରଖିଥାନ୍ତା, ଆମେରିକାର ସେହି ଆଣ୍ଟଟା ଭାଙ୍ଗିଯିବା ପରେ ଆମେରିକା ଛାର ପାଳଦଉଡ଼ି ଗୁଡ଼ାକୁ ମଧ ସର୍ପତୁଲ୍ୟ ଦେଖିଲା ଓ ବିବେକ ହରାଇଲା । ତା'ପରେ ଅର୍ବୁଦ ଅର୍ବୁଦ ଖରଚ ହୋଇ ମେଣ୍ଟସବୁ ଗଢ଼ା ହେଲେ । ମେଣ୍ଟର ରାଜନୀତି ବ୍ୟତୀତ ସତେଅବା ଆମେରିକା ଲାଗି ଆଉ ବିରାଦର-ନୀତି ବୋଲି କିଛିହେଲେ ରହିଲାନାହିଁ । ଏକାଧିକ ରାଷ୍ଟ୍ର ପ୍ରଧାନତଃ

ଆମେରିକା ଦ୍ୱାରା ଉଦାର ଅର୍ଥାତ୍ ଆଖିବୁଜା ଭାବରେ ଉପକୃତ ହେବେ ବୋଲି ସତେଅବା କପଟମୁହଁ ଗୁଡ଼ିକୁ ଦେଖାଇ ଆମେରିକା ପାଖରେ ଆସି ଗୁଞ୍ଜି ହେଲେ । ନିଜ ପାଖରେ ଗୁଡ଼ାଏ ପଇସା ଓ ଗୁଡ଼ାଏ ଅସ୍ତ୍ର ରହିଥିଲେ ସମ୍ଭବତଃ ରାଷ୍ଟ୍ରମାନଙ୍କର ବୁଦ୍ଧି ଏହିପରି ଭାବରେ ଭ୍ରଷ୍ଟ ହିଁ ହୋଇ ଯାଇଥାଏ । ଖାଲି ପଇସା ଓ ଅସ୍ତ୍ରବଳର ପ୍ରଲୋଭନ ଦେଖାଇ କୌଣସି ରାଷ୍ଟ୍ର ଯେ ପ୍ରକୃତ ବନ୍ଧୁମାନଙ୍କୁ ପାଇପାରିବ, ଏହି ବସ୍ତୁବାଦର ଯୁଗରେ ମଧ ତାହା କଦାପି ସତ୍ୟ ହୋଇ ପାରିବନାହିଁ ।

ଅର୍ଥ ଏବଂ ଅସ୍ତ୍ରବଳରେ ସିନା ଆମେରିକା ତା' ଆଶ୍ରିତ ତଥା ବାନ୍ଧବମାନଙ୍କର ଅଭିଭାବକ ହୋଇ ପାରିଲା, କିନ୍ତୁ ପ୍ରକୃତ ବନ୍ଧୁତ୍ୱ ଅର୍ଜନ କରି ପାରିନଥିଲା । ସାମରିକ ମେଣ୍ଟ ଏବଂ ଅର୍ଥଦାନର ଉଦାରତା ଦ୍ୱାରା ପୃଥିବୀରେ ରାଷ୍ଟ୍ର ରାଷ୍ଟ୍ର ମଧରେ ବନ୍ଧୁତାର କ୍ଷେତ୍ରରେ ହୁଏତ ଯେତିକି ସମ୍ଭବ ହୁଅନ୍ତା, କେବଳ ସେତିକିମାତ୍ର ହିଁ ହେଲା । ଚୀନ୍‌ର କମ୍ୟୁନିଷ୍ଟ ବିପ୍ଳବକୁ ମାନିବନାହିଁ ବୋଲି ଜିଦ୍ ଧରି ବସି ଆମେରିକା ସେତେବେଳେ ସମଗ୍ର ପୃଥିବୀ ଆଖିରେ କେତେ ହାସ୍ୟାସ୍ପଦ ଦେଖାଗଲା । ଏବଂ, କିଛି ବର୍ଷ ପରେ ଯେତେବେଳେ ଚୀନ୍‌କୁ ସେହି ସ୍ୱୀକୃତି ଦେବାପାଇଁ ରାଜୀ ହେଲା, ସେତେବେଳେ ମଧ ପୃଥିବୀଯାକ ମଣିଷ ପୁନର୍ବାର ଦ୍ୱିତୀୟ ଥର ପାଇଁ ମଧ କେତେ ହସିଥିବେ । ସେହିପରି ଏକ ନିର୍ବୋଧପଣ ଦେଖାଇ ଆମେରିକା ଏକଦା ସାନ ଦେଶ ଭିଏତ୍‌ନାମରେ ଯାଇ ବି ପହଞ୍ଚି ଯାଇଥିଲା । ସେଠାରେ ସିଏ ପ୍ରତିକ୍ରିୟାଶୀଳ ପକ୍ଷରେ ରହି ଭବିଷ୍ୟମୁଖୀ ପ୍ରଗତିଶୀଳ ପକ୍ଷଟି ବିରୋଧରେ ବୀରତ୍ୱ ପ୍ରଦର୍ଶନ କରିବାକୁ ଯାଇ ପହଞ୍ଚି ଯାଇଥିଲା । ବହୁ ବର୍ଷ ବୀରପଣ ଦେଖାଇଲା ଓ ବହୁ ବୀଭତ୍ସତାର କାରଣ ହେଲା, ମାତ୍ର ପରିଶେଷରେ ପରାଭବ ହିଁ ପାଇଥିଲା । ସେହି ଆମେରିକାର ଶ୍ରୀ ମାର୍ଟିନ୍ ଲୁଥର୍ କିଙ୍ଗ୍ ଗୋଟିଏ ପ୍ରସଙ୍ଗରେ ତାଙ୍କ ଦେଶର ସରକାରଙ୍କର ଅଭିଭାବକ ସଦୃଶ ମନୋଭାବର ଉଲ୍ଲେଖ କରି କହିଛନ୍ତି : କେବଳ ସାମରିକ ଏବଂ ଅର୍ଥନୈତିକ ଶକ୍ତି ବଳରେ ଏକ ଦେଶ ହିସାବରେ ଆମ ଆମେରିକା ପୃଥିବୀରେ ଯେଉଁ ତଥାକଥିତ ଭାରସାମ୍ୟଟିକୁ ହାସଲ କରିଥିଲା, ତାହାକୁ ବିପନ୍ନ କରିଦେବ ବୋଲି ଆଶଙ୍କା କରୁଥିବା ପ୍ରତ୍ୟେକ ଆନ୍ଦୋଳନର ବିରୋଧରେ ଆମେରିକା ନିଜକୁ ଇତିହାସର ମାରଫତରେ ରହିଥିବା ଅଭିଭାବକ ପରି ହିଁ କଳ୍ପନା କରୁଥିଲା ଏବଂ ସିଧା ସେହି କାରଣରୁ ହିଁ ଭିଏତ୍‌ନାମରେ ଯାଇ ପହଞ୍ଚି ଯାଇଥିଲା ।

ଦ୍ୱିତୀୟ ମହାଯୁଦ୍ଧ ପରେ ମାଲିକମାନେ କ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ସେହି ଅବକାଶରେ ହିଁ ଆଫ୍ରିକା ଓ ଏସିଆର ଦେଶମାନେ ଔପନିବେଶିକ ଫାଶରୁ ମୁକୁଳି ପାରିଲେ । ସେହିସବୁ ଦେଶର ଜନଗଣ ସେତେବେଳେ ଏକ ନୂଆ ଭାଗ୍ୟର ନିର୍ମାଣ ଏବଂ ନୂତନ ସକାଳ ଲାଗି ଅପେକ୍ଷା କରି ରହିଥିଲେ । ପୃଥିବୀର ସବୁଠାରୁ ମଜବୁତ ଗଣତନ୍ତ୍ର ସେମାନଙ୍କ ହୃଦୟର ଆଶାପୂର୍ଣ୍ଣ ଅସ୍ଥିରତାକୁ ଯେ ବୁଝିବାକୁ ସମର୍ଥ ହେଲାନାହିଁ, ତାହାକୁ ଏକାଧିକ ଦୃଷ୍ଟିରୁ ସମସ୍ତ ପୃଥିବୀ ନିମନ୍ତେ ହିଁ ଏକ ଦୁର୍ଭାଗ୍ୟ ବୋଲି କହିବାକୁ

ହେବ । ସେହି ଉଦ୍‌ବେଳନଟିକୁ କ'ଣ ପାଇଁ ଆମେରିକା ନିଜେ ଏକ ପକ୍ଷ ଭାବରେ ଲିପ୍ତ ରହିଥିବା ଇଉରୋପୀୟ ଶୀତଳ ଯୁଦ୍ଧର ପରିପ୍ରେକ୍ଷୀରେ ଦେଖି ନବସ୍ୱାଧୀନ ଦେଶମାନଙ୍କ ସକାଶେ ଏକ ବୃହତ୍ ବିଡ଼ମ୍ବନାର କାରଣ ହେଲା କେଜାଣି ? ତାହାଦ୍ୱାରା ଆଦୌ କୌଣସି କାରଣ ନଥାଇ ସେହି ଶୀତଳ ଯୁଦ୍ଧ ଯେ ପ୍ରାୟ ଜଗଦ୍‌ବ୍ୟାପୀ ହେବାର ଅପଲକ୍ଷଣମାନ ଦେଖାଇଥିଲା ତା' ନୁହେଁ, ନୂଆ ଦେଶଗୁଡ଼ିକରେ ଗଣତାନ୍ତ୍ରିକ ପ୍ରକ୍ରିୟାଗୁଡ଼ିକୁ ମଧ୍ୟ ତାହା ପ୍ରାୟ ମିଛଟାରେ ନାନାଭାବେ ବ୍ୟାହତ ମଧ୍ୟ କରି ଦେଇଥିଲା । ଏପାଖ ପୃଥିବୀର ଯେକୌଣସି ରାଷ୍ଟ୍ର ତୁଚ୍ଛା ଆମେରିକାର ନାନା ପୃଷ୍ଠପୋଷକତା ପାଇବ ବୋଲି ଆମେରିକା ତରଫର ମେଣ୍ଟଗୁଡ଼ାକ ଭିତରକୁ ଆଉଜି ପଡ଼ିଲା, ସେହିସବୁ ରାଷ୍ଟ୍ରର କର୍ତ୍ତାମାନେ ନିଜ ଦେଶରେ ଯାବତୀୟ ଗଣତାନ୍ତ୍ରିକ ଅଭ୍ୟୁଦୟରେ ଅନ୍ତରାୟ ହୋଇ ରହିଥିଲେ ମଧ୍ୟ ଆମେରିକା ସେମାନଙ୍କୁ ଆପଣାର ମିତ୍ର ବୋଲି ବିଶ୍ୱାସ କଲା ଓ ସେମାନଙ୍କର ଦମ୍ଭଗୁଡ଼ାକୁ ଅଧିକ ମଜବୁତ ହେବାରେ ସାହାଯ୍ୟ ମଧ୍ୟ କରିଥିଲା । ଏସିଆ ଓ ଆଫ୍ରିକାର ବହୁ ଦେଶରେ ଏବେ ମଧ୍ୟ ଯେ ଗଣତନ୍ତ୍ର ପ୍ରାୟ ଲେଙ୍ଗଡ଼ା ହୋଇ ପଡ଼ିଛି ଏବଂ ପାରମ୍ପରିକ ବଳୁଆମାନେ ସେଠାରେ ବଳୁଆ ହୋଇ ବସିଛନ୍ତି, ସେଥିପାଇଁ ପୃଥିବୀର ଏହି ସମ୍ପନ୍ନତମ ରାଷ୍ଟ୍ରଟିକୁ ମଧ୍ୟ କେତେକାଂଶରେ ଦାୟୀ କରା ଯିବନାହିଁ କାହିଁକି ? ଆମେରିକାରେ କ୍ରିୟାଶୀଳ ଦୁଇ ରାଜନୀତିକ ଦଳ ଭିତରୁ ଯିଏ ଯେତେବେଳେ ସେଠି ସିଂହାସନରେ ବସିଥାନ୍ତୁ ପଛକେ, ଏହି କ୍ଷେତ୍ରରେ ଅତ୍ୟନ୍ତ ନିଷ୍ଠାପର ଭାବରେ ସେହି ଗୋଟିଏ ପ୍ରକାରର ଆଚରଣ ହିଁ ଦେଖାଇଛନ୍ତି । ପୃଥିବୀରେ ସବୁ ଦେଶ ଓ ମହାଦେଶରେ ଲୋକଶକ୍ତିର ଉଦୟ ଘଟିଲେ ଆମେରିକା ତ ଖୁସୀ ହିଁ ହୁଅନ୍ତା । କିନ୍ତୁ, ପ୍ରଧାନତଃ ସବାଆଗ ଆପଣାକୁ ହିଁ ଦେଖୁଥିବାରୁ ଏବଂ ସାମରିକ ତଥା ଆର୍ଥିକ ବଳକୁ ହିଁ ନିଜର ସର୍ବସମ୍ଭବକାରୀ ନିର୍ଭରଶିଳା ବୋଲି ମାନୁଥିବାରୁ ତାହା ସମ୍ଭବ ହୋଇ ପାରୁନାହିଁ । ତୃତୀୟ ପୃଥିବୀରେ ବହୁ ଦେଶରେ ଗଣତନ୍ତ୍ରକୁ ଦୃଢ଼ମୂଳ କରି ରଖିବାର ପ୍ରୟାସ ଯେତେ ଯେତେ ଦେଶରେ ହେଉଛି, ସେମାନଙ୍କ ସକାଶେ ଆମେରିକା ବହୁ ବାସ୍ତବ କ୍ଷେତ୍ରରେ ପ୍ରାୟ ଏକ ଅପହଞ୍ଚ ଦ୍ୱୀପ ପରି ହୋଇ ରହିଯାଇଛି । ବେଳେ ବେଳେ ମନେ ହୁଏ, ପୃଥିବୀର ଉଭୟ ଅଗ୍ରସର ଏବଂ ଅନଗ୍ରସର ପ୍ରାୟ ସବୁ ଦେଶ ଯଥାସମ୍ଭବ ଏକାଧିକ ମାର୍ଗରେ ଆମେରିକା ଦ୍ୱାରା ଉପକୃତ ହେବାପାଇଁ ଭାରି ଉଦ୍‌ଗ୍ରୀବ ହୋଇ ରହିଥାନ୍ତି ଏବଂ ତଥାପି ମଞ୍ଜ ଭିତରେ ସେମାନେ ତାହାର ବନ୍ଧୁ ହୋଇନଥାନ୍ତି । ବନ୍ଧୁ କିଣିବାକୁ ବିଚରା ଆମେରିକା ଆହୁରି ଅଧିକ ମେଣ୍ଟ ବାନ୍ଧେ, ଆହୁରି କେତେ ପସରା ଧନ ଖରଚ କରେ, ମାତ୍ର ତଥାପି ବଡ଼ ନିଃସଙ୍ଗ ହୋଇ ରହିଥାଏ ।

ଏକ ଅସମାନ ପୃଥିବୀରେ ଶୀର୍ଷ ସ୍ଥାନରେ ରହିଥିବା ଆମେରିକାକୁ ମଧ୍ୟ କେତେକ ପରିମାଣରେ ଏକ ଅସମାନ ସମାଜ ବୋଲି କୁହାଯାଇ ପାରିବ । ପୃଥିବୀର ବର୍ତ୍ତମାନ ଜନସଂଖ୍ୟାକୁ ଯଦି କଣ୍ଟାକଣ୍ଟି ଛଅଶହ କୋଟି ବୋଲି ଧରାଯାଏ, ତେବେ ହିସାବ କହୁଛି ଯେ, ଏଠାରେ ଶତକରା ପନ୍ଦରଭାଗ ମନୁଷ୍ୟ ଏହାର ଉଚ୍ଚତମ ଆୟବିଶିଷ୍ଟ କେବଳ

ବାଇଶିଟି ଦେଶରେ ହିଁ ବାସ କରୁଛନ୍ତି ଏବଂ ଏହିସବୁ ଧନଶାଳୀ ଦେଶମାନଙ୍କରେ ପ୍ରତ୍ୟେକ ବ୍ୟକ୍ତି ବର୍ଷକୁ ହାରାହାରି ପଚିଶି ହଜାର ଡ଼ଲାର ରୋଜଗାର କରୁଛନ୍ତି । ଏବଂ, ପୃଥିବୀଟାକୁ ଅଞ୍ଚଳ ଅନୁସାରେ ଟିକିଏ ଭାଙ୍ଗି ଭାଙ୍ଗି ଦେଖିଲେ ଆମେ ଜାଣିବାକୁ ପାଇବା ଯେ, ଏଠାରେ ସବାତଳେ ରହିଥିବା ୨୦ ପ୍ରତିଶତ ଅର୍ଥାତ୍ ପାଞ୍ଚଭାଗରୁ ଭାଗେଙ୍କ ପାଖରେ ମୋଟ ପୃଥ୍ୱୀସମ୍ପଦର ମାତ୍ର ୧.୪ ଅଂଶ ରହିଛି । ତା'ଉପରକୁ ରହିଥିବା ୨୦ ପ୍ରତିଶତ ଅର୍ଥାତ୍ ପାଞ୍ଚଭାଗରୁ ଭାଗେଙ୍କ ପାଖରେ ମୋଟ ସମ୍ପଦର ୨.୭ ଅଂଶ ରହିଛି ଓ ତା' ଉପରର ୨୦ ପ୍ରତିଶତଙ୍କ ହାତରେ ମୋଟ ସମ୍ପଦର ୪.୮ ଅଂଶ ରହିଛି । ଅର୍ଥାତ୍ ପୃଥିବୀରେ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ସବାତଳେ ରହିଥିବା ଶତକଡ଼ା ଷାଠିଏଙ୍କ ପାଖରେ ମାତ୍ର ୮.୯ ଅଂଶ ସମ୍ପଦ ରହିଛି । ସବା ଉପରେ ଯେଉଁ ୨୦% ବା ଏକ ପଞ୍ଚମାଂଶ ଲୋକ ରହିଛନ୍ତି, ସେମାନଙ୍କ ହାତରେ ପୃଥ୍ୱୀଧନର ୮୪.୮ ପ୍ରତିଶତ ରହିଛି । କହିବା ବାହୁଲ୍ୟ, ଏହି ସବାଉପରଙ୍କ ଭିତରେ ଆମେରିକାର ଧନଶାଳୀ ବ୍ୟକ୍ତିମାନେ ହିଁ ସର୍ବାଧିକ ସଂଖ୍ୟାରେ ରହିଛନ୍ତି । ପୁନଶ୍ଚ, ବର୍ତ୍ତମାନ ସାରା ପୃଥିବୀର ୫୦% ଅର୍ଥାତ୍ ଅଧେ ଲୋକ ସହରରେ ବାସ କରୁଛନ୍ତି । ଯୁକ୍ତରାଜ୍ୟ ଆମେରିକାର ଶତକଡ଼ା ୭୦ ଲୋକ ସହରବାସୀ ହେଲେଣି ବୋଲି ଆଉଗୋଟିଏ ହିସାବରୁ ସୂଚନା ମଧ୍ୟ ମିଳିଯାଉଛି ।

ଯୁକ୍ତରାଜ୍ୟ ଆମେରିକାରେ ପ୍ରତ୍ୟେକ ବର୍ଗମାଇଲ୍‌ରେ ମୋଟେ ଏକସ୍ତରୀ ଜଣ ମନୁଷ୍ୟ ବାସ କରୁଛନ୍ତି । ସେହି ତୁଳନାରେ ଭାରତବର୍ଷ କିମ୍ବା ଚୀନ୍‌ର ଲୋକସଂଖ୍ୟା ଭୂମିର ଅନୁପାତରେ ଅନେକ ଅଧିକ । ଭାରତବର୍ଷର ଭୂମି ପୃଥିବୀର ମୋଟେ ୨.୯% ହୋଇଥିଲେ ମଧ୍ୟ ଲୋକସଂଖ୍ୟା ହେଉଛନ୍ତି ସମଗ୍ର ପୃଥ୍ୱୀସଂଖ୍ୟାର ଶତକଡ଼ା ସତର ଭାଗ । ବିଗତ ଶହେବର୍ଷ ମଧ୍ୟରେ ଆମେରିକାର ହାରାହାରି ଆୟୁ ୪୬.୩ ବର୍ଷରୁ ୭୧.୮ ବର୍ଷରେ ଆସି ପହଞ୍ଚି ପାରିଛି । ଭାରତବର୍ଷ ବା ତୃତୀୟ ବିଶ୍ୱର ଯେକୌଣସି ଦେଶରେ ସ୍ଥିତି ତାହାଠାରୁ ବହୁତ ପଛରେ ବା ତଳେ ଯାଇ ରହିଛି । ଆମ ଭାରତବର୍ଷରେ ରହିଥିବା ଅତିଧନୀ ପରିବାରମାନେ ଅନେକ ପରିମାଣରେ ଯୁକ୍ତରାଜ୍ୟ ଆମେରିକାର ଅତିଧନୀମାନଙ୍କ ସହିତ ତୁଳନୀୟ ହୋଇ ପାରୁଥିଲେ ମଧ୍ୟ ଆମ ଦରିଦ୍ର ଲୋକ ଏବଂ ତାଙ୍କ ଦରିଦ୍ରଙ୍କ ଭିତରେ ହୁଏତ ସେଭଳି କୌଣସି ତୁଳନା କରି ହେବନାହିଁ । ତଥାପି, ସେହି ଦେଶର ଆର୍ଥିକ ସ୍ଥିତି ମୁତାବକ ସେଠାରେ ମଧ୍ୟ ଦରିଦ୍ର ରହିଛନ୍ତି ଏବଂ ସେଠା ଅର୍ଥନୀତି ଭିତରେ ଏମାନଙ୍କୁ ଆମ ଦରିଦ୍ରମାନଙ୍କ ପରି ମଧ୍ୟ କାଳ ଅତିବାହିତ କରିବାକୁ ପଡୁଛି । ଅସମାନତା ଆଁ କରି ରହିଥିବା ପରି ଅନୁମାନ ଓ ଅନୁଭବ କରି ହେଉଛି । ଆମେରିକାର ଜଣେ ଧନାଢ଼୍ୟ ବ୍ୟକ୍ତି ବିଲ୍ ଗେଟ୍‌ଙ୍କରେ ସମ୍ପତ୍ତି ଆମେରିକାର ସବାତଳେ ଥିବା ୪୦ ପ୍ରତିଶତ ଲୋକଙ୍କର ସମ୍ପତ୍ତିଠାରୁ ଅଧିକ ବୋଲି ହିସାବ ବାହାର କରାଯାଇଛି । ଆମେରିକାର ସବା ଉପରେ ରହିଥିବା ଶହେରୁ ଏକଭାଗ ବ୍ୟକ୍ତିଙ୍କ ପାଖରେ ଯେଉଁ ଧନ ରହିଛି, ତାହାର ପରିମାଣ ସେହି ଦେଶରେ ସବାତଳେ ରହିଥିବା ଶତକଡ଼ା ନବେଙ୍କର

ସମ୍ପତ୍ତିଠାରୁ ଅଧିକ ବୋଲି ହିସାବ କହୁଛି । କୋଟିପତି ତ କେବଳ ଆମେରିକାରେ ନାହାନ୍ତି, ସେମାନେ ସମଗ୍ର ପୃଥିବୀରେ ରହିଛନ୍ତି ଏବଂ, ସାରା ପୃଥିବୀର ୩୫୮ ଜଣ କୋଟ୍ୟଧିକପତି ପୃଥ୍ୱୀସମ୍ପତ୍ତିର ଶତକଡ଼ା ୪୫ ଭାଗର ଅଧିକାରୀ ହୋଇଛନ୍ତି ।

ଏହିପରି ଏକ ପୃଥ୍ୱୀଚିତ୍ରର ସମ୍ମୁଖକୁ ଆସି ଆପଣଙ୍କର ଅଜା ବା ମୋ' ପଣଅଜା କହନ୍ତେ ଯେ, ଏସବୁ ହେଉଛି ଭଗବାନଙ୍କର ଅନୁଗ୍ରହର କଥା । ଅର୍ଥାତ୍, ମନୁଷ୍ୟମାନଙ୍କର ଭାଗ୍ୟର କଥା । କାହାର ଭାଗ୍ୟ ଉଚ୍ଚ ତ ଆଉ କାହାର ଭାଗ୍ୟ ସେତେ ଉଚ୍ଚ ନୁହେଁ । ଏହି ସବୁକିଛି ମଣିଷମାନଙ୍କର କର୍ମର ଫଳ । କଥାଟି ସହିତ କିଞ୍ଚିତ୍ ଦର୍ଶନ ମିଶାଇ କହିଲେ ଏସବୁ ହେଉଛି ମାୟା । ଭଗବାନଙ୍କ ଆଖିରେ ସମସ୍ତେ ସମାନ ଏବଂ, ସଂସାରରେ ଯିଏ ଯେପରି ଥାଉ ବା ନଥାଉ ପଛକେ, ଶେଷକୁ ସମସ୍ତେ ସେହି ଗୋଟିଏ ଜାଗାକୁ ଯିବେ ଏବଂ ସମାନ ହୋଇଯିବେ । ଏହି କଥାଟି ଏହି ପୃଥିବୀରେ ମଣିଷମାନଙ୍କୁ ଶାନ୍ତ ହୋଇ ରହିବାକୁ ଅନେକ ଖୋରାକ ଯୋଗାଇ ଆସିଛି ସତ, ମାତ୍ର ତାହା ପୃଥିବୀରେ ବହୁ ଅଶାନ୍ତିର କାରଣ ହୋଇଛି ଏବଂ ବହୁ ସମ୍ଭାବନାର କଣ୍ଠରୋଧ କରି ମଧ୍ୟ ରଖିଛି । ପୃଥିବୀର ରାଜନୀତିକୁ ମଧ୍ୟ କ'ଣ ତାହା କମ୍ କର୍ଦ୍ଦମାକ୍ତ କରି ରଖିଛି ? ସବୁ ମଣିଷଙ୍କ ସକାଶେ ଯଦି ଏଠି ଯଥେଷ୍ଟ ସମ୍ପଦ ଓ ବୁଦ୍ଧିକୌଶଳ ମହଜୁଦ୍ ହୋଇ ରହିଛି, ତେବେ ଏକ ମିଛଦର୍ଶନ କାହିଁକି ମାୟାବାଦର ପେଖନା ଦେଖାଇ ମଣିଷଠାରୁ ମଣିଷକୁ ଦୂରଛଡ଼ା କରି ରଖିବ, ପୃଥିବୀରେ ଅତ୍ୟନ୍ତ ଅନାବଶ୍ୟକ ଭାବରେ ବହୁ ଘୃଣା ଓ ବହୁ ଉପେକ୍ଷାକୁ ମଧ୍ୟ ପ୍ରଶ୍ରୟ ଦେବାରେ ଲାଗିଥିବ ? ଅବଶ୍ୟ ଏକଥା ସତ ଯେ କେବଳ ଅର୍ଥନୀତିର ସୂତ୍ରଗୁଡ଼ିକୁ ନେଇ ଆମେ ପୃଥିବୀକୁ କାମୁଡ଼ି ରହିଥିବା ଆର୍ଥିକ ମାଳିନ୍ୟଗୁଡ଼ିକୁ ଦୂର କରି ପାରିବନାହିଁ । ଅର୍ଥନୀତିଠାରୁ ଅଧିକ ବୃହତ୍ ଏକ ଆଉକିଛିକୁ ମୀମାଂସକ ବୋଲି ଗ୍ରହଣ କରିପାରିଲେ ଯାଇ ଅର୍ଥନୀତିର କ୍ଷେତ୍ରରେ ଏକ ମନୁଷ୍ୟୋଚିତ ସମାଧାନ ସମ୍ଭବ ହୋଇପାରିବ । ସବାତଳର ଏହି ଅର୍ଥନୈତିକ ସ୍ତରରେ ପ୍ରତ୍ୟେକ ମଣିଷକୁ ଲୋଡ଼ି ଅନୁରୂପ ସ୍ୱୀକୃତି ଦେଇପାରିଲେ ହୁଏତ ଧର୍ମ, ଆଦର୍ଶବାଦ ଏବଂ ସମାଜମତକୁ ନେଇ ପୃଥିବୀରେ ବର୍ତ୍ତମାନ ଲାଗିଥିବା ବହୁ ବୈମନସ୍ୟ ଯେ ପ୍ରାୟ ଆପେ ଆପେ ମଣିଷମାନଙ୍କୁ ଛାଡ଼ି ଚାଲିଯିବ, ମନୁଷ୍ୟର ସମାଜକୁ ଗଭୀର ଭାବରେ ଅନୁଧ୍ୟାନ କରୁଥିବା ବ୍ୟକ୍ତିମାନେ ଏବେ ଏପରି ଅନୁମାନ ବି କରୁଛନ୍ତି । ଗୋଟିଏ ରାଷ୍ଟ୍ରର କର୍ମପରିସର ଠାରୁ ଏହା ନିଃସନ୍ଦେହ ଭାବରେ ଅନେକ ଅଧିକ । ତଥାପି, ଆମେରିକା ପରି ଏକ ବହୁସମ୍ପନ୍ନ ଓ ବହୁସମର୍ଥ ରାଷ୍ଟ୍ର ଅନ୍ତତଃ ନିଜ ଦେଶରେ ଯେ କାହିଁକି ଏହାର ଏକ ସମାଧାନ ନ କରିବ, ତାହାର କୌଣସି କାରଣ ନାହିଁ ।

ବିଶ୍ୱଯାକର ମୂଲ୍ୟାୟନମଞ୍ଚରେ ପ୍ରାୟ ପାଖାପାଖି ହୋଇ ଆମ ଆଗରେ ସର୍ବଦା ଦୁଇଟି ଆମେରିକା ଦୃଷ୍ଟିଗୋଚର ହୋଇଥାନ୍ତି । ଅନେକ ସମୟରେ ଗୋଟିକୁ ଆଉଗୋଟିକ ସହିତ ଏକାଠି ମିଳାଇ ସତେଅବା ମୋଟେ ଦେଖି ହୁଏନାହିଁ । ଗୋଟିଏ ହେଉଛି ଏକ

ବୃହତ୍ ବପୁବିଶିଷ୍ଟ ଅଥଚ ଅତ୍ୟନ୍ତ ଭୟାଳୁ ଓ ତେଣୁ ଅତ୍ୟନ୍ତ ସନ୍ଦେହୀ ଓ ଆତ୍ମସଚେତନ ଆମେରିକା । ତା'ହାତରେ ସବୁଠାରୁ ଅଧିକ ବିଜ୍ଞାନ ଓ ତା'ଶାଳରେ ସବୁଠାରୁ ଅଧିକସଂଖ୍ୟକ ବୈଜ୍ଞାନିକ ବନ୍ଧା ହୋଇ ରହିଛନ୍ତି ; ସବୁଠାରୁ ଭଲ ଗ୍ରାସାଚ୍ଛାଦନ ସେହିମାନଙ୍କୁ ମିଳୁଛି ଓ ସେମାନେ ସତେଅବା ଅତ୍ୟନ୍ତ କୃତଜ୍ଞତା ପ୍ରଦର୍ଶନ ପୂର୍ବକ ରାଷ୍ଟ୍ରର ଅସ୍ତ୍ରଖାନାରେ ଭୟାନକରୁ ଆହୁରି ଅଧିକ ଭୟାନକ ବୋମାଗୁଡ଼ିକୁ ତିଆରି କରି ଗଦା ମାରି ଜମା କରି ରଖି ଦେଉଛନ୍ତି । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଲାଗିଥିବା ପ୍ରତିଯୋଗିତାରେ ସେହି ଆମେରିକା ଏକାବେଳେକେ ସମସ୍ତଙ୍କର ଆଗରେ ଯାଇ ରହିଛି । ଆଗେ ଇଉରୋପ ହିଁ ପଶ୍ଚିମ ଜଗତର ନାଭିକେନ୍ଦ୍ର ହୋଇ ରହିଥିଲା ; ଏବେ, ଆମେରିକା ରହିଛି ଓ ସେମାନଙ୍କୁ ଅଧାର ଯୋଗାଉଛି ବୋଲି ଯେ ସେମାନେ ରହିଛନ୍ତି, ଇଉରୋପର ବହୁ ଦେଶ ସତେଅବା ସେହିଭଳି ଭାବିବାକୁ ଆରମ୍ଭ କରିଦେଲେଣି । ଆମେରିକା ହିଁ ପୃଥିବୀର ରାଜନୀତିରେ ସରପଞ୍ଚ ହୋଇ ବସିଛି । ତା' ମନ ହେଲେ ସିଏ ଶାନ୍ତି ଭିତରେ ଅଶାନ୍ତି ଆଣି ପୂରାଇ ଦେଇ ପାରୁଛି ଏବଂ ଅଶାନ୍ତି ଭିତରେ ମଧ୍ୟ ଶାନ୍ତି ବୋଲି କହି କ'ଣ ଗୋଟାଏ ଆଣି ଲଦି ଦେଇ ପାରୁଛି । ଏଇଟି ହେଉଛି ସବୁଠାରୁ ଅଧିକ ଧନ କାରବାର କରୁଥିବା ଦେଶ, ଏବଂ ତେଣେ ବିଶ୍ୱସ୍ତରୀୟ ସଭା ଓ ମହାସଭାମାନ ରହିଥିଲେ ମଧ୍ୟ ଅନେକ ସମୟରେ ଆମେରିକା ଯାହା କହୁଛି, ତାହାହିଁ ହେଉଛି । ତା' ସହିତ ଗୋଟାସୁଦ୍ଧା ରାଜୀ ନଥିଲେ ମଧ୍ୟ ଅନ୍ୟମାନେ ମୁହଁ ଫିଟାଇ କିଛି କହି ପାରୁନାହାନ୍ତି । ବିଶ୍ୱଆଖଡ଼ା ସହିତ ତା'ର ଗୋଟାଏ ମନମୁଖୀ ଅଲଗା ଆଖଡ଼ା ରହିଛି ବୋଲି ଆମେରିକା ଦେଖାଇ ତ ଦେଇ ପାରୁଛି । ବିଶ୍ୱସଭାକୁ ଏଡ଼ି ଦେଇ ଆମେରିକାର ବୋଲ ଓ ନେତୃତ୍ୱକୁ ମାନି ପୃଥିବୀରେ ଆମେରିକା ବିଗିଡ଼ି ଗଲେ ସାମୟିକ ଯୁଦ୍ଧ ମଧ୍ୟ ହଟାଇ ଦେଇ ହେଉଛି ।

ଆଉ ଗୋଟିଏ ଆମେରିକା, ଯାହା ଏହି ଆମେରିକାକୁ ଚାଲେଞ୍ଜ ଦେଇଛି । ଏଇଟି ହେଉଛି ଆମେରିକାର ସାହିତ୍ୟ, ଆମେରିକାରେ ଏକ ବିକଳ୍ପ ବିତର୍କର ପରମ୍ପରା ଯାହାକି ସମ୍ଭବତଃ ସେହି ମୂଳରୁ ହିଁ ସୋଚା ର ହୋଇ ରହିଆସିଛି । ତାହା ରାଷ୍ଟ୍ରକୁ ଚ୍ୟାଲେଞ୍ଜ ଦେଇଛି, କ୍ଷମତାକୁ ଚୁନୌତି ଦେଇଛି, ଅର୍ଥପରାକ୍ରମକୁ ମଧ୍ୟ ଚୁନୌତି ଦେଇଛି । ଆମେରିକାର ବିଶ୍ୱବିଦ୍ୟାଳୟମାନ ସଂପ୍ରତି ସେହି ଅନ୍ୟ ଆମେରିକାଟିର ପ୍ରତିନିଧି ହୋଇ ରହିଛନ୍ତି । ଏହି ଦାଣ୍ଡିରେ ସବାଆଗ ହେନ୍‌ରି ଡ଼େଭିଡ୍ ଥୁରୋ ଦେଖା ଯାଉଛନ୍ତି, ରାଲ୍‌ଫ ୱାଲ୍ଡୋ ଏମରସ୍‌ସନ୍ ସମ୍ମୁଖରେ ଆସି ଉଭା ହୋଇ ଯାଉଛନ୍ତି । ଅପଟନ୍ ସିନ୍‌କ୍ଲେଆର୍ ମଧ୍ୟ ଦାଉ ଦାଉ ହୋଇ ଦିଶୁଛନ୍ତି । କବି ୱାଲ୍‌ଟ, ହୁଇଟ୍‌ମ୍ୟାନ୍ ଆମେରିକାର ସାହିତ୍ୟରେ ଜଣେ ଉଜ୍ଜ୍ୱଳ ପ୍ରତିନିଧି ହୋଇ ରହିଛନ୍ତି ଅଥଚ ଆମେରିକୀୟ ଜୀବନରେ ବପୁ ବିସ୍ତାର କରି ରହିଥିବା ସାମନ୍ତବାଦ ଓ ପ୍ରତିକ୍ରିୟାବାଦର ସିଧା ଚାଲେଞ୍ଜ କରିଛନ୍ତି । ଶ୍ରୀଯୁକ୍ତ ଥୁରୋ ବିଶ୍ୱରେ ରାଷ୍ଟ୍ରବାଦର ଆଧୁନିକ ଯୁଗରେ ସମ୍ଭବତଃ ସର୍ବପ୍ରଥମ ସ୍ୱର ଉତ୍ତୋଳନ କରିଛନ୍ତି ।

ପରେ ମହାତ୍ମା ଗାନ୍ଧୀ ଭାରତବର୍ଷରେ ଅସହଯୋଗ ଓ ଅହିଂସ ପ୍ରତିରୋଧ ନାମରେ ଯାହା ବିକଶିତ କରାଇ ଆଣିଥିଲେ, ଆମେ ଥୁରୋଙ୍କୁ ତାହାର ସର୍ବପ୍ରଥମ ଦୃଷ୍ଟାନ୍ତ ବୋଲି କହିପାରିବା । ଗୋଟିଏ ବ୍ୟକ୍ତି ନିଜ ଦେଶର ମଧ୍ୟ ଜଣେ ନାଗରିକ ; ତଥାପି ରାଷ୍ଟ୍ରର ପରାକ୍ରମସୀମାକୁ ଚ୍ୟାଲେଞ୍ଜ କରିବାର ଓ ରାଷ୍ଟ୍ର ସହିତ ଅସହଯୋଗ କରିବାର ଅଧିକାର ଯେକୌଣସି ସମାଜରେ ପ୍ରତ୍ୟେକ ବ୍ୟକ୍ତିର ଅବଶ୍ୟ ରହିବ ହିଁ ରହିବ । ହେନ୍‌ରି ଥୁରୋ ବିଶ୍ୱ ବ୍ୟାପି ସବୁ ମଣିଷଙ୍କ ନିମନ୍ତେ ତାହାର ଏକ ପ୍ରେରଣାମୟ ପ୍ରତୀକ ହୋଇ ରହିଛନ୍ତି । ଶ୍ରୀଯୁକ୍ତ ଅପ୍‌ଟନ୍ ସିନ୍‌କ୍ଲେଆର୍‌ଙ୍କର ଉପନ୍ୟାସଗୁଡ଼ିକ ସହିତ ଶାନ୍ତିନିକେତନରେ ହିଁ ମୋ'ର ପ୍ରଥମ ପରିଚୟ ହୋଇଥିଲା ଏବଂ ଏଠି ନିଜର ଦେଶକୁ ସେହିପରି ଏକ ସିଧା ସଂପୃକ୍ତତା ସହିତ ଦେଖି ପାରିବାକୁ ଚକ୍ଷୁ ଯୋଗାଇ ଦେଇଥିଲା । ତାଙ୍କର Jungle, Oil ଓ Mammon art ପ୍ରଭୃତି ଶକ୍ତିଶାଳୀ ପ୍ରତିବାଦର ଉପନ୍ୟାସ ମାନଙ୍କରେ ସିଏ ଆମେରିକାର ପ୍ରତିଷ୍ଠିତ କର୍ତ୍ତୃତ୍ୱ ଓ ମାନବିକତା-ବିରୋଧୀ ଅସତ୍ୟଗୁଡ଼ିକୁ ଯେପରି ଭାବରେ ଚୁନୌତି ଦେଇଛନ୍ତି, ତାହାକୁ କଦାପି ଖାଲି ସାହିତ୍ୟ ହିସାବରେ ଉପଭୋଗ କରି ହେବନାହିଁ । ପ୍ରତ୍ୟେକ ବ୍ୟକ୍ତିଠାରୁ ତାହା ଏକ ଆନ୍ତରିକ ଅଙ୍ଗୀକାରବଦ୍ଧତା ଅବଶ୍ୟ ଦାବୀ କରିବ । ପ୍ରକୃତ ମାନବୋଜୟୀ ଯେକୌଣସି ଗଣତନ୍ତ୍ରର ନକ୍ସାରେ ତାହାର ଏକ ପୂର୍ଣ୍ଣ ପ୍ରାସଙ୍ଗିକତା ସର୍ବକାଳରେ ଅବଶ୍ୟ ରହିଛି ।

ଦ୍ୱିତୀୟ ମହାଯୁଦ୍ଧ ସମୟରେ ଆମେରିକା ପ୍ରଥମେ ପ୍ରଥମେ ଯୁଦ୍ଧର ବାହାରେ ବାହାରେ ହିଁ ରହିଥିଲା । ଇଉରୋପ ମହାଦେଶରେ ଜର୍ମାନୀ ଓ ଇଟାଲୀ କିପରି ଗୋଟାକ ପରେ ଆଉଗୋଟାଏ ଦେଶକୁ ପାଟିରେ ପକାଇ ଦେବାରେ ଲାଗିଥିଲେ, ସେହି ଘଟଣାଟିକୁ ଦୂରରୁ ପ୍ରାୟ ତଟସ୍ଥ ରହି ଦେଖୁଥିଲା । ଯୋଗକୁ ବା ଦୁର୍ଯୋଗକୁ ଜାପାନ ପଶ୍ଚିମରୁ ପ୍ରଶାନ୍ତ ମହାସାଗର ପଟୁ କ'ଣ ପାଇଁ ଆମେରିକା ସହିତ ଖୁରି ଖାଇଲା, ଯାହା ଫଳରେ ଆମେରିକା ଟାଣିହୋଇ ଯୁଦ୍ଧ ଭିତରେ ଆସି ପ୍ରବେଶ କଲା । ତା'ପରେ ଆମେରିକାର ସୈନ୍ୟବାହିନୀ ପୃଥିବୀଯାକ ସବୁ ଯୁଦ୍ଧକ୍ଷେତ୍ରରେ ଯାଇ ଚରିଗଲେ । ବିଶେଷ କରି ଇଂଲଣ୍ଡ ସହିତ ଏକାଠି ମିଶି ଅଧିକୃତ ପଶ୍ଚିମ ଇଉରୋପରେ ଦ୍ୱିତୀୟ ସମରାଙ୍ଗନଟିଏ ସୃଷ୍ଟି ହେବା ପରେ ଆମେରିକା ସୈନ୍ୟ ଚାରିଆଡ଼କୁ ଖେଦି ଯାଇଥିଲେ । ସେମାନେ ଇଉରୋପ ଗଲେ, ଉତ୍ତର ଆଫ୍ରିକା ଗଲେ, ଭାରତବର୍ଷର ସମୁଦ୍ରରେ ପଇଁତରା ବି ମାରିଲେ ଏବଂ ପ୍ରଶାନ୍ତ ମହାସାଗରର ସାନ ସାନ ଦ୍ୱୀପ ଓ ଦ୍ୱୀପପୁଞ୍ଜରେ ମଧ୍ୟ ଯାଇ ପହଞ୍ଚି ଯାଇଥିଲେ । ଯୁଦ୍ଧବେଳେ ତ କେବଳ ବେତନଭୋଗୀ ନିୟମିତ ବାହିନୀଟି ଲଢ଼େନାହିଁ, ସମର୍ଥ ପ୍ରତ୍ୟେକ ନାଗରିକ ଡ଼ାକରା ହୋଇ ଯୁଦ୍ଧକୁ ଯାଆନ୍ତି । ସେଥିଲାଗି ଯୌବନ କାଳରେ ପ୍ରତ୍ୟେକଙ୍କୁ ବାଧ୍ୟତାମୂଳକ ଭାବରେ କେତେ ବର୍ଷର ସାମରିକ ପ୍ରଶିକ୍ଷଣ ବି ମିଳିଥାଏ । ତେଣୁ ସବୁ ସମର୍ଥ ମଣିଷ ଡ଼କରା ହୋଇ ଗଲେ । ଏମାନଙ୍କ ମଧ୍ୟରେ ଅଧ୍ୟାପକ ଥିଲେ, ଶିକ୍ଷକ ଥିଲେ,

ବୈଜ୍ଞାନିକ ଓ ଅନ୍ୟାନ୍ୟ କେତେ କେତେ ରୁଚି ଏବଂ ଧନ୍ଦାର ମଣିଷମାନେ ଥିଲେ । ସେମାନେ ପୃଥିବୀର କେତେ କେତେ ସମୂହ ଓ ସଂସ୍କୃତିର ସଂସ୍ପର୍ଶରେ ଆସିବାର ସୁଯୋଗ ଲାଭ କରିଥିଲେ । ଯୁଦ୍ଧ ପରେ ଘରକୁ ଫେରିବା ବେଳକୁ ସେମାନେ ଆଉ ଘରୁ ଯାଇଥିବା ସମୟର ସେଇ ଏକା ମଣିଷ ହୋଇ ଆଦୌ ଫେରି ନଥିଲେ । ସେମାନଙ୍କର ପୂର୍ବ ଅନ୍ଦାଜଗୁଡ଼ିକ ବହୁ ପ୍ରକାରେ ପ୍ରସାରିତ ହୋଇ ଯାଇଥିଲା । ଆଗରୁ ଥିବା ବହୁ ସଂକୀର୍ଣ୍ଣତାର ସମ୍ମାର୍ଜନା ହୋଇ ଯାଇଥିଲା । ତେଣୁ, ମହାଯୁଦ୍ଧ ପରେ ବିଚାର ଏବଂ ଜ୍ଞାନର କ୍ଷେତ୍ରରେ ଆମେରିକାରୁ କେତେ କେତେ ନୂତନ ସଂପ୍ରସାରଣ କେଡ଼େ ସହଜ ଭାବରେ ଘଟି ପାରିଥିଲା । ଆମେରିକାର ଗ୍ରହଣଦ୍ୱାର ଗୁଡ଼ିକ ସତେଅବା ଏକ ଅଭୂତପୂର୍ବ ଆଗ୍ରହରେ କେତେ କୁଆଡ଼େ ଗଅଁଠାଇ ହୋଇ ଯାଇଥିଲା । ଆମେରିକାର ବିଶ୍ୱବିଦ୍ୟାଳୟମାନେ ସତେଅବା ସମ୍ପୂର୍ଣ୍ଣ ନୂଆ ଆଖିରେ ନିଜ ଆଡ଼କୁ ଓ ବିଶ୍ୱ ଆଡ଼କୁ ଦେଖିବାଲାଗି ସମର୍ଥ ହେଲେ ।

ଏଇଟି ସହିତ ଆଉଗୋଟିଏ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଘଟଣା ମଧ୍ୟ ଘଟିଥିଲା । ଜର୍ମାନୀରେ ହିଟଲର ଓ ତାଙ୍କର ନାତ୍‌ସୀ ପାର୍ଟି କ୍ଷମତାକୁ ଆସିବାପରେ ସେଠାରେ ଏକ ତଥାକଥିତ ଶୁଦ୍ଧୀକରଣର ପ୍ରକ୍ରିୟା ଆରମ୍ଭ ହୋଇଗଲା । ଜର୍ମାନୀର ଯେଉଁ ବୁଦ୍ଧିଜୀବୀ, ବୈଜ୍ଞାନିକ ଏବଂ ବିଚାରଶୀଳମାନେ ତତ୍କାଳୀନ ଶାସନଟି ସହିତ ଖାପ ଖାଇ ନପାରିଲେ, ଏକ ଭିନ୍ନ ମତ ପୋଷଣ କଲେ, ସାମୂହିକ ଜୀବନର ବିବିଧ କ୍ଷେତ୍ରରେ ଡ଼ିକ୍ଟେଟରଙ୍କର ଅନୁଜ୍ଞାଗୁଡ଼ିକୁ ମାନିନେଇ ପାରିଲେନାହିଁ, ସେମାନଙ୍କୁ ରାଜଶକ୍ତି ଫାଶ ବସାଇ ପ୍ରାୟ ଏକ ଅତିସନ୍ତ୍ରାସବାଦୀ ଭୟପ୍ରଦର୍ଶନ ଓ ଦୌରାତ୍ମ୍ୟ ଦ୍ୱାରା ବାନ୍ଧିନେଇ ଆସିବାର ପ୍ରକ୍ରିୟାଟିଏ ଆରମ୍ଭ କରିଦେଲା । ପ୍ରଥମେ ଏକ ପ୍ରତୀକାତ୍ମକ ମହୋତ୍ସବ କରାଇ ମାର୍କସ୍, ଡ଼ାର୍‌ଉଇନ୍ ଓ ସମକାଳୀନ ଆହୁରି ଅନେକାନେକ ଚିନ୍ତାନାୟକଙ୍କର ରଚିତ ଗ୍ରନ୍ଥଗୁଡ଼ିକୁ ଅଗ୍ନିରେ ବିସର୍ଜନ ଦିଆ ଯାଇଥିଲା ଏବଂ ତା'ପରେ ବହୁ ବିଚାରଶୀଳ ବ୍ୟକ୍ତିଙ୍କୁ ଧରି ଅଣାଗଲା । ହିଟଲର ଯୁଦ୍ଧରେ ୟୁରୋପର ଅନ୍ୟ ଦେଶଗୁଡ଼ିକୁ ଜୟ କରି ନେଉଥିବା ସଙ୍ଗେ ସେହିସବୁ ଦେଶରେ ମଧ୍ୟ ଏହି ଯାବତୀୟ ଧରପଗଡ଼ ଓ ମାରଣଲୀଳା ଆରମ୍ଭ ହୋଇଗଲା । କେତେ କେତେ ମନୀଷାସମ୍ପନ୍ନ ବ୍ୟକ୍ତିଙ୍କୁ ଏହି ପ୍ରକ୍ରିୟା ଫଳରେ କନ୍‌ସେଣ୍ଟ୍ରେଶନ୍ କ୍ୟାମ୍ପମାନଙ୍କରେ ବନ୍ଧୁକ ଅଥବା ବିଷାକ୍ତ ବାଷ୍ପ ପ୍ରୟୋଗ ଦ୍ୱାରା ମୃତ୍ୟୁମୁଖରେ ପଡ଼ିବାକୁ ହୋଇଥିଲା । ଦେଶରୁ ପଳାୟନ କରି ପ୍ରାଣ ବଞ୍ଚାଇବା ହିଁ ଏକମାତ୍ର ଉପାୟ ଥିଲାପରି ଦେଖାଗଲା । ସେହି ସମୟରେ ଜର୍ମାନୀ ସମେତ ଇଉରୋପର ବହୁ ବୈଜ୍ଞାନିକ ଓ ଜ୍ଞାନୀ ବ୍ୟକ୍ତି ଯେକୌଣସି ଉପାୟରେ ଆମେରିକାରେ ଯାଇ ପହଞ୍ଚି ଯାଇଥିଲେ । ସେମାନଙ୍କ ସକାଶେ ଆମେରିକା ଦ୍ୱାର ଉନ୍ମୁକ୍ତ କରି ଦେଇଥିଲା ।

ଆମେରିକା ବ୍ୟତୀତ ସେତେବେଳେ ଏତେ ପରିମାଣରେ ନିରାପଦ ସ୍ଥାନଟିଏ ପୃଥିବୀରେ ବସ୍ତୁତଃ ଆଉ କେଉଁଠିହେଲେ ନଥିଲା । ଆମେରିକା ମଧ୍ୟ ଯୁଦ୍ଧରେ ଆସି

ଯୋଗ ଦେଇଥିଲା ସତ, ମାତ୍ର କୌଣସି ଶତ୍ରୁପକ୍ଷ ମହାସାଗର ଲଂଘି ଆମେରିକାରେ ବୋମା ପକାଇବାର ଆଦୌ କୌଣସି ଆଶଙ୍କା ନଥିଲା । ଆମେରିକାକୁ ଦଖଲ କରିନେବା ତ ଆହୁରି ଅନେକ ଦୂରର କଥା । ଏହି ଘଟଣାଟି ଫଳରେ ଆମେରିକାର ବିଶ୍ୱବିଦ୍ୟାଳୟ ମାନଙ୍କରେ ମାନବୀୟ ଅନ୍ୱେଷଣର ସତେଅବା ଏକ ନୂତନ ପରସ୍ତ ଖୋଲି ଯାଇଥିଲା । ଏହି ପ୍ରକ୍ରିୟାଟି ଫଳରେ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କୁ ପାଇ ପ୍ରିନ୍ସଟନ୍ ବିଶ୍ୱବିଦ୍ୟାଳୟ ଧନ୍ୟ ହେଲା । ନୂଆ ପଦାର୍ଥବିଜ୍ଞାନର ଗବେଷଣା-ଆକାଶରେ ତା'ପରେ ଯେଉଁସବୁ ନୂତନ ଆୟାମଗୁଡ଼ିକ ମନୁଷ୍ୟର ଅନ୍ଦାଜ ଏବଂ କର୍ଷଣର ଘରେ ଆସି ଧରା ଦେଲା, ସେଗୁଡ଼ିକ ପଛରେ ଆମେ ଆମେରିକାର ମୁଖ୍ୟତଃ ସେହି ନାୟକମାନଙ୍କୁ ଭେଟିବା, ଯେଉଁମାନେ ଇଉରୋପରୁ ବିତାଡ଼ିତ ହୋଇ ଆମେରିକାରେ ଯାଇ ପହଞ୍ଚିଥିଲେ ଓ ସେଠାରେ ସର୍ବବିଧ ଅନୁକୂଳତା ମଧ୍ୟରେ ନିଜ ନିଜର ଥଳଗୁଡ଼ିକୁ ଆବିଷ୍କାର କରି ନେଇଥିଲେ । ଖାଲି ପଦାର୍ଥବିଜ୍ଞାନ ନୁହେଁ, ମନୋବିଜ୍ଞାନ, ସମାଜ ବିଜ୍ଞାନ, ଭାଷାତତ୍ତ୍ୱ ଦର୍ଶନ ଏବଂ ଆହୁରି କେତେ କେତେ ସତ୍ୟୋଦ୍‌ଘାଟନର କ୍ଷେତ୍ରରେ ମଧ୍ୟ ଠିକ୍ ସେହି ଉଦ୍‌ବେଳନଟି ଘଟିଥିବାର ଦେଖିବାକୁ ମିଳିବ । ଏରିକ୍ ଫ୍ରମ୍, ନାଓମ୍ ଚୋମସ୍କି, ପିତିରିମ୍ ସୋରୋକିନ୍, ପାଉଲ୍ ଟିଲିଖ୍,- ଆମେ ଏହି ସନ୍ଦର୍ଭରେ ଆହୁରି କେତେ କେତେ ବ୍ୟକ୍ତିଙ୍କୁ ସ୍ମରଣ କରିପାରିବା, ଯେଉଁମାନେ କେବଳ ଆମେରିକାର ନୁହେଁ, ସମଗ୍ର ଆଧୁନିକ ପୃଥିବୀର ସତ୍ୟାନ୍ୱେଷଣର କ୍ଷେତ୍ରରେ ଏକ ନୂତନ ଉପନୟନରେ ନିମିତ୍ତ ହୋଇଥିଲେ । ମଣିଷ ସତେଅବା ନିଜକୁ ତଥା ପରସ୍ପରକୁ ଖୋଜିବାର କ୍ଷେତ୍ରରେ କେତେ ନୂଆ ସାହସ ପାଇଗଲା, କେତେ ନୂଆ ପ୍ରସାର ସମ୍ଭବ କଲା ଏବଂ କେତେ କେତେ ନୂଆ ଉଚ୍ଚତା ତଥା ଗଭୀରତାର ପ୍ରସ୍ଥ ଦେଇ ଏଣିକି ପୃଥିବୀ ଲାଗି ଏକ ଭବିଷ୍ୟର କଳନା ମଧ୍ୟ କରିପାରିଲା । ଏବଂ, ଏହି ପ୍ରସଙ୍ଗରେ ସବୁଠାରୁ ବଡ଼ ଏବଂ ଉଲ୍ଲେଖଯୋଗ୍ୟ କଥା ହେଉଛି ଯେ, ଯୁଦ୍ଧ ସରିଗଲା ପରେ ମଧ୍ୟ ନୂଆ ସଂସ୍ଥାନଟିକୁ ଛାଡ଼ି ପୁନର୍ବାର ନିଜ ନିଜ ମୂଳ ଘରକୁ ଫେରିଯିବା ନିମନ୍ତେ ଏହି ଦିଗ୍‌ଦର୍ଶକମାନେ ଆଉ ମୋଟେ ମନ କରିନଥିଲେ । ସେମାନେ ଆମେରିକାରେ ରହିଗଲେ । ଏବଂ ସେହିମାନଙ୍କର ଅବଦାନ ଗୁଡ଼ିକର ମାଧ୍ୟମରେ ଆମେରିକା ମଧ୍ୟ ସତେଅବା ସମଗ୍ର ପୃଥିବୀଲାଗି ଏକ ଅଭିନବ ପ୍ରୟୋଗଶାଳାରେ ପରିଣତ ହୋଇ ରହିଗଲା । ଏବେ ମଧ୍ୟ ରହିଛି ।

ତେଣୁ, ଆମେରିକା ଗୋଟିଏ ନୁହେଁ, ଦୁଇଟି ବି ନୁହେଁ, ଏକାବେଳେକେ ଅନେକ ଓ ବହୁବିଧ । ଯିଏ ଯେପରି ଦେଖିବ, ତାକୁ ତାହା ପ୍ରାୟ ସେହିପରି ଦେଖାଯିବ । ଯାହା ଦେଖିବ ବୋଲି ଯିଏ ସେଠାକୁ ଯାଇ ଖୋଜିବ, ତାହା ତାକୁ ଅବଶ୍ୟ ମିଳିଯିବ । ରାଜନୀତିକ ଏବଂ ଶାସନଗତ ଆବଶ୍ୟକତାରୁ ତାକୁ ହୁଏତ ଏକ ଯୁକ୍ତରାଜ୍ୟ ବୋଲି କୁହା ହୋଇ ଆସିଛି, ମାତ୍ର ତଥାପି ଆମେରିକା ପ୍ରାୟ ସର୍ବମତେ ସତେଅବା ନାନା ଖଣ୍ଡର ଏକ ସମଷ୍ଟି ପ୍ରାୟ

ହୋଇ ରହିଛି । ଆମେରିକାକୁ ଆଦୌ କୌଣସି ସମନ୍ୱୟର ଦୃଷ୍ଟାନ୍ତ ବୋଲି ମଧ୍ୟ କହିବାଲାଗି ସେତେ ମନ ଯିବନାହିଁ । ବରଂ ଗୋଟିଏ ଚିଡ଼ିଆଖାନା ବୋଲି କହିଲେ ତଥାପି ଯୁକ୍ତିସଙ୍ଗତ ଲାଗିବ । ସେଠାରେ ଏକ ସରକାର ରହିଛି, ଯାହାକୁ ପୂରା ଦେଶର କେନ୍ଦ୍ର ବୋଲି ସ୍ୱୀକୃତି ଦେଇ ରାଜ୍ୟମାନେ ଚାଲୁଛନ୍ତି । ସତେଅବା ଏକାବେଳେକେ ଅଲଗା ହୋଇ ଚାଲୁଛନ୍ତି । କେନ୍ଦ୍ର ଓ ରାଜ୍ୟ ମଧ୍ୟରେ ଆମ ଭାରତବର୍ଷ ପରି ଏତେ ନିର୍ଭରଶୀଳତା ରହିବାର ସମ୍ଭବତଃ କୌଣସି ପ୍ରୟୋଜନ ହିଁ ନାହିଁ । ଆମେରିକାରେ ହୁଏତ ଅତୀତ ବୋଲି ବି ସେପିରି କିଛି ନାହିଁ । ତା' ଇତିହାସର ବିଗତ ସମୁଦାୟ ପାଞ୍ଚଶହଟି ବର୍ଷ ମଧ୍ୟରେ ସବୁଠାରୁ ଅଧିକ ଦାଗ ଛାଡ଼ି ଯାଇଥିବା ଭଳି ସେଠାରେ ଯେଉଁ ଦୁଇଟି ଘଟଣା ଘଟିଛି, ସେଠା ସୁଖୀ ମଣିଷମାନେ ସେହି କଥାଟିର କୌଣସି ଆଲୋଚନା କରନ୍ତିନାହିଁ । ସତେଅବା ବର୍ତ୍ତମାନଟା ହେଉଛି ଆମେରିକାର ପ୍ରେରଣାଦାୟକ ଅସଲ ଇତିହାସ । କ୍ଷଣ କ୍ଷଣକର ଜୀବନ ହେଉଛି ଅସଲ ଜୀବନ । ସେହି ବର୍ତ୍ତମାନଟାକୁ ନଖଗୁଡ଼ାକୁ ଅନାଇଦେବା ମାତ୍ରକେ ତୁମେ ସତେଅବା ଅତ୍ୟନ୍ତ ଜଳ ଜଳ ଭାବରେ କହିଦେଇ ପାରିବ । ଏହି ବର୍ତ୍ତମାନଗୁଡ଼ାକ ସତେଅବା କ୍ରମେ ଦାନା ବାନ୍ଧି କିମ୍ବା ଘୋରିହୋଇ ଆସି ଭବିଷ୍ୟତ ନାମକ ସେହି ଅନ୍ୟ ଦ୍ରବ୍ୟଟିକୁ ମଧ୍ୟ କୌଣସି ଏକ ଆକାର ଅବଶ୍ୟ ଦେବେ । ତେଣୁ ନିଃଶଙ୍କ ଭାବରେ କେବଳ ଏହି ବର୍ତ୍ତମାନଟାକୁ ବଞ୍ଚିଲେ ହିଁ ଆଦୌ କୌଣସି କ୍ଷତି ହେବା ଉଚିତ ନୁହେଁ । ଏହାକୁ ହିଁ ଦର୍ଶନ ଭିତରକୁ ମଟୁରାଇ ଆଣି ଆମେରିକାର John Dewey ବା William James ବ୍ୟାବହାରିକତାବାଦ ବା Pragmatism ର ମହାତତ୍ତ୍ୱକୁ ଆମ ପୃଥିବୀଲାଗି ପ୍ରଦାନ କରିଛନ୍ତି କି ? ଏହି Pragmatism କୁ ଆମେ ଆଦୌ କୌଣସି ଅପରାଧ ନକରି ମୁହୂର୍ତ୍ତମୁହୂର୍ତ୍ତବାଦ ବୋଲି ମଧ୍ୟ କହିପାରନ୍ତେ । ବହୁ ଟୁକୁଡ଼ାକୁ ନେଇ ଗୋଟାଟାଏ ପରି ଦିଶୁଥିବା ଏହି ଆମେରିକାର ମୁହୂର୍ତ୍ତ ମୁହୂର୍ତ୍ତକୁ ନଳୀରେ ଯୋଖିଦେଲେ ତ ଏକ ନିରନ୍ତରତାର ଅବବୋଧ ଅଲବତ ସମ୍ଭବ ହୋଇଯିବ ବୋଲି ଆମେରିକାରେ ନିଶ୍ଚୟ ବହୁତ ଲୋକ ବିଚାର କରୁଥିବେ ।

ଆମେରିକା ହେଉଛି ଧର୍ମତଃ ସବୁକିଛି ପାଇଁ ଦୁଆରଗୁଡ଼ିକୁ ଖୋଲା ରଖିଥିବା ଗୋଟିଏ ଦେଶ । ଆପଣ ଏଠି ନିଜର ଆଖିପାଇଁ ମନଇଚ୍ଛା ସଉଦା କରି ଯାଇପାରିବେ । ମରହଟ୍ଟୀ ଖୋଜିବେ, ପାଇବେ ; ଆଧୁନିକ ଖୋଜିବେ, ଅବଶ୍ୟ ପାଇବେ । କୌଣସି ସମନ୍ୱୟର ଅଭିଳାଷ ପୋଷଣ କରି ଯେ ଏଠାରେ ଏହିସବୁ ଯାବତୀୟ କେତେ କ'ଣ ଲାଗି ଥାନ ଛାଡ଼ି ଦିଆଯାଇଛି, ସେକଥା ଆଦୌ ନୁହେଁ । ସମସ୍ତେ ଯେଝା ଯେଝା ବାଗରେ ଥାଆନ୍ତୁ ଓ ଯେଝା ଯେଝା ବାଡ଼ ଭିତରେ ମଧ୍ୟ ଥାଆନ୍ତୁ – ସେଥିରେ ମଧ୍ୟ ବହୁତ ଖୁସୀ ଅଛି, ବହୁତ ବର୍ଣ୍ଣାଢ଼୍ୟତା ମଧ୍ୟ ଅବଶ୍ୟ ରହିଛି । ନୂଆ ଆସୁ, ପୁରୁଣା ବି ଆସୁ । Quaker ମାନେ ଥାଆନ୍ତୁ, Ku Klux Klan ମଧ୍ୟ ରହିଥାଉ । ଖ୍ରୀଷ୍ଟିଆନ୍ ଧର୍ମର ଯେତେ ଯେତେ

ଶାଖା ଓ ଉପଶାଖା ପୃଥିବୀରେ ଯାହା ଯେଉଁଠି ସମ୍ଭବ ହୋଇଛି, ଆପଣ ଏହି ଆମେରିକାରେ ହିଁ ସେହି ସମସ୍ତଙ୍କର ଚଳନ୍ତି ନମୁନାମାନ ଦେଖିବାକୁ ପାଇବେ । ତଦ୍‌ବ୍ୟତୀତ ମେନୋନାଇଟ୍‌ ଅଛନ୍ତି, ମର୍ମୋନ୍‌ମାନେ ମଧ୍ୟ ରହିଛନ୍ତି । ବୌଦ୍ଧଧର୍ମ ଅଛି, ଇସ୍‌ଲାମ୍‌ ମଧ୍ୟ ଅଛି । ହିନ୍ଦୁ ଧର୍ମ ରହିଛି, ହିନ୍ଦୁ ଧର୍ମର ଭବ୍ୟ ମନ୍ଦିରମାନ ରହିଛି । ଇହୁଦୀ ଅଛନ୍ତି, ବାହାଇମାନେ ମଧ୍ୟ ରହିଛନ୍ତି । ଯେଝା ଜୀବନ ଯିଏ ବଞ୍ଚୁଛନ୍ତି, ଖୁସୀ ରହିଛନ୍ତି । ଏତେ ଏତେ ଭେକ ପରିଧାନ କରି ରହିଥିଲେ ମଧ୍ୟ ନିଜ ଆମେରିକାନ୍‌ ଜୀବନଟିଏ ବଞ୍ଚିବାଲାଗି କାହାକୁ ଆଦୌ କିଛି ଅସୁବିଧା ହେଉନାହିଁ । ଏକ ଗଣତାନ୍ତ୍ରିକ ସମାଜର ଏକ ନମୁନା ହିସାବରେ ଆମେରିକାକୁ ଚିହ୍ନିବାକୁ ମନ କଲେ ହୁଏତ ଏହି କଥାଟି ତୁମକୁ ସବାଆଗ ଦୃଷ୍ଟିଗୋଚର ହେବାକୁ ଲାଗିବ । ଯିଏ ଯେଝାର ବେଶଭୂଷା ପିନ୍ଧିଥିବେ, ନିଜନିଜର ପରମ୍ପରାଟିକୁ ଅଭିନୟ ବି କରୁଥିବେ, ଗଣତନ୍ତ୍ରର ମଞ୍ଚ କହିଲେ ସାରା ପୃଥିବୀରେ ଆଗାମୀ ଏକ ସମୟରେ ଧର୍ମତଃ ସେହି କଥାଟିକୁ ବୁଝାଇବ କି ? ଆମେରିକାରେ ତୁମେମାନେ ପ୍ରତ୍ୟେକେ ଜଣେ ଜଣେ ରାଜା,- ଠିକ୍‌ ଶହେବର୍ଷ ତଳେ ସ୍ୱାମୀ ବିବେକାନନ୍ଦ ଥରେ ଆମେରିକାବାସୀଙ୍କୁ ସମ୍ବୋଧନ କରି ଏହି କଥାଟିକୁ କହିଥିଲେ । ଆମ ଭାରତବର୍ଷରେ ଆମେ ସତକୁ ସତ କିଏ ରାଜା ବୋଲି କହିବା ? ଭାରତବର୍ଷରୁ ଯାଇ ଆମେରିକାରେ ପହଞ୍ଚିଲେ କେଜାଣି କାହିଁକି ଏହି ପ୍ରଶ୍ନଟିକୁ ନିଜକୁ ପଚାରିବାକୁ ଖୁବ୍‌ ମନ ହୁଏ । କୋଉ ଅଜବ ଦେଶରେ ମୁଁ ଏଠି କାହିଁକି ଆସି ପହଞ୍ଚିଗଲି ବୋଲି ମୋଟେ ଛଟପଟ ଲାଗେନାହିଁ । ଆମେରିକାକୁ ଆହୁରି ଗଭୀର କରି ଅନ୍ତରଙ୍ଗ କରି ଦେଖିବାକୁ ହିଁ ମନ ହୁଏ । ସାରା ପୃଥିବୀ ଲାଗି ହିଁ ଆମେରିକା ନିଜକୁ ଏକ ନିମିତ୍ତ କରି ହୁଏତ ପ୍ରୟୋଗଟିଏ କରୁଛି ବୋଲି ଅନୁଭବ ହୁଏ । ଭଲ ଲାଗେ ।

ଫିଲାଡେଲ୍‌ଫିଆର ନିକଟବର୍ତ୍ତୀ ଲାଙ୍କାଷ୍ଟର୍‌ ନାମକ ଗୋଟିଏ ବସତିରେ ଆମିଶ୍‌ମାନଙ୍କର ଜୀବନ-ସଂସ୍ଥାନଟିକୁ ଦେଖୁଥିବା ସମୟରେ ମୁଁ ବାରବାର ସେହି କଥାସବୁ ଭାବୁଥିଲି । ଭାରତବର୍ଷରେ ବହୁତ ମଣିଷ ଓ ବହୁତ ମନୁଷ୍ୟଗୋଷ୍ଠୀ ପରିସ୍ଥିତି ଦ୍ୱାରା ବାଧ୍ୟ ହୋଇ ଆଦିମ ହୋଇ ରହିଛନ୍ତି । ସେମାନେ ପରମ୍ପରା ଦ୍ୱାରା ବାଧ୍ୟ ହୋଇ ଅତୀତ ଭିତରେ ମୁହଁ ମାଡ଼ି ପଡ଼ିଛନ୍ତି । ଏବଂ, ଚାଲାଖ ଲୋକମାନେ ପ୍ରାୟ ଏକ ଦୁଷ୍ଟ ମତଲବ ସହିତ ସର୍ବଦା କହିବାରେ ଲାଗିଛନ୍ତି ଯେ,ଏମାନେ ଯେମିତି ଅଛନ୍ତି ସେହିଭଳି ଥାଆନ୍ତୁ, ଆମେ ସେମାନଙ୍କର ସଂସ୍କୃତିକୁ ମୋଟେ ହଲଚଲ କରିବାନାହିଁ । ଅଧିକ ଆଦିମ ଭାବରେ ରହିବାକୁ ବାଧ୍ୟ ହେଲେ ମଣିଷମାନେ ଅଧିକ ଅସହାୟ ହୋଇ ରହିବାକୁ ମଧ୍ୟ ବାଧ୍ୟ ହୁଅନ୍ତି । କର୍ମଶକ୍ତି ହୀନ ହୁଏ ଏବଂ ନିଜେ ନିଜକୁ ବଦଳାଇ ପାରେନାହିଁ ବୋଲି ପ୍ରାୟ ଏକ ଚରମ ମାତ୍ରାରେ ଉଦାସୀନ ହୋଇରହେ । ମାତ୍ର, ସ୍ୱେଚ୍ଛାପ୍ରଣୋଦିତ ହୋଇ ଅର୍ଥାତ୍‌ ଏକ ସଚେତନ ନିଷ୍ପତ୍ତି ଦ୍ୱାରା କୌଣସି ବ୍ୟକ୍ତି ଅଥବା ଗୋଷ୍ଠୀ ଯେତେବେଳେ ଆଧୁନିକତାକୁ ବର୍ଜନ କରି ସେହି

ପୂର୍ବ ପରି ଜୀବନ ଅତିବାହିତ କରିବାକୁ ପସନ୍ଦ କରେ, ସେତେବେଳେ ତାହାକୁ ସମ୍ପୂର୍ଣ୍ଣ ଭାବରେ ଏକ ଅନ୍ୟ କଥା ବୋଲି ହିଁ କୁହାଯିବ । ଲାଙ୍କାଷ୍ଟର୍‌ର ଆମିଶ୍‌ଗୋଷ୍ଠୀ ହେଉଛି ସେହିପରି ଗୋଟିଏ ଗୋଷ୍ଠୀ । ଚାରିପାଖରୁ ଏକ ଉତ୍କଟ ଆଧୁନିକତା ଦ୍ୱାରା ଘେରି ହୋଇ ରହିଥିଲେ ମଧ୍ୟ ଏହି ଗୋଷ୍ଠୀ ନିଜର ଏକ ସ୍ୱତନ୍ତ୍ର ବସତି ବନାଇ ଆଗକାଳ ପରି ଏକ ସ୍ୱତନ୍ତ୍ର ଶୈଳୀରେ ବଞ୍ଚୁଛି । ସର୍ବପ୍ରଧାନ ନିର୍ଭର ହେଉଛି କୃଷି ଓ ଗୋପାଳନ । ସେମାନେ ମୋଟରଗାଡ଼ି ବ୍ୟବହାର ନକରି ଘୋଡ଼ାଗାଡ଼ି ବ୍ୟବହାର କରନ୍ତି । ବିଜୁଳି ଆଲୁଅ ନଜାଳି ଲଣ୍ଠନ ବ୍ୟବହାର କରନ୍ତି । ଯଥାସମ୍ଭବ ଜଟିଳ ଯନ୍ତ୍ରପାତିର ବ୍ୟବହାର ଠାରୁ ନିଜକୁ ମୁକ୍ତ ରଖିଥାନ୍ତି । କ୍ଷେତ ଓ କୃଷି ହିଁ ସେମାନଙ୍କର ସର୍ବପ୍ରଧାନ ନିର୍ଭର ହୋଇ ରହିଥିଲେ ମଧ୍ୟ ଏମାନେ ରାସାୟନିକ ଉର୍ବରକ ବ୍ୟବହାର କରନ୍ତିନାହିଁ । ନିଜ ପିଲାମାନଙ୍କର ଶିକ୍ଷା ନିମନ୍ତେ ଏମାନଙ୍କର ନିଜର ସ୍ୱତନ୍ତ୍ର ଇସ୍କୁଲ ମଧ୍ୟ ରହିଛି । ପିଲାମାନେ ବଡ଼ ହୋଇ ଯେପରି ତଥାପି ସେହି ସରଳ ତଥା ଅଳ୍ପ ଆବଶ୍ୟକତାର ଜୀବନକୁ ଯାପନ କରି ପାରିବେ ଏବଂ ଆଧୁନିକତାର ସମୁଦ୍ରଟା ଭିତରେ ହଜି ଯିବେନାହିଁ, ବିଦ୍ୟାଳୟର ସକଳ ପାଠଚର୍ଯ୍ୟାକୁ ସେମାନେ ସେହିପରି ଭାବରେ ତିଆରି ମଧ୍ୟ କରିଛନ୍ତି । ବେଶପୋଷାକକୁ ମଧ୍ୟ ଆଧୁନିକତା ସ୍ପର୍ଶ କରି ପାରିନାହିଁ । ଅଢ଼େଇଶହ ବର୍ଷ ତଳେ ଇଉରୋପରେ ଥିବା ସେମାନଙ୍କର ପୂର୍ବପୁରୁଷମାନେ ଯେଉଁଭଳି ପୋଷାକ ପରିଧାନ କରୁଥିଲେ, ଏମାନେ ଏବେ ମଧ୍ୟ ସେହିପରି କରୁଛନ୍ତି ।

ଯେତେବେଳେ ଅଷ୍ଟାଦଶ ଶତାବ୍ଦୀରେ ଆମିଶ୍‌ମାନେ ଇଉରୋପରେ (ହଲାଣ୍ଡରେ ଓ ସୁଇଜର୍‌ଲାଣ୍ଡରେ) ବାସ କରୁଥିଲେ, ସେତେବେଳେ ସେମାନଙ୍କୁ ବହୁତ ଉତ୍ପୀଡ଼ନ ସହିବାକୁ ପଡୁଥିଲା । ସେମନେ ଏକ ଅଲଗା ପ୍ରକାରର ଜୀବନ ଯାପନ କରୁଥିଲେ ଓ ଅଲଗା ପ୍ରକାରର ବିଶ୍ୱାସମାନ ପୋଷଣ କରୁଥିଲେ ; ସେଇଥି ସକାଶେ ଉତ୍ପୀଡ଼ନ । ସେମାନେ ସେତିକିବେଳେ ଆମେରିକାକୁ ପଳାଇ ଆସିଥିଲେ । ସ୍ୱଚ୍ଛନ୍ଦରେ ନିଜ ଧାରାର ଜୀବନଟିକୁ ବଞ୍ଚିବାରେ ଆମେରିକାରେ ସେମାନଙ୍କର କୌଣସି ବିରୋଧ ହୋଇନଥିଲା । ଆମିଶ୍‌ମାନେ ଯୁକ୍ତରାଜ୍ୟ ଆମେରିକାର ଆହୁରି କେତୋଟି ସ୍ଥାନରେ ମଧ୍ୟ ବସତି ସ୍ଥାପନ କରି ରହିଛନ୍ତି । ସମସ୍ୟା ଅନେକ,- ବାହାର ପୃଥିବୀରୁ ଆସୁଥିବା ପ୍ରଲୋଭନ ଏବଂ ଅଧିକାଂଶ ମନୁଷ୍ୟ ଯେଉଁଭଳି ଚଳୁଛନ୍ତି, ସେହି ଗୁଳାରେ ଚାଲିବାର ଆକର୍ଷଣ, -ଏହିଗୁଡ଼ିକ ହେଉଛି ପ୍ରଧାନ ସମସ୍ୟା । ଦ୍ୱୀପଟି ଭିତରକୁ ବାହାରୁ କିଛି ପରିବର୍ତ୍ତନ ଆସି ଭିତରେ ପ୍ରବେଶ କରୁଛି ସତ, ତଥାପି ଦ୍ୱୀପଟି ରହିଛି । ପିଲାମାନେ ବଡ଼ ହୋଇ ଯେପରି ନିଜକୁ ବେଶୀ ଜଣେ ଜଣେ ବ୍ୟକ୍ତି ଭାବରେ ନଭାବି ଏକ ଗୋଷ୍ଠୀର ଭିତ୍ତି ଉପରେ ଭାବିବେ, ବିଦ୍ୟାଳୟରେ ସେମାନଙ୍କୁ ଦିଆ ଯାଉଥିବା ଶିକ୍ଷାକୁ ମଧ୍ୟ ସେହି ହିସାବରେ ଅନୁକୂଳିତ କରି ରଖାଯାଇଛି । ଆମିଶ୍‌ମାନେ ଈଶ୍ୱରୋପାସନା କରିବାଲାଗି କୌଣସି ଗୀର୍ଜାକୁ

ଯାଆନ୍ତିନାହିଁ । ଲାଙ୍କାଷ୍ଟର୍‌ର ଚଉହଦ୍ଦୀ ଭିତରେ କୌଣସି ଗୀର୍ଜା ନାହିଁ । ସମଗ୍ର ବସତି ହିଁ ହେଉଛି ଈଶ୍ୱରଙ୍କର ସଦିଚ୍ଛା ଏବଂ ଆଶୀର୍ବାଣୀ ଦ୍ୱାରା ପବିତ୍ର, -ଆମିଶ୍‌ମାନେ ସେହି ଆରମ୍ଭରୁ ହିଁ ଏହିପରି ବିଚାରି ଆସିଛନ୍ତି । ଏବଂ, ସେମାନଙ୍କର ଜୀବନକୁ ମଧ୍ୟ ସେହିପରି ଭାବରେ ଅନୁସେଚିତ କରି ରଖିବାର ପ୍ରୟାସ କରିଛନ୍ତି ।

ଭାରତବର୍ଷର ସରକାରକୁ ବୁଝିଲେ ଭାରତବର୍ଷକୁ ଯେ ବୁଝି ହୋଇଯିବ, ସେକଥା ଯେପରି ଠିକ୍ ନୁହେଁ, ଠିକ୍ ସେହିପରି ଆମେରିକାର ସରକାରଟାକୁ ବୁଝିଲେ ଆମେ ଆମେରିକାକୁ କଦାପି ସମୁଚିତ ଭାବରେ ମୋଟେ ବୁଝି ପାରିବାନାହିଁ । ଅବଶ୍ୟ ଏକଥା ମଧ୍ୟ ଠିକ୍ ଯେ, ଭାରତବର୍ଷରେ ସରକାର ନାମକ କଳଟା ଲୋକମାନଙ୍କ ଜୀବନରେ ଯେଉଁଭଳି ଭାବରେ ହସ୍ତକ୍ଷେପ କରେ, ଆମେରିକାର ସରକାର ଆଦୌ ସେପରି ହସ୍ତକ୍ଷେପ କରନ୍ତିନାହିଁ । ଲୋକଜୀବନ ଅଧିକ ପରିପକ୍ୱ ଏବଂ ସଂହତ ହୋଇ ଆସିବା ସଙ୍ଗେ ସଙ୍ଗେ ସେହି ହସ୍ତକ୍ଷେପର ପରିସର ତଥା ପରିମାଣ ହ୍ରାସ ହେବାରେ ଲାଗିଥାଏ । ଗଣତନ୍ତ୍ରର କାହାଣୀଟି ମୁଖ୍ୟତଃ ଏହିପରି ଗୋଟିଏ କାହାଣୀ । ସେହି କାହାଣୀଟି ଆମେରିକୀୟ ଜୀବନର ହାତରେ ସମ୍ଭବତଃ ଏବେ ମଧ୍ୟ ଲେଖାହୋଇ ଚାଲିଛି । ସମଗ୍ର ପୃଥିବୀ ଲାଗି ସେହି ଦେଶର ଗଣତନ୍ତ୍ର ନାନା ପ୍ରକାରର ନମୁନା ଯୋଗାଇ ଦେଉଛି ଓ ନାନାଭାବେ ପ୍ରେରଣାବି ଦେଉଛି । ଆମେରିକାରେ ମୁଁ କ୍ଷୁଦ୍ର ଓ ବୃହତ୍ ସକଳ ଅବସରରେ ସେହି ପ୍ରେରଣାଟିକୁ ହିଁ ଠାବ କରୁଥିଲି । ଉଚିତ ଜୀବନଟିଏ ଯାପନ କରିବା ନିମନ୍ତେ ଏକ ଅପରିହାର୍ଯ୍ୟ ଭିତ୍ତିଭୂମି ରୂପେ ଯେଉଁ ସ୍ୱତନ୍ତ୍ରତା ସବାଆଗ ଓ ସବୁବେଳେ ଦରକାର, ତାହାରି ପ୍ରୟୋଗରେ ଏକ ଜୀବନ୍ତ ଅର୍ଥାତ୍ ସଚଳ ସମାଜରୂପେ ଆମେରିକା କେଉଁଯାଏ ଆସିଲାଣି, ମୁଁ ତାହାରି ଅନୁସନ୍ଧାନ କରୁଥିଲି । ସେହି ନମୁନାମାନଙ୍କରେ ସେଠି ଏବେ ମଧ୍ୟ ନିରନ୍ତର ପ୍ରୟୋଗ ଲାଗିରହିଛି । ଗ୍ରହଣ ଏବଂ ବର୍ଜନ ଅବ୍ୟାହତ ରହିଛି । ଏହିପରି ଏକ ସଚଳ ସମାଜ ଦେଖଣାହାରି ପ୍ରତ୍ୟେକ ମନୁଷ୍ୟକୁ ଅଧିକ ସଚଳ ଏବଂ ଅଧିକ କ୍ରୀୟାଶୀଳ ହେବାରେ ଅବଶ୍ୟ ସାହାଯ୍ୟ କରୁଛି । ଆମେରିକା ଯେ ଏବେ ସମୁଦାୟ ପୃଥିବୀଯାକର ମନୁଷ୍ୟ ଦୃଷ୍ଟିକୁ ଏତେ ଦୃଶ୍ୟମାନ୍ ଭାବରେ ଆକର୍ଷଣ କରିବାରେ ଲାଗିଛି, ସମ୍ଭବତଃ ତାହାକୁ ହିଁ ଏହାର ଏକ ଅନ୍ୟତମ କାରଣ ପରି ଅନୁମାନ କରାଯାଇ ପାରିବ । ସେଥିରେ ଆଚମ୍ବିତ ହେବାର ପ୍ରକୃତରେ ଆଦୌ କିଛି ରହିବା ଉଚିତ୍ ନୁହେଁ ।



ଜର୍ମାନୀ ଦେଶର ସୁଧୀ ଏବଂ ସୁଜ୍ଞ ମହଲରେ ଭାରି ଗୋଟିଏ **କଥା ଶୁଣାଯାଏ** ଯେ, ସେମାନେ ସେଠି ସେମାନଙ୍କର ଅତୀତଟାକୁ ମୋଟେ **ଜୟ କରି ପାରୁ**ନାହାନ୍ତି । ଅର୍ଥାତ୍ ଅତୀତର ଘଟଣାଗୁଡ଼ାକ ସେମାନଙ୍କର ବୁଦ୍ଧି ଓ ସ୍ମୃତିର ଗୋଡ଼ଗୁଡ଼ାକୁ ଏପରି ବଳୀୟାନ ଭାବରେ ଯାବୁଡ଼ି ଧରିଛି ଯେ ସେମାନେ ତାହାର କବଳରୁ ମୋଟେ ମୁକୁଳି ଆସି ପାରୁନାହାନ୍ତି । ଅତୀତ କହିଲେ ଅବଶ୍ୟ ସେମାନେ ନିଜ ଦେଶର ମାତ୍ର ବାରବର୍ଷ ଅବଧିର ଏପରି ଗୋଟିଏ କାଳକୁ ବୁଝନ୍ତି, ଯେତେବେଳେ ଜର୍ମାନୀର ଆଡ଼ଲ୍ଫ୍ ହିଟ୍ଲର୍ ଡିକ୍ଟେଟର ଭାବରେ ଶାସନ କରୁଥିଲେ । ସେହି ସମୟରେ ହିଁ ଜର୍ମାନୀରୁ ହିଁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଦୁନ୍ଦୁଭିଟି ପ୍ରଥମେ ବାଜି ଉଠିଥିଲା ଓ ଆମର ସାମ୍ପ୍ରତିକ ପୃଥିବୀଟାକୁ ତାହା ପ୍ରକୃତରେ ବହୁ ପରିମାଣରେ ଲେଙ୍ଗଡ଼ା କରି ପକାଇଥିଲା । ଆମେରିକାର ଅତୀତ ବୋଲି ସେପରି କିଛି ନାହିଁ । ଆମେରିକା ବର୍ତ୍ତମାନଟାକୁ ନେଇ ଏପରି ତୁଣ୍ଡିବନ୍ଧା ହୋଇ ପଡ଼ିଛି ଯେ, ପଛଟାକୁ ପାସୋରି ପକାଇବାକୁ ସିଏ ହୁଏତ ଅତ୍ୟନ୍ତ ବ୍ୟାଧିତ ଭାବରେ ଏକାନ୍ତ ଆବଶ୍ୟକ ବୋଲି ଅନୁଭବ କରୁଛି । ବର୍ତ୍ତମାନଟାକୁ ବୀର ପରି ମାଡ଼ି ବସିପାରିଲେ ଯେ ଆଗକୁ ରହିଥିବା ଭବିଷ୍ୟତଟା ମଧ୍ୟ ଯେ ହାତଆୟତକୁ ଆସି ପାରିବ, ଆମେରିକାର ଶାସକଠାରୁ ଆରମ୍ଭ କରି ସାଧାରଣ ଲୋକମାନଙ୍କ ପର୍ଯ୍ୟନ୍ତ ସମସ୍ତେ ପ୍ରାୟ ଏକ ଧର୍ମପରି ସେହି କଥାଟି ଉପରେ ବିଶ୍ୱାସ କରୁଛନ୍ତି । ଅବଶ୍ୟ ଏବେ ସେଠି ଉଚ୍ଚ ଉଚ୍ଚ ମହଲରେ The great American dream ବୋଲି କେହି କେହି କହିଲେଣି । ଏକଦା ଶ୍ରୀଯୁକ୍ତ ମାର୍ଟିନ୍ ଲୁଥର୍ କିଙ୍ଗ୍ ମଧ୍ୟ I have a dream ବୋଲି ବହୁ ସମୟରେ କହୁଥିଲେ । ଏହି ଦୁଇ କିସମର ସ୍ୱପ୍ନ ସବୁଯାକଅର୍ଥରେ ସମ୍ପୂର୍ଣ୍ଣ ଦୁଇ ପ୍ରକାରର ଭବିଷ୍ୟ- କଳ୍ପନାକୁ ସୂଚିତ କରି ଦେଇଥାଏ । ପୃଥିବୀର ସବୁ ଦେଶ ଭଳି ଆମେରିକାରେ ମଧ୍ୟ ଅତ୍ୟନ୍ତ ଯୁକ୍ତିସଙ୍ଗତ ଭାବରେ ଭବିଷ୍ୟ-ସ୍ୱପ୍ନ ଅଲଗା ଅଲଗା ପ୍ରକାରର, ଏବଂ ତେଣୁ ବର୍ତ୍ତମାନ ସମ୍ପର୍କରେ ଅନୁମାନ ଓ ଅନୁସ୍ୱୀକାରମାନ ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର । ମାତ୍ର ତା'ବୋଲି ଅତୀତଟାକୁ ଘୋଡ଼େଇ ରଖିବାକୁ ସେଠାରେ ସାଧାରଣ ବିବେକଟା ଏତେ ଏତେ ସଙ୍କୋଚ କାହିଁକି ପ୍ରକାଶ କରେ କେଜାଣି ?

ସେହିପରି ଏକ ଅରାଜୀ ସକାଶେ ଆମେରିକାର ଦାଣ୍ଡଜୀବନରେ ଯେଉଁମାନେ ସବାଆଗରେ ଅଛନ୍ତି, ସେମାନେ ମୋଟେ ପାଞ୍ଚଶହ ବର୍ଷ ପାଖରୁ କାଠି ପକାଇ ତାହାକୁ ହିଁ ଆମେରିକାର ଇତିହାସ ବୋଲି କହିବାକୁ ଇଚ୍ଛା କରନ୍ତି । ତା' ପୂର୍ବରୁ ମଧ୍ୟ ଆମେରିକା ଥିଲା, ମାତ୍ର ସେଥିରେ ସେମାନେ ନଥିଲେ । ସେତେବେଳେ ଅନ୍ୟ ମଣିଷମାନେ ରହିଥିଲେ । ସେତେବେଳେ ଗୋରାମାନେ ଆମେରିକା ନାମକ ଭୂଇଁଟିଏ ରହିଛି ବୋଲି ଆବିଷ୍କାର କରି ନଥିଲେ, ତେଣୁ ସେହି ଭୂଇଁଟିକୁ ସ୍ୱୀକାର କରିବା ହୁଏତ ଏବେ ମଧ୍ୟ ସେମାନଙ୍କ

ନିମନ୍ତେ ମୋଟେ ସହଜ ହୋଇ ପାରୁନାହିଁ । ଏହିପରି ଏକ ଧାରଣା ଅନେକ ମଣିଷ ବା ଗୋଷ୍ଠୀମାନଙ୍କର କ୍ଷେତ୍ରରେ ଯେ ରହିଥାଏ, ଏଇଟା କ'ଣ ସେମାନଙ୍କର ବିବେକରେ କ'ଣ ଗୋଟାଏ ବିଣ୍ଡି ହୋଇ ରହି ଯାଇଥିବାରୁ ବା ସେମାନଙ୍କର ସଂସ୍କୃତିରେ କେଉଁଠାରେ କ'ଣ କେଁଟାଏ ଥିବାରୁ ଘଟିଥାଏ କି ? ଆମେରିକାରେ ଏହି କାଟର ଲୋକମାନେ ସ୍ୱୀକାର କରନ୍ତୁ ବା ନକରନ୍ତୁ, ସେମାନଙ୍କ ପୂର୍ବରୁ ଆମେରିକାରେ ରହିଥିବା ଅତୀତଟା ତଥାପି ଏକଦା ରହିଥିଲା । ସେହି ଅତୀତର ପ୍ରତିନିଧିତ୍ୱ କରୁଥିବା ମନୁଷ୍ୟମାନେ ମଧ୍ୟ ଥିଲେ ; ଏବଂ ସେମାନେ ଆମେରିକାରେ ଏବେ ମଧ୍ୟ ଅଛନ୍ତି । ବର୍ତ୍ତମାନଟାକୁ ବୁଜୁଳା କରି ଆମେରିକାର ମୁଖ୍ୟ ସ୍ରୋତଟା ଏବେ ଆମର ଏହି ପୃଥିବୀଟାରେ ବୀର ପରି କୁହାଟ ମାରୁଥିବା ବେଳେ ସେହି ଅନ୍ୟ ମଣିଷମାନଙ୍କର ମନରେ କିଭଳି ପ୍ରତିକ୍ରିୟାମାନ ହୋଇଥାଏ କେଜାଣି ?

ଇତିହାସରୁ ଖବର ମିଳୁଛି, ସ୍ପେନ୍ ଓ ପର୍ତ୍ତୁଗାଲର ନବାଗତମାନେ ଏହି ନୂଆ ପୃଥିବୀକୁ ଆସି ପ୍ରଥମେ ଦକ୍ଷିଣ ଆଡ଼କୁ ମାଡ଼ି ଯାଇଥିଲେ । ସେମାନେ ଲୋହିତମାନଙ୍କର ଜୀବନବସତିକୁ ଛିନ୍ନଛତ୍ର, କରି ଦେଇଥିଲେ ଏବଂ ତାହାରି ଉପରେ ଆପଣା ଲାଗି ଆପଣା ଛାଞ୍ଚରେ ନୂଆ ସଂସ୍ଥାନଟିଏ ନିର୍ମାଣ କଲେ । ଆଗରୁ ଯାହାକିଛି ଥିଲା, ତାହାରି ଧ୍ୱଂସ ଉପରେ ହିଁ ସେମାନଙ୍କର ନୂଆ ଡ଼ିହଟି ତିଆରି ହୋଇଥିଲା । ପ୍ରଧାନତଃ ଅସ୍ତ୍ରର ବଳରେ ହିଁ ସେମାନଙ୍କର ଏହି ବିଜୟ ସମ୍ଭବ ହୋଇଥିଲା । ଲୋହିତମାନଙ୍କର ସେହି ତିନୋଟିଯାକ ସଭ୍ୟତା ସମଗ୍ର ପୃଥିବୀ ନିମନ୍ତେ ସମ୍ପଦ ଏବଂ ସଂସ୍କୃତିର ଗନ୍ତାଘରେ ସ୍ୱତନ୍ତ୍ର ଭାବରେ ସେତେବେଳେ ଯାହାସବୁ ହାସଲ କରିଥିଲା, ବର୍ତ୍ତମାନ ଆମେରିକାର ବହୁ ସଂଗ୍ରହାଳୟରେ ତାହାରି ସନ୍ତକ ଓ ସାକ୍ଷ୍ୟମାନ ଗଛିତ ହୋଇ ରହିଛି ଓ ବହୁ ବିଶ୍ୱବିଦ୍ୟାଳୟ ସେଗୁଡ଼ିକର ଅଧ୍ୟୟନ ମଧ୍ୟ କରୁଛନ୍ତି । ହୁଏତ ସେହି ସନ୍ତକ ଏବଂ ସାକ୍ଷ୍ୟଗୁଡ଼ିକର ମାଧ୍ୟମରେ ସେହି ଅବଲୁପ୍ତ କାଳଟି ବିଷୟରେ କେତେ କ'ଣ ଅନୁମାନ କରାଯାଇ ପାରୁଛି, ମାତ୍ର ସବୁକିଛିର ପଛରେ ରହିଥିବା ମଣିଷମାନେ ସେହିଟି ଭିତରୁ ସତେଅବା ଭୂତଙ୍କ ପରି ଆଧୁନିକ ଏହିସବୁ ଉଦ୍ୟମଗୁଡ଼ିକର ଉଦ୍ଦେଶ୍ୟରେ ବିଦ୍ରୂପ ହିଁ କରିବାରେ ଲାଗିଥିବେ । ମଣିଷ ଯେଉଁ ପ୍ରେମ ଓ ପରାକ୍ରମରେ ଭାଙ୍ଗେ, ଛାରଖାର କରିଦିଏ ଓ ତାହାକୁ ନିଜର ଏଡ଼େବଡ଼ ବିଜୟ ବୋଲି ଦର୍ଶାଇ ହେଉଥାଏ, ଠିକ୍ ସେହି ପରାକ୍ରମ ଓ ପ୍ରେମରେ କ'ଣ ପୁଣି ମାଟିଗୁଡ଼ାକୁ ଉଖାଡ଼ି ଓ ଖେଳାଇ ସେହିଗୁଡ଼ିକୁ ଅଧ୍ୟୟନ ବି କରିବାକୁ ମନ କରେ ? ପୃଥିବୀରେ ଯେଉଁମାନେ ଅଧିକ ସମ୍ପନ୍ନ ଓ ଅଧିକ ଶକ୍ତିଶାଳୀ, ସେମାନେ ଅନ୍ୟମାନଙ୍କୁ ବିଲୁପ୍ତ କରି ଦେବାକୁ ସତେଅବା ଏକାନ୍ତ ଅତ୍ୟାବଶ୍ୟକ ବୋଲି ବିଚାରି ଆସିଛନ୍ତି । ସେହି ଘଟଣାଗୁଡ଼ିକର ଦୀର୍ଘ ଏତେଶହ ବର୍ଷପରେ ମଧ୍ୟ ସେହି ପ୍ରବୃତ୍ତିମାନେ ଆମ ପୃଥିବୀର ଭାଗ୍ୟ ଉପରେ ଘୋଡ଼ା ଚଢ଼ି ରହିଛନ୍ତି । ଗୋରା ମଣିଷର ବିବେକ କ'ଣ ଆମେରିକାରେ ଲୋହିତମାନଙ୍କୁ ସାଥୀ କରି, ସାଙ୍ଗରେ ନେଇ ଯାହାକିଛି ଗଢ଼ିବାର ଗଢ଼ି ପାରିନଥାନ୍ତା ?

ଏସବୁର ପରବର୍ତ୍ତୀ କାଳରେ ଯୁକ୍ତରାଜ୍ୟ ଓ ଏବର କାନାଡ଼ାକୁ ଇଉରୋପରୁ ଗୋରାମାନେ ଆସି ପହଞ୍ଚି ଯାଇଥିଲେ । ଏହି ନୂତନ ପୃଥିବୀଟାରେ ଯେ ଯାହାକୁ ଯେତେ ଧନସମ୍ପତ୍ତି ପୂର୍ଣ୍ଣ ହୋଇ ରହିଛି, ସେହି ଖବରଟା ସେମାନଙ୍କୁ ଆଗରୁ ଅବଶ୍ୟ ମିଳି ସାରିଥିଲା । ଇଂଲଣ୍ଡର ଦସ୍ୟୁମାନେ ଆଗ ଆଗ ଆଟଲାଣ୍ଟିକ ମହାସାଗରର ଅଧବାଟରେ ଛକି ସ୍ପେନୀୟମାନଙ୍କର ଜାହଜଭେଳା ଉପରେ ଆକ୍ରମଣ କରି ମାଲମତା ଲୁଣ୍ଠନ କରି ବି ନେଉଥିଲେ । ସେହି ଲୁଣ୍ଠନଗୁଡ଼ିକରୁ ମିଳୁଥିବା ଅଭିଜ୍ଞତାରୁ ସେମାନେ ଯେଉଁ ଭୂଇଁଟିରେ ପ୍ରକୃତରେ ଏତେ ଦ୍ରବ୍ୟଧନ ରହିଛି, ସେମାନେ ସେହି ଭୂଇଁଟି ପ୍ରତି ମଧ ବେଶ୍ ଲୁବ୍ଧ ଏବଂ ଆକୃଷ୍ଟ ହୋଇ ପଡ଼ିଥିବେ । ଏବଂ, ସେହି ଆକର୍ଷଣ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ଇଉରୋପରେ ଥିବା ନିଜର ପୁରୁଣା ଭୂଇଁଟା ହୁଏତ ଆଉ ସେତେ ଭଲ ମୋଟେ ଲାଗିନଥିବ । ସେହି ଭୂଇଁର ଅଭାବ ଏବଂ ଅକାମ୍ୟଗୁଡ଼ାକ ସେମାନଙ୍କୁ ନିଶ୍ଚୟ କ୍ରମେ ତାଳ ପରି ଦେଖା ଯାଇଥିବ ଏବଂ ଆମେରିକାର ନୂଆ ଭୂଇଁଟାକୁ ପଳାଇ ଆସିଲେ ସେମାନଙ୍କୁ ସେଗୁଡ଼ିକରୁ ନିଶ୍ଚୟ ପରିତ୍ରାଣ ମିଳିଯିବ ବୋଲି ଏକ ବିକଳ୍ପ ଆକର୍ଷଣ ସେମାନଙ୍କୁ ସଚଳ ବି କରାଇଥିବ । କାରଣ, ମୁଖ୍ୟତଃ ଧର୍ମ ବା ସମାଜକ୍ଷେତ୍ରରେ ଉତ୍ପୀଡ଼ନରୁ ରକ୍ଷା ପାଇବା ସକାଶେ ଯଦି ସେମାନେ ଇଉରୋପ ଛାଡ଼ି ଆମେରିକା ଆସିଥାନ୍ତେ, କେବେ ନିଜର ଆଚରଣରେ ଏଠି ନୂତନ ଭୂମିଟି ଉପରେ ସେମାନେ କଦାପି ଅନ୍ୟମାନଙ୍କ ଉପରେ ଉତ୍ପୀଡ଼ନ ଆରମ୍ଭ କରି ଦେଇନଥାନ୍ତେ । ସେମାନେ ଅଧିକ ସଂବେଦନଶୀଳତା ଦେଖାଇଥାନ୍ତେ, ମଣିଷର ଦରଦ ସହିତ ଅନ୍ୟ ମନୁଷ୍ୟମାନଙ୍କର ସମ୍ମୁଖୀନ ହୋଇଥାନ୍ତେ; ଏବଂ, ଯେଉଁମାନେ ସେହି ଭୂମିରେ ସତେଅବା କେଉଁ ଅଲିଖିତ କାଳରୁ ବାସ କରି ଆସିଥିଲେ, ସବାଆଗ ସେମାନଙ୍କର ବିଶ୍ୱାସଭାଜନ ହୋଇ ହିଁ ସେଠାରେ ବସବାସ କରିବାକୁ ଶିକ୍ଷା କରିଥାନ୍ତେ । ତେଣୁ, ଧରି ନିଆ ଯାଇପାରେ ଯେ, ସେମାନଙ୍କ ପାଟିରୁ ମଧ ଲାଳ ବୋହୁଥିଲା ଓ ସେମାନେ ଏଠି ନିରଙ୍କୁଶ ଭାବରେ ଇନ୍ଦ୍ର ହୋଇ ରହିବାର ନିଶାରେ ହିଁ ଆକର୍ଷିତ ହୋଇ ଆମେରିକାକୁ ଆସିଥିଲେ ।

ପ୍ରଥମ ପର୍ଯ୍ୟାୟରେ ସୁନାଟା ହିଁ ସବୁଠାରୁ ଅଧିକ ଆକର୍ଷଣ କରିଥିବ । ସୁନା ଧରି ଜାହଜରେ ବୋହି ନିଜର ମୂଳ ପୃଥିବୀକୁ ପ୍ରସ୍ଥାନ କରିବା ହିଁ ସେତେବେଳେ ମୂଳ ପଦ୍ଧତି ହୋଇ ରହିଥିବ । ମାତ୍ର, ଏହି ନୂତନ ଭୂମିରେ ସ୍ଥାୟୀ ହୋଇ ରହିବାର ନିଷ୍ପତ୍ତିଟିକୁ କରିସାରିବା ପରେ ଏହାକୁ ଆବାସଯୋଗ୍ୟ ଓ ଆବାଦଯୋଗ୍ୟ କରିବାର କାର୍ଯ୍ୟଟି ହିଁ ସର୍ବାଗ୍ର ହୋଇ ଦଣ୍ଡାୟମାନ ହୋଇଥିବ । ସେତିକିବେଳେ ହୁଏତ ସ୍ଥାନୀୟ ବାସିନ୍ଦାମାନଙ୍କ ଉପରେ ସେମାନଙ୍କର ନଜର ପଡ଼ିଥିବ । ସେମାନଙ୍କର ଶ୍ରମ ବିନା ଏହି ଭୂମିଟିକୁ ବାସଯୋଗ୍ୟ କରିବା ପାଇଁ ସେମାନଙ୍କୁ ସମ୍ଭବତଃ ଅନ୍ୟ ରାସ୍ତା ବି ମୋଟେ ଦେଖା ଯାଇନଥିବ । ଇଉରୋପୀୟ ମାନଙ୍କର ହାତରେ ବନ୍ଧୁକ ଥିଲା, ଅଧିକ ଜ୍ଞାନ ଥିଲା ; ସ୍ୱୟଂ ଭଗବାନ ହିଁ ସେମାନଙ୍କୁ ଏହି ପୃଥିବୀକୁ ଭୋଗ କରିବା ନିମନ୍ତେ ଧର୍ମପୁସ୍ତକରେ ପରାମର୍ଶ ଦେଇଥିଲେ. -ତେଣୁ ଏକାନ୍ତ କୁଣ୍ଠାରହିତ ଭାବରେ ଏଠି ସେମାନଙ୍କର ରାଜ୍ୟଟିକୁ ସମ୍ଭବ କରିବାରେ

ଆଉ ଆଦୌ କୌଣସି ବାଧା କାହିଁକି ରହିଥାଆନ୍ତା ? ତେଣୁ, ପ୍ରାୟ ବିଜୟୀ ବୀରମାନଙ୍କର ବିଶ୍ୱାସ ସହିତ ଇଉରୋପୀୟମାନେ ଲୋହିତମାନଙ୍କୁ କାମରେ ଲଗାଇଥିଲେ ଓ ଶ୍ରମ ଖଟାଇଲେ । ସୁନା ପାଇବା ନିମନ୍ତେ ମଧ୍ୟ ଜମି ଖୋଳିବାକୁ ପଡୁଥିଲା ଏବଂ ସେହି କାମଟି ପାଇଁ ଲୋହିତମାନଙ୍କର ପ୍ରୟୋଜନ ରହିଥିଲା । ଲୋହିତମାନଙ୍କର ସୁନାରେ କୌଣସି ଭାଗ ନଥିଲା ଅଥବା ଇଉରୋପୀୟ ମାନଙ୍କର ଶ୍ରମରେ ମଧ୍ୟ କୌଣସି ଭାଗ ନଥିଲା । ଏହିପରି ଭାବରେ ଗୋରାମାନଙ୍କର ଉପନିବେଶ ଆଟଲାଣ୍ଟିକ୍ ଉପକୂଳରୁ ମାଡ଼ି ମାଡ଼ି ଦକ୍ଷିଣ ପଟର ବୃହତ୍ ନଦୀଦ୍ୱୟର ଉର୍ବର ଅବବାହିକା ଦେଇ ପଶ୍ଚିମ ଉପକୂଳ ଅର୍ଥାତ୍ ପ୍ରଶାନ୍ତ ମହାସାଗର ପଟର କାଲିଫର୍ଣ୍ଣିଆରେ ଯାଇ ପହଞ୍ଚି ଯାଇଥିଲା । ହିସାବ କହୁଛି ଯେ କାଲିଫର୍ଣ୍ଣିଆର କ୍ଷୁଦ୍ର ନଦୀଉପତ୍ୟକା ଗୁଡ଼ିକରେ ଲୋହିତମାନେ ବହୁସଂଖ୍ୟାରେ ବାସ କରୁଥିଲେ । ସେହି ଅଞ୍ଚଳରେ ଆପଣାର ଆଧିପତ୍ୟ ଜମାଇବାକୁ ଏବଂ ଲୋହିତମାନଙ୍କୁ ନିଜର ଯୋଜନାଗୁଡ଼ିକ ଅନୁସାରେ ମଣ କରିବାକୁ ପ୍ରାୟ ଏକ ସଂହାରପର୍ବର ଆଶ୍ରୟ ନେବାକୁ ପଡ଼ିଥିଲା ।

ସେହି ସଂହାରପର୍ବଟାର ପୂରା ଇତିହାସ କାହିଁକି କିଏ ରଖିଥାଆନ୍ତା ? ମାତ୍ର, ତଥାପି ଯେତିକି ସୂଚନା ମିଳୁଛି, ସେଥିରୁ ସ୍ପଷ୍ଟ ହୋଇଯାଉଛି ଯେ, ଗତ ଶତାବ୍ଦୀର ଅଧା ପର୍ଯ୍ୟନ୍ତ ତାହା ଅତ୍ୟନ୍ତ ସୁଚିନ୍ତିତ ଭାବରେ ଲାଗି ରହିଥିଲା । ସେତେବେଳକୁ ଯୁକ୍ତରାଜ୍ୟ ଆମେରିକା ବ୍ରିଟିଶ୍ ରାଜଦଣ୍ଡରୁ ମୁକ୍ତ ହୋଇ ସ୍ୱାଧୀନ ହୋଇ ସାରିଲାଣି । ଆମେରିକାର ସ୍ୱାଧୀନତା ସଂଗ୍ରାମଟିର ସଂକ୍ରାନ୍ତରେ ଆମେ ଯେଉଁ ଉଚ୍ଚ ଉଦ୍ଦୀପନାପୂର୍ଣ୍ଣ ବାଣୀଗୁଡ଼ିକ ଉଚ୍ଚାରିତ ହୋଇଥିବାର ନଜିର ପାଇଥାଉ, ବିଚରା ଲୋହିତମାନଙ୍କ ସକାଶେ କ'ଣ ସେଗୁଡ଼ିକର କୌଣସି ମୂଲ୍ୟଗତ ପ୍ରାସଙ୍ଗିକତା ନଥିଲା ? ଏବଂ, ଆହୁରି ବିସ୍ମୟକର ମନେ ହେଉଛି ଯେ, ଯୁକ୍ତରାଜ୍ୟ ଆମେରିକାର ଜେଫରସନ୍, ଆବ୍ରାହାମ୍ ଲିଙ୍କନ୍‌ଙ୍କ ପରି ଯେଉଁ ମନୀଷୀମାନେ ସେହି ସମୟରେ ଆମେରିକାରେ ନେତୃତ୍ୱ ଦେଉଥିଲେ ଏବଂ ସମଗ୍ର ପୃଥିବୀ ଏବେ ମଧ୍ୟ ଯେଉଁମାନଙ୍କର ନାମକୁ ଗର୍ବର ସହିତ ସ୍ମରଣ କରୁଛି, ସେମାନେ ମଧ୍ୟ କ'ଣ ଲୋହିତମାନଙ୍କର ପୂର୍ଣ୍ଣ ଅବଲୋପ କାମନା କରୁଥିଲେ ? ସେତେବେଳେ ଆଜି ପରି ମଧ୍ୟ ସେହିଦେଶର ସରକାର ପୂର୍ବପଟୁ ଚାଲୁଥିଲା । ଏପାଖରୁ ନିର୍ଦ୍ଦେଶଗୁଡ଼ିକ ଯାଇ ପଶ୍ଚିମ ପଟେ ପହଞ୍ଚିବା ପାଇଁ ବହୁତ ସମୟ ଲାଗୁଥିଲା । ରାଷ୍ଟ୍ରୀୟ ଶାସନର ସନ୍ତକ ସ୍ୱରୂପ ଏଠାରେ ଅଧସ୍ତନମାନେ ଶାସନ କରୁଥିଲେ ଏବଂ ଏପଟର ହାଲଚାଲ ଗୁଡ଼ିକୁ ପତ୍ରଦ୍ୱାରା କେନ୍ଦ୍ର ମହକୁମାକୁ ପ୍ରେରଣ କରୁଥିଲେ । ପୂର୍ବ ପଟୁ କୌଣସି ଉଚ୍ଚାଧିକାରୀ କେବେ ସ୍ୱୟଂ ପଶ୍ଚିମ ପଟକୁ ଆସି ସ୍ଥିତିଗୁଡ଼ିକୁ ସିଧା ଦେଖିବା ସେତେବେଳେ ଆଦୌ ସମ୍ଭବ ନଥିଲା । ହଁ, କେନ୍ଦ୍ର ସରକାରଙ୍କ ତରଫରୁ ସ୍ୱତନ୍ତ୍ର ସ୍ଥାନମାନଙ୍କରେ ସେନା ମୁତୟନ ରହିଥିଲେ । ସେମାନେ ଶାନ୍ତିରକ୍ଷା କରୁଥିଲେ । ସେହି ଶାନ୍ତିରକ୍ଷା ଦୁର୍ବଳମାନଙ୍କର ଆଦୌ କୌଣସି ହିତ କରିବାରେ ଅର୍ଥାତ୍ ଉତ୍ପୀଡ଼ନଗୁଡ଼ିକର ଆଘାତକୁ ହ୍ରାସ କରିବାରେ ପ୍ରାୟ କିଛି କରି ପାରୁନଥିଲା । ତଥାପି ସୁରକ୍ଷା ଦେବାପାଇଁ ରହୁଥିଲା । ସେତେବେଳେ ସ୍ଥାନୀୟ

ଶାସନକର୍ତ୍ତାମାନେ କେନ୍ଦ୍ର ମହକୁମାକୁ ଯେଉଁସବୁ ବିବରଣୀ ପ୍ରେରଣ କରୁଥିଲେ । ସେଥିରୁ ଅବଶ୍ୟ ଘଟଣାଗୁଡ଼ିକ ବିଷୟରେ କିଛି ବିବରଣୀ ମିଳିପାରୁଛି । ସ୍ଥାନୀୟ ଖବରକାଗଜରେ ମଧ୍ୟ ବେଳେ ବେଳେ ଏହି ସଂକ୍ରାନ୍ତୀୟ କିଛି କିଛି ଘଟଣା ପ୍ରକାଶିତ ହେଉଥିଲା ।

ସୁମାରିଟିଏ କହିଦେଉଛି ଯେ, ଇଉରୋପୀୟମାନେ ଯେତେବେଳେ ୧୭୬୯ ଖ୍ରୀଷ୍ଟାବ୍ଦରେ ଏହି କାଲିଫର୍ଣ୍ଣିଆ ରାଜ୍ୟରେ ଆସି ପ୍ରଥମେ ପ୍ରବେଶ କରିଥିଲେ, ସେତେବେଳେ ତିନିଲକ୍ଷରୁ ଅଧିକ ଲୋହିତ ରଙ୍ଗର ମନୁଷ୍ୟ ସେହି ଅଞ୍ଚଳରେ ବାସ କରୁଥିଲେ । ଏବଂ, ପ୍ରାୟ ଶହେ ବର୍ଷ ମଧ୍ୟରେ ୧୮୬୦ ଖ୍ରୀଷ୍ଟାବ୍ଦରେ ସେମାନଙ୍କର ସଂଖ୍ୟା ମାତ୍ର ତିରିଶ ହଜାରକୁ ଖସି ଆସିଥିଲା । ସେତେବେଳକୁ ସେଠାରେ ଖ୍ରୀଷ୍ଟିଆନ୍ ମିଶନାରିମାନେ ଭର୍ତ୍ତି ହୋଇ ଯାଇଥିଲେ ଏବଂ ସେମାନେ ଇଉରୋପର ସ୍ପେନ୍‌ରେ ଥିବା ରଜାଙ୍କଠାରୁ ଯେଉଁ ଅନୁମତି ପତ୍ରିଟି ପାଇ ସାରିଥିଲେ, ତଦ୍ଦ୍ୱାରା ନୂଆ ହୋଇ ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ ହୋଇଥିବା ଲୋହିତମାନଙ୍କୁ ସେମାନଙ୍କର କୃଷିକ୍ଷେତ୍ର ଏବଂ ପଶୁପାଳନ କେନ୍ଦ୍ରମାନଙ୍କରେ ଖୁବ୍ ସହଜରେ ଶ୍ରମିକରୂପେ ନିଯୁକ୍ତ କରାଯାଇ ପାରୁଥିଲା । ଲୋହିତମାନଙ୍କର ସଂଖ୍ୟାରେ ଯେ ଏପରି କ୍ଷିପ୍ର ଭାବରେ ହ୍ରାସ ହୋଇ ଆସିଲା, ତାହାର କାରଣ ହେଉଛି ଯେ, ସେମାନେ ଆଗନ୍ତୁକମାନଙ୍କର କାରଣରୁ ନୂଆ ହୋଇ ସଂକ୍ରାମିତ ହୋଇ ଆସିଥିବା ରୋଗମାନଙ୍କ ହେତୁ ମୃତ୍ୟୁମୁଖରେ ପଡ଼ିଲେ । ବହୁକାଳରୁ ଚଳି ଆସିଥିବା ସେମାନଙ୍କର ଜୀବନଧାରା ସମ୍ପୂର୍ଣ୍ଣ ଭାବରେ ଉଚ୍ଛନ୍ନ ହୋଇ ଯାଇଥିଲା ଓ ତଦ୍ଦ୍ୱାରା ସେମାନଙ୍କୁ ନିଜର ଅନ୍ତର ଭିତରେ ଏକ ଦାରୁଣ ମାଡ଼ ସହିବାକୁ ପଡ଼ିଥିଲା । ପାରମ୍ପରିକ ଚଳଣିଗୁଡ଼ିକ ଏକାବେଳେକେ ଅସ୍ତବ୍ୟସ୍ତ ହୋଇଗଲା ଓ ସେମାନେ ନିଜର ଅଭ୍ୟସ୍ତ ଗୋଷ୍ଠୀଜୀବନର ଭାରସାମ୍ୟଟିକୁ ହରାଇ ବସିଥିଲେ । ସେମାନେ କ୍ରମେ ସମ୍ପଦଶୂନ୍ୟ ହୋଇ ବସିଲେ । କ୍ଷେତ ହାତଛଡ଼ା ହୋଇଗଲା । ସେମାନଙ୍କର ଚତୁର୍ଦ୍ଦିଗର ଜଙ୍ଗଲ ଉପରେ ଆଦୌ କୌଣସି ଦଖଲ ରହିଲାନାହିଁ । ଏବଂ, ସବାଶେଷ କାରଣଟି ହେଉଛି ଯେ, ସେମାନଙ୍କୁ ନବାଗତ ସ୍ଥାନାଧିକାରୀମାନେ ସତେଅବା ସୁଯୋଜିତ ଭାବରେ ହତ୍ୟା କରିବାର ଏକ ଅଭିଯାନ ଆରମ୍ଭ କରି ଦେଇଥିଲେ । ଲୋହିତ ମଣିଷମାନେ ସମୂଳେ ଉତ୍ପାଟିତ ଏବଂ ବିଲୁପ୍ତ ହୋଇ ସାରିଲେ ଯାଇ ଯେ ଶ୍ୱେତକାୟମାନେ ନିର୍ବିଘ୍ନ ହୋଇ ସେହି ଭୂମିରେ ବାସ କରିପାରିବେ, ଏମାନଙ୍କର ଯାବତୀୟ କାରଣରୁ ସତେଅବା ତାହାହିଁ ପ୍ରମାଣିତ ହୋଇ ଯାଉଥିଲା ।

ସେମାନଙ୍କର ଜଙ୍ଗଲଭିତରେ ପ୍ରବେଶ କରି ଗୋରାମାନେ ପ୍ରାଣୀମାନଙ୍କୁ ବଧ କଲେ ଓ ତାହା ଫଳରେ ଲୋହିତମାନେ ଶିକାର କରିବାଲାଗି ଆଉ ଗୋଟିଏ ହେଲେ ଜନ୍ତୁ ବାକୀ ରହିଲେନାହିଁ । ସେମାନଙ୍କର ବସତି ପାଖରେ ଥିବା ନଦୀ ଏବଂ ଅନ୍ୟ ଜଳାଧାର ମାନଙ୍କରୁ ମାଛମାନଙ୍କୁ ହୁରାଡ଼ି ନିଆଗଲା । ଜଙ୍ଗଲରୁ ଆଖିବୁଜା ଗଛ କଟାଗଲା ଓ ଅରଣ୍ୟକୁ ବରବାଦ କରି ଦିଆ ଯାଇଥିଲା । ଜଙ୍ଗଲ ତ ଲୋହିତମାନଙ୍କୁ ଖାଦ୍ୟ ମଧ୍ୟ ଯୋଗାଉଥିଲା । ସେମାନେ ଓକ୍ (oak) ଗଛର ଫଳକୁ ମଧ୍ୟ ଖାଦ୍ୟରୂପେ ବ୍ୟବହାର କରି ଆସୁଥିଲେ ।

ଜଙ୍ଗଲ ସଫା କରି ନିଆଯିବା ପରେ ତଥାପି ଯେତିକି ଓକ୍ ଗଛ ବାକୀ ରହିଲା, ସେଥିରେ ମଧ୍ୟ ଆଉ ଫଳ ଧରିଲାନାହିଁ । ଗୋରା ଅନୁପ୍ରବେଶର ସତେଅବା ପ୍ରତିବାଦ କରି ଗଛମାନଙ୍କରେ ଫଳ ଧରିବା ବନ୍ଦ ହୋଇଗଲା ବୋଲି ଲୋହିତମାନେ ଆଶଙ୍କା ମଧ୍ୟ କରିଥିଲେ । କାରଣ, ଆଗରୁ ତ ପ୍ରତ୍ୟେକ ବର୍ଷ ଫଳ ଧରୁଥିଲା । କୌଣସି ଅଶୁଭ ପଶି ନଥିଲେ ଫଳ ଧରିବା କଦାପି ବନ୍ଦ ହୋଇ ନଥାନ୍ତା ବୋଲି ଲୋହିତମାନେ ଭାବିବାକୁ ଲାଗିଲେ ।

ଅଧିକାରୀ ଗୋରାମାନେ ଲୋହିତମାନଙ୍କୁ ତ ମନୁଷ୍ୟ ବୋଲି ବିଚାର କରୁନଥିଲେ । ସେମାନେ ଏମାନଙ୍କୁ କୌଣସି ଇତର ପ୍ରାଣୀ ବା ପଶୁ ବୋଲି ହିଁ ଭାବୁଥିଲେ । ସେମାନଙ୍କ ଉପରେ ଯାବତୀୟ ପ୍ରକାରର ଅତ୍ୟାଚାର କରିବାକୁ ସତେଅବା ଗୋଟାଏ ବାହାଦୁରୀ ପରି ମନେ କରା ଯାଉଥିଲା । ଯେତେବେଳେ ଦରକାର ପଡୁଥିଲା ଗୋରାମାନେ ଲୋହିତମାନଙ୍କର ବସତିଗୁଡ଼ିକୁ ଯାଇ ସେମାନଙ୍କୁ ଦଣ୍ଡର ଭୟ ଦେଖାଇ ଘଉଡ଼ାଇ ଆଣୁଥିଲେ; ସେମାନଙ୍କର ଜମିରେ ଫସଲ କଟାଉଥିଲେ, ବାଡ଼ ଦେବା କାମରେ ଓ ଘରତିଆରି କରିବା କାମରେ ମଧ୍ୟ ବଳପୂର୍ବକ ଖଟାଉଥିଲେ । ସେଇ ଗୋରାମାନଙ୍କ ଠାରୁ ହିଁ ଲୋହିତମାନେ ମଦ ପିଇ ଶିଖିଲେ, ମାତାଲ ହେଲେ ଓ ବିବେକ ହଜାଇଲେ । ଯେଉଁସବୁ ସ୍ଥାନରେ ସୁନାର ସନ୍ଧାନ ମିଳୁଥିଲା, ସେଠାରେ ଖଣିକାମ ଆରମ୍ଭ ହୋଇ ଯାଉଥିଲା । ଲୋହିତମାନଙ୍କୁ ହିଁ ଶ୍ରମିକ ରୂପେ ବ୍ୟବହାର କରା ଯାଉଥିଲା । ଯେଉଁସବୁ ଜମିରେ ସୁନା ପାଇଁ ମାଟି ତଡ଼ା ଯାଉଥିଲା, ସେଗୁଡ଼ିକ ମୌରସୀ କାଳରୁ ହିଁ ଲୋହିତମାନଙ୍କର ଜମି ଥିଲା । ଖଣିକାମର ଦୁର୍ଯୋଗ ଆସି ପହଞ୍ଚିଲେ ସେମାନଙ୍କୁ ସେହି ଜମି ହରାଇବାକୁ ପଡୁଥିଲା । କୌଣସି ଜାଗାରେ ସୁନା ମିଳିଛି, ତେଣୁ ସେଠାରେ ଖଣି ଖୋଳାହେବ, -ଏଥିଲାଗି ଜମିର ମାଲିକ ବିଚରା ଲୋହିତମାନଙ୍କୁ ପୂର୍ବରୁ କୌଣସି ନୋଟିସ୍ ଦିଆଯାଉ ନଥିଲା । ସେହିପରି, ଖଣି ଖୋଳା ହେବାର ପ୍ରସ୍ତାବ ହେବା ମାତ୍ରକେ ହିଁ ସେମାନଙ୍କୁ ନିଜନିଜର ଶିକାର ଅଞ୍ଚଳ ଗୁଡ଼ିକୁ ମଧ୍ୟ ଛାଡ଼ିଦେବାକୁ ପଡୁଥିଲା ।

ଲୋହିତମାନଙ୍କର ବସ୍ତି ଉପରେ ସଂଗଠିତ ଭାବରେ ଆକ୍ରମଣ, ହଡ଼ପ ଏବଂ ବଳାତ୍କାର କରିବା ନିମନ୍ତେ ଗୋରାମାନଙ୍କ ଭିତରୁ ବଛା ବଛା ବଳୁଆମାନେ ସ୍ୱେଚ୍ଛାସେବୀ ଦଳମାନ ଗଠନ କରୁଥିଲେ । ଅନେକ ସମୟରେ ସେମାନେ ଗୋଟିଏ ଗୋଟିଏ ନିୟମିତ ସେନାବାହିନୀ ପରି କାର୍ଯ୍ୟ କରୁଥିଲେ । ମରଜି ଅନୁସାରେ ମଣିଷ ମାରିବାକୁ ସେମାନେ ଲୋହିତମାନଙ୍କର ବସତି ଭିତରେ ଆସି ପଶି ଯାଉଥିଲେ । ଯାବତୀୟ କାଣ୍ଡ ଘଟାଉଥିବା ଏହି ନରହନ୍ତା ମାନଙ୍କୁ ସେମାନଙ୍କର ଅପରାଧଗୁଡ଼ିକ ପାଇଁ କୌଣସି ଶାସ୍ତିଦେବା ପକାଶେ ସ୍ଥାନୀୟ ସାନ ନ୍ୟାୟାଳୟ ମାନଙ୍କର ପ୍ରଚଳିତ ଆଇନ୍ ଅନୁସାରେ କୌଣସି କ୍ଷମତା ନଥିଲା । ସତେଅବା ଏହିପରି ଭାବରେ ମଣିଷ ହାଣି ଲୋହିତମାନଙ୍କୁ ସମୂଳେ ନିପାତ କରିଦେବା ହିଁ ସେମାନଙ୍କର ମତଲବ ହୋଇ ପଡ଼ିଥିଲା । ଶୀତ ଦିନରେ ପ୍ରବଳ ଶୀତ ହେଉଥିଲା,

ଭୂଇଁଟାଯାକ ବରଫରେ ଢ଼ାଙ୍କି ହୋଇ ଯାଉଥିଲା । ସେଥିରୁ ଆପଣାକୁ ସୁରକ୍ଷିତ ରଖିବାଲାଗି ଲୋହିତ ମଣିଷମାନଙ୍କ ପାଖରେ ଆଦୌ କୌଣସି ସାଧନ ନଥିଲା । ଉପଯୁକ୍ତ ଶୀତଲୁଗା ନଥିଲା ବା ସୁରକ୍ଷିତ ହୋଇ ରହିବାର ଆଶ୍ରୟ ମଧ୍ୟ ନଥିଲା । ଏବଂ ଅଧିକାଂଶ ସମୟରେ ବିନା କାରଣରେ ଗୋରା ଆକ୍ରମଣର ଶିକାର ହେବାକୁ ବି ପଡୁଥିଲା ।

ଲୋହିତମାନେ ଯେ କ୍ରୁଦ୍ଧ ହେଉନଥିଲେ ଓ ଗୋରାମାନଙ୍କ ଉପରେ ପ୍ରତିଶୋଧ ନେଉନଥିଲେ, ସେକଥା ମୋଟେ ନୁହେଁ । ଗୋରାମାନେ ଜବରଦସ୍ତି କରି ଲୋହିତମାନଙ୍କର କ୍ଷେତଫସଲକୁ ଉଜାଡ଼ି ଦେଉଥିଲେ ଓ ତାହାର ଗତିରୋଧ କରିବା ନିମନ୍ତେ ଲୋହିତ ମାନଙ୍କର ଆନୁଷଙ୍ଗିକ କିଛି ବଳ ନଥିଲା । ସେମାନେ ଭାରି ନିରାଶ ହୋଇ ଯାଉଥିଲେ ଏବଂ ସେହି ନୈରାଶ୍ୟର ଉତ୍ତାପରେ ଲୁଚି କରି ଗୋରାମାନଙ୍କର ଗୋରୁମାନଙ୍କୁ ଚୋରି କରି ନେଇ ଯାଉଥିଲେ । ତା'ପରେ ଦୁଇ ପଟୁ ଚଢ଼ା ଉତରାର କ୍ରମରେ ଏକ ପ୍ରତିଶୋଧପର୍ବ ଲାଗି ଯାଉଥିଲା । ସେମାନେ ଦଳବାନ୍ଧି ଆସି ଲୋହିତମାନଙ୍କର କୁଡ଼ିଆ ଗୁଡ଼ିକରେ ନିଆଁ ବି ଲଗାଇ ଦେଉଥିଲେ । ଏହି ଭୂମିର ସ୍ଥାୟୀ ବାସିନ୍ଦାରୂପେ ଲୋହିତମାନେ ନିଜ ନିଜ କ୍ଷେତରେ କୃଷି କରି ଓ ଫସଲ ଅମଳ କରି ଆସୁଥିଲେ । କ୍ଷେତ ଚାରିପାଖରେ ବାଡ଼ ଦେବାର କୌଣସି ପ୍ରୟୋଜନ ନଥିଲା । କାରଣ, ଜଣେ ଆଉଜଣକର ଫସଲକୁ କାଟି ନେଇଯିବ ବୋଲି ସେମାନେ କେବେ ଧାରଣା କରି ପାରୁନଥିଲେ । ଆଉ କିଏ ଆସି ତା' ଗୋରୁମାନଙ୍କୁ ଫସଲ କିଆରୀରେ ଛାଡ଼ି ଦେବାର ମଧ୍ୟ କୌଣସି ପ୍ରଶ୍ନ ନଥିଲା । ବର୍ତ୍ତମାନ ଗୋରାମାନେ ଜାଣି ଜାଣି ଗାଈମାନଙ୍କୁ ଆଣି ଲୋହିତମାନଙ୍କର କ୍ଷେତଭିତରେ ପୂରାଇ ଦେଲେ । କ୍ଷେତ ଉଜୁଡ଼ାଇ ଦେଇ ଆନନ୍ଦ ଅନୁଭବ କରୁଥିଲେ । ଦୁଇଟା ସଂସ୍କୃତି ପରସ୍ପର ସହିତ ଆସି ଟକ୍କର ଖାଇଲେ ସର୍ବତ୍ର ତାହାହିଁ ହୋଇଥାଏ । ବିଶେଷତଃ, ଗୋଟିଏ ପଟ ଯଦି ଅଧିକ ବଳୁଆ ହୋଇଥାଏ, ତେବେ ଦୁର୍ବଳ ପଟଟିର ସଂସାରଟା ସତ୍ୟାନାଶ ହୋଇଯାଏ । ଲୋହିତମାନେ ଅଭିଯୋଗ କରିବାକୁ ମଧ୍ୟ ସେହି ସ୍ଥିତିରେ କାହାପାଖକୁ ଯାଇଥାଆନ୍ତେ ? ସେମାନଙ୍କର ଗୁହାରି ଶୁଣିବା ସକାଶେ ଏପଟେ ପ୍ରକୃତରେ କେହିହେଲେ ନଥିଲେ ।

ଅଶ୍ଳୀଳତା'ର ସତେଅବା କୌଣସି ଅନ୍ତ ହିଁ ନଥିଲା । ଗୋରା ଧ୍ୱଂସକାରୀ ବାହିନୀ ବେଳେ ବେଳେ ଲୋହିତ ମାନଙ୍କର ବସତି ଭିତରେ ପଶି ଯାଉଥିଲେ ଏବଂ ଉତ୍ତେଜିତ କଲାପରି ସ୍ତ୍ରୀଲୋକମାନଙ୍କୁ ନାନାଭାବେ ବେଳିଡ଼୍ କଲାଭଳି କଥାମାନ କହୁଥିଲେ । ଯୁବତୀଝିଅ ମାନଙ୍କ ଉପରେ ଦୌରାତ୍ମ୍ୟ କରିବାକୁ ଉଦ୍ୟତ ହେଉଥିଲେ । ଝିଅମାନଙ୍କର ମାଆମାନେ ପ୍ରତିବାଦ କଲେ ସେମାନଙ୍କୁ ତାହାର ବଦଳରେ ଛୁରୀମାଡ଼ ଖାଇବାକୁ ପଡୁଥିଲା । ଏହିପରି ଭାବରେ କେତେବେଳେ ଯେ ଗୋରାମାନେ ଆସି ପହଞ୍ଚିଯିବେ ଏବଂ ଗୋଷ୍ଠୀଜୀବନର ଶାନ୍ତିଭଙ୍ଗ କରିବେ, ତାହାର କିଛି ଠିକଣା ନଥିଲା । ତେଣୁ ସବୁବେଳେ ଏକ ଆତଙ୍କ ଅନିଶ୍ଚୟତା ମଧ୍ୟରେ ଜୀବନଯାପନ କରିବାକୁ ହେଉଥିଲା । ଏହିସବୁ ଅତ୍ୟାଚାର ଅତିଶୟ ହେବାରୁ ପ୍ରଶାସନ ତରଫରୁ ଲୋହିତମାନଙ୍କୁ ନିର୍ଦ୍ଧାରିତ

ସ୍ଥାନମାନଙ୍କରେ ଯୂଥ ଯୂଥ କରି ରଖାଯିବାର ନକ୍ସାଟିଏ ମଧ୍ଯ କାର୍ଯ୍ୟକାରୀ କରା ଯାଉଥିଲା । ସେଠାରେ ସେମାନଙ୍କୁ ଜମି ମଧ୍ଯ ଦିଆ ଯାଇଥିଲା । ଲୋହିତମାନେ ସେଗୁଡ଼ିକରେ ନିଜର ଫସଲ ଉପାର୍ଜନ କରିବେ, ନିଜର କିଛି ଗୋରୁଗାଈ ମଧ୍ଯ ରଖିବେ, -ତାହାହିଁ ମୁଖ୍ୟ ଅଭିପ୍ରାୟ ହୋଇ ରହିଥିଲା । ମାତ୍ର, ଅନେକ ସମୟରେ ଫଳ ଓଲଟାଟା ହିଁ ଫଳୁଥିଲା । ଲୋହିତମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ମନ ହେଲେ ଗୋରା ସ୍ୱେଚ୍ଛାସେବୀ ମାନଙ୍କୁ ଆଉ ଏଣେତେଣେ ସେମାନଙ୍କର ବସତିଗୁଡ଼ିକୁ ଖୋଜିଯିବାକୁ ପଡ଼ିଲାନାହିଁ । ସେମାନେ ଲୋହିତମାନେ ବାସ କରୁଥିବା ଏହି reserve ଗୁଡ଼ିକୁ ସିଧା ଚାଲି ଆସୁଥିଲେ ଏବଂ ନିଜର ଇପ୍ସିତ ଲୀଳାଗୁଡ଼ିକୁ ଆରମ୍ଭ କରି ଦେଉଥିଲେ । ଗୋରାମାନେ ସତେଅବା ଖୁବ୍ ଭଲ କରି ନିଷ୍ପତ୍ତି କରି ନେଇଥିଲେ ଯେ, ସେମାନଙ୍କର ସଭ୍ୟତାଟା ନିର୍ବାଧ ଭାବରେ ଅଗ୍ରଗତି କରି ପାରିବା ସକାଶେ ସେଠାରେ ଆଗରୁ ରହି ଆସିଥିବା ଲୋହିତମାନଙ୍କୁ ଓ ସେମାନଙ୍କର ଜୀବନଗ୍ରାମଟିକୁ ସମ୍ପୂର୍ଣ୍ଣ ଭାବରେ ଲୋପ କରିଦେବାକୁ ହିଁ ପଡ଼ିବ ।

ତା' ନହେଲେ ସଭ୍ୟ ଓ ଅସଭ୍ୟ ଏହିପରି ଦୁଇଟି ଜୀବନଶୈଳୀ ସମାନ୍ତର ଭାବରେ ଚାଲିଥିବ, ସେକଥା ଆଦୌ ପୋଷାଇବ ନାହିଁ । ସଭ୍ୟମାନେ ସଚରାଚର ସବୁଠାରେ ଏହିପରି ଗୋଟିଏ ସତ୍ୟକୁ ଏକାନ୍ତ ନିଷ୍ଠାର ସହିତ ଗ୍ରହଣ କରି ନେଇଛନ୍ତି ଓ ଅସଭ୍ୟମାନଙ୍କୁ ଖତମ କରିଦେବାଟାକୁ ସତେଅବା ନିଜର ଏକ ଧର୍ମବତ୍ ଗ୍ରହଣ କରି ନେଇଛନ୍ତି । ହଁ, ଅସଭ୍ୟମାନଙ୍କର ତୁଳନାରେ ତଥାକଥିତ ଏହି ସଭ୍ୟମାନେ ହିଁ ଅଧିକ ଅସହିଷ୍ଣୁ ପଣ ଦେଖାଇ ଆସିଛନ୍ତି । ଏବଂ, ନିଜ ପଟରେ ଯେତେବେଳେ ଅଧିକ ବୁଦ୍ଧି, ଅଧିକ କୌଶଳ ଏବଂ ଅଧିକ ଭଲ ଅସ୍ତ୍ରଶସ୍ତ୍ର ରହିଛି, ସେତେବେଳେ ଅନୁମିତ ସତ୍ୟଟି ସତେଅବା ଏକ ପରୀକ୍ଷିତ ପ୍ରତ୍ୟକ୍ଷ ସତ୍ୟର ଭ୍ରମ ସୃଷ୍ଟି କରିବାଲାଗି ଆଦୌ ବେଶୀ ବିଳମ୍ବ ଲାଗିନାହିଁ । ଏବଂ, ଲୋହିତମାନେ ବିଲୁପ୍ତ ହୋଇଯିବା ପୂର୍ବରୁ ସେମାନଙ୍କ ଠାରୁ ଯଥାସମ୍ଭବ ଅଧିକ ଶ୍ରମ ଓ କର୍ମଖଟଣି ଆଦାୟ କରିବାଟା ମଧ୍ଯ ଗୋରାମାନଙ୍କର ଏକ ସୁଚିନ୍ତିତ ଯୋଜନା ମଧ୍ଯ ହୋଇଛି । ସେତେବେଳକୁ ଇଉରୋପରୁ ପଲକୁ ପଲ ଆଗନ୍ତୁକ ଆସି ଆମେରିକାରେ ବସତି ସ୍ଥାପନ କରିବା ଆରମ୍ଭ ହୋଇ ଗଲାଣି । ଇଉରୋପରେ ଏହି ନୂଆ ପୃଥିବୀଟା ବିଷୟରେ ଯେଉଁ ଆକର୍ଷଣୀୟ ସମ୍ବାଦମାନ ଯାଇ ପହଞ୍ଚୁଛି, ତାହା ଫଳରେ କ୍ରମେ ଅଧିକରୁ ଅଧିକ ଲୋକ ସେଠି ସେହି ପୁରୁଣା ଜଙ୍ଗଲଗା ଭୂଇଁଟାକୁ ଛାଡ଼ି ଏଠାକୁ ଚାଲି ଆସିବା ନିମନ୍ତେ ଉତ୍ସାହୀ ହୋଇ ଉଠୁଛନ୍ତି । ସେମାନଙ୍କ ଲାଗି ଅଧିକ ଜମି ଦରକାର ; ସେମାନଙ୍କର ସଭ୍ୟତା ଲାଗି ସହଜ ଭିତ୍ତିଭୂମିଟିଏ ପ୍ରସ୍ତୁତ ହୋଇପାରିବା ସକାଶେ ବହୁ ଶ୍ରମିକଙ୍କର ଶ୍ରମ ଏକାନ୍ତ ଆବଶ୍ୟକ । ଗୋରାମାନେ କଦାପି ସେହି ଶ୍ରମ କରି ପାରିନଥାନ୍ତେ । ସେମାନଙ୍କ ପାଇଁ ଲୋହିତମାନଙ୍କୁ ହିଁ ସେହି କାର୍ଯ୍ୟଟିରେ ନିୟୋଜିତ କରାଗଲା । ଆଖି ବୁଜିଦେଇ ସେମାନଙ୍କର ଶ୍ରମଶକ୍ତିକୁ କାମରେ ଲଗାଗଲା । ଶାସକ ହିସାବରେ ଲୋହିତମାନଙ୍କ ଉପରେ ଯେତେବେଳେ ପୂର୍ଣ୍ଣ ଅକ୍ତିଆର ରହିଥିଲା, ସେତେବେଳେ ଆଦୌ କୌଣସି ବିବେକ ଆସି ବାଧା ଦେବାପାଇଁ ହୁଏତ କୌଣସି ଅବକାଶ ହିଁ ନଥିଲା ।

ଗୋଟିଏ ତଥ୍ୟରୁ ଜାଣିବାକୁ ମିଳୁଛି ଯେ, ଲୋହିତମାନଙ୍କୁ ପଶୁ ପରି ଆଚରଣ କରା ଯାଉଥିବା ଏହିସବୁ ଅତିଶୟତା ବିରୋଧରେ କାଲିଫର୍ଣିଆର ଲୋହିତମାନେ ଉପରିସ୍ଥ ଗୋରା କର୍ତ୍ତାମାନଙ୍କୁ ଏକଦା ଦରଖାସ୍ତ କରି ଜଣାଇଥିଲେ । ସେତେବେଳେ ଔପଚାରିକ କର୍ତ୍ତାମାନେ କେତେହଜାର ମାଇଲ ଦୂରରେ ୱାଶିଙ୍ଗଟନ୍‌ଠାରେ ହିଁ ରହିଥିଲେ । ନିଜର ଗୁହାରି ଜଣାଇ ସେମାନେ ଲେଖିଥିଲେ ଯେ, ଗୋରା ବସତିସ୍ଥାପନକାରୀ ସେମାନଙ୍କର ମଉରସୀ ଭୂସମ୍ପତ୍ତି ଗୁଡ଼ିକୁ ଜବରଦସ୍ତି ଦଖଲ କରି ନେଉଛନ୍ତି । ସେମାନଙ୍କ ହାତରେ ବହୁ ବର୍ଷ ଯାବତ୍ ଯେଉଁ ଭଲ ଚାଷଜମି ଏବଂ ଚାରଣଭୂମି ଗୁଡ଼ିକ ରହିଥିଲା, ଗୋରାମାନେ ସେଗୁଡ଼ିକୁ ଛଡ଼ାଇ ନେଇ ଯାଉଛନ୍ତି । ସେମାନଙ୍କର ଜମିରେ ସେମାନେ ଯେଉଁସବୁ ଜଳାଧାରରୁ ଜଳ ଆଣି ବ୍ୟବହାର କରୁଥିଲେ, ଗୋରାମାନେ ନୂଆ ନାଳୀମାନ ଖୋଳି ସେଗୁଡ଼ିକୁ ଅନ୍ୟଆଡ଼େ ମୋଡ଼ି ଦେଉଛନ୍ତି ଏବଂ ଫଳରେ ଏମାନେ ନିଜ ଜମିରେ ଜଳସେଚନ କରିବା ସକାଶେ ଆଉ କୌଣସି ସୁବିଧା ପାଇ ପାରୁନାହାନ୍ତି । ଲୋହିତମାନେ ପ୍ରାର୍ଥନା କରିଥିଲେ ଯେ, ଏପରି କେତେକ ପରିମାଣର ଜମିକୁ ଅଲଗା କରି ନିର୍ଦ୍ଧାରିତ କରି ଦିଆଯାଉ, ଯାହାକୁ କି କେବଳ ଲୋହିତମାନେ ଆବାଦ କରିପାରିବେ ଏବଂ ଗୋରାମାନେ ସେଗୁଡ଼ିକୁ ଆଦୌ ଦଖଲ କରି ନେଇଯାଇ ପାରିବେନାହିଁ । ଏହି ଜମିଗୁଡ଼ିକୁ ସେମାନେ ପିତୃପୁରୁଷଙ୍କର ଅମଳରୁ ଚଷି ଆସୁଥିଲେ, ଢ଼େଲା ଓ ପଥର ଭାଙ୍ଗି ଜମି ତିଆରି କରିଥିଲେ, -ଏହିଗୁଡ଼ିକ ହିଁ ସେମାନଙ୍କ ସକାଶେ ନିର୍ଦ୍ଧାରିତ କରି ଦିଆଯାଉ । ଗୋରା ନବାଗତମାନେ ସେଗୁଡ଼ିକୁ ହଡ଼ପ କରି ନ ନିଅନ୍ତୁ । କହିବା ବାହୁଲ୍ୟ ଯେ, ଏହି ଦରଖାସ୍ତରେ ଆବେଦନକାରୀ ହିସାବରେ ଲୋହିତମାନେ ନିଜ ନିଜର ଟିପଚିହ୍ନ ହିଁ ଦେଇଥିଲେ । ଅର୍ଥାତ୍, ସେମାନେ ସମସ୍ତେ ନିରକ୍ଷର ଥିଲେ । ସେହି ଗୁହାରି ବହୁଦୂରରେ ସଦର ମହକୁମାରେ ରହିଥିବା କର୍ତ୍ତାମାନଙ୍କ ଯାଏ ଯାଇପାରିଥିବ କି ନାହିଁ କେଜାଣି ? ଯାଇଥିଲେ ମଧ୍ୟ କୌଣସି ପ୍ରତିକାର କରାଯାଇ ନଥିବ ।

ଆଇନ୍‌ଗୁଡ଼ିକୁ ତ କେଡ଼େ ସଫାସୁତୁରା କରି ତିଆରି କରା ଯାଇଥିଲା । ଆବଶ୍ୟକ ହେବା ମାତ୍ରକେ କେଡ଼େ ସହଜ ଦେଖାଇ ହେଉଥିଲା ଯେ, ଲୋହିତମାନଙ୍କୁ ଆଦୌ କୌଣସି ପ୍ରକାରେ କ୍ଷତିଗ୍ରସ୍ତ ହେବାକୁ ଦିଆଯାଉ ନଥିଲା ଏବଂ ସେମାନେ ଯେ ନିରାପଦରେ ନିଜର ଜୀବନଯାତ୍ରା ନିର୍ବାହ କରିପାରିବେ, ସେଥିଲାଗି ଆଇନଗତ ସକଳ ପ୍ରକାରର ବ୍ୟବସ୍ଥା କରା ଯାଇଥିଲା । ଭଦ୍ରମାନେ, ସଭ୍ୟମାନେ ଏବଂ ଚତୁରମାନେ ଆଇନ୍ କହିଲେ ସବୁକିଛି ଦରଦ ଏବଂ ଦାକ୍ଷିଣ୍ୟ ଦେଖାଇବାରେ କେବେହେଲେ କୌଣସି କାର୍ପଣ୍ୟ କରନ୍ତିନାହିଁ । ତଥାପି ଯେ ସବୁକାଳରେ ସେସବୁ ସତ୍ତ୍ୱେ ବହୁ ମନୁଷ୍ୟ ବହୁତର ଭାବରେ ନିର୍ଯ୍ୟାତିତ ଏବଂ ସହାୟଶୂନ୍ୟ ହୋଇ ରହିଥାଆନ୍ତି, ଆମର ଏହି ମଣିଷବିରୋଧୀ ପୃଥିବୀର କର୍ତ୍ତାମାନେ ତାହା ଅବଶ୍ୟ ସ୍ୱୀକାର କରିବାକୁ ବାଧ ହେବେ । ଦୃଷ୍ଟାନ୍ତ ସ୍ୱରୂପ, କାଲିଫର୍ଣିଆରେ ଆଇନ୍ ତିଆରି କରାଯାଇ କାଗଜପତ୍ରରେ ସୁରକ୍ଷିତ ହୋଇ ରହିଥିଲା ଯେ ଲୋହିତମାନେ ଯେଉଁସବୁ ଗ୍ରାମରେ ନିଜର ଘର ତିଆରି କରି ବର୍ଷ ବର୍ଷ ଧରି ବାସ କରି ଆସିଛନ୍ତି,

ସେମାନଙ୍କୁ କଦାପି କେହି ବଳପ୍ରୟୋଗ କରି ସେହିସବୁ ସ୍ଥାନରୁ ଉଚ୍ଛେଦ କରାଇ ପାରିବନାହିଁ । ସେପରି କଲେ ଅମୁକ ବା ସମୁକ ଦଣ୍ଡ ପାଇବ ବୋଲି ସମ୍ଭବତଃ ଅବଶ୍ୟ ଲେଖାହୋଇ ରହିଥିଲା । ସ୍ଥାନୀୟ ସ୍ତରରେ ନ୍ୟାୟାଳୟ ଓ ଧର୍ମାବତାରମାନେ ମଧ୍ୟ ଅବଶ୍ୟ ଥିଲେ, ମାତ୍ର ତାକୁ କିଏ ମାନୁଥିଲା ? ବ୍ୟଭିଚାର ଘଟିବାର ପ୍ରତିବିଧାନ କେଉଁଠି ବା ହେଉଥିଲା ? ଓଲଟା ପ୍ରାୟ ନିୟମଟିଏ ପରି ଏପରି ଘଟୁଥିଲା ଯେ କୌଣସି ସ୍ଥାନରେ ଭଲ ଜାଗାଟିଏ ତଥାପି ଲୋହିତମାନଙ୍କ ପାଖରେ ରହିଛି ବୋଲି ଆଖିରେ ପଡ଼ିଲେ ତାହାକୁ ଛଡ଼ାଇନେବା ସକାଶେ କେହି ନା କେହି ଆସି ହାବୁଡ଼ି ଯାଉଥିଲେ ଏବଂ କ୍ଷତିପୂରଣ ସ୍ୱରୂପ ବିଚରା ଲୋହିତଟାକୁ କାଣି କଉଡ଼ିଟାଏ ଦେବା ଉଚିତ୍ ବୋଲି କେହି ବିଚାର କରୁନଥିଲେ ।

ଏବେ ସେହିସବୁ ଅପକାହାଣୀ ବିଷୟରେ ଅବଗତ ହେଲେ କ'ଣପାଇଁ ଗୋଟାଏ କଥା ଭରି ସ୍ମରଣକୁ ଆସିଯାଏ । ଯୁକ୍ତରାଜ୍ୟ ପ୍ରଥମ କାଳରେ ଏକଦା ଇଂଲଣ୍ଡର ଉପନିବେଶ ଥିଲା । ମାଲିକ ଓ ପ୍ରଜା ଉଭୟେ ଗୋଟିଏ ଚମର ହୋଇଥିଲେ ମଧ୍ୟ ପରିଶେଷରେ ଆମେରିକାର ଗୋରାମାନେ ପରାଧୀନତାରୁ ମୁକ୍ତିଲାଭ କରିବେ ବୋଲି ଇଂଲଣ୍ଡର ଶାସନ ସହିତ ସଂଗ୍ରାମଟିଏ ଲଢ଼ିଥିଲେ । ସଫଳ ମଧ୍ୟ ହୋଇଥିଲେ । କେଡ଼େ ଗାମ୍ଭୀର୍ଯ୍ୟର ସହିତ ସୁସଂସ୍କୃତ ଶବ୍ଦାବଳୀ ପ୍ରୟୋଗ କରି ନବସ୍ୱାଧୀନ ଦେଶଟି ଲାଗି ଯେଉଁ ସମ୍ବିଧାନଟିଏ ଲେଖା ହୋଇ ରହିଥିଲା, ତାହା ଆଜି ମଧ୍ୟ ପୃଥିବୀର ବହୁ ଦେଶ ଓ ଜନଗଣଙ୍କ ପାଇଁ ଅନୁସରଣୀୟ ହୋଇ ରହିଛି । ଆମେରିକା ଔପନିବେଶକତାର ଶୃଙ୍ଖଳଭିତରୁ ମୁକୁଳି ଆସିବା ପରେ ସେହି ଭୂମିର ନାଗରିକ ମାତ୍ରକେ ସମସ୍ତେ କାର୍ଯ୍ୟତଃ ଏକ ସ୍ୱାଧୀନ ଦେଶର ନାଗରିକ ହିଁ ହେଲେ । ତଥାପି ଏଠି ଗୋରାମାନେ କାହିଁକି ଯେ ଲୋହିତମାନଙ୍କ ଉପରେ ସେହି ପୁରୁଣା ଅତ୍ୟାଚାର ଗୁଡ଼ାକୁ ଜାରି ରଖିପାରିଲେ ଏବଂ ଦେଶର ଆଇନ୍ ସେଥିପାଇଁ କୌଣସି ପ୍ରତିକାର କାଢ଼ି ପାରିଲାନାହିଁ, ସେକଥା ଭାବିଲା ସମୟରେ ପ୍ରକୃତରେ ଭାରି କେମିତି କେମିତି ଲାଗେ । ଗୋଟାଏ ଦେଶ ସ୍ୱାଧୀନତା ଲାଭ କରିବା ଏବଂ ସେହି ଦେଶର ପ୍ରତ୍ୟେକ ଅଧିବାସୀ ସତକୁ ସତ ଜଣେ ଜଣେ ପୂର୍ଣ୍ଣ ନାଗରିକ ହେବାରେ ମର୍ଯ୍ୟାଦା ଲାଭ କରିବା, -ଏହି ଦୁଇଟିଯାକ କ'ଣ ଗୋଟିଏ କଥା ନୁହନ୍ତି କି ? ତେଣୁ, ସ୍ୱାଧୀନତାର ପ୍ରଥମ ସଂଗ୍ରାମଟି ପରେ ସମ୍ପୃକ୍ତ ଦେଶରେ ଏକ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଲାଗି ତଥାପି ଅବକାଶ ରହିଥାଏ କି ? ପୃଥିବୀର ସାଂପ୍ରତିକ ଇତିହାସରେ ଯେତେ ଯେତେ ଦେଶ ସ୍ୱାଧୀନତା ଲାଭ କରିଛନ୍ତି ଅର୍ଥାତ୍ ଯେଉଁସବୁ ଦେଶରେ ଦେଶ ସ୍ୱାଧୀନ ହେବାପରେ ଆଡ଼ମ୍ବର ସହକାରେ ସମ୍ବିଧାନଟିଏ ଲେଖା ହୋଇଛି, ସେଗୁଡ଼ିକରେ ଦୃଶ୍ୟମାନ ହେଉଥିବା ଘଟଣାବଳୀ ଉପରକୁ ଚାହିଁ ଦେଖିଲେ ଅନେକ ସମୟରେ ଅତ୍ୟନ୍ତ ସ୍ପଷ୍ଟ ହୋଇଯାଉଛି ଯେ ସେଠାରେ ତଥାପି ସମସ୍ତଙ୍କ ଲାଗି ସ୍ୱାଧୀନତା ଆସିନାହିଁ । ନାଗରିକତାର ସମଗ୍ର ଭାବନାଟି ସେଠାରେ ବହୁ ଅନ୍ୟାୟ ଏବଂ ଅବିଚାର ଦ୍ୱାରା ଭାରି ଖଣ୍ଡବିଖଣ୍ଡ ହୋଇ ରହିଛି । ଯୁକ୍ତରାଜ୍ୟ ଆମେରିକା ଇଂଲଣ୍ଡର ଅଧୀନ ହୋଇ ରହିବାରୁ ବାହାରି ଆସିବା

ପରେ ସେଠାରେ ମଧ ସେହି ବ୍ୟାଧିଟା ସେଠା ଗୋରାମାନଙ୍କୁ ଖୁବ୍ ଅସହଜ ଭାବରେ କାମୁଡ଼ି ଧରିଥିଲା । ସେମାନେ ନିଜକୁ ରଜା ବୋଲି ଭାବୁଥିଲେ ଓ ଏକ ସଭ୍ୟ ସମୂହ ହିସାବରେ ସ୍ୱତନ୍ତ ମର୍ଯ୍ୟାଦା ଦାବୀ କରୁଥିଲେ । ସେଠା ଲୋହିତମାନଙ୍କୁ ସମାନ ମର୍ଯ୍ୟାଦା ଦେବାକୁ ସେମାନେ ହୁଏତ ଏକାନ୍ତ ଅନାବଶ୍ୟକ ବୋଲି ମନ କରୁଥିଲେ ।

ସେମାନେ ସ୍ୱୟଂ ଯେଉଁ ଦେଶର ନାଗରିକ ହୋଇ ଏଠାରେ ସ୍ଥାୟୀ ଭାବରେ ବାସ କରିବେ, ଅଧାସଭ୍ୟ ଲୋହିତମାନେ ମଧ ସେଇଠି ନାଗରିକରୂପେ ସ୍ୱୀକୃତ ହେବେ, ଗୋରାମାନେ ସେହି କଥାଟିକୁ ଏଡ଼େ ସରଳ ଭାବରେ ଆଦୌ ମାନି ନେଇ ପାରିଲେ ନାହିଁ । ତେଣୁ, ଲୋହିତମାନଙ୍କର ବଂଶ ସମ୍ପୂର୍ଣ୍ଣ ଭାବରେ ବିଲୁପ୍ତ ହୋଇଯାଉ, ଯାବତୀୟ ଅର୍ଥରେ ତାହାହିଁ ସେମାନଙ୍କର ଅଭିଳାଷ ହୋଇ ରହିଥିଲା । ମାତ୍ର, ନିର୍ମୂଳ ହୋଇ ଯିବାର ସେହି ପ୍ରକ୍ରିୟାଟିରେ ସେମାନେ ତଥାପି ଗୋରାମାନଙ୍କ ପାଇଁ ଖଟଣି ଖଟିବେ, ଗୋରାମାନେ ଏହି ଅନ୍ୟ ଫଇସଲାଟିକୁ ମଧ ମନେ ମନେ କରି ନେଇଥିଲେ । ଲୋହିତ ବସତିମାନଙ୍କଠାରୁ ସେମାନେ ସାନ ସାନ ପିଲାଙ୍କୁ ଜବରଦସ୍ତି ଛଡ଼ାଇ ଆଣୁଥିଲେ ଓ ସେମାନଙ୍କୁ ଗୋତି ଖଟାଉଥିଲେ । ସେମାନଙ୍କୁ ହାଟମାନଙ୍କରେ ବିକ୍ରୀ ମଧ କରା ଯାଉଥିଲା । କାଲିଫର୍ଣିଆ ରାଜ୍ୟରେ ୧୮୫୦ ମସିହାରୁ ୧୮୬୩ ପର୍ଯ୍ୟନ୍ତ ଏହି ଗୋତି ଏବଂ ବିକ୍ରୀର ବହୁଳ ପ୍ରସାର ରହିଥିଲା ବୋଲି ଏକାଧିକ ପ୍ରମାଣ ମିଳୁଛି । ଏହି ଅବଧିଟି ମଧରେ କେବଳ ସେହି ଗୋଟିଏ ରାଜ୍ୟରେ ହୁଏତ ପ୍ରାୟ ୧୦,୦୦୦ ଲୋହିତ ବଂଶଜଙ୍କୁ ଏହିପରି ଭାବରେ ଗୋତି କରା ଯାଇଥିବ ଅଥବା ଗୋରୁମେଣ୍ଢାଙ୍କ ପରି ବିକ୍ରୀ କରି ଦିଆ ଯାଇଥିବ । ହଁ, ଅନ୍ୟାୟର ଏକ ପ୍ରତିକାର ଲୋଡ଼ି ନ୍ୟାୟଦ୍ୱାରର ଆଶ୍ରୟ ନେବା, ଉଭୟ ଗୋରା ଏବଂ ଲୋହିତମାନଙ୍କର ସେହି ଅଧିକାରଟି ଅବଶ୍ୟ ରହିଥିଲା ସତ, ମାତ୍ର ଏପରି ନିୟମଟିଏ ମଧ ରହିଥିଲା ଯେ, କେବଳ ଲୋହିତମାନେ ହିଁ ସାକ୍ଷ୍ୟ ଦେଲେ କୌଣସି ଅପରାଧ କରିଥିବା ହେତୁ ଜଣେ ଗୋରା ଲୋକକୁ କଦାପି ଦଣ୍ଡିତ କରାଯାଇ ପାରିବନାହିଁ । ଅର୍ଥାତ୍, ସାକ୍ଷୀ ହିସାବରେ ଅଭିଯୋଗକାରୀକୁ ଯେକୌଣସି ପ୍ରକାରେ ଜଣେ ବା କେତେଜଣ ଗୋରା ଲୋକଙ୍କୁ ଯୋଗାଡ଼ କରି ଆଣିବାକୁ ପଡ଼ିବ । ଏବଂ, ଗୋରା କାହାରି ନାମରେ ଲୋହିତଟିଏ ଅଭିଯୋଗ ଆଣି ନ୍ୟାୟାଳୟକୁ ଗଲେ ଜଣେ ଗୋରା ଲୋକ ଲୋହିତର ପକ୍ଷ ନେଇ ସାକ୍ଷୀ ଦେବାକୁ ରାଜୀ ହେବ, ଏପରି ଘଟଣା ଘଟିବାର ପ୍ରାୟ ସମ୍ଭାବନା ନଥିଲା । ପ୍ରତ୍ୟକ୍ଷଦର୍ଶୀ ହୋଇଥିଲେ ମଧ ଜଣେ ଗୋରା ଲୋକ ଆଉଜଣେ ଗୋରା ଲୋକର ଅପରାଧ ସପକ୍ଷରେ ସାକ୍ଷ୍ୟ ଦେବାକୁ ବାହାରିବାର ତେଣୁ ଅବକାଶ ମଧ ନଥିଲା । ଅଥଚ, ଅନ୍ୟ ପକ୍ଷରେ, ଜଣେ ବା କେତେଜଣ ଲୋହିତଙ୍କ ନାମରେ ଅଭିଯୋଗଟିଏ ଆସିଲେ ସେଥିପାଇଁ ମିଛ ସାକ୍ଷ୍ୟ ଦେବାଲାଗି ମଧ ଗୋରାଙ୍କ ପକ୍ଷରେ ସଜାତୀୟମାନେ ଚାହିଲା ମାତ୍ରକେ ମିଳି ଯାଉଥିଲେ ।

ଲୋହିତ ବସତିମାନଙ୍କରୁ କେତେ କେତେ ପିଲାଙ୍କୁ ଧରି ବିକ୍ରୀ କରିଦିଆ ଯାଉଥିଲା, ସେହି ପିଲାମାନଙ୍କୁ କେତେବେଳେ ଏକୁଟିଆ ପାଇଲେ ସେମାନଙ୍କୁ ହରଣ କରି ନିଆ

ଯାଉଥିଲା ଏବଂ ଗୋରା ସାକ୍ଷ୍ୟ ଅଭାବରୁ ସେଥିପାଇଁ କଚେରୀ ମାନଙ୍କରେ କିଛି ପ୍ରମାଣ କରାଯାଇ ପାରୁନଥିଲା । ଅପର ପକ୍ଷରେ ଇଚ୍ଛା କଲା ମାତ୍ରକେ ଗୋରାମାନେ ଲୋହିତମାନଙ୍କ ଉପରେ ସିଧା ପ୍ରତିଶୋଧ ନେଇ ପାରୁଥିଲେ ଏବଂ ସେଥିଲାଗି କଚେରୀ ପର୍ଯ୍ୟନ୍ତ ଯିବାର କୌଣସି ପ୍ରୟୋଜନ ହେଉନଥିଲା । କୌଣସି ଲୋହିତ ଅଥବା ସେମାନଙ୍କ ଭିତରୁ କେତେଜଣ କୌଣସି ଅନିଷ୍ଟ କରିଛନ୍ତି ବୋଲି ଜନରବ ହେବା ମାତ୍ରକେ ଗୋରାମାନେ ଦଳବଳ ନେଇ ଲୋହିତ ବସତିରେ ଯାଇ ପହଞ୍ଚି ଯାଉଥିଲେ ଏବଂ ସଙ୍ଗେ ସଙ୍ଗେ ବଡ଼ ନୃଶଂସ ଭାବରେ କେତେ କେତେ ଅଭାବନୀୟ ଉପାୟରେ ସେମାନଙ୍କୁ ଦଣ୍ଡ ଦେବା ଆରମ୍ଭ ହୋଇ ଯାଉଥିଲା । ଏପରିକି, ଯିଏ ପ୍ରକୃତରେ ଅନିଷ୍ଟ କରିଥାଉ ପଛକେ, ସେଭଳି ଆଶଙ୍କାଟିଏ ହେବା ମାତ୍ରକେ ହୁଏତ ରାସ୍ତାରେ ଅକସ୍ମାତ୍ ଯିଏ ହାବୁଡ଼ରେ ପଡ଼ି ଯାଉଥିଲା, ତାହାକୁ ବଳପ୍ରୟୋଗ କରି ଉଠାଇ ଅଣା ଯାଉଥିଲା । ତା' ହାତ ବୁଢ଼ା ଆଙ୍ଗୁଠିରେ ଦଉଡ଼ି ବାନ୍ଧି ତାକୁ ଏପରି ଭାବରେ ଟଙ୍ଗାଇ ଦିଆ ଯାଉଥିଲା, ଯେପରିକି ଗୋଡ଼ର ଆଙ୍ଗୁଠି ଚଟାଣକୁ ଛୁଇଁବା ପରି ହେଉଥିଲା ସିନା, କିନ୍ତୁ ତଥାପି ମାଟି ଉପରେ ପାଦକୁ ଲଗାଇ ହେଉନଥିଲା । ଭାଗ୍ୟହୀନ ମନୁଷ୍ୟଟି ସେଠାରେ ସେହି ଅବସ୍ଥାରେ ହିଁ ଦୁଇ ତିନି ଦିନ ପର୍ଯ୍ୟନ୍ତ ଲଟକା ହୋଇ ରହୁଥିଲା । ସେହି ସମୟରେ ତାକୁ କିଛିହେଲେ ଖାଇବାକୁ କିମ୍ବା ପିଇବାକୁ ଦିଆ ଯାଉନଥିଲା । ହଁ, ଅବଶ୍ୟ ହୁଏତ ଏପରି ଘଟୁଥିଲା ଯେ, ଅନ୍ୟ ଲୋହିତମାନେ ଏହି ଜଘନ୍ୟ ଘଟଣାଟି ନ ଘଟିବା ବିଷୟରେ ସିନା ଆଦୌ କିଛି କରି ପାରୁନଥିଲେ, ତଥାପି ମଉକା ଉଣ୍ଡି ଲୁଚି ଛପି ଯାଇ ସେହି ବ୍ୟକ୍ତିଟିକୁ ଖାଇବା ପିଇବାକୁ କିଛି ଦେଇ ଆସୁଥିଲେ । କାରଣ, ଧରା ପଡ଼ିଗଲେ ଗୋରାଙ୍କ ଠାରୁ ସେମାନଙ୍କୁ ନିଜକୁ ମଧ ସେହି ଦଣ୍ଡଟିକୁ ଭୋଗିବାର ସବୁବେଳେ ଆଶଙ୍କା ରହିଥିଲା ।

କୌଣସି ଲୋହିତକାୟ ଏଡ଼େଟିକିଏ ଅପରାଧ କଲେ ମଧ ଗୋରା ବ୍ୟକ୍ତିଟା ତାକୁ ତତ୍‌କ୍ଷଣାତ୍ ସେହିଠାରେ ହିଁ ହତ୍ୟା କରି ପାରୁଥିଲା । ତା' ଦେହ ଭିତରକୁ ଛୁରୀ ଭୁଷିଦେଇ ପାରୁଥିଲା ବା ବନ୍ଧୁକରେ ଗୁଳି ମାରି ଦେଉଥିଲା । ବେଳେ ବେଳେ ଦୁଇ ଗୋଷ୍ଠୀ, -ଗୋରା ଏବଂ ଲୋହିତଙ୍କ ଭିତରେ କୌଣସି ଅଡୁଆ ବା ସମସ୍ୟା ଆସି ପହଞ୍ଚିଲେ ତାକୁ ତୁଟାଇଦେବାର ଅଭିପ୍ରାୟ ପ୍ରକାଶ କରି ଗୋରାମାନେ ଅନ୍ୟ ପକ୍ଷଟିକୁ ନିଜର ବସତି ଭିତରକୁ ଡ଼କାଇ ଆଣୁଥିଲେ । ଲୋହିତମାନେ ସେମାନଙ୍କ କଥାରେ ବିଶ୍ୱାସ କରି ଆସି ପହଞ୍ଚି ଯାଉଥିଲେ । ଗୋରା ପକ୍ଷ ଯେଉଁଭଳି ଇଚ୍ଛା କରୁଥିଲା, ନିଷ୍ପତ୍ତିଟା ସେହିପରି ହୋଇ ପାରୁଥିଲା ତ ଖୁବ୍ ଭାଗ୍ୟର କଥା, ନଚେତ୍ ଅନେକ ସମୟରେ ଗୋରା ପକ୍ଷ କ୍ଷିପ୍ତ ହୋଇ ଉଠୁଥିଲେ ଏବଂ ଉପସ୍ଥିତ ଅପର ପକ୍ଷର ସମସ୍ତଙ୍କୁ ହତ୍ୟା କରି ସମସ୍ୟାଟିର ସମାଧାନ ବି କରୁଥିଲେ । ଆଉ ଅଧିକ ସହଜରେ କେହି କଦାପି କୌଣସି ସମସ୍ୟାର ସମାଧାନ କରି ପାରନ୍ତାନାହିଁ । ହାତ ପାଆନ୍ତାରେ ଏହିପରି ଭାବରେ କୋଡ଼ିଏ ତିରିଶ ମଣିଷଙ୍କୁ ନିପାତ କରି ଦିଆଯାଇ ପାରୁଥିଲା । ଏବଂ, ଲୋହିତ ଜାତିର ମାଆ ଓ ଝିଅମାନେ ଗୋରାମାନଙ୍କ ସକାଶେ ସର୍ବଦା ଅତ୍ୟନ୍ତ ସହଜଲଭ୍ୟ ଏକ ସମ୍ଭୋଗବସ୍ତୁ ହୋଇ ରହିଥିଲେ ।

ଦଶବର୍ଷ ବୟସ ପର୍ଯ୍ୟନ୍ତ କେହି ମଧ ଏହି ଲୋଲୁପମାନଙ୍କର କବଳରୁ ରକ୍ଷା ପାଇ ପାରୁନଥିଲେ । ଏବଂ, ତାହା ଫଳରେ ଲୋହିତମାନଙ୍କ ଭିତରକୁ ନାନା ପ୍ରକାରର ବେମାରି ମଧ ସଂକ୍ରାମିତ ହୋଇ ଆସୁଥିଲା ।

ପଶ୍ଚିମ ଗୋଲାର୍ଦ୍ଧର ସେହି ବହୁପୁରାତନ ଭୂଖଣ୍ଡଟିରେ ସେହି ପୃଥିବୀଟିର ମୂଳ ବାସିନ୍ଦା ଲୋହିତ ମାନଙ୍କର ଜୀବନଚେର ଗୁଡ଼ିକ ହିଁ ବହୁତ ଗଭୀରକୁ ଭେଦି କରି ରହିଥିଲା । କିମ୍ବଦନ୍ତୀର ସୂଚନା ମୁତାବକ ସେମାନେ ମଧ ଏକଦା ବାହାରୁ ଆସି ଏଠାରେ ପହଞ୍ଚିଥିଲେ ସତ, ମାତ୍ର ସେମାନଙ୍କୁ ଖୁବ୍ ସମ୍ଭବ ଆଉ କେଉଁ ମନୁଷ୍ୟସମୂହକୁ ଏଠୁ ନିକାଲି କିମ୍ବା ନିର୍ମୂଳ କରିଦେଇ ଏଠି ଆଦୌ ବସତି ସ୍ଥାପନ କରିବାକୁ ପଡ଼ିନଥିଲା । ଅପର ପକ୍ଷରେ, ଯେଉଁମାନେ ଇଉରୋପରୁ ଆସି ସେମାନଙ୍କର ଅନ୍ଦାଜ ଅନୁସାରେ ଏହି ନୂତନ ଭୂଭାଗଟିରେ ଜାହଜ ବାହି ପହଞ୍ଚିଲେ ସେମାନଙ୍କ ଭିତରେ ହୁଏତ ସାହସ ଅପେକ୍ଷା ଦୁଃସାହସଟା ହିଁ ଅଧିକ ପରିମାଣରେ ରହିଥିଲା ଏବଂ ସେମାନଙ୍କୁ ପୃଥବୀର ଚାରିଆଡ଼କୁ ଖେଦି ଯିବାଲାଗି ଏକ ଦୁଷ୍ଟ ପ୍ରରୋଚନା ଦେଇଥିଲା । ସେମାନେ ବନ୍ଧୁ ଖୋଜି ମୋଟେ କେଉଁଠାକୁ ହେଲେ ଯାଇନଥିଲେ । ସେମାନେ ଉପନିବେଶର ତଲାଶରେ ଯାଇଥିଲେ । ସମ୍ପୃକ୍ତ ଦେଶଗୁଡ଼ିକରେ ମାଲିକ ହୋଇ ଶାସନ କରିବାଲାଗି ଯାଇଥିଲେ । ସେତେବେଳେ ବିଜ୍ଞାନ ବୋଲି କୁହା ଯାଉଥିବା ବିଶେଷ ଜ୍ଞାନଟି ସେମାନଙ୍କୁ ଆଖି ବୁଜି କେବଳ ମାଡ଼ି ଯିବାଲାଗି ଆବଶ୍ୟକ ଦମ୍ଭଟିକୁ ମଧ କେତେ ସୂତରରେ ଆଣି ଯୋଗାଇ ଦେଇଥିଲା । ଅସ୍ତ୍ରର ବଳ ହିଁ ସମ୍ଭବତଃ ସେମାନଙ୍କର ସବୁଠାରୁ ବଡ଼ ବଳରୂପେ କାର୍ଯ୍ୟ କରୁଥିଲା । ସତେଅବା ନିଶା ଖାଇଥିବା ପରି ସେମାନେ ପୃଥିବୀଟାଯାକକୁ ନିଜର ଛାୟାରେ ପୂରାପୂରି ଘୋଡ଼ାଇ ପକାଇବାକୁ ବାହାରିଥିଲେ । ଇଉରୋପର ରଜାମାନେ ଏହି ନୂତନ ବିସ୍ତାରବାଦ ପାଇଁ ହୋତା ପରି କାର୍ଯ୍ୟ କରିଥିଲେ । ଏବଂ, ତତ୍କାଳୀନ ଧର୍ମଘରର ବୃହଦାସନମାନେ ସେହି କାର୍ଯ୍ୟରେ ଭଗବାନଙ୍କର ମଧ ଶୁଭେଚ୍ଛା ରହିଛି ବୋଲି ଏକ ଭ୍ରମ ସୃଷ୍ଟି କରିବାରେ ଆବଶ୍ୟକ ଅପପ୍ରେରଣାଗୁଡ଼ିକୁ ବି ସୃଷ୍ଟି କରିଥିଲେ । ଯେଉଁଠାରେ ଧର୍ମ ଆଉ ରାଷ୍ଟ୍ର କୌଣସି କାରଣରୁ ଏକାଠି ପରସ୍ପର ସହିତ ବନ୍ଧାବନ୍ଧି ହୋଇ ରହିବାକୁ ମନସ୍ଥ କରନ୍ତି, ସେଠାରେ ପ୍ରାୟ ଏକ ନିୟମର ଅନୁସରଣ କରି ରାଷ୍ଟ୍ର ହିଁ ରଥର ଭୂମିକା ଗ୍ରହଣ କରେ ଏବଂ ଧର୍ମ ତା' ଚୂଡ଼ାଟାରେ ପତାକା ହୋଇ ବନ୍ଧା ହୋଇଥାଏ । ଅଥବା, ରାଷ୍ଟ୍ର ପଶୁର ଅବତାର ନିଏ ଏବଂ ଧର୍ମଟା ତା'ର ଲାଙ୍ଗୁଡ଼ରୂପେ ସତେଅବା ରାଜସତକ ହୋଇ ରହିଥାଏ ।

ନାବିକ କଲମ୍ବସ୍ ପଶ୍ଚିମସ୍ଥ ସ୍ଥଳଭାଗରେ ଯାଇ ପହଞ୍ଚିବାର ବର୍ଷକ ପରେ, ୧୪୯୩ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ ଖ୍ରୀଷ୍ଟିଆନ୍ ଧର୍ମବ୍ୟୂହର ସର୍ବୋଚ୍ଚ ଶାସକ ଏବଂ ଗୁରୁ ପୋପ୍ ଷଷ୍ଠ ଆଲେକ୍‌ଜାଣ୍ଡର ସେପାଖର ନୂତନ ଆବିଷ୍କୃତ ସେହି ପୃଥିବୀଟିରେ ଇଉରୋପରୁ ନବାଗତ ବୀର ଏବଂ ପ୍ରବୀରମାନଙ୍କର କ'ଣ ସବୁ କର୍ତ୍ତବ୍ୟ ହେବ, ସେହି ବିଷୟରେ ଏକ ବିଶେଷ ଘୋଷଣାନାମା ପ୍ରକଟ କରିଥିଲେ । ସେହି ଅନ୍ୟ ପୃଥିବୀଟିରେ ସମ୍ପୃକ୍ତ ମନୁଷ୍ୟମାନଙ୍କର

ମୌଳିକ ଦୃଷ୍ଟିକୋଣଟି କ'ଣ ହେବା ଉଚିତ୍, ସେଥିରେ ସେହି ବିଷୟରେ ନିର୍ଦ୍ଦେଶମାନ ରହିଥିଲା : ''ପରମ ବିଶ୍ୱକର୍ତ୍ତାଙ୍କ ଆଖିକୁ ସୁଖକର ହେଲାଭଳି ତଥା ଆମ ହୃଦୟକୁ ମଧ୍ୟ ଆନନ୍ଦ ଦେଲାଭଳି ରହିଥିବା ବହୁ ବହୁ କର୍ତ୍ତବ୍ୟ ଭିତରେ ଅତ୍ୟନ୍ତ ସ୍ପଷ୍ଟ ଓ ସୁନିଶ୍ଚିତ ଭାବରେ ଯେଉଁଟିକୁ ସବାଆଗ ଓ ସର୍ବୋଚ୍ଚ ବୋଲି କୁହାଯାଇ ପାରିବ, ସେଇଟି ହେଉଛି ଯେ, ସେଠାରେ ଖ୍ରୀଷ୍ଟିଆନ୍ ଧର୍ମର ପ୍ରତିଷ୍ଠାଟିକୁ ହିଁ ସ୍ଥାପନା କରାଯିବ, ସର୍ବତ୍ର ସେଇଟିରେ ପ୍ରସାର କରାଯିବ ; ଏହାରି ଦ୍ୱାରା ହିଁ ମନୁଷ୍ୟମାନଙ୍କର ଆତ୍ମାର ସ୍ୱାସ୍ଥ୍ୟବିଧାନରେ ସର୍ବୋତ୍ତମ ଯତ୍ନ ନିଆଯାଇ ପାରିବ, -ପୃଥିବୀରେ ଯେତେ ବର୍ବର ଜନସମୂହ ରହିଛନ୍ତି, ସେମାନଙ୍କର ଧର୍ମଗଠନଟିକୁ ଭାଙ୍ଗି ପକାଇ ସେମାନଙ୍କୁ ଆମର ଏହି ଅସଲ ଧର୍ମର ବ୍ୟବସ୍ଥାଟି ଭିତରକୁ ଅଡ଼ାଇ ଅଣାଯିବ ।'' ଯିଏ ବା ଯେଉଁମାନେ ଆମଟା ଠାରୁ ଅଲଗା, ସେହିମାନେ ହିଁ ବର୍ବର, -ପୃଥିବୀର ବୁଦ୍ଧିମାନମାନଙ୍କ ଭିତରେ ସେହି ଦୁଷ୍ଟ ଧାରଣାଟି ଏବେ ମଧ୍ୟ କେତେ ଆଣ୍ଟର ସହିତ ବଳବତ୍ତର ରହିଛି । ଏବଂ, ବର୍ବରମାନଙ୍କୁ ଜବତ କରିବା ସକାଶେ ତୁମ ପାଖରେ ଯଦି ଅଧିକ ଉନ୍ନତ କେତେଟା ଫାର୍ଶା, ପନିକି, ଖଣ୍ଡା ଅଥବା ବନ୍ଧୁକ ରହିଥାଏ, ତେବେ ହୁଏତ ତାହାହିଁ ତୁମକୁ ନିଜର ସେହି ଅନିଷ୍ଟକାରୀ ବିଶ୍ୱାସଟାରେ ନିତାନ୍ତ ଅନମନୀୟ ହୋଇ ରହିବାଲାଗି ନିଶ୍ଚୟ ପକ୍କା ନିଷ୍ଠା ଯୋଗାଇଦେଇ ପାରିବ ।

ଇଉରୋପରେ ଏହି ଦୁଷ୍ଟବୁଦ୍ଧି ବିଚାରଟିର ଜ୍ଞାତି ଓ ପଂକ୍ତିମାନଙ୍କୁ ଖୋଜି ବସିଲେ ଆମକୁ ହୁଏତ ଏକାଧିକ ଦୃଷ୍ଟାନ୍ତ ମିଳିଯାଇ ପାରିବ । ଏକାବେଳେକେ ସେହି ଗ୍ରୀକ୍ କାଳରେ ମଧ୍ୟ ଖୋଦ୍ ଆରିଷ୍ଟଟଲ୍ ସମଗ୍ର ମନୁଷ୍ୟଜାତିକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରିବ ବୋଲି କେତେ ଦୃଢ଼ତାର ସହିତ କହିଥିଲେ । ସେ ଗୋଟିଏ ପାଖରେ ମଣିଷମାନଙ୍କୁ ରଖି ଅନ୍ୟ ପାଖରେ ଦାସମାନଙ୍କୁ ଦେଖାଇ ଦେଇଥିଲେ । ମଣିଷ ଅର୍ଥାତ୍ ସକଳ ଅର୍ଥରେ ଆମେ ନିଜେ ଏବଂ ଦାସ କହିଲେ ସକଳ ଅର୍ଥରେ ଆମକୁ ଛାଡ଼ି ଅନ୍ୟମାନେ । ସେହି ଚିନ୍ତାଟି ଉପନିବେଶ ସ୍ଥାପନ କରି ବାହାରିଥିବା ସବୁ ମଣିଷଙ୍କୁ କାଳେ କାଳେ ଉତ୍ତେଜିତ କରି ରଖି ଆସିଛି କି ? ମାତ୍ର, ପ୍ରକୃତରେ ସମ୍ପୂର୍ଣ୍ଣ ଅନ୍ୟ କଥାଟି ହିଁ ଆମ ପାଇଁ ସତ ହୋଇ ପାରିଥାନ୍ତା ; ଅର୍ଥାତ୍, ଯେଉଁମାନେ ନିଜ ବ୍ୟତୀତ ନିଜର ଚତୁର୍ଦ୍ଦିଗରେ ଥିବା ଅବଶିଷ୍ଟ ଅନ୍ୟ ସମସ୍ତଙ୍କୁ ବର୍ବର ବୋଲି କହୁଛନ୍ତି, ପ୍ରକୃତରେ ସେହିମାନଙ୍କୁ ହିଁ ପୃଥିବୀରେ ଅସଲ ବର୍ବର ବୋଲି କୁହାଯାଉ ଥାଆନ୍ତା । ବସ୍ତୁତଃ ମନୁଷ୍ୟମାନେ ସମସ୍ତେ ସମାନ, -ସେମାନେ ସମସ୍ତେ ମଣିଷ । ମନୁଷ୍ୟମାନଙ୍କର ସମୂହମାନେ ମଧ୍ୟ କେହି କାହାଠାରୁ ବଡ଼ ନୁହନ୍ତି ବା ଛୋଟ ନୁହନ୍ତି । ମାତ୍ର, ସବୁ ମଣିଷଙ୍କର ଅନୁଭବ ଭିତରକୁ ସେହି ସତ୍ୟଟି ଏବେ ବି ସମୁଚିତ ଭାବରେ ଭେଦି ପାରି ନାହିଁ ଏବଂ ତେଣୁ ସବୁ ମଣିଷ ତାହାକୁ ଉପଲବ୍ଧି କରି ପାରୁନାହାନ୍ତି । କେତେ ମଣିଷ ଓ କେତେ ସମୂହ ଆପଣାକୁ ଅନ୍ୟମାନଙ୍କ ତୁଳନାରେ ଅଧିକ ଓ ଉଚ୍ଚତର ବୋଲି ବିଚାରୁଛନ୍ତି । ଏବଂ, ଠିକ୍ ସେହିପରି ବିଚାର କରୁଥିବାରୁ ହିଁ ସେମାନେ ଅନ୍ୟମାନଙ୍କ ଠାରୁ ନିମ୍ନ ହୋଇ ରହିଛନ୍ତି । ପରିଣାମରେ ସମାନତା ସମ୍ଭବ ହୋଇ ପାରୁନାହିଁ ଓ ପୃଥିବୀଟା ଏପରି ବଡ଼ ସାନ ଦେଖଯାଉଛି ।

ଏକଦା ଫରାସୀ ବିପ୍ଲବରେ ସମାନତା, ସ୍ୱାଧୀନତା ଏବଂ ଭାତୃଭାବକୁ ସମସ୍ତଙ୍କ ପାଇଁ କାମ୍ୟ ବୋଲି ଘୋଷଣା କରି ଯେଉଁ ସଂଗ୍ରାମଟି ହୋଇଥିଲା, ଦୁଇଶହ ବର୍ଷ ପରେ ମଧ୍ୟ ସମଗ୍ର ପୃଥିବୀରେ ତାହା କେତେ କେତେ ଜନସମୂହକୁ ପ୍ରେରଣା ଦେବାରେ ଲାଗିଛି ଏବଂ ବର୍ତ୍ତମାନ ବିଷୟରେ ମନୁଷ୍ୟମାନଙ୍କର ଚେତନାକୁ ନାନା ଅନ୍ୟ ସମ୍ଭାବନା ଆଡ଼କୁ ଅଗ୍ରସର କରାଇ ନେଉଛି । ତଥାପି,ସେହି ବିପ୍ଳବର ପରବର୍ତ୍ତୀ ପ୍ରତିଧ୍ୱନି ସ୍ୱରୂପ, ଏକ ସମସମାଜ ସମ୍ଭବ କରିବା ଦିଗରେ ଇଉରୋପ ଭୂମିରେ ଯେଉଁ ଚିନ୍ତାଶୀଳ ବ୍ୟକ୍ତିମାନେ ପ୍ରାୟ ଏକ ରାଜନୀତିକ ଉଦ୍ୟମ ଆରମ୍ଭ କରି ଦେଇଥିଲେ, ସେମାନଙ୍କର ଉକ୍ତିଗୁଡ଼ିକୁ ବିଶ୍ଳେଷଣ କରି ଦେଖିଲେ ବେଶ୍ ପରିଷ୍କାର ହୋଇଯିବ ଯେ ସେମାନେ ଇଉରୋପକୁ ହିଁ ସ୍ଥୂଳତଃ ସେମାନଙ୍କ ଅନ୍ଦାଜାର ସମ୍ପୂର୍ଣ୍ଣ ପୃଥିବୀ ବୋଲି ବିଚାର କରୁଥିଲେ ଏବଂ ସେଥିରେ କୌଣସି ଅସଙ୍ଗତି ରହିଯାଇଲା ବୋଲି କେହି ସନ୍ଦେହ ବି କରୁନଥିଲେ । ଶ୍ରୀଯୁକ୍ତ ସାଁଦ୍ ସିମଁ (Henri de Saint-Simon) ଙ୍କ କଥାଟିକୁ ଦୃଷ୍ଟାନ୍ତରୂପେ ଗ୍ରହଣ କରା ଯାଇପାରେ । ଶ୍ରୀ ସିମଁ ସମଗ୍ର ପୃଥିବୀକୁ ଇଉରୋପର ଉପନିବେଶରେ ପରିଣତ କରିବା ଉପରେ ପୂର୍ଣ୍ଣ ବିଶ୍ୱାସ କରୁଥିଲେ । ତାଙ୍କରି ଭାଷାରେ, ଇଉରୋପୀୟ ଜାତି ହେଉଛି ମଣିଷମାନଙ୍କୁ ନେଇ ଗଠିତ ହୋଇଥିବା ଯେକୌଣସି ଜାତି ଅପେକ୍ଷା ଅଧିକ ଉଚ୍ଚସ୍ଥାନୀୟ, ତେଣୁ ଆମକୁ ସମସ୍ତ ପୃଥିବୀଟାକୁ ହିଁ ଇଉରୋପର ଉପନିବେଶରେ ପରିଣତ କରି ଆଣିବାକୁ ପଡ଼ିବ । ଠିକ୍ ଇଉରୋପରେ ଯେପରି ହୋଇଛି,ସମଗ୍ର ପୃଥିବୀକୁ ମଧ୍ୟ ସେହିପରି ବାହାରୁ ବାଟ ଫିଟିଯିବ ଏବଂ ସେହିସବୁ ସ୍ଥାନରେ ସଭ୍ୟ ମନୁଷ୍ୟର ସଂସାର ଗଢ଼ିଉଠିବ । ତେଣୁ, ଇଉରୋପର ଶାସନସଭା ଅନବଚ୍ଛିନ୍ନ ଭାବରେ ଏହି ଉଦ୍ୟମଟିକୁ ହିଁ ଆରମ୍ଭ କରିଦେଉ । କାରଣ, ତାହାହିଁ ଇଉରୋପକୁ ସକ୍ରିୟ କରି ରଖିବ, ଇଉରୋପ ପାଇଁ ସ୍ୱାସ୍ଥ୍ୟର କାରଣ ମଧ୍ୟ ହେବ ।

ସମାଜର ଅଧ୍ୟୟନକୁ ଏକ ବୈଜ୍ଞାନିକ ଭୂମି ଓ ପ୍ରଣାଳୀ ଆଣି ଯୋଗାଇ ଦେଇଥିବା ପୁରୋଗାମୀମାନଙ୍କ ମଧ୍ୟରେ ସବାପ୍ରଥମେ ଶ୍ରୀ ଅଗଷ୍ଟ କୋଁତ୍ (Auguste Comte) ଙ୍କ ନାମ ସ୍ମରଣକୁ ଆସିଥାଏ । ବିଜ୍ଞାନର ସହାୟତାରେ ସମଗ୍ର ପୃଥିବୀରେ ସବୁ ମଣିଷଙ୍କ ପାଇଁ ଗୋଟିଏ ଶୁଦ୍ଧ ଅର୍ଥାତ୍ ଦୋଷରହିତ ସମ୍ବିଧାନ ତିଆରି କରାଯାଇ ପାରିବ ବୋଲି ସେ ବିଶ୍ୱାସ କରୁଥିଲେ । ପୃଥିବୀରେ ଜାତି ଜାତି ଅର୍ଥାତ୍ ସମୂହ ସମୂହ ମଧ୍ୟରେ ରହିଥିବା ସକଳ ଫରକ ସତ୍ତ୍ୱେ ତଥାପି ଏପରି ଏକ ସମ୍ବିଧାନକୁ ଉପରୁ ଆଣି ପ୍ରବର୍ତ୍ତନ କରାଯାଇ ପାରିବ ବୋଲି ସେ କହୁଥିଲେ । ତାହା ଫଳରେ ତାଙ୍କ ମତରେ, ସମଗ୍ର ମନୁଷ୍ୟଜାତି ଗୋଟିଏ ସମୂହରେ ପରିଣତ ହୋଇଯାଇ ପାରିବେ । ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ନୂଆ ସମାଜବିଜ୍ଞାନଟି ଏହି ଦିଗରେ ଅଗ୍ରସର ହେବାରେ ମନୁଷ୍ୟମାନଙ୍କୁ ସାହାଯ୍ୟ କରିବ ବୋଲି ସେ ସର୍ବଦା ସଚେତନ ରହିଥିଲେ । ଏବଂ, ମାନବ ଏକତ୍ରୀକରଣର ଏହି ପ୍ରକ୍ରିୟାଟି ତାଙ୍କ ନିଜ ଦେଶ ଫ୍ରାନ୍ସରୁ ହିଁ ଆରମ୍ଭ ହେବ ବୋଲି କୋଁତ୍ ପରାମର୍ଶ ଦେଉଥିଲେ । କାରଣ ଫ୍ରାନ୍ସକୁ ସିଏ the core of humanity ଏବଂ land of the central people

ବୋଲି ବିଶ୍ୱାସ କରୁଥିଲେ । ଆଉଜଣେ ଫରାସୀ ବିଦ୍ୱାନ୍ ଦ ଟକ୍‌ଭିଲ୍ (Alexis de Tocqueville) ଏକଦା ଆମେରିକା ଦେଶକୁ ଦେଖି ସେଠା ଲୋକତାନ୍ତ୍ରିକ ବ୍ୟବସ୍ଥାଗୁଡ଼ିକ ବିଷୟରେ ଅତ୍ୟନ୍ତ ସୁଚିନ୍ତିତ ଯେଉଁ ଦୁଇ ଖଣ୍ଡିଆ ଗ୍ରନ୍ଥଟି ଲେଖି ଯାଇଥିଲେ, ଏବେ ମଧ୍ୟ ଏକାଧିକ ପ୍ରସଙ୍ଗରେ ତାହାର ଭୁରି ଭୁରି ଚର୍ଚ୍ଚା ହେବାରେ ଲାଗିଛି । ମାତ୍ର, ସେହି ମସିଆ ଧାରଣାଟା ତାଙ୍କୁ ମଧ୍ୟ ସତେଅବା ଏକାବେଳେକେ ମଞ୍ଜରୁ କାମୁଡ଼ି ଧରିଥିଲା । ସିଏ ଇଉରୋପୀୟ ମନୁଷ୍ୟସମୂହ ଏବଂ ପୃଥିବୀରେ ଅନ୍ୟତ୍ର ବାସ କରୁଥିବା ମନୁଷ୍ୟମାନଙ୍କୁ ତୁଳନା କରି ଦର୍ଶାଇ ଦେବାକୁ ଯାଇ ମନୁଷ୍ୟ ଏବଂ ଇତର ପ୍ରାଣୀମାନଙ୍କ ଭିତରେ ରହିଥିବା ଅନ୍ତରଟିକୁ ସୂଚିତ କରି ଦେଉଥିଲେ ।

ମନୁଷ୍ୟମାନଙ୍କର ମଙ୍ଗଳକାମନା କରୁଥିବା ଏକ ଦୃଷ୍ଟିକୋଣରୁ ସେ ଇଉରୋପୀୟମାନଙ୍କର ଉପନିବେଶ ସ୍ଥାପନ କରିବାର ନୀତିଟିକୁ ସମର୍ଥନ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଯେ ତଦ୍ୱାରା ସଭ୍ୟତାର ପ୍ରସାର ଘଟିବ ; ଏପରିକି, ଇଂରେଜମାନଙ୍କର ଭାରତବର୍ଷ-ଅଧିକାର ବିଷୟରେ ଶ୍ରୀ ଟକ୍‌ଭିଲ୍ ତାଙ୍କର ଜଣେ ଇଂରାଜୀ ବନ୍ଧୁଙ୍କ ପାଖକୁ ଲେଖିଥିଲେ ଯେ, ଏହାଦ୍ୱାରା ଖ୍ରୀଷ୍ଟିଆନ୍ ଧର୍ମ ଏବଂ ସଭ୍ୟତା ନିମନ୍ତେ ଏକ ଗୌରବମୟ ବିଜୟ ଯେ ହାସଲ ହୋଇ ପାରିଛି, ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ । ଆମେରିକାରେ ଲୋହିତ ସମୂହଙ୍କ ଉପରେ ନିଜର ଅଧିକାରକୁ ସାବ୍ୟସ୍ତ କରି ଏକ ଉପନିବେଶର ସ୍ଥାପନା ସମ୍ବନ୍ଧରେ ଟକ୍‌ଭିଲ୍ ଅବଶ୍ୟ ଲେଖିଛନ୍ତି, "ସେହି ଭୂଖଣ୍ଡଟିରେ ଇଉରୋପ ତରଫରୁ ହୋଇଥିବା ଉତ୍ପୀଡ଼ନ ଫଳରେ ଲୋହିତମାନଙ୍କର ସମାଜ ଭିତରେ ଅଧିକ ବିଶୃଙ୍ଖଳା ଆସି ପଶିଗଲା । ସଭ୍ୟତାର ମାପକରେ ମଧ୍ୟ ଲୋହିତମାନେ ଅଧିକ ନିମ୍ନକୁ ଖସି ଆସିଥିଲେ । ଏବଂ, ଯୁଗପତ୍ ଭାବରେ, ସେମାନଙ୍କର ନୈତିକ ତଥା ଭୌତିକ ଜୀବନର ପରିବେଶରେ କ୍ରମାଗତ ଭାବରେ ଅବନତି ମଧ୍ୟ ଘଟିଥିଲା । ସେମାନଙ୍କର ଅବସ୍ଥା କ୍ରମେ ଅଧିକ ଦୁର୍ଦ୍ଦଶାଗ୍ରସ୍ତ ହେବା ସଙ୍ଗେ ସଙ୍ଗେ ସେମାନେ ବି ଅଧିକରୁ ଅଧିକ ବର୍ବର ହୋଇ ଯାଇଥିଲେ ।" ଫରାସୀ ବିପ୍ଳବର ପରବର୍ତ୍ତୀ କାଳର ଆଉଜଣେ ଚିନ୍ତାଶୀଳ ବିଖ୍ୟାତ ବ୍ୟକ୍ତି କଣ୍ଡୋର୍ସେ (Condorcet) ମଧ୍ୟ ବିଚାର କରୁଥିଲେ ଯେ, ବିଭିନ୍ନ ସଭ୍ୟତାର ଏକ ତୁଳନାତ୍ମକ ମୂଲ୍ୟ କଳନା କରିବାକୁ ଇଚ୍ଛା କଲେ ଆମେ ଫରାସୀ, ଇଂରାଜ ଓ ଆମେରିକାନ୍ ମାନଙ୍କୁ ହିଁ ସର୍ବଶୀର୍ଷ ସ୍ଥାନରେ ଯାଇ ପହଞ୍ଚି ଥିବାର ଦେଖି ପାରିବା । ଏହି ଭୂମିଗୁଡ଼ିକର ଅଧିବାସୀମାନେ ସବୁଠାରୁ ଅଧିକ ଆଲୋକନର ଯୋଗ୍ୟ ହୋଇଛନ୍ତି, ସବୁଠାରୁ ଅଧିକ ସ୍ୱାଧୀନତା ଲାଭ କରିଛନ୍ତି ଏବଂ ସେମାନଙ୍କର ମାନସକ୍ଷେତ୍ରରେ ହୁଏତ ସବୁଠାରୁ କମ୍ ପରିମାଣରେ ଅନ୍ୟକୁ ଘୃଣା କରିବା ଏବଂ ନିମ୍ନତର ବୋଲି ବିଚାର କରିବାର ଭାବମାନ ରହିଛି । କୁହାଯାଇ ପାରେ ଯେ, ଏହିସବୁ ଭାବଦୃଷ୍ଟି ନେଇ ଯେଉଁମାନେ ଆମେରିକାକୁ ଅଧିକାର କରି ନିଜପାଇଁ ସଂସ୍ଥାନଟିଏ ଗଢ଼ିଲେ, ସେମାନଙ୍କୁ ଅସଲ ସ୍ଥାନାଧିକାରୀ ଅନ୍ୟ ମନୁଷ୍ୟମାନେ ଆଦୌ ମନୁଷ୍ୟ ପରି ଦେଖାଯାଇ ନଥିବେ । ଅନ୍ୟମାନଙ୍କୁ ବର୍ବର ବୋଲି ଦେଖିବାକୁ ଆରମ୍ଭ କଲେ ଅନେକ ସମୟରେ ଏହିପରି ଭାବରେ ହିଁ ବୁଦ୍ଧିଭ୍ରଂଶ ହୋଇ ଯାଇଥାଏ ।

ପ୍ରଥମେ ପ୍ରଥମେ ଲୋହିତମାନେ ଖ୍ରୀଷ୍ଟିଆନ୍ ମିଶନାରିମାନଙ୍କୁ ସେମାନଙ୍କର ବସତି ଭିତରେ ଆସି ପ୍ରବେଶ କରିବାକୁ ବି ଦେଉନଥିଲେ । ସେମାନେ ଯେ କ'ଣ ଖୋଟାଏ ମନ୍ଦ ଗନ୍ଧ ସୁଂଘାଇଦେଲା ପରି ଲୋହିତ ସଂପ୍ରଦାୟର ନିଜ ମାଟିଟି ପ୍ରତି ରହିଥିବା ଦୃଢ଼ ବିଶ୍ୱାସଟିକୁ ଦୋହଲାଇ ଦେବେ, ଲୋହିତମାନେ ସେଇ ବିଷୟରେ ସବୁବେଳେ ସାବଧାନ ରହିଥିଲେ । ହୁଏତ ସର୍ବପ୍ରଧାନ କଥା ହେଉଛି ଯେ, ଏହି ମିଶନାରିମାନେ ଲୋହିତମାନଙ୍କ ଉପରେ ଅତ୍ୟାଚାର ଓ ଜୁଲମ କରୁଥିବା ମଣିଷମାନଙ୍କର ସମଜାତୀୟ ଥିଲେ । ସେମାନେ ଉଭୟେ ଇଉରୋପରୁ ଆସିଥିଲେ ଏବଂ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଏକା ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ । ମିଶନାରିମାନଙ୍କୁ ଲୋହିତମାନେ କାହିଁକି ଭଲ ଆଖିରେ ଦେଖି ପାରୁନାହାନ୍ତି, କେହି ଏଭଳି ପ୍ରଶ୍ନଟିଏ କରିବାରୁ ଜଣେ ଲୋହିତ ଉତ୍ତର ଦେଇ କହିଥିଲା : ''ନାଇଁ, ନାଇଁ, ଆମକୁ ସବୁକଥା ଖୁବ୍ ଭଲ ଭାବରେ ଜଣା ଅଛି । ମିଶନାରିମାନେ ଆମକୁ ଭଗବାନଙ୍କ ବିଷୟରେ ଝଗଡ଼ା କରିବାକୁ ଶିକ୍ଷା ଦେବେ । ଆମେ ବାବୁ ସେସବୁ ଝଗଡ଼ା ଭିତରେ ମୋଟେ ପଶିବାକୁ ଯିବୁନାହିଁ ।'' କଥିତ ଅଛି, ସେତେବେଳେ ସେହି ନୂଆ ଭୂମିରେ ପାଦ ପକାଉ ପକାଉ ମଧ୍ୟ କାଥୋଲିକ୍ ଏବଂ ପ୍ରୋଟେଷ୍ଟାଣ୍ଟ ଦୁଇ ସମ୍ପ୍ରଦାୟର ମିଶନାରିମାନଙ୍କ ଭିତରେ ତୀବ୍ର ପ୍ରତିଯୋଗିତା ଓ ଦ୍ୱେଷ ଆରମ୍ଭ ହୋଇ ଯାଇଥିଲା । ପୁନଶ୍ଚ, ''ହଁ, ଆମେମାନେ ବି କ'ଣ ବେଳେ ବେଳେ ନିଜ ଭିତରେ ଝଗଡ଼ା କରୁନାହୁଁ ! ମାତ୍ର, ଆମେ ଏହି ପୃଥିବୀରେ ଥିବା ପଦାର୍ଥଗୁଡ଼ିକ ବିଷୟରେ ହିଁ ଯାହାକିଛି ଝଗଡ଼ା କରୁଛୁ, ମାତ୍ର ଏହି ପୃଥିବୀକୁ ଚଳାଉଥିବା ଅଦୃଶ୍ୟ ପରମସତ୍ତାଙ୍କ ବିଷୟରେ ଆମେ କେବେହେଲେ ଝଗଡ଼ା କରୁନାହିଁ । ତୁମେ ଆମକୁ ଯେତେ ଯାହା କହିଲେ ବା ବୁଝାଇଲେ ମଧ୍ୟ ଆମେ ତୁମଠାରୁ ସେହି କଥାଟିକୁ ମୋଟେ ଶିକ୍ଷା କରିବୁନାହିଁ ।''

ଏହି ଗୋରାମାନେ କୁଆଡୁ ଆସି ଆମକୁ ମଧ୍ୟ ଗୋରା କରି ପକାଇବେ କି ? - ପ୍ରାୟ ଆତଙ୍କିତ ହେବାପରି ଲୋହିତ ସମ୍ପ୍ରଦାୟ ସେକଥା ଭାବୁଥିଲା ଓ ସେହି ବିଷୟରେ ସର୍ବଦା ସତର୍କ ହୋଇ ରହୁଥିଲା । ପ୍ରତ୍ୟେକ ସମ୍ପ୍ରଦାୟର ଜଣେ ଜଣେ Chief ବା ମୁଖିଆ ରହିଥିଲେ । ସିଏ ପୁରୁଷାନୁକ୍ରମେ ଜୀବନଟିକୁ ସମସ୍ତଙ୍କ ସହିତ ଏକତ୍ର ହୋଇ ବଞ୍ଚିବା ବିଷୟରେ ଯେଉଁ ସତ୍ୟ ବା ଅନୁଭବଗୁଡ଼ିକୁ ଉତ୍ତରାଧିକାରୀ ରୂପେ ଗ୍ରହଣ କରିଥିଲେ, ତାହାକୁ ହିଁ ଅବଲମ୍ବନ କରି ନିଜର ସମୂହଟିକୁ ଦିଗ୍‌ଦର୍ଶନ ଦେଉଥିଲେ । ଆମେରିକାରେ ଗୋରା ମଣିଷମାନେ ଆସି ପ୍ରବେଶ କଲେଣି,ସେମାନଙ୍କ ପାଖରେ ଅଧିକ ବୁଦ୍ଧି, ଅଧିକ ବଳ ଓ ଅଧିକ କୌଶଳ ରହିଛି ଓ ତେଣୁ ସେମାନେ ଆମେରିକାର ଲୋହିତମାନଙ୍କୁ ମଧ୍ୟ କ୍ରମେ ଜଣେ ଜଣେ ଗୋରା ମଣିଷରେ ପରିଣତ କରିଦେବେ ଏବଂ ତାହାଫଳରେ ଲୋହିତମାନଙ୍କର ଜୀବନରୀତିଟି ସମ୍ପୂର୍ଣ୍ଣ ଭାବରେ ଗୋରାଙ୍କ ପରି ହୋଇଯିବ ବୋଲି ଏକ ମନ୍ତବ୍ୟର ଉତ୍ତର ଦେଇ ଏକଦା କୌଣସି ଲୋହିତ ସମ୍ପ୍ରଦାୟର ଜଣେ ମୁଖିଆ କହିଥିଲେ: ''ତେବେ ତୁମକୁ ଏକାବେଳେକେ ମୂଳରୁ ହିଁ ସବୁ ଆରମ୍ଭ କରିବାକୁ ହେବ ; ତୁମର ପିତୃପୁରୁଷ ତୁମମାନଙ୍କ ନିମନ୍ତେ ଯେଉଁ ଜ୍ଞାନ ଓ ଅନୁଭବମାନ ରଖି ଯାଇଛନ୍ତି,

ତାହାକୁ ବର୍ଜନ କରିବାକୁ ପଡ଼ିବ । ଏହାର ଅର୍ଥ ହେଉଛି, ଏଣିକି ତୁମକୁ ଖାଦ୍ୟପଦାର୍ଥକୁ ନିଜପାଇଁ ସଂଚିତ କରି ରଖିବାକୁ ହେବ । ଆଉକେହି ଭୋକିଲା ରହୁଛି କି ନାହିଁ ବୋଲି ମୋଟେ ଦେଖିବାକୁ ପଡ଼ିବନାହିଁ । ତୁମେ କେବଳ ନିଜପାଇଁ ହିଁ ନିଜର ଜୀବନଟିକୁ ବଞ୍ଚିବ । ହଁ, ଯେତେବେଳେ ତୁମେ ନିଜ ପାଇଁ ଘରଟିଏ ତିଆରି କରିନେବ ଓ ତୁମର ଅମାରଟା ଶସ୍ୟଦ୍ୱାରା ଭର୍ତ୍ତି ହୋଇ ରହିଥିବ, ସେତେବେଳେ ତୁମେ ତୁମର ପଡ଼ୋଶୀ ବୋଲି କେଉଁଠି କିଏ ରହିଛି ବୋଲି ତଲାଶ କରି ବାହାରିବ । ତୁମେ ତାକୁ ସବୁମତେ ଠକିବ, ତା'ଠାରୁ ଯାବତ୍ ପ୍ରକାରର ଫାଇଦା ଉଠାଇବ ଏବଂ ତା'ର ନିଜର ବୋଲି ତା' ପାଖରେ ଯାହାକିଛି ଧନ ବା ଦରବ ରହିଛି, ତୁମେ ତାହାକୁ ନିଜ ସକାଶେ ମାରି ଆଣିବା ପାଇଁ କୌଶଳ କରିବାକୁ ଆରମ୍ଭ ବି କରିଦେବ ।''

ଲୋହିତ ମୁଖିଆଟି ଏସବୁ କଥା ତା'ର ନିତ୍ୟ ଅନୁଭବରୁ ହିଁ କହୁଥିଲା । ଗୋରା ମଣିଷମାନେ ପ୍ରଥମେ ପ୍ରଥମେ ପୂରା ଭଲଲୋକ ପରି ଆସିଥିଲେ । ସେମାନେ ସେତେବେଳେ ଏଇଟା ସେଇଟା ଦେଇ ସରଳ ଓ ନିର୍ମଳ ହୃଦୟମାନଙ୍କୁ କେତେ ଭଣ୍ଡାଇଲେ । ଆଙ୍ଗୁଠିଟିଏ ପଶାଇବାର ବାଟ ପାଉ ପାଉ କ୍ରମେ ପୂରା ବାହୁଟାକୁ ନେଇ ପଶାଇଦେଲେ। । ଏବଂ, ଏପରି ଆଚରଣମାନ ଦେଖି ଲୋହିତ ମଣିଷମାନେ ପ୍ରକୃତରେ କେଡ଼େ ଆଚମ୍ବିତ ହୋଇ ଯାଇଥିବେ । ସେମାନେ ଆଗରୁ କେବେ ଯାହା କରିନଥିଲେ ଏବଂ ତେଣୁ ମଣିଷମାନେ ଯେ ତାହା ପ୍ରକୃତରେ କରିପାରନ୍ତି ବୋଲି କସ୍ମିନ୍‌କାଳେ ବିଶ୍ୱାସ କରିନଥିଲେ, ବର୍ତ୍ତମାନ ଗୋରାମାନଙ୍କର ସମ୍ପର୍କରେ ଆସି ସେହିଗୁଡ଼ାକୁ ହିଁ ଅଙ୍ଗେ ନିଭାଇଥିଲେ । ସେମାନଙ୍କର ଚିହ୍ନା ପୃଥ୍ୱୀଧାରଣାଟି ଉପରେ ସତେଅବା କେଡ଼େ ବଡ଼ ପଥରଚଟାଏ ଆସି ପଡ଼ିଥିବ ଓ ସେମାନଙ୍କର ଯାବତୀୟ ପ୍ରତ୍ୟୟର ଭୂମିକୁ ସମ୍ପୂର୍ଣ୍ଣ ଭାବରେ ଦୋହଲାଇ ଦେଇଥିବ । କ୍ରମେ ଗୋରାମାନେ ନିଜର ଅଧିକାରକୁ ଜମାଇ ଆସିବା ସଙ୍ଗେ ସଙ୍ଗେ ସେମାନଙ୍କର ଅସହାୟତାବୋଧ ମଧ୍ୟ ବୃଦ୍ଧି ପାଇଥିବ । ଏଥର ଅନ୍ୟପ୍ରକାର ଏକ ସମୟ ଆସି ପହଞ୍ଚିଲା, ଏଣିକି ସତେଅବା ଈଶ୍ୱରଙ୍କ ଦ୍ୱାରା ଆଦିଷ୍ଟ ହୋଇ ଏହି ବହିରାଗତମାନେ ଆସି ଏହି ଭୂଇଁ ଉପରେ ଅଧିକାର ବିସ୍ତାର କରୁଛନ୍ତି ଏବଂ ତେଣୁ ତାହାକୁ ଆଉ ମୋଟେ ରୋକାଯାଇ ପାରିବନାହିଁ, ଏହିପରି ଏକ ଆଶଙ୍କା ସେମାନଙ୍କର ସାମର୍ଥ୍ୟକୁ ଅକ୍ତିଆର କରି ନେଇଥିବ । କଲମ୍ବସ୍ ଆସି ପହଞ୍ଚିବାର ଅଳ୍ପ କେତେ ଦଶକ ପରେ ଯେତେବେଳେ ସ୍ପେନୀୟ ଜଣେ ସେନାପତି ମେକ୍ସିକୋ ଅଧିକାର କରିବା ନିମନ୍ତେ ସମୁଦ୍ରତଟ ଆଡୁ ରାଜଧାନୀକୁ ଅଗ୍ରସର ହେଉଥିଲେ, ସେତେବେଳେ ରାଜଧାନୀରେ ସତେଅବା ଭବିଷ୍ୟତରେ ଘଟିବାକୁ ଯାଉଥିବା ଘଟଣାଗୁଡ଼ିକ ବିଷୟରେ ପୂର୍ବଶକୁନ ଗୁଡ଼ିକୁ ଜଳ ଜଳ କରି ଦେଖି ପାରୁଥିବା ପରି ଶତ୍ରୁ ଆଗରେ କୌଣସି ପ୍ରତିରୋଧ ଛିଡ଼ା କରିନଥିବା ଲୋହିତ ମାନଙ୍କର ସମ୍ରାଟ Mantezuma ମନେତଅବା କିପରି ନିଷ୍କ୍ରିୟ ହୋଇ ରହିଗଲେ, ସେଥିରୁ ଆମକୁ ସେହି କଥାଟିର ଏକ ଆଭାସ ମଧ୍ୟ ମିଳିଯାଉଛି ।

ସେହି ଲୋହିତ ବର୍ଗର ଜଣେ ଲେଖକ ଲୋହିତମାନଙ୍କୁ ଆମେରିକାର Spiritual Owners ଏବଂ ଗୋରାମାନଙ୍କୁ ଆମେରିକାର Political Owners ବୋଲି କହିଛନ୍ତି ।

ଓଡ଼ିଆ ଭାଷାରେ ଏହି ଦୁଇଟିଯାକ କଥାକୁ ଅନୁବାଦ କରି ଆମେ ହୁଏତ ପ୍ରକୃତ ମାଲିକ ଏବଂ ଦଖଲକାରୀ ମାଲିକ ବୋଲି କହିପାରିବା । ଲୋହିତମାନେ ହେଉଛନ୍ତି ଆମେରିକା ମହାଦେଶର ଅଧିବାସୀ । ଆମେରିକା ନାମକ ଆଞ୍ଚଳିକ ଭୂମିଟି ପ୍ରକୃତରେ ସେହିମାନଙ୍କର । ଇଉରୋପୀୟମାନେ ଆଦୌ କୌଣସି ଅର୍ଥରେ ଆମେରିକାକୁ ଆବିଷ୍କାର କରିନାହାନ୍ତି, ସେମାନେ ଭୂମିଟିକୁ ଦଖଲ ହିଁ କରି ନେଇଛନ୍ତି । ମଧ୍ୟଯୁଗର କୌଣସି ଏକ ଶତାବ୍ଦୀରେ ତତ୍କାଳୀନ ତୁରସ୍କର ଅଟୋମାନ ସାମ୍ରାଜ୍ୟର ସେନାବାହିନୀ ଯେତେବେଳେ ଇଉରୋପର ପ୍ରାୟ ସମୁଦାୟ ଦକ୍ଷିଣ-ପୂର୍ବ ଚେନାଟାକୁ ଦଖଲ କରି ନେଇଥିଲେ ଏବଂ ଆଫ୍ରିକାର ଉତ୍ତର ତଟବାଟେ ଯାଇ ଜିବ୍ରାଲ୍ଟର୍ ପାରିହୋଇ ସ୍ପେନଟାକୁ ମଧ୍ୟ କରାୟତ୍ତ କଲେ, ସେତେବେଳେ ସେମାନେ ସେହିସବୁ ଭୂମିର ଆବିଷ୍କାର କଲେ ବୋଲି କଦାପି ଦାବୀ କରିନଥିଲେ । ଡେନ୍‌ମାର୍କର ରାଜା କ୍ୟୁଟ୍ (Canute) ସେହି କେଉଁ ପ୍ରାଚୀନ କାଳରେ ଯେତେବେଳେ ଇଂଲଣ୍ଡକୁ ଜୟ କରିଥିଲେ ଅଥବା ଆହୁରି ପୂର୍ବେ ଯେତେବେଳେ ରୋମାନ୍ ସାମ୍ରାଜ୍ୟର ବାହିନୀ ଇଂଲଣ୍ଡକୁ ଅଧିକାର କରି ନେଇଥିଲେ, ସେତେବେଳେ ସେମାନେ ଇଂଲଣ୍ଡକୁ ଆବିଷ୍କାର କରିଥିଲେ ବୋଲି କେହି କଦାପି କହିନାହିଁ । ଲୋହିତମାନଙ୍କ ଦ୍ୱାରା ସେହି ପଶ୍ଚିମ ଗୋଲାର୍ଦ୍ଧରେ ପ୍ରତିଷ୍ଠିତ ତିନୋଟି ସଂସ୍କୃତି ବିଷୟରେ କ୍ରମେ ଏତେ ଏତେ କଥା ପୃଥିବୀର ଅବଗତି ଭିତରକୁ ଆସିଯିବା ପରେ ତଥାପି କଲମ୍ବସ ବା ତାଙ୍କର ବିରାଦର ଅନ୍ୟମାନେ ଆମେରିକା ଆବିଷ୍କାର କରିଥିଲେ ବୋଲି ଯେ କାହିଁକି କୁହାଯାଉଛି, ତାହାର ପ୍ରକୃତରେ ଏକ ପୁନର୍ମୂଲ୍ୟାୟନ କରାଯିବା ଉଚିତ୍ ।

ତେଣୁ, ଇଉରୋପୀୟ ମାନଙ୍କୁ ଆମେରିକାର ଅଧିବାସୀ ନକହି ବରଂ ଆମେରିକାର ଦଖଲକାରୀ କହିଲେ ସେହି ଭୂଭାଗଟି ବିଗତ ଶତାବ୍ଦୀଗୁଡ଼ିକରେ ଅତିକ୍ରମ କରି ଆସିଥିବା ଘଟଣା ଓ ଅଭିଜ୍ଞତାଗୁଡ଼ିକୁ ଆମେ ସମ୍ଭବତଃ ଅଧିକ ନ୍ୟାୟଯୁକ୍ତ ଭାବରେ ବୁଝିପାରିବା । ଗୋରାପକ୍ଷ ଯାହାକୁ ଆମେରିକାରେ ଆପଣାର କ୍ରମବିଜୟର ଇତିହାସ ବୋଲି କହିବ, ସେହି ଭୂମିର ମୂଳ ଅଧିବାସୀଙ୍କର ନିଘା ଦେଇ ଦେଖିଲେ ତାହାକୁ, ତାହା ଆମକୁ ଯେତେ ଅପ୍ରୀତିକର ଲାଗୁଥିଲେ ମଧ୍ୟ, ମୁଖ୍ୟତଃ ବହୁ ଦୁର୍ବିପାକର ଏକ ଗୁଚ୍ଛ କାହାଣୀ ବୋଲି କୁହାଯାଇ ପାରିବ । ଯେତେ ଅଧିକରୁ ଅଧିକ ତଥ୍ୟ ଯୋଗାଡ଼ କରି କାହାଣୀଟିକୁ କହିଲେ ମଧ୍ୟ ତାହାକୁ ତଥାପି ସମ୍ପୂର୍ଣ୍ଣ ଭାବରେ ମୋଟେ କୁହାଯାଇ ପାରିବନାହିଁ । ଏବଂ, ଏପରିକି, ଗୋରା ସ୍ଥାନନିଯୁକ୍ତ ମାନଙ୍କର ଔପଚାରିକ ବିବରଣୀ ଅଥବା ଗୋରାମାନେ ବାହାର କରୁଥିବା ସେତେବେଳର ଖବରକାଗଜରେ ପ୍ରକାଶିତ ବର୍ଣ୍ଣନାଗୁଡ଼ିକରୁ ଏବେ ଯେତିକି ଉପଲବ୍ଧ ହେଉଛି, ସେଥିରେ ସବୁ ସମ୍ବାଦ ଓ ସବୁଯାକ ମତଲବ କଦାପି ଗୋଚରକୁ ଆସି ପାରିନଥାନ୍ତା । ସମ୍ଭବତଃ ଲୋହିତମାନେ ହିଁ ସେମାନଙ୍କ ଉପରେ କରା ଯାଇଥିବା ସକଳ ନିର୍ଯ୍ୟାତନାର ପୂର୍ଣ୍ଣ ସାକ୍ଷ୍ୟ ଦେଇ ପାରିଥାନ୍ତେ । ମାତ୍ର, ସେମାନଙ୍କର କୌଣସି ଖବରକାଗଜ ନଥିଲା ଓ ଆକ୍ରମଣକାରୀ ମାନଙ୍କର ଦୁରଭିସନ୍ଧି ଗୁଡ଼ିକୁ ଭେଦି ପାରିବା ନିମନ୍ତେ ସେମାନେ ସାଂସ୍କୃତିକ ଦୃଷ୍ଟିରୁ ଆଦୌ ତିଆରି ହୋଇ

ନଥିଲେ । କେଡ଼େ ଅସହାୟ ଭାବରେ ଗୋଟାଏ ଜନସମୂହ ଯେ ନିଜେ ତିଆରି କରିଥିବା ଏକ ଅତିପରିଚିତ ଭୂମି ଉପରୁ ଲୋପ ପାଇ ଯାଇଥିବ, ସେକଥା ଭାବିଲେ ଇତିହାସର ତଥାକଥିତ ବଳବାନ୍‌ମାନଙ୍କର ବଳ ବିଷୟରେ ପ୍ରକୃତରେ ଭାରି କେମିତି କେମିତି ଲାଗିଥାଏ ।

ଉପନିବେଶ ସ୍ଥାପନର ସେହି ପ୍ରମତ୍ତ କାଳରେ ଲୋହିତମାନଙ୍କୁ ମଣିଷ ପରି ନୁହେଁ, କୁକୁରଙ୍କ ପରି ଅତ୍ୟନ୍ତ ହେୟ କରି ଦେଖା ଯାଉଥିଲା । କେତେ ସ୍ଥାନରେ ସେମାନଙ୍କର ପ୍ରବେଶକୁ ନିଷିଦ୍ଧ କରି ରଖା ଯାଇଥିଲା । ''ଏଠାରେ ଭାରତୀୟ ଏବଂ କୁକୁରମାନଙ୍କର ପ୍ରବେଶ ନିଷିଦ୍ଧ'' ବୋଲି ଲେଖି ଜଣାଇ ଦିଆ ଯାଉଥିଲା । ଯୁକ୍ତରାଜ୍ୟର ଉତ୍ତରାଂଶରେ ଯେଉଁଠି ବୃହତ୍ ହ୍ରଦଗୁଡ଼ିକ ରହିଛନ୍ତି, ସେଠାରେ ଅଲଗା ରିଜର୍ଭମାନଙ୍କରେ ରହୁଥିବା ଲୋହିତମାନେ ଗୋରାମାନଙ୍କର ପରିକର ହିସାବରେ ଏଣୁ ତେଣୁ ନାନା କାମ କରି ନିଜର ପେଟଭରଣା କରୁଥିଲେ । ୧୮୯୦ ମସିହା ବେଳକୁ ସେଠାରେ ବହୁ କାଳରୁ ରହି ଆସିଥିବା ଘନ ଅରଣ୍ୟକୁ ସଫା କରି ଦିଆ ଯାଇଥିଲା । ଜଙ୍ଗଲ ସଫା ହୋଇଗଲେ ଲୋହିତମାନଙ୍କୁ କୃଷିକାର୍ଯ୍ୟ ନିମନ୍ତେ ଜମି ମିଳିଯିବ ବୋଲି କୈଫିୟତ୍ ଦିଆ ଯାଇଥିଲା । ୧୮୮୭ ଖ୍ରୀଷ୍ଟାବ୍ଦରେ ଗୋଟିଏ ବିଚିତ୍ର ଆଇନ୍ ପାସ୍ କରାଯାଇ ଲୋହିତମାନଙ୍କ ଦ୍ୱାରା ପୁରୁଷ ପୁରୁଷ ଯାବତ୍ ଆଚରିତ ହୋଇ ଆସୁଥିବା ଯାବତୀୟ ପ୍ରକାରର ଧର୍ମକୁ ନିଷିଦ୍ଧ କରି ଦିଆଗଲା । ଏହାର ବହୁ ବର୍ଷ ପରେ ୧୯୩୪ ମସିହାରେ ଯାଇ ସେମାନଙ୍କୁ ଏହି ବାବତରେ କିଞ୍ଚିତ୍ ସ୍ୱାଧୀନତା ପ୍ରାପ୍ତ ହେଲା । ଇସ୍କୁଲମାନଙ୍କରେ ନିଜ ଭାଷାରେ କଥାବାର୍ତ୍ତା ହେବାପାଇଁ ଲୋହିତ ପିଲାମାନଙ୍କ ପାଇଁ ମନା ଥିଲା । ଗୋରା ଆଚାର-ବ୍ୟବହାରକୁ ହିଁ ଭଦ୍ର ଆଚରଣର ନମୁନା ଭାବେ ଶିଖିବା ନିମନ୍ତେ ଲୋହିତମାନଙ୍କୁ ବାଧ୍ୟ କରା ଯାଉଥିଲା । ନିଜର ପୁରାତନ ଆଚାର ଏବଂ ବିଧାନଗୁଡ଼ିକୁ ମାନିଲେ ସେଥିଲାଗି କଠୋର ଶାସ୍ତି ମିଳୁଥିଲା ।

ଆରିଜୋନା ରାଜ୍ୟର ଉତ୍ତର ପଥକୁ ଯେଉଁଠାରେ ଉଚ୍ଚ ଓ ଭୀମ ପର୍ବତ ମାଳା ଭିତରେ କୋରଡ଼ ଫୁଟାଇ କଲୋରାଡ଼ୋ ନଦୀ ଦୀର୍ଘ ବହୁ ମାଇଲ୍ ବାଟ ତିଆରି କରି ବହିଯାଇଛି, ସେହି ଅଞ୍ଚଳରେ ଏବେ ମଧ୍ୟ ଲୋହିତମାନେ ବାସ କରୁଥିବା ସ୍ୱତନ୍ତ୍ର ରିଜର୍ଭମାନ ରହିଛି । ସେଠାରେ ହୋପି ଓ ନାଭାହୋ ନାମକ ଦୁଇଟି ଲୋହିତ ସମୂହ ନିଜ ନିଜର ଅଡ଼ା ଭିତରେ ବାସ କରୁଛନ୍ତି । ସେଠାରେ ସେମାନଙ୍କୁ ନିଜର ପରମ୍ପରାଗତ ସଂସ୍କୃତିଟିକୁ ବାସ କରିବା ଲାଗି ଛାଡ଼ି ଦିଆଯାଇଛି । ଏହି ଗ୍ରାଣ୍ଡ୍ କାନିଅନ୍‌ର ପର୍ବତଗୁଡ଼ିକୁ ସେମାନେ ସ୍ୱର୍ଗରାଜ୍ୟ ଭିତରକୁ ଲମ୍ବି ଯାଇଥିବା ଗୋଟିଏ ଗୋଟିଏ ଦୁର୍ଗ ବୋଲି ବିଶ୍ୱାସ କରନ୍ତି । ଚତୁର୍ଦ୍ଦିଗରେ ଢ଼ାଉବର୍ଣ୍ଣର ସେହି ଚିତ୍ରିତ ଭୀମ ପାର୍ବତ୍ୟ ବିସ୍ତାର ଗୁଡ଼ିକ ଉପରେ ନୟନ ପ୍ରସାରିତ କରି ଆଣୁଥିବା ସମୟରେ ମୋତେ ସେଗୁଡ଼ିକ ଏକଦା ସେହି ଭୂମିରେ ମାୟା, ଇନ୍‌କା ଓ ଆଜ୍‌ଟେକ୍ ପ୍ରଭୃତି ପ୍ରାଚୀନ ସଭ୍ୟତାର ସ୍ମରଣ କରାଇ ଦେଉଥିଲେ । ଏବେ ନୃତତ୍ତ୍ୱବିତ୍‌ମାନେ ଲୋହିତ ସମାଜର ଅଧ୍ୟୟନ କଲେଣି । ଗୋଟିଏ ଗୋଟିଏ ଜୀବନ୍ତ ଓ

ଭାବମୟ ସାମୂହିକ ଜୀବନର ନମୁନାରୂପେ ସେମାନେ ଲୋହିତ ମାନଙ୍କର ଅଧ୍ୟୟନ କରି ସେମାନଙ୍କର ଐତିହ୍ୟଗୁଡ଼ିକୁ ଲୋକଗୋଚରକୁ ମଧ ଆଣିଲେଣି । ସେହି ଲୋହିତମାନଙ୍କର ସମାଜରୁ ମଧ କେତେ ବ୍ୟକ୍ତି ଏପରି ବାହାରିଲେଣି, ଯେଉଁମାନେ କି ଗୌରବର ସହିତ ନିଜକୁ ଲୋହିତ ବୋଲି ଅନୁଭବ କଲେଣି, ନିଜର ସାଂସ୍କୃତିକ ମୂଳ ଏବଂ ସ୍ୱତନ୍ତ୍ର ମେଦିନୀଧାରଣା ବିଷୟରେ କ୍ରମେ ସଚେତନ ହେଲେଣି । ସେମାନଙ୍କର ସାମାଜିକ ଚଳଣି ଭିତରେ ମଧ ଆଧୁନିକ ସଭ୍ୟତା ଯାଇ ପ୍ରବେଶ କଲାଣି । କିନ୍ତୁ, ସଭ୍ୟ ବୋଲି ଗଣ୍ୟ ହେବାକୁ ହେଲେ ସଭ୍ୟତାର ସନ୍ତକମାନ ବହନ କରି ସବାଆଗରେ ରହିଥିବା ବଳୀୟାରମାନଙ୍କ ଅନୁକରଣ କରିବାର ଯେ ଆଦୌ କୌଣସି ପ୍ରୟୋଜନ ନାହିଁ, ଆମେରିକାର ଲୋହିତମାନେ ମଧ କ୍ରମେ ସେହି କଥାଟିର ମର୍ମକୁ ଉପଲବ୍ଧି କରୁଛନ୍ତି । ଶିକ୍ଷାର ଆଧୁନିକ ଆବେଦନଗୁଡ଼ିକ ସେମାନଙ୍କୁ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ସେମାନେ ଅଧିକ ସମ୍ବେଦନଶୀଳତା ସହିତ ନିଜକୁ ଦେଖି ଶିଖୁଛନ୍ତି ଓ ନିଜର ସତଘର ଗୁଡ଼ିକୁ ଫେରି ଆସୁଛନ୍ତି ।

ନିରାଟ ଅସହାୟତାର ସେହି ପ୍ରଥମ ପର୍ଯ୍ୟାୟ ଗୁଡ଼ିକରେ ମଧ ଲୋହିତମାନେ ଗୋରାମାନଙ୍କର ସାଂସ୍କୃତିକ ବଳୀୟାରପଣକୁ ଖୁବ୍‌ବେଶୀ ସ୍ୱୀକାର କରି ନେଉନଥିଲେ । ସେମାନଙ୍କୁ ଭୟଭୀତ କରାଇ ସେମାନଙ୍କ ଉପରେ ହୁଏତ ବହୁତ କିଛିକୁ ମଢ଼ାଇ ଦିଆ ହେଉଥିଲା ଏବଂ କେବଳ ତିଷ୍ଠିରହିବା ସକାଶେ ସେମାନେ ତାହାକୁ ମାନି ନେଉଥିଲେ ସିନା ମାତ୍ର ସେମାନଙ୍କର ହୃଦୟ ପ୍ରାୟ ଅନମନୀୟ ଭାବରେ ଲୋହିତର ହୃଦୟ ହୋଇ ରହିଥିଲା । ଆକର୍ଷଣ ଆଦୌ କମ୍ ନଥିଲା । ମାଲିକମାନଙ୍କର ବରାଦସବୁକୁ ମାନିନେଲେ ଅନେକ ସୁବିଧା ମିଳୁଥିଲା । ଅନେକେ ସେହିସବୁ ଜାଲରେ ଯେ ପଡ଼ି ଯାଉନଥିଲେ, ସେକଥାକୁ ଆଦୌ ଅସ୍ୱୀକାର କରି ହେବନାହିଁ । ଆହୁରି ଥୋକେ ସତେଅବା ଆପଣାକୁ ଚାରିଆଡୁ ନିଃସ୍ୱ ଏବଂ ବଞ୍ଚିତ ହୋଇ ଯାଉଥିବାର ଦେଖି କ୍ରୋଧରେ ପୁଞ୍ଜାଏ ଦି' ପୁଞ୍ଜା ଗୋରାଙ୍କୁ ମଉକା ଦେଖି ଲୁଚି ଛପି ହତ୍ୟା କରି ପକାଉଥିଲେ ଏବଂ ସେଥିରୁ ଅବଶ୍ୟ କିଛି ସାନ୍ତ୍ୱନା ଲାଭ କରୁଥିଲେ । ଆକର୍ଷଣର ଜାଲରେ ପଡ଼ି ବିକି ହୋଇ ଯାଉଥିବା ଲୋହିତମାନଙ୍କୁ ବୃହତ୍ତର ଗୋଷ୍ଠୀ ସତେଅବା ବିଶ୍ୱାସଘାତକ ବା ନିମକହାରାମ ପରି ଦେଖୁଥିଲା । ସେତେବେଳେ ଯେଉଁ ଲୋହିତମାନେ ସ୍ପେନୀୟ ଏବଂ ଆଙ୍ଗ୍ଲୋ-ଆମେରିକାନ୍ ମାନଙ୍କର ଜୀବନରୀତି ଗୁଡ଼ିକୁ ଅନ୍ଧଭାବରେ ଅନୁକରଣ କରାଇବାର ପ୍ରବୃତ୍ତି ଦେଖାଉଥିଲେ, ସେମାନଙ୍କର ସେହି ପ୍ରବୃତ୍ତିଟକୁ ସେତେବେଳେ ପ୍ରାୟ ତାଚ୍ଛିଲ୍ୟର ସହିତ ଅବଶିଷ୍ଟ ଅନ୍ୟମାନେ malinchismo ବୋଲି କହୁଥିଲେ । ଏହିମାନଙ୍କର ସତେଅବା ଜାତି ଚାଲିଗଲା ବୋଲି ବିଚାରୁଥିଲେ । ଏହି ଶବ୍ଦଟି Malinche ନାମକ ଜଣେ ବ୍ୟକ୍ତିର ନାମକୁ ସୂଚିତ କରି ଦେଉଥିଲା । କଲମ୍ବସ୍‌ଙ୍କର ପରେ ପରେ ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ସ୍ପେନ୍ ତରଫରୁ ମେକ୍ସିକୋର ଲୋହିତ-ଅଧ୍ୟୁଷିତ ଭୂଖଣ୍ଡଟିକୁ ଯୁଦ୍ଧରେ ଜୟ କରି ନେଇଥିବା Cortes ନିଜର ଅଭିପ୍ରାୟ ପୂରଣ କରିବା ନିମନ୍ତେ ଯେଉଁ ଦୋଭାଷିଆ ମାନଙ୍କର ସାହାଯ୍ୟ ନେଇଥିଲେ, ସେମାନଙ୍କ ଭିତରୁ Malinche ମଧ ଜଣେ ବ୍ୟକ୍ତିର ନାମ ଥିଲା । ଶତ୍ରୁ

ପାଖରେ ଦୋଭାଷିଆ ରୂପେ କାର୍ଯ୍ୟ କରିଥିବା ଜଣେ ବ୍ୟକ୍ତି ମଧ୍ୟ ପ୍ରକୃତରେ ଶତ୍ରୁପକ୍ଷର ହିଁ ହୋଇଯାଏ । ସେମାନଙ୍କ ବ୍ୟତୀତ ଶତ୍ରୁ ହୁଏତ କଦାପି ତା'ର ବିଜୟଗୁଡ଼ିକୁ ହାସଲ କରିବାରେ ସଫଳ ହୋଇନଥାନ୍ତା । ବିଦେଶୀ ବିଦେଶୀ ହୋଇ ରହିଥାନ୍ତା, ଏକୁଟିଆ ହୋଇ ହୁଏତ ଛତ୍ରଭଙ୍ଗ ମଧ୍ୟ ଦେଇଥାନ୍ତା । ତେଣୁ, ତାକୁ ସ୍ଥାନୀୟ ଭାଷାଭାଷୀ ଯେଉଁମାନେ ସାହାଯ୍ୟ କଲେ, ସେଇମାନେ ହିଁ ଶତ୍ରୁକୁ ଗୁମରଗୁଡ଼ିକୁ ଯାଇ ବତାଇଦେଲେ ବୋଲି ଲୋହିତମାନେ ଭାବିବା ଅତ୍ୟନ୍ତ ସ୍ୱାଭାବିକ ଥିଲା ।

ଆମେରିକାର ମୂଳ ମଣିଷ ହେଉଛି ଲୋହିତ ମଣିଷ, ଆମେରିକାର ଜୀବନମାଟିକୁ ନିଜର ରକ୍ତ ଦେଇ ଏକଦା ଉର୍ବର କରିଥିବା ମଣିଷ । ଲୋହିତମାନଙ୍କୁ ଗିଳି ପକାଇବାର ଓ ଖତମ କରିଦେବାର କେତେ କେତେ ଚେଷ୍ଟା କରା ଯାଇଥିଲେ ମଧ୍ୟ ସେମାନେ ତଥାପି ରହିଛନ୍ତି । ସେମାନେ ମୁଖ୍ୟତଃ ସେମାନଙ୍କ ଲାଗି ଗାର କାଟି ଚିହ୍ନଟ କରାଇ ଦିଆ ଯାଇଥିବା ରିଜର୍ଭଗୁଡ଼ିକ ଭିତରେ ରହିଛନ୍ତି । ସେମାନଙ୍କୁ ଆଉ କେହି ଆସି ଗିଳି ପକାଇବ ବୋଲି ଆଉ କୌଣସି ଭୟ ନାହିଁ । ସେମାନେ ମୁଖ୍ୟତଃ ଆପଣାର ଏକ ସ୍ୱତନ୍ତ୍ର ପରିଚିତିରେ ବଞ୍ଚିବାର ପୂର୍ଣ୍ଣ ସୁଯୋଗଟିକୁ ପାଇଛନ୍ତି । ସେଥିରୁ କେଡ଼େ ଖୁସୀ ମଧ୍ୟ ପାଉଥିବେ । ମାତ୍ର,ସେମାନେ ନିଜର ଚେତନାରେ ସେହି ଗାରଟିକୁ ଡ଼େଇଁ ଆପଣାକୁ ଆମେରିକାନ୍ ବୋଲି କେବେ ଭାବିବେ ? ଏବଂ, ଆହୁରି ଅଧିକ ଗାର ଡ଼େଇଁ ନିଜକୁ ମଣିଷ ବୋଲି ମଧ୍ୟ କେବେ ଭାବିବେ ? ନିଜର ସ୍ଥାନୀୟ ସ୍ୱତନ୍ତ୍ରତା ଗୁଡ଼ିକୁ ନିଦକ ହୋଇ ବଞ୍ଚିବା, -ତାହା କଦାପି ଜଣେ ମଣିଷକୁ ଏବଂ ମଣିଷମାନଙ୍କର କୌଣସି ସମୂହକୁ ପୂର୍ଣ୍ଣ ତୃପ୍ତି ଆଣି ଦେଇ ପାରିବ ନାହିଁ । ସେହି ସ୍ଥାନୀୟତା ଓ ସ୍ୱତନ୍ତ୍ରତା ଅବଶ୍ୟ ରହିଥିବ, ଅଥଚ ନିଜର ଚାରିପାଖରେ ମୋଟେ କୌଣସି ବାଡ଼ ଘେରା ହୋଇ ରହିଥିବା ପରି ଅନୁଭବ ହେଉନଥିବ । ବୃତ୍ତ ସେପାଖକୁ ଆହୁରି ଅନେକ ବୃତ୍ତ ଦିଶି ଯାଉଥିବ । ସମ୍ଭବତଃ ମନୁଷ୍ୟ ସ୍ତରକୁ ଆସି ତାହାହିଁ ହେଉଛି ଅସଲ ସଂସ୍କୃତି । ଆମେରିକାରେ ଲୋହିତମାନଙ୍କୁ ଏବେ ମଧ୍ୟ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱମାନ ବଜାୟ ରଖିବାକୁ ସଂଗ୍ରାମ କରିବାକୁ ପଡୁଛି । ସେଥିଲାଗି ସଂଖ୍ୟାଗୁରୁ ଗୋରାମାନଙ୍କ ଠାରୁ ସେମାନେ ଯେଉଁସବୁ ହିସାବରେ ସ୍ୱତନ୍ତ୍ର, ଅଧିକତଃ ସେହିସବୁ ପରିପ୍ରେକ୍ଷୀରେ ସେମାନେ ନିଜକୁ ଦେଖିବା ଲାଗି ବାଧ୍ୟ ହେଉଛନ୍ତି । ତେଣୁ ସାମୂହିକ ସମ୍ବନ୍ଧଗୁଡ଼ିକର କ୍ଷେତ୍ରରେ ହୁଏତ ତଥାପି ସହଜତା ଆସି ପାରିନାହିଁ । ଆଗ ଯିନା ଆଇନ୍‌ର ଆଖିରେ ସମସ୍ତଙ୍କୁ ସମାନ ଓ ସମର୍ଥ କରି ଦିଆଯାଏ ; ମାତ୍ର ପୃଷ୍ଠଭୂମିରେ ଭିନ୍ନ ହୋଇ ରହି ଆସିଥିବା ସମୂହମାନେ ତଥାପି ଯଥେଷ୍ଟ ସ୍ୱାଭାବିକ ଭାବରେ ଭୂମିଟିକୁ ନିଜର ବୋଲି ଗ୍ରହଣ କରିନେବେ, ସେଥିଲାଗି ସର୍ବଦା ଅଧିକ ସମୟ ହିଁ ଲାଗିଥାଏ । ଆହୁରି ଅଧିକ ଗଣ୍ଠି ଫିଟିଯାଇ ପାରିଲେ ଯାଇ ସମାଧାନ ମିଳେ । ଏଇଟା କ'ଣ କେବଳ ଆମେରିକାର ସମସ୍ୟା ? ଆଧୁନିକ ଆସ୍ପୃହାମାନ ରଖିଥିବା ଆମର ଏହି ପୃଥିବୀରେ ଏହା ହୁଏତ ମଣିଷ ଓ ସମୂହ ମାତ୍ରକେ ସମସ୍ତଙ୍କର ସମସ୍ୟା । ଯେକୌଣସି ସାନ ଗାଆଁର ସମସ୍ୟା, ସମଗ୍ର ପୃଥିବୀର ବି ସମସ୍ୟା ।



ଯେତେବେଳେ ଆମ ପୃଥିବୀଟା ଗୋଟାଏ ହୋଇନଥିଲା, ସେତେବେଳେ ଆମେରିକାରେ ଲୋହିତମାନେ ଥିଲେ, ଆଫ୍ରିକାରେ କୃଷ୍ଣକାୟମାନେ ବାସ କରୁଥିଲେ । ଗୋରାମାନଙ୍କର ପୂର୍ବଜମାନଙ୍କୁ ଇଉରୋପୀୟ ବୋଲି ମଧ୍ୟ ଅତ୍ୟନ୍ତ ସଙ୍ଗତି ସହିତ କୁହାଯାଇ ପାରିବ । ଦୂରତାଗୁଡ଼ାକୁ ଆଖି ପାଉନଥିଲା । ଇଉରୋପୀୟ ମାନଙ୍କର ଆଖି ସମ୍ଭବତଃ ସବାଆଗ ପାଇଲା, ଅଥବା ସେମାନେ କେତେକ କାରଣରୁ ସେହିପରି ଅନୁଭବ କଲେ । ଏବଂ ତା'ପରେ ପ୍ରବାସକୁ ମନ କଲେ । ଗୋରାମାନେ ଇଉରୋପ ଛାଡ଼ି ଆମେରିକାକୁ ଇତିହାସର କୋଉ ଯୋଗରେ କାହିଁକି ମନ କଲେ କେଜାଣି, ସେମାନେ ସେଠାରେ ଏକାବେଳେକେ ଇନ୍ଦ୍ର ପରି ରହିବାପାଇଁ ନିଷ୍ପତ୍ତି କରି ନେଇଥିଲେ । ସେଠି ସେମାନେ ଲୋହିତ ମଣିଷମାନଙ୍କୁ ଭେଟିଥିଲେ ସତ, ମାତ୍ର ସେହି ନୂତନ ଭୂମିଟର ସ୍ଥାୟୀ ଅଧିକାରୀ ହୋଇ ରହିବେ ବୋଲି ଏପରି ସଂକଳ୍ପ କରି ଯାଇଥିଲେ ଯେ, ସେମାନେ ସେହି ମୂଳରୁ ହିଁ ସେଠାରେ ଲୋହିତମାନଙ୍କର ଅସ୍ତିତ୍ୱକୁ ଆଦୌ ସ୍ୱୀକାର କରିନଥିଲେ । ଲୋହିତମାନେ ଯେ ପୂରା ଲୋପ ନପାଇ ତଥାପି କିଛି ଅବଶେଷ ରହିଗଲେ, ତାହାକୁ ସେହି ଲୋହିତମାନଙ୍କର ହିଁ ଭାଗ୍ୟ ବୋଲି କହିବାକୁ ହେବ । ତା'ପରେ ନିଜର ଥଇଥାନରେ ମୂଲିଆ କରି ଖଟାଇବା ନିମନ୍ତେ ସେମାନେ ଆଫ୍ରିକାର କୃଷ୍ଣକାୟ ମାନଙ୍କର କଥା ଚିନ୍ତା କରିଥିଲେ । ଆଫ୍ରିକା ମହାଦେଶରୁ ସେମାନଙ୍କୁ ବୋହି ନିଆଗଲା । ପ୍ରାୟ ଏକ ନିଶା ଖାଇଥିବା ପରି ନିଜର ପଦକ୍ଷେପ ଗୁଡ଼ିକୁ ସତେଅବା ଈଶ୍ୱରଙ୍କ ଦ୍ୱାରା ଆଦିଷ୍ଟ ବୋଲି ଭାବିନେଇ ନଥିଲେ ସେମାନେ କଦାପି ଏଡ଼େ ଖୋଲା ବିବେକ ସହିତ ସେହି ଧନ୍ଦାଟିରେ ମନ ଦେଇ ନଥାନ୍ତେ । ଏହି ଅଧ୍ୟାୟରେ ଆମେ କ୍ରମେ ସେହି କାହାଣୀଟିର ଆଲୋଚନା କରିବା । ଏପରି ଭାବରେ କର୍କଶ କାଳଦ୍ୱାରା ବାଧ ହୋଇ ନଥିଲେ ନିଗ୍ରୋମାନେ କାହିଁକି ଆଦୌ ଆଫ୍ରିକାରୁ ଆମେରିକା ଯାଏ ଯାଇଥାନ୍ତେ, ଆମେ ନିଜକୁ ସେହି ପ୍ରଶ୍ନଟି ମଧ୍ୟ ଖୁବ୍ ପଚାରି ପାରିବା । ଏବେ ତ ସେହି ପଶ୍ଚିମ ଗୋଲାର୍ଦ୍ଧର କୃଷ୍ଣକାୟ ଭାଗଟା ବିଷୟରେ ହିଁ ବୃହତ୍ତର ପୃଥିବୀପାଇଁ ହୁଏତ ଅଧିକ ମହତ୍ତ୍ୱ ରହିଥିବା ପରି ଲାଗୁଛି । ଖବରକାଗଜରେ ଆଫ୍ରିକାର କଳା ଦେଶ ମାନଙ୍କ ବିଷୟରେ ଯେତେ ଖବର ବାହାରୁନାହିଁ, ସେପାଖଟା ବିଷୟରେ ତା'ଠାରୁ ବେଶୀ ଖବର ବାହାରୁଛି ।

ପୃଥିବୀରେ ମନୁଷ୍ୟମାନେ ସଚଳ ହେବାର ସେହି ଆଦି କାଳରେ ଆଫ୍ରିକାର ନେଗ୍ରିଟୋ ଜାତି ଡ଼ଙ୍ଗା ଚଢ଼ି ଏବର ଆରବ ସାଗର ଲଂଘି ଭାରତବର୍ଷକୁ ଆସିଥିଲେ ଏବଂ ସେଠାରୁ ସ୍ଥଳର ତଟବର୍ତ୍ତୀ ଅଞ୍ଚଳ ଓ ପ୍ରଶାନ୍ତ ମହାସାଗରର ଦ୍ୱୀପମାନଙ୍କୁ ପାର ହୋଇ ବର୍ତ୍ତମାନ ଅଷ୍ଟ୍ରେଲିଆର ଟାସ୍‌ମାନିଆ ଦ୍ୱୀପ ପର୍ଯ୍ୟନ୍ତ ଯାଇ ପହଞ୍ଚି ଯାଇଥିଲେ ବୋଲି ତଥ୍ୟଗତ ସୂଚନାମାନ ମିଳୁଛି । ସେହି ସ୍ୱାଭାବିକ ଧାରାରେ ଯେଉଁ ପଟୁ ହେଲେ ମଧ୍ୟ ସେମାନେ ହୁଏତ ଆଟଲାଣ୍ଟିକ୍ ମହାସାଗରକୁ ମଧ୍ୟ ଲଂଘି ପାରିଥାନ୍ତେ ଓ ଆମେରିକା

ପର୍ଯ୍ୟନ୍ତ ପହଞ୍ଚି ପାରିଥାନ୍ତେ । ମାତ୍ର, ସମ୍ଭବତଃ ବିଧାତାର ନିର୍ଦ୍ଦେଶ ଅନ୍ୟ ପ୍ରକାରର ଥିଲା । ନେଗ୍ରିଟୋ ଜାତିର ମୂଳ ଗୃହ ସେହି ଆଫ୍ରିକାରେ ମଧ ଏକଦା ସେମାନଙ୍କର ସ୍ଥାନୀୟ ସଭ୍ୟତାମାନ ବିକାଶ ଲାଭ କରିଥିଲା ବୋଲି ଗବେଷଣାରୁ ଜଣା ଗଲାଣି । ଜୀବନ ପ୍ରତି, ପୃଥିବୀ ପ୍ରତି ସେମାନଙ୍କର ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ରହିଥିଲା । ଏବେ ସେଗୁଡ଼ିକ ବିଷୟରେ ଚର୍ଚ୍ଚା ହେଲାଣି । ମାତ୍ର ସେତେବେଳେ ତ ଆଫ୍ରିକା ନାମକ ସେହି ବିଶାଳ ଭୂମିକୁ ଅନ୍ଧାରର ମହାଦେଶ ବୋଲି କୁହା ଯାଉଥିଲା । ଯେଉଁମାନେ କେବଳ ନିଜ ଚଷମା ଦେଇ ପୃଥିବୀଟାକୁ ଦେଖନ୍ତି, ନିଜର ତରାଜୁରେ ପୃଥିବୀକୁ ତଉଲିବାକୁ ଯାଆନ୍ତି ଓ ନିଜର ଧର୍ମପୁସ୍ତକଟାକୁ ହିଁ ଭଗବାନଙ୍କର ଏକମାତ୍ର ବାଣୀ ବୋଲି ମାନି ନେଇଥାନ୍ତି, ସେମାନେ ସାରା ପୃଥିବୀରେ ବହୁ ପ୍ରମାଦ ଓ ବହୁ ଅସଭ୍ୟତାରେ କାରଣ ହୁଅନ୍ତି ଏବଂ, ସେମାନଙ୍କ ପାଖରେ ପୃଥିବୀଯାକର ମାଲମତା ଓ ବନ୍ଧୁକ କମାଣ ମହଜୁଦ ହୋଇ ରହିଥିଲେ ମଧ ପ୍ରକୃତରେ ଭାରି ଦରିଦ୍ର ହୋଇ ରହିଥାନ୍ତି ।

ଆମେରିକାର ନୂଆ ଉପନିବେଶରେ କପା ହେଉଥିଲା, ଆଖୁ ହେଉଥିଲା, ଧୂଆଁପତ୍ର ମଧ ହେଉଥିଲା । ଏସବୁ ପଦାର୍ଥ ନିମନ୍ତେ ଇଉରୋପର ଜଳବାୟୁ ଅନୁକୂଳ ନଥିଲା । ତେଣୁ ଇଉରୋପରୁ ଆମେରିକା ଯାଇଥିବା ଗୋରାମାନେ ସେଠାରେ ଅମାପ ଜମିର ମାଲିକ ସିନା ହେଲେ, ମାତ୍ର ସେଠାରେ ହୋଇ ପାରୁଥିବା ଚାଷରେ ଆଦୌ ଅଭ୍ୟସ୍ତ ନଥିଲେ । ପୁନଶ୍ଚ, ଆମେରିକାର ଗରମ ଜଳବାୟୁରେ କ୍ଷେତରେ କାମ କରିବା ସେମାନଙ୍କ ପାଇଁ କଷ୍ଟକର ହେଲା । ନୂଆ ଜମି ତିଆରି କରି ଆଶାନୁରୂପ ଚାଷ କରିବା ନିମନ୍ତେ ସେମାନେ ପ୍ରଥମେ ଲୋହିତମାନଙ୍କୁ ବଳଦ ପରି ଖଟାଇଲେ । ତଥାପି ଚାହିଦା ମେଣ୍ଟି ପାରିଲାନାହିଁ । କିଏ ବୁଦ୍ଧିଆ ସବାଆଗ ସୂତର ବତାଇଦେଲା କେଜାଣି, ଏତିକିବେଳେ ଇଉରୋପ ଉପରେ ଆଖି ପଡ଼ିଲା । ସେତେବେଳକୁ ଆଫ୍ରିକାର ବହୁତ ଅଂଶ ଇଉରୋପୀୟ କେତେ ଦେଶର ଉପନିବେଶରେ ପରିଣତ ହୋଇ ସାରିଥାଏ । ସେଠାରେ ବାସ କରୁଥିବା କୃଷ୍ଣକାୟମାନେ ଇଉରୋପୀୟ ମାନଙ୍କୁ ହୁଏତ ଭାରି କୋଧା କୋଧା ଦିଶିଥିବେ । ଏମାନଙ୍କୁ ଆମେରିକା ନେଇଯାଇ ପାରିଲେ ଏମାନେ ବଳଦଙ୍କ ଠାରୁ ମଧ ଅଧିକ କାମ ଦେବେ ବୋଲି କେହି ବୁଦ୍ଧିଆ ଅବଶ୍ୟ ଭାବି ପକାଇଥିବ । ଏଥିରୁ ହିଁ ଯେଉଁ ଦାସବାଣିଜ୍ୟର ନିର୍ମମ ଧନ୍ଦାଟି ଆରମ୍ଭ ହୋଇଗଲା, ତାହା ବେଶ୍ କେତେ ଦଶକ ବା କେତେ ଶତକ ଯାଏ ଚାଲିଥିଲା । ଇଂଲଣ୍ଡ ପ୍ରଭୃତି କେତେଟା ଦେଶର କୋମ୍ପାନୀମାନେ ରୀତିମତ ଏକ ଲାଭଜନକ ବ୍ୟବସାୟ ଆରମ୍ଭ କରି ଦେଇଥିଲେ । କୃଷ୍ଣକାୟମାନଙ୍କୁ ପାଣି ଜାହଜରେ ଲଦି ଆମେରିକାର ହାଟରେ ନେଇ ବିକ୍ରୟ କରାଗଲା । କୋମ୍ପାନୀ କୋମ୍ପାନୀ ଭିତରେ ତୀବ୍ର ପ୍ରତିଯୋଗିତା ଚାଲିଲା । ଆଟଲାଣ୍ଟିକ୍ ମହାସାଗର ଅତ୍ୟନ୍ତ କୋଳାହଳମୟ ହୋଇ ଉଠିଥିଲା ।

କଳାମାନଙ୍କୁ ଆଫ୍ରିକରୁ ଧରିନେଇ ଆମେରିକାରେ ଦାସରୂପେ ବିକିବାର ଏହି ହୀନ ବାଣିଜ୍ୟଟି ଦୀର୍ଘ ଚାରି ଶତାବ୍ଦୀ ନିମନ୍ତେ ଲାଗି ରହିଥିଲା । ତାହାର କାହାଣୀଟି

ଯେକୌଣସି ଉପନ୍ୟାସର କାହାଣୀ ଅପେକ୍ଷା ସମ୍ଭବତଃ ଏବେ ମଧ୍ୟ ଆମକୁ ଅଧିକ ବିସ୍ମିତ କରିଦେଇ ପାରିବ । ପୃଥିବୀରେ ଏବେ ମଧ୍ୟ ନରାଧମମାନେ ଅଛନ୍ତି ଏବଂ ସେକାଳରେ ମଧ୍ୟ ଅବଶ୍ୟ ରହିଥିଲେ । ନରାଧମମାନଙ୍କ ପଟେ ଅଧିକ ବଳ ଥିଲା । ସେମାନେ ନିଜକୁ ନିଜେ ଅଧିକ ସଭ୍ୟ ବୋଲି ବିଚାର କରୁଥିଲେ । ଯେଉଁମାନେ ଯେକୌଣସି ପ୍ରକାରେ ସଫଳ ହେବା ନିମନ୍ତେ ଯେକୌଣସି ଧନ୍ଦା ଆଚରି ଉତ୍ସାହରେ ଉଠୁରି ଉଠନ୍ତି ଏବଂ ପୃଥିବୀରେ ବହୁ ଉତ୍ପୀଡ଼ନର କାରଣ ହୁଅନ୍ତି, ଇତିହାସରେ ସେହିମାନେ ହିଁ ନରାଧମ ହୋଇ ଆସିଛନ୍ତି । ସେମାନେ ବର୍ତ୍ତମାନର ପୃଥିବୀରେ ମଧ୍ୟ ନାନାବିଧ ଭୂମିକାରେ ତଥାପି ରହିଛନ୍ତି । ଚାରି ଶତାବ୍ଦୀବ୍ୟାପୀ ଇଉରୋପରୁ ଆମେରିକାକୁ ସମୁଦ୍ରପଥରେ ଚାଲିଥିବା ଏହି ଦାସବଣିଜ ଦ୍ୱାରା ଆଫ୍ରିକାର ଦେଢ଼ କୋଟି ମଣିଷ ଏପାଖରୁ ଧରା ହୋଇ ସେପାଖକୁ ବିକା ହେବାକୁ ଯାଇଥିଲେ । ଏବଂ, ଏଭଳି ନାନା ଅମାନୁଷିକ ପ୍ରଣାଳୀରେ ସେହି ସରବରାହଟାକୁ କ୍ରିୟାଶୀଳ କରା ଯାଉଥିଲା ଯେ, ଆହୁରି ପ୍ରାୟ କୋଟିଏ ମଣିଷ ବାଟରେ ସମୁଦ୍ରଯାତ୍ରା ସମୟରେ ମୃତ୍ୟୁମୁଖରେ ପତିତ ହୋଇଥିଲେ ।

କଳା ମଣିଷମାନଙ୍କୁ ସେମାନଙ୍କର ଜୀବନଭୂମିରୁ ଧରିନେଇ ଦାସ ଭାବରେ ଯେ ଲଗାଇ ହେବ, କଲମ୍ବସ୍ ତଥାକଥିତ ଆମେରିକାର ଆବିଷ୍କାର କରିବାର ପୂର୍ବରୁ ମଧ୍ୟ ବେଶ୍ ଆରମ୍ଭ ହୋଇ ଯାଇଥିଲା । କଥିତ ଅଛି ଯେ, ୧୪୪୧ ଖ୍ରୀଷ୍ଟାବ୍ଦରେ ଆଫ୍ରିକା ମହାଦେଶର ଗିନି ଉପକୂଳରୁ ଦଶଜଣ ଆଫ୍ରିକୀୟ ମଣିଷଙ୍କୁ ଧରି ଜଣେ ନାବିକ ନିଜ ଦେଶ ପର୍ତୁଗାଲର ରାଜାଙ୍କୁ ନେଇ ଉପହାର ସ୍ୱରୂପ ଦେଇଥିଲେ । ସମ୍ଭବତଃ ସେହି ପରମ୍ପରାଟିର ଅନୁସରଣ କରି କ୍ରିଷ୍ଟୋଫର୍ କଲମ୍ବସ୍ ମଧ୍ୟ ଆମେରିକାରୁ ଦେଶକୁ ଫେରିବା ସମୟରେ ସୁବିଧା ମୁତାବକ ନିଜ ଦେଶର ରାଜାଙ୍କୁ ଭେଟି ଦେବାପାଇଁ କେତେ କେତେ ଲୋହିତଙ୍କୁ ମଧ୍ୟ ଫୁସୁଲାଇ ଏପାଖକୁ ଦାସ କରି ନେଇ ଆସିଥିଲେ । ନାବିକ ଓ ବଣିକମାନଙ୍କର ଆନୁଗତ୍ୟରେ ପ୍ରୀତ ହୋଇ ରାଜାମାନେ ବି ଅଧିକରୁ ଅଧିକ ଦାସଙ୍କୁ ଧରିନେଇ ବେପାର ଚାଲୁ ବୋଲି ଅନୁମତି ପ୍ରଦାନ କରିଥିଲେ । ୧୫୧୮ ଖ୍ରୀଷ୍ଟାବ୍ଦରେ ଚାରିହଜାର ଦାସଙ୍କୁ ଅଡ଼ାଇ ନେଇ ମେକ୍ସିକୋ ଉପସାଗରର ଦ୍ୱୀପପୁଞ୍ଜ ଗୁଡ଼ିକରେ କାରବାର କରିବା ସକାଶେ ଏହି ଅନୁମତି ଦିଆ ଯାଇଥିଲା । ଦାସମାନଙ୍କ ମଧ୍ୟରେ ପୁରୁଷ ଥିଲେ, ମହିଳା ଥିଲେ, ସାନ ପିଲାମାନେ ମଧ୍ୟ ରହିଥିଲେ । ଦାସ-ବ୍ୟବସାୟରୁ ଏଡ଼େ ସହଜରେ ଏତେ ବେଶୀ ଲାଭ ହୋଇପାରୁଛି ବୋଲି ସମ୍ବାଦଗୁଡ଼ିକ ରଟିଯିବା ପରେ ସେହି ବାଣିଜ୍ୟ ୟୁରୋପର ଅନ୍ୟାନ୍ୟ ଦେଶକୁ ମଧ୍ୟ ଅଚିରେ ବ୍ୟାପି ଯାଇଥିଲା । ହଲାଣ୍ଡ, ଇଂଲଣ୍ଡ, ଡେ଼ନମାର୍କ, ଫ୍ରାନ୍ସ - ଏମାନେ ସମସ୍ତେ ଅନୁରୂପ କମ୍ପାନୀମାନ ତିଆରି କରି ଏହି ବ୍ୟବସାୟରେ ଆସି ସାମିଲ୍ ହୋଇ ଯାଇଥିଲେ । ଇଂଲଣ୍ଡର ପଶ୍ଚିମ ଉପକୂଳରେ ଥିବା ଲିଭର୍‌ପୁଲ୍ ବନ୍ଦରଟି ଏହି କ୍ଷେତ୍ରରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । କୁହାଯାଇଛି ଯେ, ସେହି ବନ୍ଦରରୁ ଦାସମାନଙ୍କୁ ନେଇ ସର୍ବାଧିକ ଜାହାଜ ଆଟଲାଣ୍ଟିକ୍ ମହାସାଗର

ଅତିକ୍ରମ କରୁଥିଲା । ଥରେ ଗୋଟିଏ ଜାହଜ ବୋଝେଇ ହୋଇ ସେପାଖକୁ ଗଲେ ସେଥିରୁ ମୋଟ ପ୍ରାୟ ପଚିଶି ହଜାର ପାଉଣ୍ଡ ଆୟ ହୋଇ ପାରୁଥିଲା ।

ଆଗେ ପଶ୍ଚିମ ଗୋଲାର୍ଦ୍ଧରେ ଆଖୁ ନଥିଲା । ଏହି ଭୂଭାଗକୁ କଲମ୍ୱସ୍ ହିଁ ସର୍ବପ୍ରଥମେ ଆଖୁ ମୂଳି ସାଙ୍ଗରେ ନେଇ କରି ଆସିଥିଲେ । ସେହି ଅଞ୍ଚଳରେ ଆଖୁଚାଷ ଖୁବ୍ ଭଲ ହେଲା ଏବଂ ଦ୍ୱୀପାଞ୍ଚଳ ଗୁଡ଼ିକରୁ ବୃହତ୍ତର ସ୍ଥଳଭାଗ ଭିତରକୁ ବ୍ୟାପିଗଲା । ଆମେରିକା ଯୁକ୍ତରାଜ୍ୟର ଦକ୍ଷିଣ ଭାଗରେ ରହିଥିବା ଲୁଇସିଆନା ରାଜ୍ୟଟି କ୍ରମେ ଏହି ଆଖୁଚାଷ ନିମନ୍ତେ ବିଖ୍ୟାତ ହୋଇଗଲା । ସେହିପରି ଭର୍ଜିନିଆ ରାଜ୍ୟ ଧୂଆଁପତ୍ର ନିମନ୍ତେ ବିଖ୍ୟାତ ହେଲା ଓ ଦକ୍ଷିଣ କାରୋଲିନାରେ ଧାନ ପ୍ରଚୁର ଫଳିଲା । ବୃହତ୍ ନଦୀ-ଉପତ୍ୟକା ମିସିସିପି ଅଞ୍ଚଳ କପାଚାଷର ପେଣ୍ଠ ହେଲା । ଗୋରାମାନେ ହିଁ ଏହି ଯାବତୀୟ କୃଷିସଂସ୍ଥାନର ମାଲିକ ଥିଲେ । ହଜାର ହଜାର ଏକର ଚାଷଜମିରେ ଆବଶ୍ୟକ କୃଷି ପ୍ରକ୍ରିୟାଗୁଡ଼ିକୁ ସମ୍ପାଦନ କରିବାକୁ ହିଁ ଶ୍ରମିକମାନେ ଦରକାର ହେଲେ । ଚାହିଦା ବଢ଼ିଲା, ତେଣୁ ବାଣିଜ୍ୟ ମଧ୍ୟ ବୃଦ୍ଧି ପାଇଲା । ଇଉରୋପର କେତେ ମଣିଷ ସେହି ନୂଆ ବ୍ୟବସାୟଟିରେ ଲାଗି ଯାଇଥିଲେ । ମଣିଷ ଯେଉଁପର୍ଯ୍ୟନ୍ତ ନିଜକୁ ଅନ୍ୟ ମନୁଷ୍ୟଙ୍କ ସହିତ ସାମିଲ୍ କରି ବିଚାର କରୁଥାଏ, ସେପର୍ଯ୍ୟନ୍ତ ସିଏ ମନୁଷ୍ୟମାନଙ୍କୁ ନେଇ ଯାହା ଇଚ୍ଛା ତାହା କରିବାକୁ ସେତେ ସାହାସ କରି ପାରେନାହିଁ । ସେତେବେଳେ ଭିତରୁ ଆଉ ଯାହା ଯାହା ମନ ତାହା କରିବାକୁ ବାଧା ଦିଏ, ତାହାକୁ କାଳେ କାଳେ ବିବେକ ବୋଲି କୁହାଯାଇ ଆସିଛି । ମାତ୍ର, ଆପଣାକୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ କିମ୍ବା ଉର୍ଦ୍ଧ୍ୱର ବୋଲି ଭାବୁଥିବା ବ୍ୟକ୍ତି ଓ ଗୋଷ୍ଠୀମାନେ ସହଜରେ ନିଜଭିତରୁ ସେହି ବିବେକଟିର ଆକଟଟାକୁ ଶୁଣି ବା କାନ ଦେଇ ପାରନ୍ତିନାହିଁ । ସେତେବେଳେ ଇଉରୋପୀୟମାନେ କେତେକ କାରଣରୁ ସମ୍ଭବତଃ ସେହିଭଳି ଏକ ସଙ୍କଟର ଦଶାରେ ପଡ଼ିଥିଲେ । ଭଗବାନ ଖାସ୍ ସେହିମାନଙ୍କ ପାଇଁ ଅଧିକ ପ୍ରସନ୍ନ ବୋଲି ଗୋଟିଏ ଉଗ୍ର ବିଶ୍ୱାସ ସେମାନଙ୍କୁ ବିବେକହୀନ କରି ପକାଉଥିଲା । ଭଗବାନଙ୍କର ଆଖିରେ ନିଜକୁ ଅଧିକ ବୋଲି ଦେଖୁଥିବା ସେହି ଖାସ୍ କିସମମାନେ ହିଁ ନିର୍ମଳ ବିବେକର ସହିତ ଭଗବାନଙ୍କୁ ତଳକୁ ଝିକି ଆଣି ନିଜର କେତେ କାମରେ ଲଗାନ୍ତି । ସେହି ଜିଦ୍‌ଟା ଅତିରିକ୍ତ ହେଲେ ତାହାକୁ ଜାତୀୟ ଗୌରବ ଏବଂ ଜାତୀୟ ବିଭବବୃଦ୍ଧି ବୋଲି କୁହାଯାଏ ।

ଊନବିଂଶ ଶତାବ୍ଦୀର ଶେଷ ଯାଏ ସେହିପରି ଏକ ସାହସ ଇଉରୋପର ଭାବନାଗୁଡ଼ିକୁ ଏକାଧିକ ଅର୍ଥରେ ଉତ୍ତେଜିତ କରି ରଖିଥିଲା । ସେହି ମନ୍ଦ ସାହସ ସେତେବେଳର ବିଜ୍ଞାନକୌଶଳ ଗୁଡ଼ିକୁ ମଧ୍ୟ ବହୁ ମନ୍ଦ ମତଲବର ସିଦ୍ଧି ନିମନ୍ତେ ବିନା ସଙ୍କୋଚରେ କାମରେ ବି ଲଗାଇ ପାରିଲା । ପୂର୍ବ ଗୋଲାର୍ଦ୍ଧଟାକୁ ନିଜର ଉପନିବେଶରେ ପରିଣତ କରି ସାରିବାପରେ ଏପାଖରେ ଆଉ ପୃଥିବୀ ଅଣ୍ଟିଲାନାହିଁ ବୋଲି ଇଉରୋପୀୟ ମହତ୍ତ୍ୱାକାଂକ୍ଷୀ ମଣିଷକୁ ପଶ୍ଚିମ ଆଡ଼କୁ ଅନ୍ୱେଷଣ କରିବାଲାଗି ବୁଦ୍ଧି ଜୁଟିଯାଇ ଥିଲା କି ? ଏବଂ, ସେଠାରେ ପହଞ୍ଚୁ ପହଞ୍ଚୁ ଆଗ ଗୋଟାସୁଦ୍ଧା ନିଜର ଅଭିବୃଦ୍ଧି ନିମନ୍ତେ ଲୋହିତମାନଙ୍କୁ

ବିଲୁପ୍ତ କଲା ଏବଂ ସେହି ମହତ୍ତ୍ୱାକାଂକ୍ଷୀ ହିଁ ସେମାନଙ୍କୁ ଆଫ୍ରିକାରୁ ମଣିଷ ଧରି ଆମେରିକାରେ ଦାସରୂପେ ଖଟାଇବା ନିମନ୍ତେ ମୁହଁ ଦେଇଗଲା କି ? ପୃଥିବୀରେ ମନୁଷ୍ୟ ମନୁଷ୍ୟ ଓ ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ପରିଚିତ ସ୍ୱାଭିବିକ ଭାବରେ ଅଗ୍ରଗତି ଲାଭ କରି ଖୁବ୍ ସମ୍ଭବ ଦିନେ ନା ଦିନେ ଲୋହିତ ମଣିଷମାନେ ଇଉରୋପ ଆସିଥାନ୍ତେ ଅଥବା ଆଫ୍ରିକାର ମଣିଷ ଆମେରିକା ବି ଯାଇଥାନ୍ତା । ମାତ୍ର, ତାହା ନିର୍ଦ୍ଦିଷ୍ଟ ଭାବରେ ଏକ ଏକାବେଳେକେ ଅନ୍ୟ ପରିଚୟ ହୋଇ ରହିଥାନ୍ତା । ଆଧୁନିକ ପୃଥବୀରେ ସମ୍ପ୍ରତି ସମଷ୍ଟି ସମଷ୍ଟି ଭିତରେ ଯେଉଁ ସବୁ କ୍ଷୋଭ ଏବଂ ବିରାଗ ପ୍ରାୟ ଗଣ୍ଠି ପରି ହୋଇ ଆମ ଜାଗତିକ ବିରାଦରୀଟିକୁ ଅତ୍ୟନ୍ତ ଦୁଃଖଦ ଭାବରେ ବିକ୍ଷୁବ୍ଧ କରି ରଖିଛି, ପ୍ରକୃତରେ ସେହି ଔପନିବେଶିକ ସଂପ୍ରସାରଣର ଉଦ୍ଧତ ଯୁଗରେ ହୁଏତ ତାହାର ମୂଳ ବୀଜଗୁଡ଼ିକର ବପନ ହୋଇ ସାରିଥିଲା । ବିଗତ ତିନି ଚାରିଶହ ବର୍ଷ ମଧ୍ୟରେ ସେକାଳର କୃଷ୍ଣକାୟ ଦାସମାନେ ଏବେ କେତେ କୋଟିରୁ ଅଧିକ ହୋଇ ଆମେରିକାର ନାଗରିକ ହୋଇ ସାରିଲେଣି । ଖାସ୍ ସେହି ଭୂମିଟିରେ ମଧ ଯାବତୀୟ ସଦ୍‌ପ୍ରୟାସ ସତ୍ତ୍ୱେ କଳା ଓ ଗୋରାଙ୍କ ମଧ୍ୟରେ ନାନାବିଧ ହୃଦୟଦାହକାରୀ ବ୍ୟବଧାନମାନ ତଥାପି ବିଦ୍ୟମାନ ରହିଛି । ଆମେରିକାର କଳାମାନେ ଯେ ଦିନେ ଅଦୃଷ୍ଟରେ ଚକ୍ରାନ୍ତରେ ବା ବରାଦରେ ଆଫ୍ରିକାରୁ ଟଣା ହୋଇ ବର୍ତ୍ତମାନର ଏହି ଭୂମିଟିକୁ ଟଣା ହୋଇ ଆସିଥିଲେ, ତାହାକୁ କଳାତ୍ମକ ସାହିତ୍ୟର ଉପାଦାନରେ ପରିଣତ କରି ଏବେ ଉପନ୍ୟାସମାନ ଲେଖା ହେଲାଣି । ତଥାପି ଆମେରିକାର କଳା ମଣିଷ ଏବଂ ଆଫ୍ରିକାର କଳା ମଣିଷ ପରସ୍ପରଠାରୁ ଯାବତୀୟ ଅର୍ଥରେ ଯୋଜନ ଯୋଜନ ଦୂର ହୋଇ ରହିଛନ୍ତି । ଆଧୁନକି ପୃଥିବୀର ପ୍ରବର୍ତ୍ତନାଗୁଡ଼ିକର ପାଇରେ ପଡ଼ି ଆମେରିକାର କଳାମାନେ ଆମେରିକାର ଗୋରାମାନଙ୍କ ଠାରୁ ସମ୍ଭବତଃ କ୍ରମେ ନିଜକୁ ଅଧିକ ନିକଟବର୍ତ୍ତୀ ବୋଲି ଅନୁଭବ କରିବା ସଙ୍ଗେ ସଙ୍ଗେ, ଯେଉଁ ଆଫ୍ରିକାରୁ ତାକୁ ଏକଦା ଛିନ୍ନ କରି ଅଣା ଯାଇଥିଲା, ସେଠାରେ ଏବେ ମଧ ଭୂଇଁକୁ କାମୁଡ଼ି ବାସ କରୁଥିବା କଳାମାନଙ୍କର ନିୟତି ସହିତ ନିଜର ନିୟତିଟିକୁ ମିଳାଇ ଚିନ୍ତା କରିବାର କୌଣସି ପ୍ରୟୋଜନ ହିଁ ଅନୁଭବ କରୁନାହିଁ । ଏକ ରାଷ୍ଟ୍ର ହିସାବରେ ଆମେରିକାର ସମ୍ପର୍କ -ରାଜନୀତି ଗୁଡ଼ିକର ନିର୍ଦ୍ଧାରଣ କରିବାରେ ସମ୍ଭବତଃ ଆମେରିକାର କୃଷ୍ଣକାୟ ଗୋଷ୍ଠୀଟିର ହୁଏତ ଗୋଟିଏ ସମବର୍ଗୀୟ ଗୋଷ୍ଠୀ ହିସାବରେ ଯେଉଁ ମତ ରହିଥିବ, ତାହାର ସେପରି କିଛି ମୂଲ୍ୟ ନାହିଁ ।

ଆଫ୍ରିକାରେ କଳା ମଣିଷମାନଙ୍କୁ ସଂଗ୍ରହ କରି ସେମାନଙ୍କୁ ଆମେରିକାର ହାଟମାନଙ୍କରେ ଲାଭରେ ବିକ୍ରୀ କରିବାର ପର୍ଯ୍ୟାୟଟି ପର୍ଯ୍ୟନ୍ତ ଏହି କ୍ରୀତଦାସ-ବାଣିଜ୍ୟର ବିସ୍ତୃତ ବିବରଣୀମାନ ରହିଛି । ଏଥିପାଇଁ ଇଉରୋପୀୟ ସଂପୃକ୍ତ ଦେଶର କୋମ୍ପାନୀମାନଙ୍କ ତରଫରୁ ବିଶେଷ ଏଜେଣ୍ଟମାନେ ନିଯୁକ୍ତ ହୋଇ ରପ୍ତାନୀ ନିମନ୍ତେ, ମଣିଷମାଲ୍ ସଂଗ୍ରହର କାର୍ଯ୍ୟରେ ନିୟୋଜିତ ହୋଇ ରହୁଥିଲେ । ସେତେବେଳେ ଆଫ୍ରିକାର ସେହି ଭୂଖଣ୍ଡଗୁଡ଼ିକରେ

ବିଶେଷ ରାସ୍ତାଘାଟ ନଥିଲା; ତେଣୁ,ଯେଉଁ ସାନ ସାନ ନଦୀଗୁଡ଼ିକ ଆଭ୍ୟନ୍ତରୀଣ ଅଞ୍ଚଳଗୁଡ଼ିକରୁ ଗାଆଁଗଣ୍ଡା ଦେଇ ବୁଲି ବୁଲି ସମୁଦ୍ରରେ ଆସି ପଡ଼ିଛନ୍ତି, ଏଜେଣ୍ଟମାନେ ଡଙ୍ଗାରେ ବସି ନଦୀର ଉପରକୁ ଉପରକୁ ପଶି ପଶି ଯାଉଥିଲେ । ସେମାନଙ୍କୁ ସରବରାହ କରିବାକୁ ଆସିଥିବା ଜାହାଜମାନେ ସମୁଦ୍ରତଟରେ ନଦୀମୁହାଣରେ ଅପେକ୍ଷା କରି ରହୁଥିଲେ । ବେଳେ ବେଳେ ଏହି ଅଭିଯାନ ଗୁଡ଼ିକରେ ଏଜେଣ୍ଟମାନେ ସଫଳ ହୋଇ ନପାରିଲେ ଜାହାଜର କପ୍ତାନମାନଙ୍କର ମଧ ସାହାଯ୍ୟ ନେଉଥିଲେ । ସେମାନେ ଦଳ ବାନ୍ଧି ସୁଯୋଜିତ ଭାବରେ ଅଭ୍ୟନ୍ତର ଦେଶଗୁଡ଼ିକୁ ପ୍ରବେଶ କରୁଥିଲେ । ଆତ୍ମରକ୍ଷା ନିମନ୍ତେ ପାଖରେ ଅସ୍ତ୍ର ମହଜୁଦ ରହିଥିଲା । ହଁ, ସ୍ଥାନୀୟ ଅଧିବାସୀଙ୍କ ଭିତରୁ ସେହି ବନ୍ଦରରୁ ହିଁ ସେମାନେ କେତେକଙ୍କୁ ସାଥିରେ ନେଉଥିଲେ ଯେଉଁମାନେ କି କଳାମାନଙ୍କର ଭାଷା ଜାଣିଥିଲେ ଏବଂ ଶିକାରରେ ସାହାଯ୍ୟ କରୁଥିଲେ । ସେମାନଙ୍କୁ ଉପଯୁକ୍ତ ପାରିଶ୍ରମିକ ମଧ ମିଳୁଥିଲା ।

ଏମାନଙ୍କୁ ଆଗେ ଗୋଟିଏ ଗୋଟିଏ ଭୃତ୍ୟଧରା ଦଳ ବୋଲି ଅବଶ୍ୟ କହିପାରିବା । ସେମାନେ ସଦଳବଳ ନଈକୂଳରେ ଥିବା ବସତିମାନଙ୍କରେ ହଠାତ୍ ଯାଇ ପହଞ୍ଚି ଯାଉଥିଲେ ଏବଂ ଅଧିକ ବଳର ଜୁଲମ ଦେଖାଇ ଲୋକମାନଙ୍କୁ ଧରି ଆଣୁଥିଲେ । ସତେଅବା ନିରାପଦତା ଦୃଷ୍ଟିରୁ ସେମାନଙ୍କୁ ହାତଗୋଡ଼ ବାନ୍ଧି ଡଙ୍ଗା ଉପରେ ପକାଇ ଦେଉଥିଲେ । ଅଧିକନ୍ତୁ, ସେମାନେ ଯଦି ସୂର୍ଯ୍ୟ ଅସ୍ତ ହୋଇଯିବା ପରେ କୌଣସି ସ୍ଥାନୀୟ ଅଧିବାସୀକୁ ବାଟରେ ଏକୁଟିଆ ଯାଉଥିବାର ଦେଖୁଥିଲେ, ତେବେ ତା'ଉପରେ ହଡ଼ପ କରି ନେଇ ଆସୁଥିଲେ । କ୍ରମେ ଏପରି ହୋଇଗଲା ଯେ, କଳାମାନେ ଗୋରାମାନଙ୍କୁ ଦୂରରୁ ଦେଖିବା ମାତ୍ରକେ ସେମାନଙ୍କର ହାତୁଡ଼ରେ ନପଡ଼ିବାକୁ ହିଁ ପ୍ରାଣପଣେ ଚେଷ୍ଟା କରୁଥିଲେ । ଏବଂ, ନାନାଭଳି ପ୍ରଲୋଭନ ଦେଖାଇ ମଧ କଳାମାନଙ୍କୁ ଧରି ଅଣା ଯାଉଥିଲା । ଯେଉଁସବୁ ପଦାର୍ଥ ଆଫ୍ରିକାରେ ମିଳୁ ନଥିଲା ଏବଂ ତେଣୁ ତାହାକୁ ଦେଖିବା ମାତ୍ରକେ ସ୍ଥାନୀୟ ଅଧିବାସୀଟିଏ ମୋହିତ ହୋଇ ଯାଇଥିଲା, ଗୋରାମାନେ ସେହିସବୁ ପଦାର୍ଥକୁ ଖୁବ୍ କାମରେ ଲଗାଉଥିଲେ । ଲୁଗା, ରେଶମରେ ତିଆରି ହୋଇଥିବା ରୁମାଲ୍, ବ୍ରାଣ୍ଡି, ବିଅର ଆଦି ଦିଆଯାଇ ମଣିଷମାନଙ୍କୁ ଲୋଭାଇ ଜାହଜ ଉପରକୁ ଅଣା ଯାଉଥିଲା । ଜାହଜ ଉପରେ କୌଶଳ କରି ସେମାନଙ୍କର ଗୋଡ଼ହାତକୁ ବାନ୍ଧି ଦିଆ ଯାଉଥିଲା । ଏହି କ୍ଷେତ୍ରରେ କାମରେ ଲାଗିବ ବୋଲି ନୂତନ ଗୋଲାର୍ଦ୍ଧର ଦ୍ୱୀପମାନଙ୍କରେ ତିଆରି କରା ଯାଉଥିବା ଗୁଡ଼କୁ ପଚାଇ ମଦ ରନ୍ଧା ହେଉଥିଲା ଓ ତାହାକୁ କଳାମାନଙ୍କୁ ଧରିବାର ଥୋପରୂପେ ବ୍ୟବହାର କରିବା ସକାଶେ ଜାହଜରେ ଲଦି କମ୍ପାନୀମାନଙ୍କୁ ବିକ୍ରୀ କରା ଯାଉଥିଲା । ବାସ୍, ମାଲ୍‌ମାନେ ଜାହଜ ଉପରକୁ ଆସିବା ପରେ ଏବଂ ଅକ୍ତିଆର ହୋଇଯିବା ପରେ ଆଗ ଡାକ୍ତରମାନଙ୍କ ଦ୍ୱାରା ସେମାନଙ୍କର ଦେହ ପରୀକ୍ଷା କରା ଯାଉଥିଲା । ଅତ୍ୟନ୍ତ ଅପମାନଜନକ ଭାବରେ ସେହିସବୁ ପରୀକ୍ଷା ହେଉଥିଲା । ସେହି ପରୀକ୍ଷାଦ୍ୱାରା ସେମାନଙ୍କର ବୟସ, ଶରୀରର-

ତାକତ, ଓ ଦାନ୍ତଗୁଡ଼ିକର ଅବସ୍ଥା ନିର୍ଦ୍ଧାରଣ କରା ଯାଉଥିଲା । ସମସ୍ତଙ୍କର ଉପସ୍ଥିତିରେ ସେମାନଙ୍କୁ ଲଙ୍ଗଳା କରି ଯୌନାଙ୍ଗ ଗୁଡ଼ିକୁ ବି ଦେଖା ଯାଉଥିଲା । ଆଟଲାଣ୍ଟିକ ମହାସାଗରର ଦୀର୍ଘ ଯାତ୍ରାରେ ସେମାନେ ସହଜରେ ଡ଼େକ୍ ଉପରେ ନୁହେଁ, ସର୍ବନିମ୍ନ ଦେଶରେ ରହିଥିବା ଗମ୍ଭୀରିଗୁଡ଼ାକରେ ହିଁ ରହୁଥାନ୍ତି । ନିୟମତଃ ରପ୍ତାନୀ କରା ଯାଉଥବା ପଣ୍ୟାଦି ଯେଉଁଠି ରହେ, ସେହିଠାରେ । ସେଠାରେ ଅନ୍ଧାର ରାଜତ୍ୱ କରୁଥିଲା । ସୂର୍ଯ୍ୟକିରଣ ପଡ଼ିବାର ପ୍ରଶ୍ନ ହିଁ ନଥିଲା । ଯେଉଁଠାରେ ପ୍ରକୃତରେ କୋଡ଼ିଏ ଜଣଙ୍କୁ ଜାଗା ହୁଅନ୍ତା, ସେଠାରେ ତାହାର ତିନିଗୁଣ ଭାଗ୍ୟହୀନ ମଣିଷ ଖୁନ୍ଦି ହୋଇ ରହୁଥିଲେ ।

ସେମାନଙ୍କୁ ଯାହା ବା ଯେଉଁଭଳି ଖାଇବାକୁ ଦିଆ ଯାଉଥିବ, ତାହା ଅତ୍ୟନ୍ତ ସହଜରେ ଅନୁମାନ କରାଯାଇ ପାରିବ । ଜଳଯାତ୍ରାରେ ସେମାନେ ନାନାବିଧ ଅସୁସ୍ଥତା ଭୋଗ କରୁଥିଲେ । ଝାଡ଼ା ସମ୍ଭବତଃ ସବୁଠାରୁ ଅଧିକ ମନୁଷ୍ୟଙ୍କର ରୋଗ ଥିଲା । ଧରା ହୋଇ ଜାହଜରେ ଭର୍ତ୍ତି କରା ଯାଉଥିବା ସମୟରେ ଅନେକ କୃଷ୍ଣକାୟ ମଉକା ପାଇବା ମାତ୍ରକେ ସମୁଦ୍ର ଭିତରକୁ ଡେଇଁ ପଡୁଥିଲେ । ଅଧାବାଟରେ ମଧ୍ୟ ସମୁଦ୍ରକୁ ଡେଇଁପଡ଼ି ଆତ୍ମହତ୍ୟା କରୁଥିବା ବ୍ୟକ୍ତିମାନଙ୍କର ସଂଖ୍ୟା ଆଦୌ କମ୍ ନଥିଲା । ଏବଂ, ଆଉଗୋଟିଏ ବିପଦ ମଧ୍ୟ ସର୍ବଦା ରହିଥିଲା । ବାଟରେ ଦାସମାନଙ୍କୁ ନିଜର ବାଣିଜ୍ୟ ପାଇଁ ଅପହରଣ କରିନେବାର ଉଦ୍ଦେଶ୍ୟରେ ଇଉରୋପୀୟ ବିଭିନ୍ନ ଦେଶର ଜଳଦସ୍ୟୁମାନେ ପରସ୍ପରର ବୋଝେଇ ଜାହଜକୁ ଆକ୍ରମଣ କରୁଥିଲେ । ଜାହଜ ଜାହଜ ଭିତରେ ସେହି ସମୁଦ୍ର ମଝିରେ ଘମାଘୋଟ ଯୁଦ୍ଧ ହେଉଥିଲା । ଅନ୍ୟ ପକ୍ଷର ହାତରେ କାହିଁକି ଏହି ପଣ୍ୟରୂପୀ କୃଷ୍ଣକାୟମାନେ ପଡ଼ିବେ, ସେହି କ୍ଷତିଟିକୁ ଏଡ଼ାଇବା ନିମନ୍ତେ ହାରି ଯାଉଥିବା ପକ୍ଷଟି ଜାହଜର ତଳଭାଗରେ ରହିଥିବା ବାଟଟିକୁ ମେଲା କରି ଦେଉଥିଲେ, ଯାହାଫଳରେ ଶତ୍ରୁ ସେମାନଙ୍କୁ ଆସି ଅଧିକାର କରିନେବା ପୂର୍ବରୁ ଏହି ଜୀଅନ୍ତା ପଣ୍ୟଗୁଡ଼ିକର ସଲିଳସମାଧି ହୋଇ ଯାଉଥିଲା । ପୁନଶ୍ଚ, ବିଭିନ୍ନ ଦେଶରେ ଦାସବ୍ୟବସାୟ ବିରୋଧରେ ପ୍ରବଳ ଜନମତ ସୃଷ୍ଟି ହୋଇ ଯେତେବେଳେ ଦେଶରେ ଆବଶ୍ୟକ ଆଇନ୍‌ଟିଏ ବହୁ ପରେ ପାସ୍ କରାଗଲା, ସେତେବେଳେ ତଥାପି ଲୁଚାଇ ସେହି କାରବାର କରୁଥିବା ଜାହଜଗୁଡ଼ିକୁ ଧରିବା ଲାଗି ସମୁଦ୍ରରେ ସରକାରୀ ପୋଲିସ୍ ତରଫରୁ ପଇଁତରା ଦିଆ ଯାଉଥିଲା । ପୋଲିସ୍ ଜାହଜ ଦାସମାନେ ବୋଝାଇ ହୋଇ ଯାଉଥିବା ଜାହଜଗୁଡ଼ିକୁ ବାଟରେ ଦେଖିଲେ ସେଗୁଡ଼ିକୁ ଅଟକାଉ ଥିଲେ ଏବଂ ତଦାରଖ କରିବାକୁ ଭିତରେ ପ୍ରବେଶ କରୁଥିଲେ । ଧରା ପଡ଼ିଯିବା ଭୟରେ ସେତେବେଳେ ମଧ୍ୟ ତଳପଟ ବାଟଟିକୁ ଖୋଲି ଦିଆ ଯାଉଥିଲା ଏବଂ ପୋଲିସ୍ କୌଣସି ପ୍ରମାଣ ହସ୍ତଗତ କରିବା ପୂର୍ବରୁ ହିଁ କୃଷ୍ଣକାୟ ଦାସମାନେ ସମୁଦ୍ରଜଳର ଗର୍ଭରେ କୁଆଡ଼େ ଅଦୃଶ୍ୟ ହୋଇ ଯାଉଥିଲେ ।

ବିବରଣୀ କହୁଛି, ଆମେରିକା ପଟେ ଜାହଜ କୂଳରେ ଯାଇ ଲାଗିବାର ଶେଷ କେତେଦିନ ଦାସମାନଙ୍କର ଉତ୍ତମ ହେପାଜତ ନିଆ ଯାଉଥିଲା : ସେମାନଙ୍କୁ ଉତ୍ତମ

ଭୋଜନ ଦିଆ ଯାଉଥିଲା । ସେମାନେ ମୋଟା ଏବଂ ଉଜ୍ଜ୍ୱଳ ଦେଖାଯିବେ ବୋଲି ସେପରି କରା ଯାଉଥିଲା । ସ୍ଥଳଭାଗ ଦୃଶ୍ୟ ହେବା ପରେ ସେମାନଙ୍କର ବେଡ଼ୀ ବି ଫିଟାଇ ଦିଆ ଯାଉଥିଲା । ଚର୍ବି ବଢ଼ିବା ଭଳି ଖାଦ୍ୟଦ୍ରବ୍ୟ ଖାଇବାକୁ ମିଳୁଥିଲା । ସେମାନଙ୍କର କଳା ଶୁଖିଲା ଚମଡ଼ାଗୁଡ଼ିକ ଚକଚକ ଦେଖାଯିବା ପାଇଁ ସେମାନଙ୍କର ଦେହକୁ ତେଲଦ୍ୱାରା ମାଲିଶ୍ କରିଦିଆ ଯାଉଥିଲା । ତା'ପରେ ଜାହଜରୁ କୂଳକୁ ଓହ୍ଲାଇବାର ପାଳି । ବାଟଯାକ ଝାଡା ଭୋଗିଥିବାରୁ ଓ ଉଚିତ ପ୍ରକାରେ ଶୌଚାଦି ହୋଇ ନଥିବାରୁ ବିଚରାମାନଙ୍କର ଦେହରୁ ମଳର ଦୁର୍ଗନ୍ଧ ବାହାରୁଥିଲା ଓ ସେହି ଦୁର୍ଗନ୍ଧଟା ଦୂର କରିବାର ଅଭିପ୍ରାୟରେ ଆବଶ୍ୟକ ସକଳ ଉପଚାର କରା ଯାଉଥିଲା । ଯେଉଁମାନେ ତଥାପି ହଗି ଦେଉଥିଲେ, ସେମାନଙ୍କର ମଳଦ୍ୱାରରେ ତୁଳାବିଣ୍ଡା ମାଡ଼ି ଦିଆ ଯାଉଥିଲା ।

ଏହି ମନୁଷ୍ୟପଣ୍ୟ ଗୁଡ଼ିକୁ କୂଳକୁ ଓହ୍ଲାଇବାର ପ୍ରକ୍ରିୟାଟି ଏକ ନିର୍ଦ୍ଦିଷ୍ଟ ବିଧି ଅନୁସାରେ ହେଉଥିଲା । ଭଲ ସ୍ୱାସ୍ଥ୍ୟବାଲାଙ୍କୁ ଅଲଗା କରି ଗୋଟାଏ ପାଖରେ ରୁଣ୍ଡ କରା ଯାଉଥିଲା । କେତେକଙ୍କୁ ସେହି ପ୍ରଥମ ବଛାରେ ହିଁ ରଦି ବୋଲି ଘୋଷଣା କରି ଦିଆ ଯାଉଥିଲା । ଯେଉଁମାନଙ୍କର ବୟସ ପଇଁତ୍ରିଶ ବର୍ଷରୁ ଟପି ଯାଇଥିଲା, ଯେଉଁମାନଙ୍କର ହାତଗୋଡ଼ରେ ଘାଆ ସବୁ ହୋଇଥିଲା, ଯେଉଁମାନଙ୍କର ଦାନ୍ତ ପଡ଼ି ଯାଇଥିଲା, ବାଳ ପାଚି ଯାଇଥିଲା କିମ୍ବା ଆଖିରେ ମୋତିଆବିନ୍ଦୁ ହୋଇଥିଲା, ସେମାନଙ୍କୁ ରଦିମାନଙ୍କ ଭିତରେ ରଖା ଯାଉଥିଲା । ତା'ପରେ ଦେହରେ ଚିଆଁଦେଇ ଚିହ୍ନଟ କରି ଦିଆ ଯାଉଥିଲା, ଲୁହାକୁ ନିଆଁରେ ତତାଇ ସେମାନଙ୍କ ଦେହରେ ମଡ଼ାଇ ଦିଆ ଯାଉଥିଲା ଓ ସେମାନଙ୍କୁ କେଉଁ ଦେଶର କମ୍ପାନୀମାନେ ଆଫ୍ରିକାରେ ଧରି ଆଣିଛନ୍ତି, ଚିହ୍ନଗୁଡ଼ିକର ମାଧମରେ ସେମାନଙ୍କୁ ଅଲଗା ଅଲଗା ଚିହ୍ନି ହେଉଥିଲା । ଏହିସବୁ ପ୍ରାରମ୍ଭିକ ବିଧି ଶେଷ ହେବା ପରେ ଦଲାଲମାନେ ଆସି ପହଞ୍ଚୁଥିଲେ ଓ ସେମାନଙ୍କୁ ନେଇ ଦର କଷାକଷି ହେଉଥିଲା । କଥିତ ଅଛି, ସେହି ପର୍ଯ୍ୟାୟରେ ମଧ ବହୁସଂଖ୍ୟକ ଦାସ ସମୁଦ୍ରପାଣିକୁ ଡ଼େଇଁ ପଡୁଥିଲେ ଓ ଜୀବନ ହରାଇ ଦେଉଥିଲେ । ଶହ ଶହ ସଂଖ୍ୟାରେ ଜୀବନ ହରାଉଥିଲେ । ସେଥିଲାଗି ଆଫ୍ରିକାରୁ ସେମାନଙ୍କୁ ଧରି ଆଣିବାକୁ ଯାଉଥିବା ବେପାରୀମାନେ ସାଧାରଣତଃ ଅଳପ ବୟସର କୃଷ୍ଣକାୟମାନଙ୍କୁ ଆଣିବାଲାଗି ଅଧିକ ନିରାପଦ ମନେ କରୁଥିଲେ । ଅଳପ ବୟସ ହୋଇଥିଲେ ସେମାନେ କଦାପି ଅଧିକ ଚାଲାଖ ମଧ ହୋଇନଥିବେ । ତେଣୁ ସବୁ ସହିଯିବେ । ବିଦ୍ରୋହ କରିବେନାହିଁ ଅଥବା ତ୍ରାହି ପାଇବା ନିମନ୍ତେ ସମୁଦ୍ର ଭିତରକୁ ଡ଼େଇଁ ବି ପଡ଼ିବେ ନାହିଁ । ଦଶ ବାର ବୟସର ଭୃତ୍ୟ ବା ଦାସମାନଙ୍କୁ ସେମାନେ ଅଧିକ ପସନ୍ଦ କରୁଥିଲେ । ସେମାନଙ୍କୁ ମଣ କରିବା ମଧ ଅପେକ୍ଷାକୃତ ଅଧିକ ସହଜ ହେଉଥିଲା । ଆହୁରି ଗୋଟିଏ ଭଲ କଥା ବି ହେଉଛି, ବୟସ୍କମାନଙ୍କର ତୁଳନାରେ ସେମାନଙ୍କୁ ଟିକିଏ ଶସ୍ତାରେ କିଣି ହେଉଥିଲା ଏବଂ ତେଣୁ ଗରହାକମାନେ ଏମାନଙ୍କୁ ବେଶୀ ପସନ୍ଦ କରୁଥିଲେ । ସେମାନଙ୍କୁ ଖାଇବାକୁ ଦେଇ ରଖିବାରେ ଓ ସେମାନଙ୍କର ଅନ୍ୟାନ୍ୟ ଖର୍ଚ୍ଚ ତୁଲାଇବାରେ ମଧ ଅପେକ୍ଷାକୃତ କମ୍ ପଇସା ଖରଚ ହେଉଥିଲା ।

ଜାହଜଯାତ୍ରାର ଦୀର୍ଘ ଅବଧିଟି ମଧ୍ୟରେ ଦାସମାନଙ୍କୁ କ୍ୱଚିତ୍ ବାହାରକୁ ଆସିବାର ଅବକାଶ ଦିଆ ଯାଉଥିଲା । ସେମାନଙ୍କୁ ଏପରି ଭାବରେ ବନ୍ଦୀ କରି ବେଡ଼ି ପକାଇ କୁଆଡ଼କୁ ନିଆଯାଉଛି, ସେହି ବିଷୟରେ ସେମାନଙ୍କର କୌଣସି ସ୍ପଷ୍ଟ ଧାରଣା ହିଁ ନଥିଲା । ଜାହଜର ତଳଭାଗରେ ଅନ୍ଧାର ଭିତରେ ସେମାନଙ୍କୁ ପ୍ରାୟ କଡ଼ ମାଡ଼ି ଶୋଇବାକୁ ପଡୁଥିଲା । କାରଣ ସମସ୍ତେ ଚିତ୍ ହୋଇ ଶୋଇଲେ ଆଦୌ ସ୍ଥାନ କୁଳେଉ ନଥିଲା । କେତେ ଜାଗାରେ କେତେଟା ମଣିଷ ରହିବେ, ସେଥିପାଇଁ ମଧ୍ୟ ଏକ ବିଚିତ୍ର ଗଣିତର ସାହାଯ୍ୟ ନିଆ ଯାଉଥିଲା । ପାଞ୍ଚଜଣ ମହିଳାଙ୍କୁ ଚାରିଜଣ ପୁରୁଷରେ ସୁମାରି କରା ଯାଉଥିଲା ଏବଂ ତିନିଜଣ ପୁଅ ପିଲା ବା ଝିଅ ପିଲା ଦୁଇଜଣ ବୟସ୍କଙ୍କ ଜାଗା ନେବେ ବୋଲି ହିସାବ ହେଉଥିଲା । ଆମେରିକା ଉପକୂଳରେ ଜାହଜରୁ ଓହ୍ଲାଇ ସେଠାରେ ଅନେକେ ଜୀବନରେ ସମ୍ଭବତଃ ପ୍ରଥମଥର ପାଇଁ ଏତେ ଗୋରା ଲୋକଙ୍କୁ ଦେଖିବାକୁ ପାଉଥିଲେ ଏବଂ ଅତ୍ୟନ୍ତ ଆତଙ୍କିତ ହୋଇ ଉଠୁଥିଲେ । ଗୋରାମାନେ ସେମାନଙ୍କୁ ଖାଇଯିବେ ବୋଲି ସେମାନେ ଧରି ନେଉଥିଲେ । କାରଣ, ସେମାନଙ୍କର ପିଲାଦିନେ ନିଜର ବାପାମାଆଙ୍କଠାରୁ ସେମାନେ ସେହି କଥା ହିଁ ଶୁଣିଥିଲେ ।

ପ୍ରାୟ ଚାରିଶହ ବର୍ଷ ପର୍ଯ୍ୟନ୍ତ କୃଷ୍ଣ ଆଫ୍ରିକା ଏବଂ ଗୋରା ଆମେରିକା ମଧ୍ୟରେ ମୁଖ୍ୟତଃ ଏହିଭଳି ସମ୍ପର୍କଟିଏ ଅବ୍ୟାହତ ରହିଥିଲା । ଏହାକୁ କ'ଣ ମନୁଷ୍ୟ ମନୁଷ୍ୟ ଭିତରେ ରହିଥିବା ଆଦୌ ଏକ ସମ୍ପର୍କ ବୋଲି କୁହାଯାଇ ପାରିବ ? ସେହି ସମ୍ପର୍କର ଇତିହାସ ମଧ୍ୟ ଏକ ମର୍ମନ୍ତୁଦ ଇତିହାସ । ଆଫ୍ରିକାର ଯେଉଁ ଚେନାଟା ଅତ୍ୟନ୍ତ ଅମାନୁଷିକ ଭାବରେ ଆମେରିକାକୁ ସରବରାହ ହୋଇ ଯାଉଥିଲା, ସେଠାରେ ଦାସ ହୋଇ କିଣା ବିକା ହେଉଥିଲା ଓ ଭାଗ୍ୟ କାମୁଡ଼ି ରହୁଥିଲା, ଆମେରିକାର ଅଧିକ ଧନବନ୍ତ ଓ ବିଦ୍ୟାବନ୍ତମାନେ ତାହାକୁ ବସ୍ତୁତଃ କେଉଁଭଳି ଆଖିରେ ଦେଖୁଥିଲେ, ତାହାର ବିଶଦ ବିବରଣୀମାନ ରହିଛି । ତତ୍କାଳୀନ ଆମେରିକାର ବଡ଼ ବଡ଼ ମଣିଷମାନେ ବି ହୁଏତ ଏହାକୁ ବିଧିର ବିଧାନ ବୋଲି ଧରି ନେଇଥିଲେ ଏବଂ ସେଥିରୁ ଫାଇଦା ମଧ୍ୟ ପାଉଥିଲେ । ଏପରିକି ଏକଦା ଆମେରିକାରେ ରାଷ୍ଟ୍ରପତି ଆସନକୁ ଅଳଙ୍କୃତ କରିଥିବା ଟମାସ୍ ଜେଫର୍‌ସନ୍, ଯିଏକି ଗଣତନ୍ତ୍ରରେ ପ୍ରତ୍ୟେକ ନାଗରିକର ଅଧିକାର ତଥା କର୍ତ୍ତବ୍ୟ ବିଷୟରେ ଏପର୍ଯ୍ୟନ୍ତ ଶାସ୍ତ୍ରବାକ୍ୟପ୍ରାୟ ହୋଇ ରହିଥିବା କେତେ କ'ଣ କହି ଯାଇଛନ୍ତି ଏବଂ ଯାହାସବୁ ଗଣତନ୍ତ୍ର ଲାଗି ପିପାସୁ ମଣିଷମାନଙ୍କୁ ସାରା ପୃଥିବୀରେ ପ୍ରେରଣା ଏବେ ମଧ୍ୟ ଦେଉଛି, ତାଙ୍କ ଘରେ ମଧ୍ୟ କୃଷ୍ଣକାୟମାନେ କ୍ରୀତଦାସ ହୋଇ ରହିଥିଲେ । ଜେଫର୍‌ସନ୍ ମହୋଦୟ କ୍ରୀତଦାସ ପ୍ରଥାର ବିରୋଧ କରି କେତେ କେତେ ମହାନ୍ କଥା ଲେଖି ଯାଇଛନ୍ତି ।

୧୭୮୭ ମସିହାରେ ଆମେରିକାର ଫିଲାଡ଼େଲ୍‌ଫିଆ ସହରରେ ଅନୁଷ୍ଠିତ ଗୋଟିଏ ସମ୍ମିଳନୀରେ ସେହି ଦେଶର ନୂଆ ସଂବିଧାନଟିକୁ ସଂପୃକ୍ତ ରାଜ୍ୟମାନେ ଗ୍ରହଣ କରି ନେଇଥିଲେ । ସେହି ସଂବିଧାନର ଚିଠା ସଂସ୍କରଣରେ କ୍ରୀତଦାସ ପ୍ରଥାର ବିରୋଧରେ

ମଧ୍ଯ କେତୋଟି ନିର୍ଦ୍ଦେଶନାମା ରହିଥିଲା । ଗଣତନ୍ତ୍ର ସହିତ ଦେଶର କଳାମାନଙ୍କୁ କ୍ରୀତଦାସ ରୂପେ ପେଷଣ ଓ ଶୋଷଣ କରିବାର ସେହି ଅନ୍ୟ ରୀତିଟା ଯେ କଦାପି ଏକତ୍ର ହୋଇ ରହି ପାରିବନାହିଁ, ସଂବିଧାନର ଲେଖକମାନେ ସେହି କଥାଟିକୁ ଅବଶ୍ୟ ହୃଦୟଙ୍ଗମ କରିଥିବେ । ମାତ୍ର, ବହିରେ ଯାହା ଲେଖା ହୋଇ ରହିଲା, ବାସ୍ତବ ସମ୍ବନ୍ଧ ଏବଂ ସୁଯୋଗଗୁଡ଼ିକର ଜୀବନରେ ସେଗୁଡ଼ିକୁ ସତକୁ ସତ ମାନିଲେ ପୁଣି ସଂସାର ଚଳିବ କିପରି ? କ୍ରୀତଦାସ କିଣା ଓ ବିକାର ରୀତିଟି ସେତେବେଳେ ଜବର ହୋଇ ଚାଲୁଥିବା ଦକ୍ଷିଣ ଭାଗରେ ଅବସ୍ଥିତ ଜର୍ଜିଆ ଏବଂ ଦକ୍ଷିଣ କାରୋଲିନା ନାମକ ଦୁଇ ରାଜ୍ୟ ସେଥିଲାଗି ସେମାନେ ଯୁକ୍ତରାଜ୍ୟ ଆମେରିକାର ସଦସ୍ୟଭୁକ୍ତ ହେବା ପୂର୍ବରୁ ନିଜ ନିଜର ଗୋଟିଏ ସର୍ତ୍ତ ଆଣି ବାଢ଼ି ଦେଇଥିଲେ । ସଂବିଧାନରୁ କ୍ରୀତଦାସ ପ୍ରଥାର ବିରୋଧ କରିଥିବା ଅନୁଚ୍ଛେଦଗୁଡ଼ିକୁ ଉଠାଇ ନେବା ପୂର୍ବରୁ ସେମାନେ ସଂବିଧାନରେ ନିଜ ସ୍ୱାକ୍ଷର କଦାପି ଦେବେନାହିଁ ବୋଲି ଜିଦ୍ କରି କହିଥିଲେ । ବସ୍ତୁତଃ ସେହିମାନଙ୍କର ଏହି ଜିଦ୍‌ଟି ହିଁ ବଳବତ୍ତର ରହିଥିଲା । ଅର୍ଥାତ୍, ସେମାନଙ୍କ ପାଇଁ ନିତାନ୍ତ ଆପତ୍ତିଜନକ ଓ ଅନୁଚିତ ବୋଲି ଲାଗୁଥିବା ଅଧିନିୟମ ଗୁଡ଼ିକୁ ଉଠାଇ ନିଆ ଯାଇଥିଲା ଏବଂ ତା'ପରେ ଯାଇ ସଂପୃକ୍ତ ରାଜ୍ୟ ଦୁଇଟିର ମାନ୍ୟବର ପ୍ରତିନିଧିମାନେ ସାଂବିଧାନିକ ଚୁକ୍ତିରେ ସ୍ୱାକ୍ଷର କରିଥିଲେ ।

ଏଣୁ, ହୁଏତ କୁହାଯାଇ ପାରିବ ଯେ, ଏକ ସାଂବିଧାନିକ ଜାତୀୟ ସମୂହରୂପେ ଜନ୍ମଲାଭ କରିଥିବାର ସେହି ଆଦ୍ୟ ମୁହୂର୍ତ୍ତଟିରୁ ହିଁ ଆମେରିକା ନାମକ ସାମୂହିକ ଭାବମୂର୍ତ୍ତି ମଧ୍ୟରେ କେତେକ ମୂଳଭୂତ ବିଷମତା ବା ଅସଙ୍ଗତି ରହି ଯାଇଥିଲା । ଆମେରିକାର ଗୋରା ବସତିସ୍ଥାପନକାରୀମାନେ ପ୍ରଥମ ପର୍ଯ୍ୟାୟରେ ଏକ ଉପନିବେଶ ହିସାବରେ ଔପନିବେଶିକ ନାନା ଅବିଚାରର ଯାତନା ଭୋଗ କରିଥିଲେ । ଇଉରୋପରୁ ସେହିଭଳି କେତେକ ଗଞ୍ଜଣାରୁ ରକ୍ଷା ପାଇବା ସକାଶେ ହିଁ ସେମାନଙ୍କ ଭିତରୁ ଅନେକେ ଏହି ନୂତନ ଭୂଖଣ୍ଡକୁ ବାହାରି ଆସିଥିଲେ । ସେମାନେ ଏଠାରେ ଏକ ନୂତନ ଭୂମି ତିଆରି କରି ମୁକ୍ତ ମନୁଷ୍ୟସଂହତିର ଜୀବନ ଯାପନ କରିବା ନିମନ୍ତେ ଏଠାକୁ ଆସିଥିଲେ ଓ ମୁଖ୍ୟତଃ ସେହି ମୁତାବକ ସଂବିଧାନଟିଏ ପ୍ରସ୍ତୁତ କରିଥିଲେ । ଗୋଟିଏ ଦାସତ୍ୱରୁ ମୁକ୍ତ ହୋଇ ଆଉଗୋଟିଏ ଦାସତ୍ୱର କଳଙ୍କ ଉପରେ ନିଜପାଇଁ ଦେଶନାମକ ଏହି ଆସ୍ଥାନଟିକୁ ଗଢ଼ିବା, ଆମେରିକା ସତେଅବା ସେହି ମୂଳରୁ ହିଁ ବିଡ଼ମ୍ବନାଟି ଭିତରେ ଭାରି ଜଟିଳ ଭାବରେ ଗୁରାଇ ତୁରାଇ ହୋଇ ଯାଇଥିଲା । ଇଂଲଣ୍ଡର ପ୍ରସିଦ୍ଧ ମନ୍ତବ୍ୟକାରୀ ଡ଼ାକ୍ତର ଏହି ସାମୁଏଲ୍ ଜନ୍‌ସନ୍ ଆମକୁ ସେହି ବିଡ଼ମ୍ବନାଟି ବିଷୟରେ ସୂଚାଇ ଦେଇଛନ୍ତି । ବ୍ରିଟିଶ୍ ରାଜତ୍ୱ ସେମାନଙ୍କ ଉପରେ ନାନାଭାବେ ଅତ୍ୟାଚାର କରୁଛି ବୋଲି ଆମେରିକାର ବାସିନ୍ଦାମାନେ ସେତେବେଳେ କେତେ ଅଭିଯୋଗ କରିଥିଲେ ଓ ସେଥିପାଇଁ ଏକ ସଂଗ୍ରାମ ଲଢ଼ିଥିଲେ । ମାତ୍ର, ଦାସତ୍ୱର ଶୃଙ୍ଖଳରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ସେମାନେ ନିଜେ ଦାସ କରି ରଖିଥିବା କୃଷ୍ଣକାୟ ମାନଙ୍କୁ କାହିଁକି ସେମାନଙ୍କର ଯାତନାରୁ ମୁକ୍ତି ଦେଇ ପାରିନଥିଲେ ? ଶ୍ରୀଯୁକ୍ତ

ଜନ୍‌ସନ୍ ଖୁବ୍ ସ୍ପଷ୍ଟ ଭାବରେ ସେହି କଥାଟି ପ୍ରତି ସଂପୃକ୍ତ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ୧୭୭୫ରେ ନିଜର ଏକ ଲେଖାରେ ଶ୍ରୀଯୁକ୍ତ ଟମାସ୍ ପେନ୍ ମଧ୍ୟ ସେହିଭଳି ବିସ୍ମୟ ପ୍ରକାଶ କରିଛନ୍ତି । ନିଜର ମୁକ୍ତି ନିମନ୍ତେ ସଂଗ୍ରାମ କରୁଥିବା ଗୋଷ୍ଠୀମାନେ ଅନ୍ୟମାନଙ୍କୁ ମୁକ୍ତି ଦେବାର କ୍ଷେତ୍ରରେ କାହିଁକି ଏପରି କୃପଣତାର ଆଚରଣ କରନ୍ତି, ସାଂପ୍ରତିକ ପୃଥିବୀର ଦର୍ପଣ ଉପରେ ସେହି ଜାଗତିକ ସମସ୍ୟାଟିର ଏକ ଗମ୍ଭୀର ଆଲୋଚନା କରାଯାଇ ପାରନ୍ତା । ନୂଆ କରି ସ୍ୱାଧୀନ ହୋଇଥିବା ଦେଶମାନଙ୍କରେ ମାନବନିୟତିକୁ ଏବେ ମଧ୍ୟ ସେହି ଅସଙ୍ଗତିଟିର ଖୁବ୍ ସମ୍ମୁଖୀନ ହେବାକୁ ପଡୁଛି ।

ଆମେରିକାଟ ସେହି ନୂତନ ଭୂଖଣ୍ଡଟି ଉପରେ ଆପଣାର କଳ୍ପିତ ବସତିଟିକୁ ଯଥାସମ୍ଭବ ଅଧିକ ବାସଯୋଗ୍ୟ ଏବଂ ଉପଭୋଗ୍ୟ କରି ଗଢ଼ିବା ନିମନ୍ତେ ଗୋରାମାନେ ଆଫ୍ରିକାରୁ କଳାମାନଙ୍କୁ ସେମାନଙ୍କର ସ୍ୱକୀୟ ଭୂମିରୁ ଉତ୍ପାଟିତ କରି ଆଣିଥିଲେ । ଆଫ୍ରିକାରୁ କଳେ ବଳେ କୌଶଳେ ଯେତିକି ଧରା ହୋଇ ଫାଶରେ ପଡ଼ି ଆସୁଥିଲେ, ସେମାନଙ୍କ ଭିତରୁ ପ୍ରାୟ ଅଧେ ବାଟରେ ହିଁ ମୁକ୍ତି ପାଇ ଯାଉଥିଲେ । ଜାହଜରେ ବୋଝାଇ ହେବା ସମୟରେ ଏବଂ ମହାସାଗରର ଯାତ୍ରା ସମୟରେ ବହୁସଂଖ୍ୟକ କଳା ମଣିଷ ସମୁଦ୍ରକୁ ଡ଼େଇଁପଡ଼ି ପ୍ରାଣ ହରାଇ ଦେଉଥିଲେ । ଏପରିକି ଆମେରିକାରେ ମଧ୍ୟ ହାଟକୁ ହାଟ ଏବଂ ହାତକୁ ହାତ ସରବରାହ ହେଉଥିବାର ପ୍ରାରମ୍ଭିକ ପ୍ରକ୍ରିୟାରେ ଆହୁରି କେତେ ଏକ ସୁଯୋଗ ମିଳିବା ମାତ୍ରକେ ଜୀବନ ହରାଇ ଦେଉଥିଲେ । ଏବଂ, ସେହି ଦାସମାନେ କିପରି ମାଲିକମାନଙ୍କର କାବୁ ଭିତରେ ରହି ପାରିବେ, ସେଥିପାଇଁ ସମସ୍ତେ ସତେଅବା ଏକାଠି ବସି ତିଆର କରିଥିବା ପରି କଠୋର ନିୟମମାନ ମଧ୍ୟ ତିଆର କରା ଯାଇଥିଲା । ମାଲିକମାନଙ୍କ ହାତରେ ବେତ ରହିଥିଲା ଓ ଏତେ ଟିକିଏ କିଏ ବେନିୟମ ହେବାର ଧରା ପଡ଼ିଲେ ସେହି ବେତକୁ ହିଁ ବ୍ୟବହାର କରା ଯାଉଥିଲା । ବେତ ଆଗରେ ବୟସ୍କ ଓ ସାନ ପିଲା ଏବଂ ପୁରୁଷ ଏବଂ ମହିଳା କୌଣସି ବାଛବିଚାର ହେଉନଥିଲା । ସକାଳେ କାମକୁ ଆସିବାରେ ବିଳମ୍ବ ହେଲେ ବେତ ମାଡ଼ରେ ସାନ ପିଲାଙ୍କୁ ମଧ୍ୟ ଅଚେତ କରି ଦିଆ ଯାଉଥିଲା । ବେଳେବେଳେ କ୍ରୋଧଟା ଅଧିକ ପ୍ରଚଣ୍ଡ ହୋଇଗଲେ ସେମାନଙ୍କୁ ଦଉଡ଼ିରେ ବାନ୍ଧି ଘୋଷାରି ଘୋଷାରି ପ୍ରାଣରୁ ମାରିଦିଆ ଯାଉଥିଲା । ସକାଳେ ରବିବାର ଦିନ ଗୀର୍ଜା ଉପାସନାକୁ ଯିବା କଥା । କଳାମାନେ ଗୋରା ପାଦ୍ରୀମାନଙ୍କ ଦ୍ୱାରା ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ ହେବାପରେ ସମ୍ଭବତଃ ସରଳ ଥିବାରୁ ଗୋରା ମାଲିକମାନଙ୍କ ଅପେକ୍ଷା ଧର୍ମପ୍ରତି ଅଧିକ ଅନୁଗତ ହୋଇ ପଡୁଥିଲେ ଏବଂ ତେଣୁ ରବିବାର ଉପାସନାକୁ ଯିବାପାଇଁ ଅଧିକ ଇଚ୍ଛା ପ୍ରକଟ କରୁଥିଲେ । ତଥାପି, ରବିବାର ଦିନ ବି ମାଲିକମାନେ ସେମାନଙ୍କୁ ଯଦି କୌଣସି ବିଶେଷ କାମ ଦେଉଥିଲେ ଏବଂ ଦାସମାନେ ତାହାକୁ ନ କରି ଯଦି ଉପାସନା ନିମନ୍ତେ ଗୀର୍ଜାକୁ ଚାଲି ଯାଉଥିଲେ, ତେବେ ଶାସ୍ତିସ୍ୱରୂପ ପଚିଶ ବେତ ଖାଇବାକୁ ପଡୁଥିଲା ।

ବେତ ମାରିବାର ସେହି ବିଧି ବା ପଦ୍ଧତିଟିକୁ ମାଲିକମାନଙ୍କର ତତ୍କାଳୀନ ଭାଷାରେ ସଂଶୋଧନ ଅର୍ଥାତ୍ Correction ବୋଲି କୁହା ଯାଉଥିଲା । ଗୀର୍ଜାର ପାଦ୍ରୀମାନେ ତାହାକୁ

ସଂପୂର୍ଣ୍ଣ ଅନ୍ତଃକରଣରେ ସମର୍ଥନ ହିଁ କରୁଥିଲେ । ସେମାନେ ସେଥିପାଇଁ ଖାସ୍ ବହିମାନ ଲେଖୁଥିଲେ ଓ ସଂପୃକ୍ତ ଦଣ୍ଡଦାତା ମାନଙ୍କର ବିବେକକୁ ନିର୍ମଳ କରି ରଖୁଥିଲେ । ଭର୍ଜିନିଆ ରାଜ୍ୟରେ ଏହି ବେତମାଡ଼ ବା ସଂଶୋଧନର ସମର୍ଥନରେ ସେତେବେଳର ଜଣେ ବିଶପ୍ ଯାହା ଲେଖିଥିଲେ, ଆମକୁ ସେଥିରୁ ଚିତ୍ରଟି ଭାରି ସ୍ପଷ୍ଟ ହୋଇଯାଇ ପାରିବ । କଳା କ୍ରୀତଦାସମାନଙ୍କୁ ପ୍ରବୋଧନା ଦେଇ ସିଏ ଲେଖିଥିଲେ : " ଯେତେବେଳେ ତୁମମାନଙ୍କ ଉପରେ ଏହି ସଂଶୋଧନ (ବେତ ବା ଚାବୁକ୍‌ମାଡ଼)ର ପ୍ରୟୋଗ କରାଯାଉଛି, ସେତେବେଳେ କହିବାକୁ ପଡ଼ିବ ଯେ ତୁମେମାନେ ବେତମାଡ଼ ଖାଇବା ଭଳି ହୁଏତ କିଛି ଅପରାଧ କରିଛ, ଅଥବା କରିନାହଁ । କିନ୍ତୁ, ତୁମେମାନେ ପ୍ରକୃତରେ କିଛି ସେପରି କରିଥାଅ ଅଥବା ନକରିଥାଅ ପଛକେ, ତୁମକୁ ସେହି ମାଡ଼କୁ ଧୈର୍ଯ୍ୟର ସହିତ ସହିଯିବାକୁ ହିଁ ପଡ଼ିବ । ସହିଯିବା ହିଁ ହେଉଛି ତୁମମାନଙ୍କର କର୍ତ୍ତବ୍ୟ ଏବଂ ତାହାହିଁ ହେଉଛି ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର ମଧ ଇଚ୍ଛା । ... ମନେ କର, ତୁମେ ଯେତିକି ଭୁଲ କରିଛ, ସେହି ଅନୁସାରେ ବିଚାର କରି ଦେଖିଲେ, ତୁମମାନଙ୍କୁ ଏହି ବେତମାଡ଼ ଦିଆଯିବା ଉଚିତ୍ ନୁହେଁ କିମ୍ବା ହୁଏତ ଏତେ ବେଶୀ ପରିମାଣରେ ବା ଏତେ ଅଧିକ କଠୋର ଭାବରେ ତୁମମାନଙ୍କୁ ସେହି ମାଡ଼ ଦିଆଯିବା ପ୍ରକୃତରେ ଅନୁଚିତ । ମାତ୍ର ଥରେ ଭାବି ଦେଖିଲ, ହୁଏତ ଆଗରୁ ତୁମେମାନେ କେତେଥର ଅପରାଧ କରିଛ ଏବଂ ତଥାପି ଏପରି ହୋଇଛି ଯେ, ସେଥିଲାଗି ତୁମକୁ କୌଣସି ଦଣ୍ଡ ଦିଆ ହୋଇନାହିଁ ଓ ତେଣୁ ତୁମେ ସେଥିରୁ ସେହିପରି ଭାବରେ ରକ୍ଷା ପାଇଯାଇଛି । ଅର୍ଥାତ୍, ଦୋଷ କରିଥିଲେ ମଧ ତୁମକୁ କୌଣସି ଦଣ୍ଡ ମିଳିନାହିଁ ଏବଂ ଅଧିକନ୍ତୁ ପ୍ରାପ୍ୟ ବେତନ ମଧ ତୁମେମାନେ ପାଇଛ । ପୁନଶ୍ଚ, ଏପରି ମଧ ହୋଇପାରେ ଯେ, ତୁମେ ଯେଉଁ ଦୋଷ କରିଛ ବୋଲି ତୁମ ବିରୁଦ୍ଧରେ ଅଭିଯୋଗ କରାଯାଇଛି, ତୁମେ ପ୍ରକୃତରେ ସେହି ଦୋଷ କରିନାହଁ ଏବଂ ତେଣୁ ତୁମକୁ ଅନ୍ୟାୟଟାରେ ବେତମାଡ଼ ଖାଇବାକୁ ପଡୁଛି ; ମାତ୍ର, ତଥାପି ଏପରି ମଧ ଅବଶ୍ୟ ହୋଇଥାଇ ପାରେ ଯେ, ତୁମେ ଖାସ୍ ଏହି ଭୁଲଟି ନକରି କେବେ ଆଉକିଛି ଭୁଲ କରିଛ । ଏପରିକି ତୁମେ ନିଜେ ମଧ ଏକ ଭୁଲ କରୁଛ ବୋଲି ଅନୁଭବ କରି ପାରିନାହଁ । କିନ୍ତୁ ସର୍ବଶକ୍ତିମାନ୍ ପରମେଶ୍ୱର ତଥାପି ତୁମେ ଦୋଷଟିଏ କରିଥିବାର ଦେଖିଛନ୍ତି ଏବଂ ସିଏ କ'ଣ କେବେ ତୁମେ କୌଣସି ଦଣ୍ଡ ନପାଇ ଚାଲିଯାଅ ବୋଲି ଇଚ୍ଛା କରିବେ ? ଏଥର ରକ୍ଷା ପାଇଗଲେ ମଧ ସିଏ ଆଉ ଥରକୁ ନିଶ୍ଚୟ ତୁମକୁ ଦଣ୍ଡ ଦେବେ ହିଁ ଦେବେ ।"

ସଂସାରରେ ଅମାନୁଷିକତା ମାନଙ୍କୁ ଜାରି କରି ରଖିବାକୁ ଧର୍ମ ପ୍ରକୃତରେ ଯୁଗେ ଯୁଗେ ସହାୟତା କରି ଆସିଛି । ଆହୁରି ବିଡ଼ମ୍ବନାର କଥା ଯେ, ଧର୍ମ ପ୍ରାୟ ସବୁବେଳେ ପ୍ରବଳର ପକ୍ଷ ହିଁ ଗ୍ରହଣ କରିଛି । ପ୍ରବଳ, ଅର୍ଥାତ୍ ଯାହା ପାଖରେ ଧନ ଅଛି, କ୍ଷମତା ଅଛି, ଶାସନ ରହିଛି, ସୈନ୍ୟବଳ ବି ରହିଛି । ଭଗବାନଙ୍କର ନାମରେ ଧର୍ମ ମନୁଷ୍ୟମାନଙ୍କୁ ଦରିଦ୍ର ହୋଇ ରହିବାକୁ, ଅସହାୟ ହୋଇ ରହିବାକୁ ଏବଂ ତଥାପି କୌଣସି ପ୍ରତିବାଦ

ଅଙ୍ଗରୂପେ ଧାରଣ କରି ରହିଥାଏ । ଏତିକିବେଳେ ଜଣେ ଗୋରା ଅଧ୍ୟାପକଙ୍କର କନ୍ୟା ହଠାତ୍ ଉପନ୍ୟାସଟିଏ ଲେଖି ଥୋଇଦେବେ ଏବଂ ଶାନ୍ତିଭଙ୍ଗ କରିବାକୁ ସାହସ କରିବେ ବୋଲି ସତେଅବା କେହିହେଲେ କଳ୍ପନା କରିନଥିଲେ । ଏପରି ଉପନ୍ୟାସଟିଏ ଲେଖାହେଲେ, ଯାହାକି ପ୍ରକୃତ ଘଟଣାଗୁଡ଼ିକର ପ୍ରାୟ ଏକ ବ୍ୟବଚ୍ଛେଦ କରି ଥୋଇଦେଲା । ସେହି ଘଟଣାଟିକୁ କିଏ ବା ସହ୍ୟ କରି ପାରିଥାନ୍ତା ?

ତେଣୁ, ବହିଟି ଛାପା ହୋଇ ବାହାରିବା ପରେ ଘୋର ଆପତ୍ତି ଉଠିଲା । ବହିଟା ସିନା ଗୋଟାଏ ଉପନ୍ୟାସ ପରି ଲେଖା ହୋଇଥିଲା । ମାତ୍ର ସେଥିରେ ବସ୍ତୁତଃ ଏକ ଉପନ୍ୟାସ ଛଳରେ ସତକଥାମାନ କୁହା ଯାଇଥିଲା । ଉପନ୍ୟାସ ପଢ଼ିବା ଲୋକମାନେ ପ୍ରକୃତରେ ତାହାରି ମାଧ୍ୟମରେ ସତ ସ୍ଥିତିଟାକୁ ହିଁ ଦେଖିଲେ ଏବଂ ଭାରି ବିଦାରି ହେବାକୁ ଲାଗିଲେ । ଆମେରିକାର କ୍ଷେତ ଓ ଖଣିକୁ ସମୃଦ୍ଧିର ଶିଖରଯାଏ ନେଇ ଯିବା ସକାଶେ ଗୋରାମାନଙ୍କ ପାଖରେ ଯେ ହଜାର ହଜାର ସଂଖ୍ୟାରେ କୃଷ୍ଣକାୟ ଦାସମାନେ ମହଜୁଦ ରହିଥିବା ଏକାନ୍ତ ଅପରିହାର୍ଯ୍ୟ, ଏହାକୁ ହୃଦୟଙ୍ଗମ କରୁଥିବା ଲୋକମାନେ ସମ୍ଭବତଃ ବିଶେଷ ଭାବରେ ଚିଡ଼ି ଉଠିଥିଲେ । ଅନେକ ମଣିଷ ଅଛନ୍ତି, ଯେଉଁମାନେ କି ଉନ୍ନତିର ପଥରେ ପ୍ରାୟ ଅବାଧରେ ମାଡ଼ି ଯାଉଥିବା ସମୟରେ ଭାଗ୍ୟ ସେମାନଙ୍କର ଅତ୍ୟନ୍ତ ଅନୁକୂଳ ରହିଛି ବୋଲି ମାନି ନେଇଥାନ୍ତି । ଅର୍ଥାତ୍, ସେମାନଙ୍କର ନିଜ ଭାଗ୍ୟର ନିର୍ମାଣକୁ ସେମାନେ ଏକାନ୍ତ ବିଧିନିର୍ଦ୍ଦିଷ୍ଟ ବୋଲି ମାନି ନେଇଥାନ୍ତି । ଏବଂ, ବାଧା ଆସି ପହଞ୍ଚିଲେ ବିଗିଡ଼ି ଉଠନ୍ତି, ପ୍ରତିବାଦ କରନ୍ତି । ଶ୍ରୀମତୀ ଷ୍ଟୋ'ଙ୍କର ଆଲୋଚ୍ୟ ପୁସ୍ତକଟିକୁ ସେମାନେ ସେହିପରି ଗୋଟିଏ ଅନିଷ୍ଟ-ସୃଷ୍ଟିକାରୀ ଘଟଣା ବୋଲି ଅବଶ୍ୟ ମନେ କରିଥିବେ । ଭାଗ୍ୟ ପ୍ରସନ୍ନ ନଥିଲେ କାହିଁ ଆଫ୍ରିକାରୁ ସତକୁ ସତ ମଣିଷମାନଙ୍କୁ ହଡ଼ପ ପରି ଆଣି ସେମାନେ ଆମେରିକାର ଏହି ଦୂର ଭୂଖଣ୍ଡରେ ଏଭଳି କାମରେ ମୋଟେ ଲଗାଇ ପାରିନଥାନ୍ତେ ! ଏତିକିବେଳେ ଛାର ଝିଅଟାଏ ଯଦି ଉପନ୍ୟାସଟାଏ ଲେଖିଦେଇ ସତକଥା ଗୁଡ଼ାକୁ ଦାଣ୍ଡକୁ ନେଇ ଆସିବ, ତେବେ ତାହାକୁ ସେହି ନିର୍ବୋଧ ଝିଅଟାର ତୁଚ୍ଛା ଏକ ଦୁର୍ବୁଦ୍ଧି ବୋଲି ହିଁ କହିବାକୁ ପଡ଼ିବ । ତେଣୁ ଉପନ୍ୟାସଟାକୁ ଛି ଛି କରି ପ୍ରତିବାଦର ଏକ ରୀତିମତ ତୋଫାନ ଆରମ୍ଭ ହୋଇ ଯାଇଥିଲା । ଉପନ୍ୟାସରେ ଯେଉଁସବୁ ଚିତ୍ରର ବୟାନ କରାଯାଇଛି, ତାହା ଆଦୌ ହକିକତ୍ ନୁହେଁ ବୋଲି ସମ୍ପୃକ୍ତ ମହଲଗୁଡ଼ିକରୁ ଏଡ଼େ ପାଟିରେ ଆପତ୍ତି ହେବାକୁ ଲାଗିଲା ।

୪

କ୍ରୀତଦାସମାନେ ଆମେରିକାରେ ମୋଟେ ଦୁର୍ଗତି ଭିତରେ ନାହାନ୍ତି ସେମାନେ ମୋଟେ ପଶୁଙ୍କ ପରି ବିକାକିଣା ହେଉନାହାନ୍ତି, ଦାସ ପରିବାରର ପିଲାମାନଙ୍କୁ ନିଲାମ ଦ୍ୱାରା ବିକ୍ରୀ କରିଦେଇ ପିତାମାତାଙ୍କ ଠାରୁ ମୋଟେ ଛିନ୍ନ କରି ନିଆ ଯାଉନାହିଁ,- ବହୁ ଯୁକ୍ତି ଏବଂ ବହୁ ଦୃଷ୍ଟାନ୍ତ ଦର୍ଶାଯାଇ ପ୍ରତିବାଦ କରା ଯାଇଥିଲା । ନଗଦ ନାନା ହିସାବ ବାଢ଼ି ଦେଇ କୁହାଗଲା ଯେ ମାଲିକମାନେ ସେମାନଙ୍କର କ୍ରୀତଦାସ ମାନଙ୍କୁ ଆଦୌ ସେପରି

କୌଣସି ମନ୍ଦ ବ୍ୟବହାର ଦେଖାନ୍ତିନାହିଁ । ଅଧିକାଂଶ ମାଲିକ ସେମାନଙ୍କୁ ନିଜର ସନ୍ତାନ ପରି ଦେଖନ୍ତି, ସେମାନଙ୍କର ସକଳ ସୁଖଦୁଃଖକୁ ସର୍ବଦା ନିଘା ରଖିଥାନ୍ତି ଏବଂ, ଅପର ପଟେ, ଦାସଦାସୀମାନେ ମଧ ମାଲିକ ମାଲିକାଣୀଙ୍କୁ ନିଜର ବାପାମାଆ ପରି ଦେଖନ୍ତି । କେତେ କେତେ ସ୍ଥଳରେ ତ ଏକ ତୁଳନାତ୍ମକ ଯୁକ୍ତି ଦେଖାଇ କୁହାଗଲା ଯେ, ଏହି କଳାମାନେ ସେମାନଙ୍କର ମୂଳ ଭୂମି ଆଫ୍ରିକାରେ ଯେଉଁଭଳି ଥିଲେ, ବର୍ତ୍ତମାନ ଆମେରିକାକୁ ଆସି ସେମାନେ ତାହା ଅପେକ୍ଷା ଯଥେଷ୍ଟ ଓ ଅଧିକ ଭଲରେ ଅଛନ୍ତି : ଅଧିକ ଭଲ ଖାଉଛନ୍ତି, ଭଲ ପିନ୍ଧୁଛନ୍ତି, ଭଲ ଘରେ ରହୁଛନ୍ତି ଏବଂ ସଭ୍ୟମାନଙ୍କର ସଂସର୍ଗ ଲାଭ କରୁଛନ୍ତି । ଆଫ୍ରିକାରେ ତ ସେମାନେ ଜଙ୍ଗଲ ଭିତରେ ଅସଭ୍ୟ ଓ ଅଧଲଙ୍ଗଳା ହୋଇ ରହିଥିଲେ, ଅନ୍ଧାରରେ ବୁଡ଼ି ରହିଥିଲେ, ବହୁ କୁସଂସ୍କାରପୂର୍ଣ୍ଣ ଏକ ଅତ୍ୟନ୍ତ ଆଦିମ ଅବସ୍ଥାରେ ବାସ କରୁଥିଲେ । ସେମାନଙ୍କର ଭାଗ୍ୟ ଯେ ସେମାନେ ସେହି ଫାଶଟା ଭିତରୁ ମୁକୁଳି ଏଡ଼େ ବଡ଼ ସାଗରକୁ ପାରି ହୋଇ ଆମେରିକାକୁ ଆସିଲେ । ହଁ, ଆଗରୁ ସେମାନେ ଗୋଡ଼ି, ମାଟି ଏବଂ ପଥରମାନଙ୍କୁ ପୂଜା କରୁଥିଲେ, ହିଂସ୍ର ଓ ବନ୍ୟ ହୋଇ ରହିଥିଲେ । ଆମେରିକାକୁ ଆସିବା ପରେ ସେମାନେ ଖ୍ରୀଷ୍ଟିଆନ୍ ହେଲେ, ଠିକ୍ ଧର୍ମବାଟକୁ ଆସିଲେ । ଠିକ୍ ଧର୍ମବାଟକୁ ଆସିବା ଦ୍ୱାରା ସେମାନେ ମୃତ୍ୟୁ ପରେ ସୁନିଶ୍ଚିତ ଭାବରେ ସ୍ୱର୍ଗକୁ ଯିବାର ସମ୍ଭାବନାଟି ମଧ ସମ୍ପୂର୍ଣ୍ଣ ଭାବରେ ଗ୍ୟାରେଣ୍ଟି ହୋଇ ରହିଲା, ଇତ୍ୟାଦି, ଇତ୍ୟାଦି ।

ଏହିସବୁ ଆକ୍ରମଣରେ ଶ୍ରୀମତୀ ଷ୍ଟୋ' ସେତେବେଳେ ପ୍ରକୃତରେ ପୋତି ହୋଇ ପଡ଼ିଥିବେ । ତାଙ୍କୁ ଯେ ସତକୁ ସତ ଏହିଭଳି ଗୋଟିଏ ପରିସ୍ଥିତିର ସାମନା କରିବାକୁ ପଡ଼ିବ, ଉପନ୍ୟାସଟିକୁ ଲେଖିବାବେଳେ ସିଏ ତାହା ହୁଏତ ଆଦୌ କଳ୍ପନା କରିନଥିବେ । ଦୁର୍ଗତ ମଣିଷ ପ୍ରତି ଏକ ସଂବେଦନାର ଭାବ ହିଁ ତାଙ୍କୁ ସେପରି ବହିଟିଏ ଲେଖିବା ସକାଶେ ପ୍ରେରିତ କରିଥିବ । ଯେକୌଣସି ଉପନ୍ୟାସ ପଛରେ ବୃହତ୍ତର ସତଜୀବନର ଦର୍ପଣଟିଏ ସର୍ବତ୍ର ପ୍ରଚ୍ଛନ୍ନ ହୋଇ ରହିଥାଏ ସତ, ମାତ୍ର ପାଠକମାନେ ସାଧାରଣତଃ ଉପନ୍ୟାସଟି ଭିତରେ ହିଁ ଅଧିକ ପରିମାଣରେ ରସି ରହିଯାଆନ୍ତି ଓ ଉପନ୍ୟାସଟି ସୂଚାଇ ଦେଉଥିବା ବାସ୍ତବ ଜୀବନଟି ବିଷୟରେ ମୋଟେ ସେତେ ବେଶୀ ଚିନ୍ତା କରନ୍ତି ନାହିଁ । ଜୀବନର ବାସ୍ତବ କଥାଗୁଡ଼ିକୁ ବସ୍ତୁତଃ ସିଧା କରି କହି ହେବନାହିଁ ବୋଲି ଉପନ୍ୟାସଟିଏ ଲେଖିବାକୁ ବହୁ ଲେଖକ ପ୍ରାୟ ଏକ ଛନ୍ଦ ପରି ବ୍ୟବହାର କରିଥାନ୍ତି ଏବଂ ଅନେକ ପରିମାଣରେ ସଫଳ ମଧ ହୋଇଥାନ୍ତି । ମାତ୍ର Uncle Tom's Cabin ଉପନ୍ୟାସଟିରେ ଦୁର୍ଭାଗ୍ୟବଶତଃ ଏଭଳି କ'ଣ ଥିଲା ଯେ, ତାହା ଉପରର ସାହିତ୍ୟିକ ଆବରଣଟାକୁ ଫାଡ଼ି ଦେଇ ସତ ଜୀବନଟାକୁ ଏଡ଼େ ଆବେଦନପୂର୍ଣ୍ଣ ଭାବରେ ଦେଖାଇ ଦେଇ ପାରିଲା ଏବଂ ଉପନ୍ୟାସରେ କେବଳ ଗୋଟିଏ ଗୋଟିଏ ଚରିତ୍ର ରୂପେ ଚିତ୍ରିତ ହୋଇଥିବା ବାସ୍ତବ ଖଳନାୟକ ମାନଙ୍କର ମନ ଭିତରେ ନାନା ପ୍ରମାଦର ସୃଷ୍ଟି କରିଥିଲା ? ପ୍ରମାଦରୁ କ୍ରୋଧ ଜାତ ହେଲା । ସେମାନେ ତୀବ୍ର ରୋଷ ପ୍ରକଟ କରିବାକୁ ଲାଗିଲେ ଏବଂ ସେହି ଫୁତ୍କାର ଭିତରେ ଉପନ୍ୟାସଟିର

ଲେଖିକାଙ୍କୁ ସବୁତେଅବା କୁଆଡ଼େ ମନ କୁଆଡ଼େ ଉଡ଼ାଇ ଦେବେ ବୋଲି ପଣ କରି ବାହାରିଲେ । ଗୁଳା ଭିତରେ ପଡ଼ି ସ୍ଥିର ହୋଇ ଚାଲିଥିବା ବିଶ୍ୱାସଗୁଡ଼ିକର ଧଡ଼ରେ ହୁଲସ୍ଥୁଲ ପଡ଼ି ଯାଇଥିଲା ।

ଉପନ୍ୟାସଟି ଲେଖିବା ପଛରେ କେବଳ ସଂବେଦନଶୀଳତା ନଥିଲା, ଭାବପ୍ରବଣତା ତ ଆଦୌ ନଥିଲା । ତଥ୍ୟ ଅବଶ୍ୟ ରହିଥିଲା । ତଥ୍ୟ ଥିଲା, ତେଣୁ ସତ୍ୟ ମଧ୍ଯ ରହିଥିଲା ଉପନ୍ୟାସଟିର ଲେଖିକା ହିସାବରେ ଶ୍ରୀମତୀ ହାରିଏଟ୍ ଅଧିକ ତଥ୍ୟ ସଂଗ୍ରହ କଲେ । ନିଜର ଉପନ୍ୟାସଟି ମଧ୍ୟରେ କ୍ରୀତଦାସପ୍ରଥାର ଯେଉଁ ଆଲେଖ୍ୟଟିକୁ ସେ ପାଠକମାନଙ୍କର ସମୀପରେ ନେଇ ରଖିବାକୁ ଚେଷ୍ଟା କରିଥିଲେ, ସେଇଟିକୁ ପୁଷ୍ଟ ଓ ପ୍ରମାଣିତ କରି ପାରିଲାଭଳି ତଥ୍ୟଗତ ବିବରଣୀଗୁଡ଼ିକୁ ସିଏ ଏକତ୍ର ସଂଗ୍ରହ କଲେ । ସମ୍ବାଦପତ୍ର ଘାଣ୍ଟିଲେ, କ୍ରୀତଦାସମାନଙ୍କୁ ଭେଟି ସେମାନଙ୍କର ଅଙ୍ଗେ ନିଭା କାହାଣୀଗୁଡ଼ିକୁ ଲିପିବଦ୍ଧ କରି ଆଣିଥିଲେ । ଏଗୁଡ଼ିକୁ କରିବା ଶ୍ରୀମତୀ ହାରିଏଟ୍ଙ୍କ ପକ୍ଷରେ ନିଶ୍ଚୟ ଖୁବ୍ ଶ୍ରମସାପେକ୍ଷ ହୋଇଥିବ । ତଥାପି ଏକ ପ୍ରତିବାଦୀ ପବନକୁ ସାମନା କରିବା ନିମନ୍ତେ ନିଜର ପକ୍ଷଟିକୁ ଯେତିକି ଟାଣ କରି ପ୍ରସ୍ତୁତ ହେବା କଥା, ସିଏ ଅତ୍ୟନ୍ତ ସ୍ଥିରଚିତ୍ତ ହୋଇ ସେତିକି ପ୍ରସ୍ତୁତ ହୋଇଥିଲେ । ପ୍ରତିବାଦୀମାନଙ୍କ ପରି ଆଦୌ ବିଚଳିତ ଅଥବା ପ୍ରତିକ୍ରିୟାଶୀଳ ହୋଇନଥିଲେ । ପ୍ରତିଯୁକ୍ତିମାନ ବାଢ଼ି ଦେଇ କୌଣସି କୋଳାହଳ କରିନଥିଲେ । ସିଏ ତଥ୍ୟଗୁଡ଼ିକର ସାହାଯ୍ୟରେ ପ୍ରକୃତ ସ୍ଥିତିଟିକୁ ଦେଖାଇ ଦେଇଥିଲେ । ଜବାବ ଦେଇ ସିଏ ଆଉଗୋଟିଏ ବହି ଲେଖିଲେ । ବହିଟି ୧୮୫୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । A Key to Uncle Tom's Cabin ନାମକ ଏହି ଦ୍ୱିତୀୟ ଗ୍ରନ୍ଥଟିରେ ସିଏ ସମ୍ପୂର୍ଣ୍ଣ ତଥ୍ୟସମ୍ବଳିତ ଭାବରେ ଦେଖାଇ ଦେଲେ ଯେ, ଆଦୌ କୌଣସି ଖଣ୍ଡ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସିଏ ତାଙ୍କର ସେହି ମୂଳ ଉପନ୍ୟାସଟିକୁ ଲେଖିନଥିଲେ । ଆମେରିକାର ସମସାମୟିକ ସମାଜରେ କଳାମାନଙ୍କୁ କ୍ରୀତଦାସ ରୂପେ ଖଟାଇବାର ଯେଉଁ ଧାରାଟି ବେଶ୍ କେତେଶହ ବର୍ଷ ହେଲା ଚାଲିଆସୁଛି ଏବଂ ସମ୍ପୃକ୍ତ କ୍ଷମତାଶୀଳ ପ୍ରାୟ ସମସ୍ତଙ୍କର ତାହା ଯେପରି ସମର୍ଥନ ଲାଭ କରିଛି, ସେଇଟିକୁ ସମସ୍ତଙ୍କର ଗୋଚରକୁ ଆଣିବା ନିମନ୍ତେ ହିଁ ସିଏ ଉପନ୍ୟାସଟିର ରଚନା କରିଥିଲେ । ଉପନ୍ୟାସର ଯାବତୀୟ ଶୈଳୀ ଭିତରେ କାହାଣୀର ଚରିତ୍ରମାନଙ୍କୁ କଳ୍ପନାରୁ ହିଁ ନିର୍ମାଣ କରି ଅଣା ଯାଇଥାଏ ସତ୍ୟ, ମାତ୍ର ତଥାପି ସମଗ୍ର ଭୂମିଟି ଉପରେ ଭିତ୍ତିରୂପେ ଏକ ମାନବିକ ସତ୍ୟ ଅବଶ୍ୟ ରହିଥାଏ । ଏବଂ, କାହାଣୀଟିର ତଳୁ ସେହି ସତ୍ୟଟି ହିଁ ପାଠକ ସମ୍ମୁଖରେ ନିଜକୁ ଉପସ୍ଥାପିତ କରିବାର ପ୍ରୟାସ କରୁଥାଏ ।

ଏହି ଦ୍ୱିତୀୟ ପୁସ୍ତକଟିର ଉପଶୀର୍ଷକ ରୂପେ ଲେଖା ହୋଇଥିଲା : Presenting the Original Facts and Documents upon which the Story is founded, together with Corroborative Statements verifying the Truth of the work ;

ଅଢ଼େଇଶହ ପୃଷ୍ଠାରୁ ଅଧିକ ଏହି ପୃଥୁଳ ପୁସ୍ତକଟିକୁ ସକଳ ଅର୍ଥରେ ମୂଳ ଉପନ୍ୟାସଟିର ଏକ ଅପରିହାର୍ଯ୍ୟ ସହଚର ବୋଲି ହିଁ କୁହାଯିବ । ଦ୍ୱିତୀୟଟି ବ୍ୟତୀତ ସେହି ପ୍ରଥମଟି କେବଳ ଗୋଟିଏ ଉପନ୍ୟାସ ପରି ହିଁ ଲାଗିବ ! ତାହା ପାଠକର ମାନସରେ ଦୁର୍ଗତ ମନୁଷ୍ୟମାନଙ୍କ ପ୍ରତି ଏକ ତୀବ୍ର ସହାନୁଭୂତି ଓ ଅନୁକମ୍ପା ଜାଗ୍ରତ କରି ଆଣିବ । ଉପନ୍ୟାସଟିକୁ ପାଠ କରୁ କରୁ କେତେବେଳେ ରୋଷ ଜାତ ହେବ ଓ ଆଉ କେତେବେଳେ ଆଖି ଲୁହଛଳଛଳ ହୋଇ ଆସିବ । ଏକ ଭଲ ଉପନ୍ୟାସ ହିସାବରେ ତାହା ସାହିତ୍ୟର ଭଣ୍ଡାରରେ ଗୋଟିଏ ସ୍ମରଣୀୟ ନମୁନା ହୋଇ ବି ରହିପାରିବ । ମାତ୍ର, ଦ୍ୱିତୀୟ ବହିଟି ପ୍ରଥମଟିକୁ ସତେଅବା ହାତଗୋଡ଼ ଆଣି ଯୋଗାଇଦେବ,ପାଠକର ବିବେକକୁ ଗତିଶୀଳ କରିବ । ଏହି ଅଧ୍ୟାୟଟିରେ ଆମେ ବର୍ତ୍ତମାନ କିଛି ବାଟଯାଏ ପ୍ରଧାନତଃ ସେହି ଦ୍ୱିତୀୟ ପୁସ୍ତକଟିରେ ରହିଥିବା ତଥ୍ୟଗୁଡ଼ିକର କିୟଦଂଶକୁ ଖୋଲାଇ ଦେଖିବା । ତେବେ ସେହି ସମୟର ଚିତ୍ରଟି ଆମ ଆଗରେ ଅଧିକ ବାସ୍ତବ ହୋଇ ଉଠିବ । କେଡ଼େ ଟିକି ଟିକି ଅକ୍ଷରରେ ଛପା ହୋଇଥିବା ବହିଟି ଆମକୁ ଯେ କେବଳ ସେହି ସମୟର ଏକ ନିର୍ଦ୍ଦିଷ୍ଟ ଶୋଷଣ ଚିତ୍ର ବିଷୟରେ ଅବଗତ କରାଇ ଆଣିବ, ତା' ନୁହେଁ, ଆମର ବର୍ତ୍ତମାନ ସମୟଟିକୁ ମଧ୍ୟ ଅଧିକ ସହାନୁଭୂତି ସହିତ ଅନୁଭବ କରିବାରେ ପ୍ରଭୂତ ସହାୟତା କରିବ । ଆମେରିକାର ସେହି ଯୁଗଟିର ଦର୍ପଣ ଉପରେ ଆମେ ହୁଏତ ନିଜକୁ ମଧ୍ୟ ଅଧିକ ପ୍ରାଞ୍ଜଳ ଭାବରେ ଦେଖିବାଲାଗି ସମର୍ଥ ହେବା । ଏବଂ, ଶ୍ରୀମତୀ ହାରିଏଟ୍‌ଙ୍କଠାରେ କୃତଜ୍ଞ ହେବାରେ ଲାଗିଥିବା ।

ଏହି ସହଚର-ପୁସ୍ତକଟିର କ୍ଷୁଦ୍ର ମୁଖବନ୍ଧରେ ଶ୍ରୀମତୀ ହାରିଏଟ୍ ଲେଖିଛନ୍ତି : ଯେଉଁ ପୁସ୍ତକଟିକୁ ଲେଖିକା ଏଠାରେ ସର୍ବସାଧାରଣଙ୍କ ପାଖରେ ନେଇ ପହଞ୍ଚାଇବାକୁ ଇଚ୍ଛା କରୁଛନ୍ତି, ସେ ସେଇଟିକୁ ମୋଟେ ଖୁସୀ ହୋଇ ଲେଖିନାହାନ୍ତି, ଅତ୍ୟନ୍ତ ଦୁଃଖ ଅନୁଭବ କରି ଲେଖିଛନ୍ତି । ପୁନଶ୍ଚ, ''କଳ୍ପନାରୁ ପ୍ରସୂତ ଲେଖାଗୁଡ଼ିକରେ ଅପେକ୍ଷାକୃତ ଅଧିକ ସୁଖକର ଦୃଶ୍ୟ ତଥା ଚରିତ୍ରଗୁଡ଼ିକୁ ଖଞ୍ଜିଦେଇ ଜୀବନର କଠୋର କିମ୍ବା ଭୟଙ୍କର ଦିଗଟିରୁ ରକ୍ଷା ପାଇ ଲୁଚିଯିବା ହୁଏତ ସମ୍ଭବ ହୋଇଥାଏ । ମାତ୍ର ତଥ୍ୟ ବାସ୍ତବ ଘଟଣା ଦ୍ୱାରା ଲେଖା ହେଉଥିବା କୌଣସି ବହିରେ ସେପରି ଆଶ୍ରୟ ପାଇଯିବାର ଆଦୌ ଅବକାଶ ନଥାଏ । ଏବଂ, ପ୍ରସ୍ତୁତ ପୁସ୍ତକଟିରେ ମୁଁ ଏପରି ଏକ ପରିସ୍ଥିତିର ସମ୍ମୁଖୀନ ହେବାକୁ ବାଧ୍ୟ ହେଉଛି ଯେ, ଯଦି ତୁମେ ପ୍ରକୃତରେ ସତକଥା ହିଁ କହିବ, ତେବେ ସେହି ସତ୍ୟଟି ଅବଶ୍ୟ ଅତ୍ୟନ୍ତ ଭୟଙ୍କର ହିଁ ହେବ । ପ୍ରକୃତ କଥା କହିବାକୁ ଗଲେ, କ୍ରୀତଦାସ ପ୍ରଥାର କାହାଣୀଟି ମଧ୍ୟରେ ଏପରି କୌଣସି କଥା ନାହିଁ,ଯାହା ଶୁଣିବାକୁ ମଧୁର ଓ ସୁଖକର ଲାଗିବ ।'' ଉପସଂହାର କଲା ପରି ଲେଖିକା କହିଛନ୍ତି ଯେ, ପୃଥିବୀରେ ଅନେକ ପ୍ରକାରର ଦାସତ୍ୱ ରହିଛି ; ମାତ୍ର ଏହି କ୍ରୀତଦାସପ୍ରଥାର ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତଟିକୁ ସମ୍ପୂର୍ଣ୍ଣ ଭାବରେ କେବଳ ଏକ ମନ୍ଦ ବୋଲି ହିଁ କୁହାଯିବ । ଆଦ୍ୟ ପ୍ରାନ୍ତ କେବଳ ମନ୍ଦ ହିଁ ମନ୍ଦ ଓ ଅତ୍ୟନ୍ତ ଦୁଃଖଦାୟକ ।

ନକରିବାକୁ ପ୍ରାୟ ସବୁବେଳେ ଫୁସୁଲାଇ ଆସିଛି । କଥିତ ଅଛି ଯେ, ଅଷ୍ଟାଦଶ ଶତାବ୍ଦୀରେ ପାରିସ୍ ସହରରେ ପାଦ୍ରୀମାନେ ଗରିବମାନଙ୍କର ବସ୍ତିକୁ ଯାଇ କହୁଥିଲେ : ''ତୁମମାନଙ୍କୁ ଭଗବାନ ଯେ ଦରିଦ୍ର କରି ରଖିଛନ୍ତି, ତାଙ୍କୁ ତୁମେମାନେ ସେଥିଲାଗି ଅଶେଷ ଧନ୍ୟବାଦ ଦିଅ, କାରଣ, ଆପଣାର ଅଶେଷ ଅନୁକମ୍ପା ଦେଖାଇ ସିଏ ତୁମମାନଙ୍କୁ ଧନର ପ୍ରଲୋଭନଜାଲରୁ ସୁରକ୍ଷିତ କରି ରଖିଛନ୍ତି । ତଦ୍ଵାରା ତୁମମାନଙ୍କର ଆତ୍ମା ପ୍ରକୃତରେ ଅଧିକ ସୁରକ୍ଷିତ ହୋଇ ରହିପାରିଛି ।'' ଏବଂ, ଆଉ ଜଣେ ପାଦ୍ରୀଙ୍କର ପ୍ରଚାର ଅନୁସାରେ, ଭଗବାନ ଗୋଟାଏ ନୁହଁ, ଏକାବେଳେକେ ତିନିତିନିଟା ସ୍ଵର୍ଗରାଜ୍ୟ ତିଆରି କରି ରଖିଛନ୍ତି : ଗୋଟାଏ ଦରିଦ୍ରମାନଙ୍କ ପାଇଁ, ଗୋଟିଏ ଅଳ୍ପ ସମ୍ପତ୍ତି ରହିଥିବା ଲୋକମାନଙ୍କ ପାଇଁ ଏବଂ ତୃତୀୟଟି ଧନୀ ଓ ବୃହତ୍‌ମାନଙ୍କ ପାଇଁ । ଆମେରିକାରେ ଧର୍ମ ଓ ଧର୍ମନିୟାମକମାନେ ଗୋରା ମାଲିକ ମାନଙ୍କର ପଟେ ରହିଥିଲେ । କଳା କ୍ରୀତଦାସମାନେ ଯେତିକି ଧର୍ମ ଦ୍ଵାରା ବୋଲ ମାନି ଭାଗ୍ୟ ଆଦରି ରହିଯିବେ, ସେମାନଙ୍କୁ ସତେଅବା ସେତିକି ଧର୍ମ ଦ୍ଵାରା ଶୀତଳ କରି ରଖିବାର ଚେଷ୍ଟା କରା ଯାଇଥିଲା । ଭଗବତ୍-ପ୍ରେରଣା ସୁସ୍ଥ ହୋଇଥିଲେ ତାହା ଜଣେ ମନୁଷ୍ୟକୁ ଶକ୍ତିର ଉଦ୍‌ବୋଧନ ଦିଏ, ଏକ ଅଭିନବ ଏବଂ ସର୍ବବିମୋଚନକାରୀ ଆତ୍ମଆବିଷ୍କାରର ଉଦ୍‌ବୋଧନ ଆଣି ଦେଇଥାଏ । ମାତ୍ର, ଏହି ପୃଥିବୀର କୁଟିଳ ଅନୁଷ୍ଠାନ ତଥା କଉଶଳୀ କର୍ତ୍ତାମାନଙ୍କର ପାଲରେ ପଡ଼ିଯାଇ ଧର୍ମର ମାଧ୍ୟମରେ ପ୍ରଚାରିତ ହେଉଥିବା ଭଗବଦ୍‌ବାର୍ତ୍ତାମାନ ମଣିଷମାନଙ୍କୁ ନାନାଭାବେ ଦାସ କରି ରଖିବାର ଫିକର କରି ଆସିଛି । ଏବେ ମଧ୍ୟ କମ୍ କରୁନାହିଁ । ଭିତରର ଅସଲ ଆଲୁଅଟି ସହିତ ଯଥାର୍ଥ ପରିଚୟଟିର ସ୍ଥାପନ ହୋଇଗଲେ ମଣିଷମାନେ ଭଗବାନଙ୍କର ଯେତିକି କାମରେ ଲାଗି ପାରୁଥାନ୍ତେ, ସେକଥା ଆଉ ଆଦୌ ସମ୍ଭବ ହେଉନାହିଁ । ଏବଂ, ସେହି ଆଲୁଅଟି ସହିତ ଏକ ସତପରିଚୟ କରାଇଦେବା ବ୍ୟତୀତ ଭଗବାନ୍‌ଙ୍କର ବି ଆମ ସଂସାରରେ ଆଉ କି କାମ ରହିଛି ?

\+ + +

ଆମେରିକା ଭୂଖଣ୍ଡରେ କୃଷ୍ଣକାୟ କ୍ରୀତଦାସ ମାନଙ୍କର କଷଣ- କାହାଣୀ ବିଷୟରେ ଆମେ ପିଲାଦିନେ ମାତ୍ର ଦୁଇଟି ବହିର ପରିଚୟରେ ଆସିଥିଲୁ । ଖୁବ୍ ସମ୍ଭବ ଏବେ ମଧ୍ୟ ଏ ସମ୍ବନ୍ଧରେ ଓଡ଼ିଶାର ଜ୍ଞାନସୀମା ସେତିକି ଭିତରେ ରହିଯାଇଛି । ଗୋଟିଏ ହେଉଛି ଟମ୍‌କକାଙ୍କ କୁଟୀର,- Harriet Beecher Stowe ଙ୍କର ପ୍ରଖ୍ୟାତ ଉପନ୍ୟାସ (?) Uncle Tom's Cabin ର ଓଡ଼ିଆ ଅନୁବାଦ । ଆମେ ବହିଟିକୁ ଖୁବ୍‌ବେଶୀ ଅର୍ଥରେ ମୋଟେ ଗୋଟିଏ ଅନୁବାଦ ବୋଲି କହି ପାରିବାନାହିଁ । ଖୁବ୍ ଭଲଭାବରେ ମନେଅଛି, ପିଲାଦିନେ ସେଇଟିକୁ ପଢୁଥିବା ସମୟରେ ତାହା ଏକ ଅନୁବାଦ ବୋଲି ଆମର ମୋଟେ ହୋସ୍ ରହୁନଥିଲା । ଯାବତୀୟ ଘଟଣା ସତେଅବା ଆମରି ଗାଆଁ କୌଣସି ଆରସାହୀରେ ଘଟୁଥିବା ପରି ବୋଧ ହେଉଥିଲା ଏବଂ ଆମେରିକା ନାମକ ଦେଶଟି ଆମଠାରୁ ଏତେଗୁଡ଼ାଏ ଦୂର ବୋଲି ମୋଟେ ଲାଗୁନଥିଲା । ଏକାଧିକ ଦୃଷ୍ଟିରୁ ବିଚାର କରି କୁହାଯାଇ ପାରିବ

ଯେ, ଆମେରିକାର ସେହି କ୍ରୀତଦାସମାନଙ୍କର ଜୀବନକୁ ବର୍ଣ୍ଣନା କରି ସେଇଟି ପରି ଏକ ସଂବେଦନଶୀଳ ବହି ହୁଏତ ଏବେ ମଧ ଲେଖା ହୋଇନାହିଁ । ଉପନ୍ୟାସଟା ସତେଅବା ଏକାବେଳେକେ ଏକ ସତକଥାର ଜୀବନ୍ତ ଦେହକୁ ଧାରଣ କରିଛି ଏବଂ ନିତାନ୍ତ ସତକଥାମାନଙ୍କୁ ଉପନ୍ୟାସର ପରିଚ୍ଛଦରେ ଏକାବେଳେକେ ଆମ ହୃଦୟର ପରିଧି ଭିତରକୁ ଆଣି ଉକୁଟାଇ ଦିଆଯାଇଛି । ବହୁସଂଖ୍ୟକ ଉପନ୍ୟାସରେ ସେପରି କାହିଁକି ହୋଇ ପାରେନାହିଁ କେଜାଣି ?

ଦ୍ୱିତୀୟଟି ମଧ ଓଡ଼ିଆ ସାହିତ୍ୟରେ ଗୋଟିଏ ଉପନ୍ୟାସ ବୋଲି ସୁମାରି ହୋଇଥାଏ । 'ଦାସତ୍ୱମୋଚନ' ନାମକ ସେହି ଗ୍ରନ୍ଥଟିର ପ୍ରଣେତା ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କଦ୍ୱାରା ପ୍ରସ୍ତୁତ ଏହି ପୁସ୍ତକଟି ଏକଦା ଆମେରିକାର ନିଗ୍ରୋ-ମୁକ୍ତି ଆନ୍ଦୋଳନର ପୁରୋଭାଗରେ ରହିଥିବା ଶ୍ରୀଯୁକ୍ତ ବୁକର୍ ଟି. ୱାଶିଙ୍ଗଟନ୍‌ଙ୍କର Up from Slavery ଗ୍ରନ୍ଥଟିର ଛାୟାରେ ଲେଖା ହୋଇଛି ବୋଲି ଆମକୁ ସୂଚନା ଦେଇଥିଲେ ମଧ ଅନେକେ ବହିଟିକୁ ଏକ ମୌଳିକ ଅର୍ଥାତ୍ ନିଜଫନ୍ଦା ଉପନ୍ୟାସର ପାହିଆ ପ୍ରଦାନ କରିଥାନ୍ତି । ଉଲ୍ଲିଖିତ ଉଭୟ ପୁସ୍ତକର ଏକ ତୁଳନାତ୍ମକ ବିଚାର ମଧ ଅବଶ୍ୟ କରା ଯାଇପାରେ । ଏହି ସନ୍ଦର୍ଭରେ, ସବାଆଗ ଯେଉଁ କଥାଟି ଆମ ଆଖିକୁ ଜଳଜଳ ହୋଇ ଦିଶିଯିବ, ତାହା ହେଉଛି, 'ଦାସତ୍ୱ-ମୋଚନ' ହୁଏତ ସେଇ କାଳେ ଅର୍ଥାତ୍ ପ୍ରାୟ ପଚାଶ ଷାଠିଏ ବର୍ଷ ତଳେ ଯାହା ଥରେ ଛାପା ହୋଇଥିଲା । ତାହାର ସମ୍ଭବତଃ କୌଣସି ଦ୍ୱିତୀୟ ମୁଦ୍ରଣ ହୋଇନାହିଁ ଏବଂ ତାହା ଆଉ ବଜାରରେ ମିଳୁନାହିଁ । ଅର୍ଥାତ୍ ସେହି ବହିଟିକୁ ଆଉ କେହି ପଢୁନାହାନ୍ତି । ହଁ, ପଣ୍ଡିତ ଗୋଦାବରୀଶଙ୍କର ଗ୍ରନ୍ଥାବଳୀରେ ହୁଏତ ସେହି ବହିଟିକୁ ତାଙ୍କର ଅନ୍ୟ ରଚନାଗୁଡ଼ିକ ସହିତ ଏକତ୍ର ଗୁନ୍ଥି ଦିଆଯାଇଛି । ଅପରେ ପକ୍ଷରେ, 'ଟମକକାଙ୍କ କୁଟୀର' ଏବେ ମଧ କିଣିବାକୁ ମିଳୁଛି । ସଂସ୍କରଣ ପରେ ସଂସ୍କରଣ ଛାପା ଯାଉଛି । ବହିଟକୁ ତରୁଣ ଓ ବୟସ୍କ ପିଲା ଏବଂ ପାକଳ ସମସ୍ତେ ପଢୁଛନ୍ତି । ଅତିଶୟ ଆଗ୍ରହର ସହିତ ପଢୁଛନ୍ତି । ଏଥିପାଇଁ କ'ଣ ସବୁଯାକ ଶ୍ରେୟଃ ତାହାର ଅନୁବାଦକ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀଙ୍କୁ ଦିଆଯିବ ?

'ଟମ୍‌କକାଙ୍କ କୁଟୀର' ରେ କ'ଣ ଅଛି ଯାହା 'ଦାସତ୍ୱମୋଚନ' ନାମକ ସେହି ଅନ୍ୟ ପୁସ୍ତକଟିରେ ନାହିଁ ଏବଂ ତେଣୁ ଆମର ଅନୁଭବର ସେତେ ଗଭୀର ଯାଏ ଯାଇ ପାରୁନାହିଁ ? ସଚରାଚର ସଂଗ୍ରାମଟିଏ ଲଢ଼ାଯାଏ ଏବଂ ତାହାର ଫଳଶ୍ରୁତି ସ୍ୱରୂପ ଏକ ବିଜୟ ମଧ ହାସଲ କରା ଯାଇଥାଏ । ଯେଉଁ ଇପ୍ସିତ ବିଜୟଟିକୁ ସଂଗ୍ରାମପଥର ଶିଖର ଦେଶରେ ସ୍ଥାପନ କରି ସଂଗ୍ରାମୀମାନେ ଆଗକୁ ଗୋଡ଼ କାଢ଼ନ୍ତି, ସେହି ବିଜୟ ହାତପାଆନ୍ତାକୁ ଆସି ଅଧିକାଂଶ କ୍ଷେତ୍ରରେ କେଜାଣି କାହିଁକି ଭାରି ଅନ୍ୟଭଳି ହୋଇଯାଏ । ଆମେ ଯାହା ଚାହିଥିଲୁ, ସତେଯେପରି ତା'ଠାରୁ ଭିନ୍ନ ଆଉଟିଏ ଉପଲବ୍ଧ ହୋଇଥିବା ପରି ମନେ ହେଉଥାଏ । ସଂଗ୍ରାମର ଇତିହାସ କେଷଣର ଇତିହାସ, ରାତ୍ରିର ଏକ ସଂଗଠିତ ଅନ୍ଧକାର ମଧରେ ତଥାପି ଅପେକ୍ଷା କରିବାର ଏବଂ ସକାଳଟିଏ ଅବଶ୍ୟ ଆସିବ ବୋଲି

ଆଶା କରିବାର ଏକ ପର୍ଯ୍ୟାୟ । ଯାବତୀୟ ଅର୍ଥରେ ଏକ ବିଶ୍ୱାସର ଇତିହାସ । ସର୍ବଦା ଏକ ସ୍ଥାନୀୟ ଲକ୍ଷ୍ୟର ସାଧନ ନିମନ୍ତେ ତାହା ଲଢ଼ା ଯାଉଥିଲେ ମଧ ସତେଅବା ସବୁକାଳର ସମଗ୍ର ମନୁଷ୍ୟଜାତିର ସବୁକିଛି କଷଣ ତଥା ପ୍ରତୀକ୍ଷାର ତାହା ଏକ ପ୍ରତିନିଧିମୂଳକ ପ୍ରତୀକ ବୋଲି ଭାରି ଅନୁଭବ ହେଇଥାଏ । ଆପଣାକୁ ବିଧାତାଙ୍କର ଏକ ନିମିତ୍ତବଦ୍ଧ ଲାଗୁଥାଏ । 'ଟମ୍‌କକାଙ୍କ କୁଟୀର' ସମ୍ଭବତଃ ସେହି ପ୍ରତୀକାତ୍ମକ ପ୍ରତୀକ୍ଷାର ଇତିହାସ, ଉପନ୍ୟାସର ବେଢ଼ଣଟାଏ ଦେହରେ ପକାଇଥିଲେ ମଧ ଏକ ଇତିହାସ । ସତେଅବା ଆମ ସମସ୍ତଙ୍କର ଇତିହାସ, -ସେଇଥିପାଇଁ ଏତେ ଜୀବନ୍ତ ଓ ଏତେ ସ୍ପର୍ଶସମର୍ଥ । ନିଗ୍ରୋମୁକ୍ତିର ଆନ୍ଦୋଳନ ଫଳରେ ଆମେରିକାରେ କୃଷ୍ଣକାୟମାନେ ନାଗରିକ-ସ୍ୱୀକୃତି ଲାଭ କଲେ । ଦେଶରେ ଆଇନ୍ କରି କ୍ରୀତଦାସ-ପ୍ରଥାକୁ ରଦ୍ଦ କରି ଦିଆ ଯାଇଥିଲା । ସବୁକିଛି ଗୁଳା ଭିତରେ ପଡ଼ିଗଲା ଓ ଗୁଳାରେ ଚାଲିଲା । ସଂଗ୍ରାମ ସରିଗଲା ବାଗିର୍ ମନେହେଲା । ସେହିପରି ଏକ କାରଣରୁ ଦୁଇ ବହିର ଭାଗ୍ୟ ଏପରି ଅଲଗା ଅଲଗା ପରିଣାମର ସମ୍ମୁଖୀନ ହେଲେ କି ? ଗୋଟିକୁ ସମସ୍ତେ ପ୍ରାୟ ପାସୋରି ପକାଇଲେ ଏବଂ ଅନ୍ୟଟି ତଥାପି ପୃଥିବୀଯାକର ଚିତ୍ତକୁ ଏପରି ଅନ୍ତରଙ୍ଗ ଭାବରେ ବିକ୍ଷୁବ୍ଧ କରି ରଖିପାରିଲା ?

ପ୍ରାୟ ଦେଢ଼ଶହ ବର୍ଷ ତଳେ ଅର୍ଥାତ୍ ୧୮୫୦ ଖ୍ରୀଷ୍ଟାବ୍ଦର ପାଖାପାଖି ହୋଇ ଶ୍ରୀମତୀ ହାରିଏଟ୍ ଷ୍ଟୋ'ଙ୍କର Uncle Tom's Cabin ଉପନ୍ୟାସଟି ପ୍ରକାଶିତ ହୋଇଥିଲା । ସେତେବେଳେ ଆମେରିକାର ମୁଖ୍ୟ ରାଜ୍ୟମାନଙ୍କରେ କ୍ରୀତଦାସ ପ୍ରଥାଟି ପ୍ରାୟ ପୂର୍ଣ୍ଣସ୍ୱୀକୃତ ଭାବରେ ଚାଲିଥାଏ । ଆମେରିକାକୁ ନିଜର ଅଭିନବ ଅଥଚ ଅନନ୍ୟ ସ୍ୱର୍ଗଟିଏ ପରି ଦେଖୁଥିବା ଗୋରାମାନେ ପ୍ରାୟ ଚିନ୍ତାମୁକ୍ତ ଭାବରେ ଏପାଖ ପୃଥିବୀରେ ଏକ ଅଭୂତପୂର୍ବ ସାମୂହିକ ଆସ୍ଥାନଟିଏ ଗଢ଼ିବାରେ ଲାଗି ପଡ଼ିଥାନ୍ତି । ପୁରୁଣା ପୃଥିବୀ ତାହାର କୌଣସି ସମ୍ବାଦ ବି ପାଉନଥାଏ । ଏବଂ, ଇଉରୋପର ସମାଜଗୁଡ଼ିକ ମଧ ସେହି ବିଷୟରେ କେତେ କମ୍ ଜାଣିଥାନ୍ତି । ଇଉରୋପର ଯେଉଁସବୁ ରାଷ୍ଟ୍ର ନିଜ ବାଣିଜ୍ୟ କମ୍ପାନୀମାନଙ୍କର ଅଙ୍କୁଶ ପ୍ରୟୋଗ କରି ଉପନିବେଶ ଗୁଡ଼ିକର ଶୋଷଣ କରୁଥିଲେ, ସେହିସବୁ ଦେଶରେ ସାଧାରଣ ମନୁଷ୍ୟମାନେ ସେହି ଶୋଷଣ ବିଷୟରେ ଅନେକ ସ୍ଥଳରେ ବହୁତ କମ୍ ଜାଣିଥିଲେ । ଜାତୀୟତାବାଦର ମିଛ ସ୍ଫୀତିଗୁଡ଼ାକ ସେତେବେଳେ ସେହି ମନୁଷ୍ୟମାନଙ୍କୁ ବହୁ ଭ୍ରମ ତଥା ଅସତ୍ୟ ଦ୍ୱାରା ଫୁଲାଇ ରଖିଥିଲା । ଆଫ୍ରିକା ଏବଂ ଏସିଆର କୋଟି କୋଟି ମନୁଷ୍ୟଙ୍କୁ ଔପନିବେଶିକ ଶାସନ ଦ୍ୱାରା ଆଧୁନିକ ସଭ୍ୟତା ତଥା ଉନ୍ନୟନର ଆଲୋକ ମଧକୁ ଅଣାଯାଉଛି ବୋଲି ସେମାନଙ୍କୁ କୁହା ଯାଉଥିଲା । ସେମାନଙ୍କର ବୁଝିବାରେ ସେମାନଙ୍କ ଦେଶରୁ ପାଦ୍ରୀ-ଅନୁଷ୍ଠାନମାନେ ବହୁ ତ୍ୟାଗ ସ୍ୱୀକାର କରି ଅନ୍ଧକାର ଏବଂ ଅନ୍ଧବିଶ୍ୱାସର ଦାଉ ସହ୍ୟ କରୁଥିବା ମନୁଷ୍ୟମାନଙ୍କ ମଧରେ ଏକମାତ୍ର ସଦ୍ଧର୍ମର ପ୍ରସାର କରି ବିଚରାମାନଙ୍କ ପାଇଁ ସ୍ୱର୍ଗକୁ ଯିବାର ସମ୍ଭାବନାଟିକୁ ଆଣି ଦେଉଛନ୍ତି ବୋଲି ଏକ ବଦ୍ଧ ଧାରଣା ସେମାନଙ୍କୁ ପ୍ରାୟ ପ୍ରତିକ୍ରିୟାହୀନ କରି ରଖିଥିଲା ।

ଉପନିବେଶ ବଢ଼ାଇବାର ସେହି ପର୍ଯ୍ୟାୟଟିରେ ଆଟଲାଣ୍ଟିକ୍ ମହାସାଗରରେ ରତ୍ନ ଲୋଭୀ ମାନଙ୍କର ଯେଉଁ ପ୍ରତିଦ୍ୱନ୍ଦ୍ୱିତାପୂର୍ଣ୍ଣ ସମରଟି ଚାଲିଥିଲା ଓ ଆଫ୍ରିକାରୁ ଯେପରି କୃଷ୍ଣକାୟ ମନୁଷ୍ୟମାନଙ୍କୁ ଧରି ନିଆଯାଇ ଆମେରିକାକୁ ଆବାଦଯୋଗ୍ୟ କରିବାର ପରାକ୍ରମୀ ପ୍ରୟାସମାନ କରା ଯାଉଥିଲା, ଇଉରୋପର ସାଧାରଣ ମଣିଷମାନେ ସେହି ଚିତ୍ରଟି ସହିତ ବହୁତ କମ୍ ପରିଚିତ ହୋଇ ପାରୁଥିଲେ । ଆମେରିକାର ଗୋରାମାନେ ଏକ ସଂଗ୍ରାମ ଦ୍ୱାରା ସେଠାରୁ ଇଂରେଜ ଶାସନକୁ ନିକାଲି ଦେବା ପରେ ଏବଂ ମଧ ଓ ଦକ୍ଷିଣ ଆମେରିକାର ଆଇବେରୀୟମାନେ ଇଉରୋପର ସ୍ପେନ୍ ଓ ପର୍ଟୁଗାଲ ସହିତ ସମ୍ପର୍କ ତୁଟାଇ ସେହି ନୂଆ ଭୂମିଗୁଡ଼ିକରେ ହିଁ ସ୍ଥାୟୀ ଭାବରେ ଘର କରି ରହିବାର ନିଷ୍ପତ୍ତି କରିବାପରେ ଆମେରିକା ଅବଶିଷ୍ଟ ପୃଥିବୀ ନିମନ୍ତେ ସତେଅବା ଏକ ଦୂର ଅରଣ୍ୟ ପରି ହୋଇ ରହିଲା । ଆପଣାକୁ ବିଶ୍ୱ-ରାଜନୀତି ତଥା ପ୍ରାୟ ଯାବତୀୟ ଘଟଣାପ୍ରବାହରୁ ଛିନ୍ନ କରି ରଖି ଆମେରିକାର ଶ୍ୱେତକାୟ ସମାଜ ସେଠାରେ ଯେଉଁ ଅମାନୁଷିକତା ସହିତ ନିଜର ସ୍ୱତନ୍ତ୍ର ଆମେରିକାଟିର ନିର୍ମାଣ କରିବାରେ ଲାଗି ପଡ଼ିଲା, ବୃହତ୍ତର ବିଶ୍ୱ ତ ଆହୁରି ଅଧିକ ଦୂରର କଥା, ଇଉରୋପର ସାଧାରଣ ଜୀବନ ପାଇଁ ମଧ ତାହା ଅଗୋଚରପ୍ରାୟ ହୋଇ ରହି ଯାଇଥିବ । ସେହି ଅବାଧ ଅଗ୍ରଗତି ଏବଂ ଆଧିପତ୍ୟର ଶାନ୍ତିଭଙ୍ଗ କରି ଯେତେବେଳେ Uncle Tom's Cabin ନାମକ ଏହି ବହିଟି ପ୍ରକାଶିତ ହେଲା, ସେତେବେଳେ ଯେ ସେଠି ନ୍ୟସ୍ତସ୍ୱାର୍ଥମାନେ ଏକାବେଳେକେ ଚିହିଙ୍କି ଉଠିଥିବେ ଏବଂ ସମସ୍ୱରରେ ତାହାର ପ୍ରତିବାଦ କରି ଉଠିଥିବେ, ସେହି କଥାଟିକୁ ଖୁବ୍ ସହଜ ଭାବରେ ବୁଝି ହୋଇଯିବ ।

ଜଣେ ଅଜ୍ଞବର୍ଷୀୟା ମହିଳା ଏଭଳି ଉପନ୍ୟାସଟିଏ ପ୍ରସ୍ତୁତ କରି ପ୍ରକାଶ କରିବାକୁ କିପରି ଏବଂ କାହିଁକି ସାହସ କଲେ ? ଘର କଥାଗୁଡ଼ିକୁ ସିଏ କାହିଁକି ପଦାରେ ନେଇ ପକାଇଦେଲେ ? ଅବଶ୍ୟ ଏକଥା ସତ ଯେ, ସେତେବେଳକୁ ଇଉରୋପର ଏକାଧିକ ଦେଶରେ ଏହି ଘଟଣାଗୁଡ଼ିକ କ୍ରମେ ଜଣା ପଡ଼ିବାକୁ ଆରମ୍ଭ କଲାଣି । ଇଂଲଣ୍ଡ ସମେତ ଆହୁରି କେତୋଟି ଦେଶରେ କ୍ରୀତଦାସ ମାନଙ୍କୁ ଆଫ୍ରିକାରୁ ନେଇ ଆମେରିକାରେ ବିକ୍ରୀ କରିବାଟାକୁ ଗୋଟିଏ ଅପକର୍ମ ବୋଲି କୁହାଗଲାଣି ଓ ତାହାକୁ ନିଷିଦ୍ଧ ବୋଲି ଘୋଷଣା କରି ସରକାରଙ୍କ ସ୍ତରରେ ଆଇନ୍ ମଧ ପାସ୍ ହୋଇଗଲାଣି । ଫ୍ରାନ୍ସରେ କ୍ରୀତଦାସମାନଙ୍କ ପ୍ରତି ଅନୁକମ୍ପା ପ୍ରକଟ କରି ଦାସପ୍ରଥାକୁ ଉଠାଇ ଦିଆଯାଉ ବୋଲି ଦାବୀ କରି Les Amis des Noire (କୃଷ୍ଣକାୟମାନଙ୍କର ବନ୍ଧୁମାନେ) ଭଳି କେତେ ସଂଗଠନ ବାହାରକୁ ବାହାରିଲେଣି । ଏହି ଆନ୍ଦୋଳନର ସମର୍ଥନ କରି ଇଂଲଣ୍ଡରେ ଶ୍ରୀଯୁକ୍ତ ଉଇଲ୍‌ବର୍‌ଫୋର୍ସ୍ ଓ କ୍ଲାର୍କ୍‌ସନ୍ ପ୍ରଭୃତି ନେତାଙ୍କର ଆବିର୍ଭାବ ମଧ ହେଲାଣି । ମାତ୍ର, ଦୂର ଆମେରିକାରେ ତଥାପି ସେଗୁଡ଼ିକର ଆଘାତ ଯାଇ ବାଜୁନଥାଏ । ଏକ ସ୍ୱାଧୀନ ଦେଶ ହିସାବରେ ଗୋରା ଆମେରିକା ନିଜର ବୀଭତ୍ସତାଗୁଡ଼ିକୁ ନିଷ୍ଠାର ସହିତ ସାମୂହିକ ଜୀବନର ଏକ ଅତ୍ୟାବଶ୍ୟକ

ଅନୁସାରେ ସିନା ରାନ୍ଧୁଣିଆ, ବଢ଼େଇ ମିସ୍ତ୍ରୀ କିମ୍ବା ଘରୋଇ ଚାକର ବୋଲି ଚିହ୍ନଟ କରା ଯାଇଥିବ, ମାତ୍ର ସେମାନେ କେଉଁମାନଙ୍କର ବାପା ବି ହୋଇଥିବେ, ମାଆ ହୋଇଥିବେ, ସ୍ୱାମୀ ବା ସ୍ତ୍ରୀ ମଧ୍ୟ ହୋଇଥିବେ । ମାତ୍ର ସେଥିରେ କାହାରି ଆଦୌ କିଛି ହେଲେ ଯାଇନଥିବ । ସେମାନଙ୍କୁ ଅବଶ୍ୟ ବାଛି କରି ନେବାକୁ ପଡ଼ିଥିବ ଏବଂ ସେହିପରି ଭାବରେ ହୁଏତ କେତେ କେତେ ପରିବାର ଛିନ୍ନଛତ୍ର ହୋଇ ଯାଇଥିବେ । କାରଣ, ଯିଏ ଜଣେ ରାନ୍ଧୁଣିଆ କିଣିବାକୁ ଇଚ୍ଛା କରିଥିବ, ସିଏ ତା'ସହିତ ଥିବା ତା'ର ପାଞ୍ଚଟା ପିଲାଙ୍କୁ କ'ଣ ପାଇଁ କିଣିବାକୁ ଯିବ ? ଏବଂ, ଯିଏ ନିର୍ଦ୍ଦିଷ୍ଟ କରି ଜଣେ ବଢ଼େଇ ମିସ୍ତ୍ରୀ କିଣିବ ବୋଲି ଚାହୁଁଛି, ସିଏ ତା'ର ଘରବାଲୀକୁ କାହିଁକି ସାଙ୍ଗରେ ନେବାକୁ ଇଚ୍ଛା କରିବ ? ଘରବାଲୀ ଜଣେ ଭଲ ରାନ୍ଧୁଣିଆ ହୋଇଥିଲେ ମଧ୍ୟ ସିଏ ତଥାପି ତାକୁ କିଣିବାକୁ ଯିବନାହିଁ । ଗୋଟାଏ ବଢ଼େଇ ମିସ୍ତ୍ରୀକୁ କିଣି ଘରକୁ ଆଣିବା ପାଇଁ କିଣିବା ବାଲାକୁ ହଜାରେ ପନ୍ଦରଶହ ଡ଼ଲାର ଦେବାକୁ ପଡ଼ିବ ଏବଂ ଯିଏ ହାତରୁ ଏତେଗୁଡ଼ାଏ ପଇସା ଦେଇ ତାକୁ କିଣୁଛି, ସିଏ ବଢ଼େଇଟା ଜଣେ ମଣିଷ ଏବଂ ଜଣେ ସ୍ୱାମୀ ହିସାବରେ ତା'ର ଗୋଟିଏ ସ୍ତ୍ରୀ ମଧ୍ୟ ଅଛି ବୋଲି କାହିଁକି ବୋକାଙ୍କ ପରି ଭାବିବ ଓ ଆହୁରି ମହଙ୍ଗା ଭିତରକୁ ଯିବ ?

ଅର୍ଥାତ୍, ବଢ଼େଇଟି ତାକୁ କିଣିଥିବା ଗୋରା ମଣିଷଟି ସହିତ ଯିବ ଏବଂ ତା'ର ସ୍ତ୍ରୀ ଏବଂ ପିଲାମାନେ ସେହିପରି ଦଲାଲ୍ ପାଖରେ ରହିଯିବେ ଓ ଆଉ କେଉଁମାନେ କେବେ ସେମାନଙ୍କୁ କିଣିବେ ବୋଲି ଅପେକ୍ଷା କରି ରହିବେ । ଏହିପରି ଏହି ବିକାକିଣାର ସେହି ଆନୁଷ୍ଠାନିକ କୌତୁକର ସୁଅଭିତରେ ପଡ଼ି କେତେ ପତ୍ନୀ ପତିମାନଙ୍କଠାରୁ ଅଲଗା ହୋଇ ଯାଉଥିଲେ ଓ କେତେ ପିଲା ମଧ୍ୟ ସେମାନଙ୍କର ବାପା ମାଆଙ୍କ ପାଖରୁ ଅଲଗା ହୋଇ ଯାଉଥିଲେ । ଲେଖିକା ଗୋଟିଏ ଏପରି ଘଟଣାର ଉଲ୍ଲେଖ କରିଛନ୍ତି, ଯେଉଁଠି କି ଗୋଟିଏ ମାଆ ତା'ର ଚାରୋଟି ପିଲାଙ୍କର ଗଳାକୁ କାଟି ସେମାନଙ୍କୁ ହତ୍ୟା କରିଥିଲା । ପିଲାମାନେ ସେତେବେଳେ ନିଘୋଡ଼ ନିଦରେ ଶୋଇଥିଲେ । ଶେଷରେ ସିଏ ନିଜ ଗଳାରେ ମଧ୍ୟ ଛୁରୀ ବସାଇଦେଲା ଓ ଆତ୍ମହତ୍ୟା କଲା । ମାଲିକ ପ୍ରଥମେ ଏହି ଘଟଣାଟିର କୌଣସି କାରଣ ଖୋଜି ପାଉନଥିଲେ । ତା'ପରେ କହିଥିଲେ ଯେ ପୂର୍ବଦିନ ରାତିରେ ସିଏ ମାଆକୁ ତା'ର ଦୁଇଟି ପିଲାଙ୍କ ସମେତ ବିକ୍ରୀ କରିଦେବେ ଓ ବାକୀ ଦୁଇଟିଙ୍କୁ ପାଖରେ ରଖିବେ ବୋଲି ଘରେ କଥାବାର୍ତ୍ତା ହୋଇଥିଲେ । କହିବା ବାହୁଲ୍ୟ, ସେହି କଥାବାର୍ତ୍ତା ବିଚାରୀ ମାଆର କାନରେ ମଧ୍ୟ ବାଜିଥିଲା ।

ମଣିଷ ନିମନ୍ତେ ହିଁ ଏହି ପୃଥିବୀରେ ଯାବତୀୟ ପଣ୍ୟର ବିଧାନ ହୋଇଛି । ତଥାପି ଗୋଟାଏ ଗୋଟାଏ ସମାଜ ଏହି ପୃଥିବୀରେ ରହିଥାଏ, ଯେଉଁଥିରେ କି ମଣିଷମାନଙ୍କୁ ମଧ୍ୟ ପଣ୍ୟବତ୍ ବ୍ୟବହାର କରାଯାଏ । ଅର୍ଥାତ୍ ସେହିସବୁ ସମାଜରେ ଥୋକାଏ ଏଭଳି ମଣିଷ ଥାଆନ୍ତି, ଯେଉଁମାନେ କି ଅନ୍ୟ କେତେକଙ୍କୁ ପଣ୍ୟ ପରି ଦେଖନ୍ତି ଓ ପଣ୍ୟଜ୍ଞାନରେ ସେମାନଙ୍କୁ ବ୍ୟବହାର କରନ୍ତି । ଦୁଇଶହ ଦେଢ଼ଶହ ବର୍ଷ ତଳେ କଳା କ୍ରୀତଦାସମାନଙ୍କୁ

ଠିକ୍ ସେହି ରୀତିରେ ପଣ୍ୟ ଭାବରେ ବ୍ୟବହାର କରା ଯାଉଥିଲା ଏବଂ ସମ୍ପନ୍ନ ଗୋରାମାନେ ପୂର୍ଣ୍ଣ ବିବେକରେ ସେକଥା କରୁଥିଲେ । କ୍ରୀତଦାସମାନେ ବିକା ହେଉଥିଲେ, କିଣା ହେଉଥିଲେ ଏବଂ ନିଲାମରେ ଡ଼କା ବି ହେଉଥିଲେ । ଆଉ ଆଉ ଦ୍ରବ୍ୟ ଭଳି ଓ ଆଉ ଆଉ ଦ୍ରବ୍ୟ ସହିତ ବିକାକିଣା ହେଉଥିଲେ ଏବଂ ନିଲାମରେ ଡ଼କା ହେଉଥିଲେ । ଏବଂ, ଖବରକାଗଜ ମାନଙ୍କରେ ଏହି କିଣା, ବିକା ଏବଂ ନିଲାମ ବିଷୟରେ ଏକାଠି ଗୋଟିଏ ଖନ୍ଦାରେ ବିଜ୍ଞାପନମାନ ବାହାରୁଥିଲା । ଶ୍ରୀମତୀ ଷ୍ଟୋ'ଙ୍କର ସହଚର-ପୁସ୍ତକରେ ସେହିପରି କେତେକ ବିଜ୍ଞାପନର ଉଦାହରଣ ପ୍ରଦତ୍ତ ହୋଇଛି । ଯେତେବେଳେ ନ୍ୟାୟାଳୟର ନିଷ୍ପତ୍ତି ଅନୁସାରେ କାହାର ସମ୍ପତ୍ତିକୁ ସର୍ବସାଧାରଣରେ ବିକ୍ରୀ କିମ୍ବା ନିଲାମ କରା ଯାଉଥିଲା ସେତେବେଳେ ମଧ୍ୟ ବିଜ୍ଞାପନର ବିକ୍ରୀ ତାଲିକାରେ କ୍ରୀତଦାସ ତଥା ଅନ୍ୟାନ୍ୟ ପଣ୍ୟଗୁଡ଼ିକୁ ଏକତ୍ର କରି ଉଲ୍ଲେଖ କରା ଯାଉଥିଲା । ଉଦାହରଣ ସ୍ୱରୂପ, ସରକାରୀ ପ୍ରଶାସନର ଏକ ବିଜ୍ଞପ୍ତିରେ ଥରେ ଏହିପରି ଲେଖା ହୋଇଥିଲା : ଏହି ଡ଼ିସେମ୍ବର ଅମୁକ ତାରିଖ ଦିନ ମୃତା ଶ୍ରୀମତୀ ----ଙ୍କ ବାସଗୃହ ସମ୍ମୁଖରେ ନିମ୍ନଲିଖିତ ତାଙ୍କର କେତେକ ସମ୍ପତ୍ତି ନିଲାମ ଦ୍ୱାରା ବିକ୍ରୀ କରାଯିବ । ଯିଏ ସବୁଠାରୁ ଅଧିକ ଡ଼ାକିବେ । ସେଇ ସେଗୁଡ଼ିକୁ କ୍ରୟ କରି ପାରିବେ । ଦ୍ରବ୍ୟଗୁଡ଼ିକ ହେଉଛନ୍ତି : ୨୦୦୦ ବସ୍ତା ଶସ୍ୟଦାନା, ୨୫୦୦୦ ପାଉଣ୍ଡ ପଶୁଖାଦ୍ୟ, ଗହମ, କପାମଞ୍ଜି, କେତେଗୋଟି ଘୋଡ଼ା, ଖଚର, ଗାଈଗୋରୁ, ଘୁଷୁରି ଓ ମେଣ୍ଢା । ଏବଂ, ଏଭଳି ସମ୍ଭାବନା ମଧ୍ୟ ଅଛି ଯେ ଏହି ଦ୍ରବ୍ୟଗୁଡ଼ିକ ସହିତ କେତେକ ତରୁଣ ଓ ସମର୍ଥ ନିଗ୍ରୋ ମଧ୍ୟ ସେହି ସ୍ଥାନରେ ବିକ୍ରୀ ହେବେ । ଏହି ବିକ୍ରୟର ସର୍ତ୍ତାବଳୀ ହେଉଛି ଯେ, ମୋଟ ଦେୟ ୨୫ ଡ଼ଲାରରୁ କମ୍ ହୋଇଥିଲେ କିଣାଳିମାନଙ୍କୁ ତାହା ନଗଦ ପଇଠ କରିବାକୁ ହେବ । ପଚିଶି ଡ଼ଲାରରୁ ଅଧିକ ହେଲେ ପଇଠ ପାଇଁ ବାର ମାସ ମହଲତ ଦିଆଯିବ । ମାତ୍ର, ସେହି ବିକ୍ରୀଦିନ ଠାରୁ ହିଁ ସୁଧର ହିସାବ ହେବ । ....ଠିକ୍ ସେହିପରି ଆଉ ଏକ ବିଜ୍ଞପ୍ତିରେ ଡ଼ାକନିଲାମ ଦ୍ୱାରା କୌଣସି ମୃତ ବ୍ୟକ୍ତିଙ୍କର ୬୬୧ ଏକର ଜମି ବିକ୍ରୀ କରାଯିବ ବୋଲି ଗୋଟିଏ ଘୋଷଣାରେ ୪୬ ଜଣ ଏପରି ନିଗ୍ରୋ ସମର୍ଥଙ୍କର ବିକ୍ରୀ ବିଷୟରେ ମଧ୍ୟ ସୂଚନା ଦିଆ ଯାଇଥିଲା, ଯେଉଁମାନଙ୍କ ମଧ୍ୟରେ ଗାଡ଼ି ଚଳାଇବା ବ୍ୟକ୍ତି, କମାର, ରାନ୍ଧୁଣିଆ ଏବଂ ଘରୁଆ ଚାକରମାନେ ମଧ୍ୟ ରହିଥିଲେ ।

ଆଉଗୋଟିଏ ବିଜ୍ଞପ୍ତିରେ ସେହିପରି, ଜଣେ ମୃତ ବ୍ୟକ୍ତିଙ୍କର ସରକାରଙ୍କ ଦ୍ୱାରା ନିଲାମ ହେଉଥିବା ପଣ୍ୟାଦିର ତାଲିକାରେ ୩୫ ଜଣ ସମର୍ଥ ସବଳ ନିଗ୍ରୋ, କପା ଓ ଶସ୍ୟ, ଘୋଡ଼ା ଏବଂ ଖଚର, କୃଷି-ସରଞ୍ଜାମ, ଘରଆସବାବ୍ ଏବଂ ରୋଷେଇଘରର କେତେକ ଜିନିଷ ଏକତ୍ର ଲିଖିତ ହୋଇ ରହିଥିଲେ । ୧୮୫୨ ନଭେମ୍ବର ମାସରେ ଜନୈକ ନଗରପାଳ ଗୋଟିଏ ବିଜ୍ଞପ୍ତି ଦ୍ୱାରା ଜଣାଇଥିଲେ ଯେ, ଆଗାମୀ ମାସରେ ଅମୁକ ତଥା ତା'ର ପରବର୍ତ୍ତୀ ଦିବସରେ ଆଇନ୍‌ଦ୍ୱାରା ଅନୁମୋଦିତ ସମୟ ମଧ୍ୟରେ ନିମ୍ନଲିଖିତ ଦ୍ରବ୍ୟଗୁଡ଼ିକର ନିଲାମ କରାଯିବ ଏବଂ ସବୁଠାରୁ ଅଧିକ ଡ଼ାକିଥିବା ବ୍ୟକ୍ତି ଦ୍ରବ୍ୟଗୁଡ଼ିକୁ

କ୍ରୟ କରି ପାରିବେ : ଦୁଇଜଣ ନିଗ୍ରୋ, ଦୁଇଟି ଘୋଡ଼ା, ହଳେ ଖଚର, ହଳେ ଶଗଡ଼ ଚକ, ଟେବୁଲ୍, ବିଛଣା ଖଟ ଏବଂ ଘୋଡ଼ା ପିଠିରେ ପଡୁଥିବା ହାଉଦା । ଆଉ ଗୋଟିଏ ବିଜ୍ଞପ୍ତିରେ ତିନୋଟି ବିଲରେ ବିଭକ୍ତ କରା ଯାଇଥିବା ଜମି, ପାଞ୍ଚ ଛଅଜଣ ତରୁଣ ନିଗ୍ରୋ ଏକତ୍ର ନିଲାମରେ ଡ଼କା ହୋଇ ବିକ୍ରୀ ହେବାର ଖବର ମଧ ବାହାରିଥିଲା । ପ୍ରାୟ କୌଣସି ଦ୍ୱିତୀୟ ଶୋଚନା ନରଖି କେଡ଼େ ସହଜରେ ବିକ୍ରୀ ହେବାର ପଣ୍ୟଗୁଡ଼ିକ ମଧରେ ୫୦ ବା ତତୋଽଧିକ ନିଗ୍ରୋ କ୍ରୀତଦାସ, ଗାଈବଳଦ, ଶସ୍ୟ ଦାନା, ପଶୁଖାଦ୍ୟ ଇତ୍ୟାଦି ଇତ୍ୟାଦି ବହୁ ଦ୍ରବ୍ୟକୁ ଏକତ୍ର କରି ଲେଖି ଦିଆ ଯାଉଥିଲା ଯେ, ସେଥିରେ କେଉଁଠାରେ ଆଦୌ କିଛି ଅସ୍ୱାଭାବିକତା ରହିଗଲା ବୋଲି କେହି ବିଚାର କରୁନଥିଲେ । ପଣ୍ଡିତ ମୂର୍ଖ କିମ୍ବା ଶିକ୍ଷିତ ଅଶିକ୍ଷିତ କେହି କେବେହେଲେ ବିଚାର କରୁନଥିଲେ । କେବଳ ସେହିପରି ଲେଖିବାଟା ହିଁ ସତେଅବା ଏକ ପ୍ରଚଳିତ ସଦାଚାରରେ ପରିଣତ ହୋଇ ଯାଇଥିଲା । ଏପରି ଲେଖୁଥିବା ଓ ତାହାର ଅର୍ଥକୁ ସହଜରେ ବୁଝୁଥିବା ସମ୍ପୃକ୍ତ ସମସ୍ତେ ସେମାନଙ୍କର ବୁଝିବାରେ ଧର୍ମରେ ହିଁ ଥିଲେ, ସେମାନଙ୍କର ଦେଶ ସମ୍ପୂର୍ଣ୍ଣ ଭାବରେ ଧର୍ମରେ ଚାଲୁଥିଲା, ସମସ୍ତେ ପବିତ୍ର ଧର୍ମପୁସ୍ତକର ଅନୁଜ୍ଞାଗୁଡ଼ିକୁ ମାନି ଜୀବନ ଅତିବାହିତ କରୁଥିଲେ ଏବଂ ସେମାନଙ୍କର ସମଗ୍ର ସମାଜଟା ମଧ ଧର୍ମ ଅନୁସାରେ ଚାଲିଥିଲା ବୋଲି ଅତ୍ୟନ୍ତ ନିଷ୍ଠାପର ଭାବରେ ବିଶ୍ୱାସ ବି କରୁଥିଲେ । ସମ୍ବାଦପତ୍ର ମାନଙ୍କରେ ପ୍ରାୟ ପ୍ରତ୍ୟେକ ଦିନ ଏହିଭଳି ବିଜ୍ଞପ୍ତିମାନ ବାହାରୁଥିଲା ; ବିକ୍ରେତାମାନେ ଅନ୍ୟ ଯାବତୀୟ ପଣ୍ୟ ସହିତ ସେମାନଙ୍କର କୃଷ୍ଣକାୟ ମନୁଷ୍ୟପଣ୍ୟ ଗୁଡ଼ିକୁ ଅଡ଼ାଇ ଅଡ଼ାଇ ହାଟକୁ ନେଇ ଯାଉଥିଲେ ଏବଂ କ୍ରେତାମାନେ ବି ଅନ୍ୟ ଯାବତୀୟ ପଣ୍ୟ ସହିତ କ୍ରୟ କରା ଯାଇଥିବା ମନୁଷ୍ୟପଣ୍ୟ ଗୁଡ଼ିକୁ ଅଡ଼ାଇ ଅଡ଼ାଇ ଘରକୁ ଫେରୁଥିଲେ । ସେହି ମନୁଷ୍ୟମାନଙ୍କର ତଦନୁରୂପ ଗୁଳାରେ ଅଭ୍ୟସ୍ତ ହୋଇ ରହିଥିବା ବିବେକଟା ପାଇଁ କିଛି ଅନ୍ୟଥା ଭାବିବା ପାଇଁ କୌଣସି ଅବକାଶ ନଥିଲା । ଏବଂ, ଏହି ମଣିଷମାନେ କିଛି ଅନ୍ୟଥା ଭାବୁନଥିବା ପର୍ଯ୍ୟନ୍ତ କୌଣସି ଭଗବାନ ମଧ କାହିଁକି ସେପରି ଭାବନ୍ତେ ? ପୃଥିବୀରେ ମନୁଷ୍ୟମାନଙ୍କୁ ବାଦ୍ ଦେଇ ଭଗବାନ୍ ପ୍ରକୃତରେ କିଛି ଭାବି ପାରନ୍ତି କି ?

ଏବଂ, ପଣ୍ୟ ସହିତ ପଣ୍ୟ ହୋଇ ବିକ୍ରୀ ଓ ଖରିଦ ହେଉଥିବା ସେହି କଳା ମଣିଷମାନେ ବି କ'ଣ ଭାବୁଥିଲେ କେଜାଣି ? ସେମାନେ ମଧ କ'ଣ ପଣ୍ୟଗୁଡ଼ିକ ସହିତ ଏକତ୍ର ବିକାକିଣା ହୋଇ ଆପଣାକୁ କେବଳ ପଣ୍ୟ ବୋଲି ହିଁ ଭାବୁଥିଲେ ? ଅଥବା, ଆଦୌ କିଛିହେଲେ ଭାବୁନଥିଲେ ? ସେମାନେ ଅଭ୍ୟସ୍ତ ହୋଇ ଯାଇଥିଲେ, ଗୁଳାରୁ ବାହାରି ଆଦୌ କିଛି ଭାବି ପାରିବା ସକାଶେ ଅନ୍ତତଃ ଯେତିକି ଆତ୍ମବୋଧ ବା ଅସ୍ମିତା ରହିବା ଏକାନ୍ତ ଆବଶ୍ୟକ, ସେମାନେ କଷଣ ସହିବାର ଏହି ନିତିପ୍ରତିଦିନର ଅରଣ୍ୟ ଭିତରେ ସେଇଟିକୁ କୁଆଡ଼େ ହରାଇ ଦେଇଥିଲେ । ସେମାନେ ପ୍ରାୟ ପୁରୁଷାନୁକ୍ରମେ ସେଇଟିକୁ ହରାଇ ସାରିଥିଲେ । ତାତ୍କାଳିକ ଅସହାୟତାମାନ ଅତି ପ୍ରବଳ ହୋଇ ମଣିଷ

ଭିତରୁ ଯେ କିପରି ତା'ର ସନାତନତା-ବୋଧଟିକୁ ଏକାବେଳେକେ ମୂଳରୁ ଅପହରଣ କରି ନେଇଥାନ୍ତି, ଆମେରିକାରେ ବାଧ୍ୟ କ୍ରୀତଦାସ ହୋଇ ଯାବତୀୟ ପରିସ୍ଥିତି ଦ୍ୱାରା ମଣ ହୋଇଥିବା କଳାମାନଙ୍କୁ ଏକାଧିକ ଅର୍ଥରେ ହୁଏତ ତାହାର ଏକ ଦୃଷ୍ଟାନ୍ତ ବୋଲି କୁହାଯାଇ ପାରିବ । ଏପରି ହେଲେ ସତେଅବା ଦିଗଗୁଡ଼ିକ ଆଦୌ ଦୃଶ୍ୟ ହୁଅନ୍ତିନାହିଁ । ଜୀବନର ଭୂମିଟିରେ ଏପରି କୌଣସି ଦିଗସମ୍ଭାବନା ଆଦୌ ରହିଛି ବୋଲି ପୂର୍ଣ୍ଣତଃ ପାସୋର ହୋଇ ଯାଇଥାଏ । କେବଳ ଘୋଷାରି ହେବା ହିଁ ଅବଶେଷ ରହିଥାଏ । ସେହି କଷ୍ଟପୂର୍ଣ୍ଣ ପୁନରାବୃତ୍ତିକୁ ହିଁ ବେଳେ ବେଳେ ପଣ୍ଡିତମାନେ ମନୁଷ୍ୟର ନିୟତି ବୋଲି କହିଛନ୍ତି କି ?

ପ୍ରତ୍ୟେକ ମଣିଷ ଭିତରେ କ'ଣଟିଏ ଥାଏ, ଯାହାକି ସତେଅବା ମୃଣାଳଟିଏ ପରି ଅତଳ ଜଳଭିତରୁ ଉପରକୁ ଉଠି ଆସିବାକୁ ଚାହୁଁଥାଏ ଏବଂ କଷଣ ତାହାକୁ ତଳକୁ ଦବାଇ ରଖିବାର ପଣ କରିଥାଏ । କଷଣ, ଅର୍ଥାତ୍ ପରିସ୍ଥିତି ଜନିତ କଷଣ । ଏହିପରି ତାକୁ ଦାବି ରଖିବା ଫଳରେ ସମ୍ଭବତଃ ମଣିଷର ଭିତରଟା ହିଂସ୍ର ହୋଇ ଉଠେ । ନିଗ୍ରୋ କ୍ରୀତଦାସମାନେ ଯେତେବେଳେ କଷଣ ସହି ସହି ଆଉ ଅଧିକ ସହ୍ୟ କରି ନ ପାରିବାର ବିନ୍ଦୁଟିରେ ଯାଇ ପହଞ୍ଚି ଯାଉଥିଲେ, ସେତେବେଳେ ସେମାନେ ହିଂସ୍ର ହୋଇ ଉଠୁଥିଲେ । ଖାମିନ୍ଦର କବଳରୁ ପଳାୟନ କରୁଥିଲେ । କୁଆଡ଼କୁ ଯିବେ, ସେହି ବିଷୟରେ ମୋଟେ କିଛି ଜାଣି ନଥିଲେ । ସିଏ ମଧ୍ୟ ଆଉଗୋଟିଏ କଷଣ ଏବଂ ତାହାର ପରିଣାମ ମଧ୍ୟ ଖୁବ୍ ଭୟାବହ ; ତଥାପି ସେଥିପ୍ରତି କୌଣସି ଅନିଷ୍ଠା ରହୁନଥିଲା । ଦେଶରେ ପ୍ରଚଳିତ ତଥାକଥିତ ଆଇନ୍ ଅନୁସାରେ ମାଲିକ ଘରୁ ପଳାୟନ କରୁଥିବା ଦାସମାନଙ୍କ ନିମନ୍ତେ କଠୋର ଓ ମହାକଠୋର ନାନାବିଧ ଦଣ୍ଡ ନିର୍ଦ୍ଧାରିତ ହୋଇ ରହିଥିଲା । ତଥାପି ସେମାନେ ପଳାଇ ଯାଉଥିଲେ । ପଳାଇ ଯାଉଥିବା ଏମାନଙ୍କୁ ଧରାଇଦେବା ନିମନ୍ତେ ଖବରକାଗଜ ମାନଙ୍କରେ ଯେଉଁ ବିହିତ ବିଜ୍ଞପ୍ତିସବୁ ବାହାରୁଥିଲା, ଆମକୁ ସେଇଥିରୁ ହିଁ ତାହର ନଜିର ମିଳିଯିବ । ଏଠାରେ ଆମେ ସେହି ସମୟର କେତୋଟି ବିଜ୍ଞପ୍ତିକୁ ପାଠ କଲେ ବ୍ୟାପାରଟିର ଏକ ଅଳ୍ପବହୁତ ପରିଚୟ ପାଇଯାଇ ପାରିବା । ଗୋଟିକରେ (୧୮୩୮) ଲେଖା ହୋଇଥିଲା : କୃଷ୍ଣକାୟ ନିଗ୍ରୋ, ପୁରୁଷ, ନାମ ଆଲ୍‌ଫ୍ରେଡ୍ - ସିଏ ଆମ ହେପାଜତରୁ ପଳାଇ ଯାଇଛି । ତାକୁ ଖୋଜି ଧରାଇଦେଇ ପାରିଲେ ଏକଶତ ଡ଼ଲାର ପୁରସ୍କାର ମିଳିବ । ଆପଣମାନେ ତାକୁ ଧରି ନିକଟବର୍ତ୍ତୀ କୌଣସି ଜେଲ୍‌ରେ ଭର୍ତ୍ତି କରାଇଦେଇ ପାରନ୍ତି । ଅଥବା, ତାକୁ କେହି ହତ୍ୟା କରିଛି ବୋଲି ଆମକୁ ଯଥେଷ୍ଟ ସାକ୍ଷ୍ୟପ୍ରମାଣ ଆଣି ଯୋଗାଇଦେଇ ପାରିଲେ ମଧ୍ୟ ଆପଣଙ୍କୁ ସମାନ ପରିମାଣର ଅର୍ଥପୁରସ୍କାର ଅବଶ୍ୟ ମିଳିବ । ହଁ, ସେହି ବ୍ୟକ୍ତିର ହାତରେ ଗୋଟାଏ ବା ସମ୍ଭବତଃ କେତେଟା କଟା ଦାଗ ରହିଛି । ସେଗୁଡ଼ିକ ହେଉଛି ଗୁଳି ବାଜିଥିବାର ଦାଗ । ତାହାରି ଠିକ୍ ତଳକୁ ଏହିପରି ଆଉ ଗୋଟିଏ ବିଜ୍ଞପ୍ତି : ରିଚାର୍ଡ୍ ନାମକ ଜଣେ ପୁରୁଷ ନିଗ୍ରୋ ଲୋକ କୁଆଡ଼େ ପଳାଇଯାଇଛି ।

ପୁସ୍ତକଟିକୁ ପ୍ରସ୍ତୁତ କରିବାର ପ୍ରକ୍ରିୟାରେ ତଥ୍ୟ ଖୋଜିବାକୁ ଯାଇ ବହୁ ସାମଗ୍ରୀ ଲେଖିକାଙ୍କର ହସ୍ତଗତ ହୋଇଛି । ମାତ୍ର, ସବୁଗୁଡ଼ିକୁ ଏଥିମଧ୍ୟକୁ ଆଣିଥିଲେ ପୁସ୍ତକଟି ପ୍ରକୃତରେ ଭାରି ବୃହଦ୍ ହୋଇ ଯାଇଥାନ୍ତା । ତେଣୁ, ସେ ଯଥାସମ୍ଭବ ସଂକ୍ଷିପ୍ତ ହେବାକୁ ଉଦ୍ୟମ କରିଛନ୍ତି । ଉଦାହରଣ ସ୍ୱରୂପ, ଆମେରିକାରେ ଦାସ ହେବାକୁ ଧରା ହୋଇ ଆସିବା ପୂର୍ବରୁ ଏହି କଳାମାନେ କିଭଳି ରହୁଥିଲେ ଓ ଜୀବନଧାରଣ କରିଥିଲେ, ସେ ବିଷୟରେ ସିଏ କିଛି ଚର୍ଚ୍ଚା କରିନାହାନ୍ତି ।

ମୁଖବନ୍ଧର ସବାଶେଷରେ ଶ୍ରୀମତୀ ହାରିଏଟ୍ କ୍ରୀତଦାସପ୍ରଥାର ସମଗ୍ର ସମସ୍ୟାଟିକୁ ଗୋଟିଏ ନୈତିକ ଏବଂ ଧର୍ମଗତ ପ୍ରଶ୍ନ ବା ସମସ୍ୟା ବୋଲି କହିଛନ୍ତି, ଆମେରିକାରେ ଯେଉଁମାନେ ନିଜକୁ ଯୀଶୁଖ୍ରୀଷ୍ଟଙ୍କର ମାର୍ଗାନୁଗାମୀ ବୋଲି କହନ୍ତି, ସମସ୍ୟାଟିକୁ ସେହିମାନଙ୍କର ମନୋଗୋଚରକୁ ଆଣିବାର ଉଦ୍ଦେଶ୍ୟରେ ହିଁ ସିଏ ଏହି ପୁସ୍ତକଟିକୁ ସଂକଳିତ କରିଛନ୍ତି ବୋଲି ମଧ୍ୟ ମନ୍ତବ୍ୟ ଦେଇଛନ୍ତି । ଏବଂ, କେବଳ ଆମେରିକାରେ ନୁହେଁ, ଏହି ପୃଥିବୀର ସବୁ ଦେଶରେ ଯେଉଁମାନେ ସତକୁ ସତ ଖ୍ରୀଷ୍ଟିଆନ୍, ସେହିମାନଙ୍କର ଦୃଷ୍ଟି ଆକର୍ଷଣ କରି ଲେଖିକା ସେମାନେ ସମସ୍ତେ କ୍ରୀତଦାସପ୍ରଥା ଭଳି ଏକ ବୀଭତ୍ସ ଏବଂ ବୃହଦ୍ ମନ୍ଦର କବଳରୁ ଖ୍ରୀଷ୍ଟିଆନ୍ ଜଗତ ଅତିଶୀଘ୍ର ଯେପରି ମୁକ୍ତିଲାଭ କରି ବାହାରି ଆସିବ, ସେଥିଲାଗି ସେମାନେ ସମସ୍ତେ ଏକାଠି ହୋଇ ପ୍ରାର୍ଥନା କରନ୍ତୁ ବୋଲି ସେମାନଙ୍କୁ ଉଦ୍‌ବୋଧନ ଦେଇଛନ୍ତି । ଅତ୍ୟନ୍ତ ଦରଦ ସହିତ ସେ ଏହିସବୁ କଥାକୁ ପ୍ରକାଶ କରିଛନ୍ତି । ପୃଥିବୀରୁ ବହୁତ ପୁରୁଣା ମନ୍ଦ କାଳକ୍ରମେ ଅନାବଶ୍ୟକ ବୋଲି ପ୍ରମାଣିତ ହୋଇ ଅପସରି ଗଲେଣି । ତଥାପି ପୃଥିବୀର ମନୁଷ୍ୟମାନେ ସମ୍ପୂର୍ଣ୍ଣରୂପେ ମନ୍ଦମୁକ୍ତ ହୋଇନାହାନ୍ତି । ମନ୍ଦ ବିରୁଦ୍ଧରେ ମନୁଷ୍ୟମାନଙ୍କର ଏବେ ମଧ୍ୟ ସଂଗ୍ରାମ ଚାଲିଛି । ଆର୍ଥିକ ସ୍ତରରେ, ରାଜନୀତିକ ଓ ସାମାଜିକ ସ୍ତରରେ ତଥା ମନୁଷ୍ୟ କହିଲେ ସର୍ବପ୍ରଥମେ ଯେଉଁ ସମ୍ମାନବୋଧ ନାମକ ମୂଳସ୍ୱୀକୃତିକୁ ସବୁକାଳେ ହିଁ ବୁଝାଇ ଆସିଛି, ସେହି ସ୍ତରରେ ମଧ୍ୟ ସଂଗ୍ରାମ ଅବ୍ୟାହତ ରହିଛି । ପୁରୁଣା ଦିନର ସଂଗ୍ରାମଗୁଡ଼ିକ ଆମ ସମୟର ଉପସ୍ଥିତ ସଂଗ୍ରାମଗୁଡ଼ିକ ଲାଗି ଅନେକ ଅନ୍ତର୍ଦୃଷ୍ଟି ଅବଶ୍ୟ ଯୋଗାଇଦେବା ଉଚିତ୍ । ଗୋଟିଏ ସମୂହ ନିଜ ଜୀବନର ଅନ୍ତର୍ନାଡ଼ୀ ଗୁଡ଼ିକରେ କେଉଁସବୁ ଅସମର୍ଥତାର ଦାସ ହୋଇ ରହିଥିଲେ ଯେ ବାହାରେ ଅନ୍ୟମାନଙ୍କୁ ନିଜର କାମରେ ଦାସ ପରି ଖଟାଏ । ସେମାନଙ୍କୁ ଶୋଷଣ କରେ ଏବଂ ପୃଥ୍ୱୀପରିବେଶକୁ ନାନାଭାବେ ଦୂଷିତ କରି ରଖିଥାଏ, ସେକାଳର ଆମେରିକାରେ ଚାଲିଥିବା କ୍ରୀତଦାସପ୍ରଥାରୁ ମଧ୍ୟ ଆମକୁ ତାହାର କିଞ୍ଚିତ୍ ଗନ୍ଧ ଅବଶ୍ୟ ମିଳିଯାଇ ପାରିବ ।

ଯେଉଁମାନେ ଆମେରିକାର ଭାଗ୍ୟଉନ୍ନୟନ ନିମନ୍ତେ ଆଫ୍ରିକାରୁ କଳାମାନଙ୍କୁ କ୍ରୂର ଭାବରେ ହଡ଼ପ କରି ଆଣୁଥିଲେ, ସେମାନେ ସମସ୍ତେ ଖ୍ରୀଷ୍ଟିଆନ୍ ହିଁ ଥିଲେ । ସ୍ୱୟଂ କ୍ରିଷ୍ଟୋଫର୍ କଲମ୍ବସ୍ ଜଣେ ଧର୍ମଭୀରୁ ଖ୍ରୀଷ୍ଟ ଉପାସକର ପ୍ରେରଣା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଯେ ନୂଆ ଏକ ପୃଥିବୀର ଅନ୍ୱେଷଣ ଲାଗି ଜଳଯାତ୍ରାରେ ବାହାରିଥିଲେ, ନିଜ ଦେଶ ସ୍ପେନ୍‌ର ରଜାଙ୍କ

ପାଖକୁ ପ୍ରେରିତ ତାଙ୍କର ବହୁ ବିବରଣୀରୁ ମଧ୍ୟ ତାହାର ପ୍ରମାଣ ମିଳିଯାଉଛି । ତାଙ୍କ ଅନ୍ତେ ପୂର୍ବାପର ହୋଇ ଯେଉଁ ଯୋଦ୍ଧାମାନେ ସ୍ପେନ୍ ଓ ପର୍ତ୍ତୁଗାଲ୍ ତରଫରୁ ଯାଇ ସେହି ନବଆବିଷ୍କୃତ ଭୂଖଣ୍ଡରେ ପୂର୍ଣ୍ଣନିଷ୍ଠାର ସହିତ ଉତ୍କଟ ନରସଂହାରମାନ କରିଥିଲେ, ସେମାନେ ସମସ୍ତେ ନିଜ ଧର୍ମର ଅନୁରୋଧରେ ହିଁ ତାହା କରୁଥିଲେ ବୋଲି ବାରମ୍ବାର ଘୋଷଣା କରିଛନ୍ତି । କାଥୋଲିକ୍ ଜଗତର ମହାମାନ୍ୟ ପୋପ୍ ମଧ୍ୟ ସେମାନଙ୍କର ଏହି ଧ୍ୱଂସଅଭିଯାନରେ ସେମାନଙ୍କର ସଫଳତା କାମନା କରି ଆଶୀର୍ବାଣୀମାନ ପ୍ରେରଣ କରୁଥିଲେ । ଜାହଜର ନିମ୍ନ ଭାଗରେ ବଳଦ୍ୱାରା ଅପହୃତ ବିଚରା କଳାମାନେ ଅନ୍ଧାର ଭିତରେ ଚିତ୍କାର କରୁଥିବା ସମୟରେ ରାତିରେ ସେହି ଜାହଜର ନାବିକମାନେ କିପରି ପରିବ୍ୟାପ୍ତ ସାଗର ଉପରେ ବିଛାଡ଼ି ହୋଇ ରହିଥିବା ଉଜ୍ଜ୍ୱଳ ନୀଳ ଆକାଶକୁ ଅନାଉ ଅନାଉ ବିଭୁମହିମାର ସ୍ମରଣରେ ପୂର୍ଣ୍ଣଭାବେ ମଜ୍ଜି ଯାଉଥିଲେ, କେତେକ ସମକାଳୀନ ବର୍ଣ୍ଣନାରୁ ପାଠକକୁ ସେହି ବିଡ଼ମ୍ବନାମୟ ନଜିରଗୁଡ଼ିକ ମଧ୍ୟ ବେଶ୍ ମିଳି ଯାଇଥାଏ । ଉପନିବେଶ ସ୍ଥାପନର ସଙ୍ଗେ ସଙ୍ଗେ ଇଉରୋପ୍‌ରୁ ଧର୍ମପ୍ରଚାରକମାନେ ମଧ୍ୟ ସତେଅବା ଈଶ୍ୱରଙ୍କଠାରୁ ନିର୍ଦ୍ଦେଶ ପାଇଥିବା ପରି ଲୋହିତ ଏବଂ କୃଷ୍ଣମାନଙ୍କୁ ଖ୍ରୀଷ୍ଟବର୍ଣ୍ଣ କରାଇବେ ବୋଲି ସେହି ନୂତନ ଭୂଖଣ୍ଡକୁ ଧାଇଁ ଯାଇଥିଲେ । ଏମାନେ ସମସ୍ତେ କ୍ରୀତଦାସପ୍ରଥାକୁ ସ୍ୱୀକାର କରୁଥିଲେ, ତାହାକୁ ସତେଅବା ଭଗବାନଙ୍କର ବରାଦ ବୋଲି ଭାବୁଥିଲେ । ପୃଥିବୀରେ କିଏ ସତକୁ ସତ ଧର୍ମରେ ଅଛି ଓ କିଏ ଧର୍ମରେ ନାହିଁ, ଅନେକ ସମୟରେ ଏକାନ୍ତ ପ୍ରାସଙ୍ଗିକତା ସହିତ ଏବେ ମଧ୍ୟ ସେହି ପ୍ରଶ୍ନଟିକୁ ପଚାରିବାକୁ ଭାରି ମନ ହୁଏ ।

ଉପନ୍ୟାସଟିଏ ଲେଖିବା ପଛରେ ସର୍ବଦା ଏକ ଉପନ୍ୟାସ କଳା ରହିଥାଏ । ଏବେ ରହିଛି, ସେତେବେଳେ ମଧ୍ୟ ଅବଶ୍ୟ ରହିଥିଲା । ଜୀବନଟା ସତକୁ ସତ ଯେମିତି, ତାହାକୁ ଠିକ୍ ସେହିପରି ଭାବରେ ସାହିତ୍ୟ ଭିତରକୁ ଉକୁଟାଇ ଦେଇ ପାରିବାରେ ସମ୍ଭବତଃ ବହୁ ଅସୁବିଧା ରହିଛି ବୋଲି ସାହିତ୍ୟ ଭିତରେ ବିଚରଣ କରୁଥିବା ସମ୍ପୃକ୍ତ ସମସ୍ତେ ଭାରି ଅନୁଭବ କରି ଆସିଥିବେ । କଳ୍ପନାର ଦେବଲୋକରୁ ଜୀବନ ଓ ସମ୍ବନ୍ଧର ଭୂମି ଉପରକୁ ଓହ୍ଲାଇ ଆସିବାର ଆହ୍ୱାନ ଦେଇ ଏକଦା ସାହିତ୍ୟରେ ବାସ୍ତବବାଦ ନାମକ ଏକ ସାହିତ୍ୟମାର୍କାର ଉଦ୍‌ଭବ ହୋଇଥିଲା ସତ, କିନ୍ତୁ ସତକୁ ସତ ସେଥିରେ ବହୁତ ଅସୁବିଧା ଆସି ପହଞ୍ଚିଲା । ସେଥିଲାଗି ଲେଖକମାନେ ବାସ୍ତବବାଦ ଦ୍ୱାରା ଜୀବନକୁ ଏକ କଳାତ୍ମକ ବାସ୍ତବବାଦୀ ଶୈଳୀଦ୍ୱାରା ହିଁ ଢ଼ାଙ୍କି ପକାଇବାକୁ ଇଚ୍ଛା କଲେ ଓ ସେହି ବିଶେଷ ଝୁଙ୍କଟାରୁ ହିଁ ଉପନ୍ୟାସ ଜନ୍ମଲାଭ କରିଥିଲା । କୋଉଠି ନା କୋଉଠି କିଛି ଢ଼ାଙ୍କି ନପକାଇ ପାରିଲେ ତୁମେ କୌଣସି ସାହିତ୍ୟ ସମ୍ଭବ କରି ପାରିବନାହିଁ ବୋଲି ଘୋଷଣା କରାଗଲା । ଢ଼ାଙ୍କି ପକାଇବାକୁ କଳା ବୋଲି କୁହାଗଲା । ସର୍ବତୋଭାବେ ପ୍ରକଟ କରି ଆଣିବାକୁ ନବୁଝାଇ ବକ୍ର କରି ଦେଖାଇ ଦେବାକୁ ସାହିତ୍ୟର ସଂହିତା ଅନୁସାରେ ସମସ୍ତେ ସୌନ୍ଦର୍ଯ୍ୟ ବୋଲି କହିବାକୁ ଆରମ୍ଭ କଲେ । ଅର୍ଥାତ୍ ବର୍ଣ୍ଣନାର ଚାତୁର୍ଯ୍ୟରେ ସବୁ ଉଜ୍ଜ୍ୱଳ ଓ ଛଳଛଳ ଦିଶୁଥିବ,

ଅଥଚ ସତକୁ ସତ କିଛି ଦିଶୁ ନଥିବ, - ସମସ୍ତେ ସମ୍ଭବତଃ ସେଇଟିକୁ ସାହିତ୍ୟରେ ସୌନ୍ଦର୍ଯ୍ୟ ବୋଲି ମାନିଲେ । ସେହିଭଳି ଏକ ସୂତ୍ରାୟନରୁ ଆମ ଏକାଳର ଉପନ୍ୟାସ ଓ ଗଳ୍ପମାନେ ଖୋସା ଭିତରୁ ବାହାରିଲେ, ଚହଟି ଉଠିଥିଲେ । ଶ୍ରୀମତୀ ହାରିଏଟ୍ ସେହି କଥାଟିକୁ ଉପଲବ୍ଧି କରିଛନ୍ତି ଏବଂ ସ୍ୱୀକାର କରି କହିଛନ୍ତି ଯେ, ବହିଟାଏ, ଉପନ୍ୟାସଟାଏ ଲେଖି ସିଏ କଦାପି କ୍ରୀତଦାସପ୍ରଥାର ବାସ୍ତବ ସ୍ୱରୂପଟିକୁ ପାଠକମାନଙ୍କର ସମକ୍ଷକୁ ଆଣି ପାରିବେନାହିଁ । କାରଣ, ଦାସତ୍ୱନାମକ ଏହି ଅନୁଷ୍ଠାନଟି ପ୍ରକୃତରେ ଏଡ଼େ ଭୟଙ୍କର ଯେ, ତାହାକୁ କଳାତ୍ମକ ଆବରଣର ମାଧ୍ୟମରେ କେବେହେଲେ ପ୍ରକାଶିତ କରାଯାଇ ପାରିବନାହିଁ । ତାଙ୍କର ପ୍ରଥମ ଲେଖାଟି ଉପନ୍ୟାସର ଶୈଳୀରେ ଲେଖା ହୋଇଥିଲା । ସେତିକିରେ ମଧ୍ୟ ତାହା ଅନେକ ମଣିଷଙ୍କୁ ଏଡ଼େ କଟୁ ଲାଗିଲା । ଚାରିଆଡୁ ଆପତ୍ତି ଉଠିଲା । ସ୍ୱୟଂ ଦାସ ହୋଇ ଖଟୁଥିବା କଳାମାନେ ସେମାନଙ୍କୁ ଆଲେଖ୍ୟ ରୂପେ ବ୍ୟବହାର କରି ବହିଟିଏ ଲେଖାଗଲା ବୋଲି ସମ୍ଭବତଃ କୌଣସି ଟେର୍ ପାଇନଥିବେ । ସେମାନେ ଯେଉଁ ବାସ୍ତବତା ଭିତରେ ମୁହଁ ମାଡ଼ି ପଡ଼ିଥିଲେ, ଜଣେ ଗୋରା ଭଉଣୀ ଅନନ୍ତ ଦରଦର ସହିତ ଗୋରାମାନଙ୍କର ଗୋଚରାର୍ଥେ ଏପରି ବହିଟିଏ ଲେଖୁଛି ବା ଲେଖିଲା ବୋଲି ଜାଣିବାକୁ ପାଇଥିଲେ ସେମାନଙ୍କ ଭିତରେ ପ୍ରକୃତରେ କିଭଳି ପ୍ରତିକ୍ରିୟା ହୋଇ ଥାଆନ୍ତା ? ଅନ୍ତତଃ ମୁହୂର୍ତ୍ତକ ସକାଶେ, ସେମାନେ ନିଜକୁ କଳା ବୋଲି ସମ୍ପୂର୍ଣ୍ଣ ଭାବରେ ଭୁଲି ଯାଇଥାନ୍ତେ । ମନୁଷ୍ୟ ବୋଲି ଅନୁଭବ କରି ଥାଆନ୍ତେ । ଆପଣାକୁ କେବଳ ଗୋରା ବୋଲି ଅନୁଭବ କରୁଥିଲେ ଶ୍ରୀମତୀ ହାରିଏଟ୍ ମଧ୍ୟ ନିଜର ସେହି ଉପନ୍ୟାସଟିକୁ କଦାପି ଲେଖି ପାରିନଥାନ୍ତେ । ଏବଂ, ଏହି ଦ୍ୱିତୀୟ key ଟାକୁ ଲେଖିବାର କୌଣସି ପ୍ରଶ୍ନ ହିଁ ଉଠୁନାହିଁ ।

ଦ୍ୱିତୀୟ ପୁସ୍ତକଟିର ବର୍ଣ୍ଣନା ଅନୁସାରେ, ଆମେରିକାରେ ସେତେବେଳେ ଏପରି ବହୁତ ଲୋକ ଥିଲେ, ଯେଉଁମାନେ କି କ୍ରୀତଦାସ-ବେପାର କରୁଥିଲେ । ସେମାନେ ବନ୍ଦରମାନଙ୍କରୁ ଦାସମାନଙ୍କୁ କିଣି ନେଉଥିଲେ ଏବଂ ବିଭିନ୍ନ ରାଜ୍ୟର ହାଟ ଓ ଗଞ୍ଜ ମାନଙ୍କରେ ସେମାନଙ୍କୁ ବିକ୍ରୀ କରୁଥିଲେ । ଚିହ୍ନା ଗରହାକମାନଙ୍କ ସହିତ ସେମାନଙ୍କର ନିୟମିତ ଭାବରେ ଚିଠିଦ୍ୱାରା ସମ୍ପର୍କ ରହୁଥିଲା । କୋଉଥର ସେମାନଙ୍କ ହାତରେ କେତେ ସଂଖ୍ୟାର ଦାସ ବିକ୍ରୀ ନିମନ୍ତେ ମହଜୁଦ ଅଛନ୍ତି, ସେମାନେ ବିସ୍ତାରିତ ଭାବରେ ଗରହାକମାନଙ୍କୁ ସୂଚନା ଦେଉଥିଲେ । ଦାସମାନଙ୍କର ନାମ, ବୟସ ଓ ପ୍ରସ୍ତାବିତ ବିକ୍ରୀ ମୂଲ୍ୟକୁ ସୂଚାଇ ଦିଆ ଯାଉଥିଲା । ଦରକଷାକଷି ମଧ୍ୟ କମ୍ ହେଉନଥିଲା । ଗାଈ, ବଳଦ, ମେଣ୍ଢା, ଛେଳି ପ୍ରଭୃତିଙ୍କୁ ନେଇ ଯେପରି କିଣାବିକା ଓ ଦରକଷାକଷି ହୁଏ, ଠିକ୍ ସେହିପରି । ଅଧିକାଂଶ ସମୟରେ ଏହି ବିକ୍ରୀ ବିଷୟରେ ଖବରକାଗଜରେ ବିଜ୍ଞାପନ ମଧ୍ୟ ବାହାରୁଥିଲା । ଜଣେ ବ୍ୟକ୍ତିର ଯେ କେବଳ କେତେଜଣ ନିଗ୍ରୋ ଦାସଙ୍କୁ ବିକ୍ରୀ କରିବାକୁ ପଡୁଥିଲା, ସେକଥା ଆଦୌ ନୁହେଁ । ଅନ୍ୟ ସରଞ୍ଜାମ ଓ ପ୍ରାଣୀମାନଙ୍କୁ ମଧ୍ୟ ହାଟରେ ନେଇ ବିକିବାକୁ ହେଉଥିଲା । ଏବଂ, ସବୁଗୁଡ଼ିକୁ ଏକାଠି ମିଶାଇ ଗୋଟିଏ ବିଜ୍ଞାପନରେ ତାହା ସାଧାରଣଙ୍କର

ଗୋଚରାର୍ଥେ ଖବରକାଗଜରେ ବାହାରୁଥିଲା ଏବଂ କେହି ତାହାକୁ ଆଦୌ ଅସ୍ୱାଭାବିକ ବୋଲି ମନେ କରୁନଥିଲେ । ଗୋରା ବିକାଳିମାନେ ଯାବତୀୟ ଅର୍ଥରେ କଳା କ୍ରୀତଦାସଙ୍କୁ ଯେକୌଣସି ଅନ୍ୟ ପଣ୍ୟର ସମବାଚୀ ବୋଲି ବିଚାର କରୁଥିଲେ । ଏବଂ, ଏକ ଦୁର୍ଦ୍ଧର୍ଷ ଅସହାୟତାବୋଧ ଦ୍ୱାରା ଅଭ୍ୟସ୍ତ ହୋଇ ରହିଥିବାରୁ କଳା ଭୃତ୍ୟମାନେ ମଧ୍ୟ ନିଜକୁ ଯେକୌଣସି ପଣ୍ୟ ସହିତ ସାମିଲ କରି ଭାବିବାକୁ ଶିଖି ଯାଇଥିଲେ ।

ଉଦାହରଣ ସ୍ୱରୂପ, ''ମୋ'ର କେତେକ ନିଗ୍ରୋ ଦରକାର'' ବୋଲି ପ୍ରକାଶିତ ଏକ ବିଜ୍ଞାପନରେ ଲେଖା ଥିଲା : ''ମୁଁ ଏହି ସହରରୁ ବର୍ତ୍ତମାନ ଏହି ସୂଚନାଟିକୁ ଲେଖୁଛି, ୧୦ ରୁ ୩୦ ବର୍ଷ ମଧ୍ୟରେ ବୟସ ହୋଇଥିବା କେତେକ ନିଗ୍ରୋଙ୍କୁ ମୁଁ କିଣିବାକୁ ଇଚ୍ଛା କରୁଛି । ଖୁବ୍ ଭଲ ଦାମ୍ ମିଳିବ ଏବଂ ନଗଦ ମୁଦ୍ରାରେ ହିଁ ମିଳିବ । ଯେଉଁମାନଙ୍କ ପାଖରେ ନିଗ୍ରୋମାନେ ବିକ୍ରୟ ପାଇଁ ଗଚ୍ଛିତ ଅଛନ୍ତି, ସେମାନେ- ହୋଟେଲକୁ ଆସି ମୋତେ ସାକ୍ଷାତ୍ କରନ୍ତୁ ଅଥବା ମୋ' ପାଖକୁ ଚିଠି ଲେଖନ୍ତୁ ।'' ''କ୍ରୀତଦାସ କିଣିବ ? କ୍ରୀତଦାସ କିଣିବ ?'' ଶୀର୍ଷକ ରହିଥିବା ଆଉଗୋଟିଏ ବିଜ୍ଞାପନରେ ପଢ଼ିବାକୁ ମିଳୁଛି ଯେ, ''ଆମର ଏଠାରେ ପ୍ରତି ସପ୍ତାହରେ ତଟକା ନିଗ୍ରୋ ଦାସମାନେ ଆସି ପହଞ୍ଚୁଛନ୍ତି । ଆମେ ବହୁ ବର୍ଷ ହେଲା ଏଠାରେ ନିଗ୍ରୋ ଦାସମାନଙ୍କୁ ବିକ୍ରୀ କରିବାର ବ୍ୟବସାୟ ଆରମ୍ଭ କରି ଦେଇଛୁ । ବର୍ତ୍ତମାନ ଆମ ହାତରେ ଯେତିକି ମହଜୁଦ ରହିଛନ୍ତି, ସେମାନେ ବର୍ତ୍ତମାନ ଅଢ଼େଇମାସ ପର୍ଯ୍ୟନ୍ତ ଏଠାରେ ବିକ୍ରୀ ପାଇଁ ରହିବେ । ସେମାନେ ସମସ୍ତେ ସବଳ, ସୁସ୍ଥ ଏବଂ ଭଲ କାମ ଦେଇପାରିବେ ବୋଲି ବଛା ହୋଇ ଅଣା ଯାଇଛନ୍ତି । ସେମାନେ ବିଲରେ କାମ କରିପାରିବେ, ଘରୁଆ ଚାକର ହୋଇ ରହିପାରିବେ, ଯନ୍ତ୍ରପାତିରେ ଖଟା ହୋଇ ପାରିବେ, ରୋଷେଇ କରିବେ, ସିଲାଇ କାମ କରିବେ, ଲୁଗା ସଫା କରିଦେବେ, କପଡ଼ା ଇସ୍ତ୍ରୀ କରିବେ । ସେମାନଙ୍କୁ ଆପଣମାନେ ଉଚିତ୍ ମୂଲ୍ୟରେ କିଣିବାକୁ ପାଇ ପାରିବେ । ଅନ୍ୟ କୋମ୍ପାନୀ ଓ ଠିକାଦାରମାନେ ଯେଉଁଭଳି ଦାମ୍‌ରେ ବିକୁଛନ୍ତି, ଆମଠାରୁ କିଣିଲେ ଆପଣମାନଙ୍କୁ ତା'ଠାରୁ ମୋଟେ ଅଧିକ ପଇସା ଦେବାକୁ ପଡ଼ିବନାହିଁ । ତେଣୁ ଅନ୍ୟ କାହାପାଖକୁ ଯିବା ପୂର୍ବରୁ ଅନୁଗ୍ରହ କରି ପ୍ରଥମେ ଆମପାଖକୁ ନିଶ୍ଚୟ ଆସନ୍ତୁ । ଆମେ ଆପଣମାନଙ୍କୁ ମୋଟେ ମହଙ୍ଗାରେ ପକାଇବୁ ନାହିଁ ।''

ଏହି ବିଜ୍ଞାପନଟିର ଉଲ୍ଲେଖ କରି ଶ୍ରୀମତୀ ଷ୍ଟୋ' ତା'ପରେ ମନ୍ତବ୍ୟ ଦେଇ ଲେଖିଛନ୍ତି : ହଁ, ଏହି ବ୍ୟବସାୟୀମାନେ ବୁଲି ବୁଲି ଏହି ଭୃତ୍ୟମାନଙ୍କୁ ସଂଗ୍ରହ କରି ଆଣିଥିବେ । ପ୍ରତ୍ୟେକଙ୍କର ଯୋଗ୍ୟତା ବିଷୟରେ ଜାଣି ସଂଗ୍ରହ କରି ଆଣିଥିବେ । ଆଗରୁ ବରାଦ ଦେଇ ଡ଼ଜନେ ରାନ୍ଧୁଣିଆ କିଣିଥିବେ, ଆଉ କେଉଁଠାରୁ ଅଧ ଡ଼ଜନେ ବଢ଼େଇ ମିସ୍ତ୍ରୀ ମଧ୍ୟ କିଣିଥିବେ । ଇତ୍ୟାଦି, ଇତ୍ୟାଦି । ମାତ୍ର, ଏହିସବୁ ଭୃତ୍ୟମାନଙ୍କର ନିଜନିଜର ପରିବାର ମଧ୍ୟ ରହିଥିବ ଓ ସେମାନେ ପ୍ରତ୍ୟେକେ ଆହୁରି କେତେକେତେଙ୍କ ସହିତ ନାନା ପାରିବାରିକ ଡ଼ୋରରେ ବି ବନ୍ଧା ହୋଇ ରହିଥିବେ । ସେମାନଙ୍କୁ ନିଜର ଯୋଗ୍ୟତା

ତା'କୁ ଧରାଇ ଦେଇ ପାରିଲେ ମୁଁ ୨୫ ଡ଼ଲାର ପୁରସ୍କାର ଦେବି । ଜୀଅନ୍ତା ବା ମଲା, ଯେଉଁ ଅବସ୍ଥାରେ ଧରାଇ ଦେଇ ପାରିଲେ ହେଲା । ଅଥବା, ତାକୁ ଆଉ କେହି ମାରିଦେଇଛି ବୋଲି ଆମକୁ ସନ୍ତୋଷଜନକ ପ୍ରମାଣ ଦେଇପାରିଲେ ମଧ୍ୟ ହେବ । ଖୁବ୍ ସମ୍ଭବ ରିଚାର୍ଡ଼ ସହିତ ତା'ର ସ୍ତ୍ରୀ ଏଲିଜା ମଧ୍ୟ ଥାଇପାରେ । ଦୁହେଁ ସେମାନଙ୍କର ମାଲିକ ପାଖରୁ ଖସି ପଳାଇଛନ୍ତି ।

ଠିକ୍ ସେହିପରି, ଦକ୍ଷିଣାଞ୍ଚଳର ଜର୍ଜିଆ ରାଜ୍ୟରେ ଏପରି ବିଜ୍ଞପ୍ତିଟିଏ କାଗଜରେ ବାହାରିଥିଲା ; ଦୁଇମାସ ତଳେ ରାନ୍‌ସମ୍ ନାମରେ ଜଣେ ପୁରୁଷ ନିଗ୍ରୋ ପଳାଇ ଯାଇଛି । ପଳାଇ ଯିବାଭଳି ଆଦୌ କୌଣସି ଘଟଣା ଘଟି ନଥିଲେ ମଧ୍ୟ ଲୋକଟା ପଳାଇ ଯାଇଛି । ତାକୁ ହେଉ ବା ତା'ର ମୃତଦେହକୁ ହେଉ, ମୋ'ପାଖରେ ଆଣି ପହୁଞ୍ଚାଇ ପାରିଲେ ସଂପୃକ୍ତ ବ୍ୟକ୍ତିକୁ ମୁଁ କୋଡ଼ିଏ ଡ଼ଲାର ଇନାମ୍ ଦେବି । ଏବଂ, ତାକୁ ଧରିବାର ପ୍ରକିୟାରେ ଯଦି ନିଗ୍ରୋଟି ମରିଯାଏ, ତେବେ ମାରିବାବାଲାକୁ ଆହୁରି ଅଧିକ ପାଞ୍ଚ ଡ଼ଲାର ମଧ୍ୟ ମିଳିବ । ପୁନଶ୍ଚ : ନିମ୍ନରେ ସ୍ୱାକ୍ଷର କରିଥିବା ବ୍ୟକ୍ତିଙ୍କ ପାଖରୁ ସାମ୍ପସନ୍ ନାମଧେୟ ନିଗ୍ରୋ ଲୁଚି କରି ପଳାଇ ଯାଇଛି । ଯେଉଁ ବ୍ୟକ୍ତି ତାକୁ ଧରି ମୋ ପାଖରେ ଆଣି ପହୁଞ୍ଚାଇ ଦେବେ ଅଥବା ନିକଟବର୍ତ୍ତୀ କୌଣସି ଜେଲ୍‌ରେ ତାହାକୁ ବନ୍ଦୀ କରାଇଦେଇ ପାରିବେ, ତେବେ ତାଙ୍କୁ ମୁଁ ପଚାଶ ଡ଼ଲାର ଇନାମ ଦେବି । ମୁଁ ନିଜେ ଯାଇ ତାକୁ ଜେଲ୍‌ରୁ ନେଇ ଆସିବି । ଏବଂ, ତାକୁ ଧରିବାପାଇଁ ଚେଷ୍ଟା କରା ଯାଉଥିବା ସମୟରେ ଯଦି ସିଏ କୌଣସି ପ୍ରକାର ପ୍ରତିରୋଧ କରିବ, ଏବଂ ତାହାର ପ୍ରତିକାର ସ୍ୱରୂପ ହିଂସା ଆଚରଣ କରିବାକୁ ପଡ଼ିବ, ତେବେ ସେଥିରେ ସେହି ନିଗ୍ରୋର ପ୍ରାଣହାନି ଘଟିଲେ ମଧ୍ୟ ମୁଁ ସଂପୃକ୍ତ ବ୍ୟକ୍ତିଙ୍କୁ ସେଥିପାଇଁ କଦାପି ଦାୟୀ କରିବିନାହିଁ । ଏବଂ ପରିଶେଷରେ, ''ଗତ ନଭେମ୍ବର ମାସରେ ବିଲି ଏବଂ ଟାମ୍ପେ ନାମରେ ଦୁଇଜଣ ନିଗ୍ରୋ ମୋ'ପାଖରୁ ପଳାଇ ଯାଇଛନ୍ତି । ବିଲିକୁ ପଚିଶି ବର୍ଷ ଓ ସିଏ ବିଗତ ବହୁ ବର୍ଷ ଧରି ମୋ'ର ନୌକାରେ କାତ ମାରିବା କାମ କରୁଥିଲା । ଖୁବ୍ ସମ୍ଭବ, ଧରା ହେବା ସମୟରେ ସେ ନିଶ୍ଚୟ ପ୍ରତିରୋଧ କରିବ । ତେବେ, ଯିଏ ତା'ର କଟା ମୁଣ୍ଡକୁ ଆଣି ମୋ'ପାଖରେ ପହଞ୍ଚାଇ ପାରିବେ, ତାଙ୍କୁ ମୁଁ ପଚାଶ ଡ଼ଲାର ଅଧିକା ପୁରସ୍କାର ଦେବି । ତା' ନହେଲେ ପୁରସ୍କାରର ପରିମାଣ ହେଉଛି ତିନିଶହ ଡ଼ଲାର।''

ଏହିଭଳି ଉଦାହରଣ ପରେ ଉଦାହରଣ । ପୁରସ୍କାର ପରେ ପୁରସ୍କାରର ଘୋଷଣା । ଜୀଅନ୍ତା ଧରାଇଦେଲେ ଯେଉଁ ପରିମାଣର ଡ଼ଲାର ଇନାମରୂପେ ଦିଆଯିବ, ମୃତ ଶରୀର ଆଣି ଯୋଗାଇଦେଲେ ପ୍ରାୟ ନିୟମତଃ ତା' ଠାରୁ ଅଧିକ ପରିମାଣର ପୁରସ୍କାର ମିଳିବ । ହଁ, ପଳାତକ ଦାସମାନଙ୍କୁ ଧରାଇ ଦେବାରେ ସହାୟକ ଭାବରେ ବହୁ ପରିସ୍ଥିତିରେ କୁକୁରମାନେ ଲୋଡ଼ା ହେଉଥିଲେ । ବିଶେଷତଃ, ଯଦି ଦାସଟା ତରଫରୁ କୌଣସି ପ୍ରତିରୋଧ ବି କରା ଯାଉଥିଲା, ତେବେ କୁକୁର ନହେଲେ ଆଦୌ କାମ ଚଳୁନଥିଲା

। ଏବଂ, ଯେକୌଣସି କୁକୁର ସେହି କାର୍ଯଟିକୁ ମୋଟେ ତୁଲାଇ ପାରନ୍ତେନାହିଁ । ପୂର୍ଣ୍ଣ ପ୍ରଶିକ୍ଷିତ କୁକୁରମାନେ ହିଁ ଲୋଡ଼ା ହେଉଥିଲେ । ଅର୍ଥାତ୍, ଏପରି ଲୋକମାନେ ମଧ ରହିଥିଲେ, ଯେଉଁମାନେ କି ଏହି ବିଶେଷ କାର୍ଯ୍ୟଟି ନିମନ୍ତେ କୁକୁରମାନଙ୍କୁ ଆବଶ୍ୟକ ପ୍ରଶିକ୍ଷଣ ଦେଉଥିଲେ ଏବଂ ପ୍ରାୟ ସଂପୂର୍ଣ୍ଣ ସମୟ ଦେଇ ଏହି କାର୍ଯ୍ୟଟିକୁ କରୁଥିବା ବିଶେଷ ବ୍ୟକ୍ତି ବା ଗୋଷ୍ଠୀମାନେ ଥିଲେ, ଯେଉଁମାନେ ସେହି ପ୍ରଶିକ୍ଷିତ କୁକୁରମାନଙ୍କୁ କ୍ରୟ କରୁଥିଲେ । ସେହି ଅନୁସାରେ ଦୁଇ ପକ୍ଷ ମଧରେ ଭେଟ କରାଇ ଦେବାକୁ ସମ୍ବାଦପତ୍ର ମାନଙ୍କରେ ବିଜ୍ଞପ୍ତିମାନ ପ୍ରକାଶ ପାଉଥିଲା । ଆଲାବାମା ରାଜ୍ୟର କୌଣସି ଏକ ସମ୍ବାଦପତ୍ରରେ ୧୮୫୨ ମସିହା ସେପ୍ଟେମ୍ବର ପହିଲା ତାରିଖରେ ସେହିପରି ଗୋଟିଏ ବିଜ୍ଞପ୍ତି ପ୍ରକାଶ ପାଇଥିବାର ଦେଖିବାକୁ ମିଳିପାରିବ : ନିମ୍ନ ସ୍ୱାକ୍ଷରକାରୀଙ୍କ ପାଖରେ ଚମ୍‌କାର ଭାବରେ ତାଲୀମ ପାଇଥିବା ଏକ ଯୂଥ କୁକୁର ଅଛନ୍ତି, ଯେଉଁମାନଙ୍କୁ କି ଲୁଚି ପଳାଇ ଯାଇଥିବା କ୍ରୀତଦାସମାନଙ୍କୁ ସନ୍ଧାନ କରିବାରେ ଏବଂ ଧରିବାରେ ନିପୁଣତା ସହିତ ବ୍ୟବହାର କରାଯାଇ ପାରିବ । ଯେଉଁମାନେ ସେମାନଙ୍କର ସେବାକୁ କାମରେ ଲଗାଇବାକୁ ଇଚ୍ଛା କରିବେ, ସେମାନଙ୍କ ସକାଶେ ନିମ୍ନ ପ୍ରକାରେ ଶୁଳ୍କ ଧାର୍ଯ୍ୟ କରାଯାଇଛି : ଖୋଜିବାରେ ଯାଉଥିବା ପ୍ରତ୍ୟେକ ଗୋଟିଏ ଦିନପାଇଁ ଅଢେଇ ଡ଼ଲାର, ପ୍ରତ୍ୟେକ କ୍ରୀତଦାସକୁ ଧରାଇ ଦେଇ ପାରିଲେ ଦଶ ଡଲାର, ଦଶ ମାଇଲ୍‌ରୁ ଅଧିକ ବାଟ ଯାଇ ସେମାନଙ୍କୁ ଧରିଲେ କୋଡ଼ିଏ ଡ଼ଲାର ଲାଗିବ । ଏହି ଦେୟଗୁଡ଼ିକ ସମସ୍ତେ ନଗଦ ଆକାରରେ ଦେବେ । ଯାହାର ଲୋଡ଼ା, ସିଏ ମୋତେ ନିମ୍ନ ଠିକଣାରେ ପତ୍ର ଲେଖନ୍ତୁ । ଏହିପରି ବିଜ୍ଞାପନମାନ ଏକାଦିକ୍ରମେ ସପ୍ତାହ ସପ୍ତାହ ଧରି ବାହାରୁଥିଲା । ପୂର୍ଣ୍ଣ ଗାମ୍ଭୀର୍ଯ୍ୟର ସହିତ ପ୍ରକାଶ ପାଉଥିଲା ।

ପଳାତକ କ୍ରୀତଦାସ ମାନଙ୍କୁ ସଫଳ ଭାବରେ ଧରାଇଦେଇ ପାରୁଥିବା ଏହି ଖାସ୍ କୁକୁରମାନଙ୍କୁ ଏକ ଖାସ୍ ପ୍ରଣାଳୀରେ ମଧ ଟ୍ରେନିଂ ଦେବାକୁ ପଡୁଥିଲା । ଶ୍ରୀମତୀ ହାରିଏଟ୍ ଆମ ଉତ୍ସୁକମାନଙ୍କର ଗୋଚର ନିମନ୍ତେ ଆମକୁ ତାହାର ବି ଏକ ବିବରଣୀ ସଂଗ୍ରହ କରି ଦେଇଛନ୍ତି । ପଦ୍ଧତଟି ହେଉଛି ଏହିପରି : ଏକାବେଳେକେ ଛୁଆ ବେଳୁଁ କେତେକ କୁକୁରଙ୍କୁ ଆଣି ପୋଷିବାକୁ ପଡ଼ିବ । ଯେକୌଣସି ଜାତି ବା ପ୍ରକାରର କୁକୁର ହେଲେ ବି ଚଳିବ । ଏହି ବିଷୟରେ ଆଦୌ କୌଣସି ବାରଣ ନାହିଁ । ମାତ୍ର, ସେହି କୁକୁରଛୁଆ ଗୁଡ଼ିକୁ ଗୋଟିଏ ନିର୍ଦ୍ଦିଷ୍ଟ ଜାଗା ଭିତରେ ବନ୍ଦ କରି ରଖିବାକୁ ହେବ ; ବାହାଉକୁ ମୋଟେ ଛଡ଼ା ଯିବନାହିଁ, ଯେପରିକି ସେମାନେ କେବେହେଲେ କୌଣସି ନିଗ୍ରୋ କଳା ଲୋକକୁ ଦେଖିବାକୁ ପାଇବେନାହିଁ । ସେମାନେ ଏହିପରି ଭାବରେ କ୍ରମେ ବଡ଼ ହୋଇଯିବେ ଓ ତା'ପରେ ଯାଇ ସେମାନଙ୍କର ଟ୍ରେନିଂ ଆରମ୍ଭ ହେବ । ବଡ଼ ହୋଇ ଯେତେବେଳେ ସେମାନେ ଇଙ୍ଗିତ ଦେଲାମାତ୍ରକେ କାହା ପଛରେ ଗୋଡ଼ାଇବାକୁ ଶିଖିଯିବେ, ସେତେବେଳେ କୌଣସି କଳା ମଣିଷକୁ ଆଣି ସେମାନେ ତାକୁ ଦେଖିଲା ମାତ୍ରକେ

ତା'ପଛରେ ରୋଷାନ୍ୱିତ ଭାବରେ ଯେପରି ଗୋଡ଼ାଇ ଯାଇ ପାରିବେ, ସେତେବେଳେ ତୁମେ ସେମାନଙ୍କୁ ସେଥିରେ ମଣ କରାଇବ । କୌଣସି କୁକୁରଛୁଆ ଏହିପରି ଗୋଡ଼ାଇ ନିଗ୍ରୋଟାକୁ ଧରିପାରିଲେ ପୁରସ୍କାର ସ୍ୱରୂପ ତା' ଆଗରେ ମାଉଁସ ଖଣ୍ଡେ ପକାଇଦେବ । ନିଗ୍ରୋକୁ କହିବ ଯେପରି ସିଏ ଅଧିକରୁ ଅଧିକ ବେଗରେ ଦଉଡ଼ିବ । କୁକୁରମାନେ ତା' ପଛରେ ଦଉଡୁଥିବେ । ସେତିକିବେଳେ ନିଗ୍ରୋଟି କୌଣସି ଗଛଉପରେ ଯାଇ ଚଢ଼ିଯିବ, ସତେଯେପରି କୁକୁରମାନଙ୍କର କବଳରୁ ସିଏ ନିଜକୁ ରକ୍ଷା କରିବାପାଇଁ ଚେଷ୍ଟା କରୁଛି ! ଏହିପରି ଭାବରେ ନିଗ୍ରୋର ପିଛା ଧରି ସେହି କୁକୁରମାନେ ଗଛ ଉପରକୁ ଚଢ଼ି ଯିବାର କାଇଦାଟା ମଧ୍ୟ ଶିଖିଯିବେ । ସାନବେଳେ ତ ସେମାନେ ଆଦୌ କୌଣସି ନିଗ୍ରୋକୁ ଦେଖି ନଥିବେ, ତେଣୁ ସମ୍ପୂର୍ଣ୍ଣ ରୋଷାନ୍ୱିତ ହୋଇ ତା' ପିଛା ଧରି ଦଉଡ଼ି ପାରୁଥିବେ ଓ ତାକୁ ଧରିବାର ଚେଷ୍ଟା କରୁଥିବେ । ତା'ପରେ ତୁମେ ସେହି ନିଗ୍ରୋର ଜୋତାକୁ ମଧ୍ୟ କୁକୁର ଆଗରେ ନେଇ ରଖିବ ; କୁକୁରମାନଙ୍କୁ ଏପରି ମଣ କରିବ, ଯେପରିକି ସେମାନେ ଜୋତାକୁ ସୁଘି କରି ସେଇଟି କାହାର ବୋଲି ଠାଣ କରି ପାରିବେ ଏବଂ ଆହୁରି ଅଧିକ ତାଲୀମ ପାଇ ଜୋତାକୁ ସଂଘି, ଯାହାର ସେହି ଜୋତା ତାକୁ ମଧ୍ୟ ଉଣ୍ଡି ଉଣ୍ଡି ଠାବ କରିନେଇ ପାରିବେ । ତା'ପରେ ନିଗ୍ରୋର ପିନ୍ଧା ଲୁଗାରୁ ମଧ୍ୟ ଗନ୍ଧ ବାରି ନିଗ୍ରୋକୁ ଖୋଜି ବାହାର କରି ପାରିବେ । ଏହିପରି ଭାବରେ ତାଲୀମ ପରେ ତାଲୀମ ଦିଆ ଯାଉଥିବ ଏବଂ କୁକୁରମାନେ ଆବଶ୍ୟକ ସନ୍ଧାନୀ ବିଦ୍ୟାଟିରେ ଅଧିକ ମଣ ହୋଇ ଆସୁଥିବେ । ହଁ, ମନେ ରଖିଥିବ ଯେ, ଆଗ ନିଗ୍ରୋ ଲୋକଟି ଯାଇ ଗଛଉପରେ ବସିଥିବ, ତା'ପରେ କୁକୁର ଯାଇ ସେହି ଗଛତଳେ ପହଞ୍ଚିବ ଓ ଭୁକିବାରେ ଲାଗିବ । ଏହିପରି ଭାବରେ ଉତ୍ତେଜିତ ହୋଇ ଗଛ ଉପରକୁ ଉଠିଯାଇ ନିଗ୍ରୋକୁ ଧରି ପକାଇଲେ ତୁମେ ତାକୁ ପୁରସ୍କାର ସ୍ୱରୂପ ଖଣ୍ଡେ ମାଉଁସ ଆଣି ଦେବ ।

ଧନ୍ୟ କହିବା ସେହି ବୁଦ୍ଧିମାନ ଲୋକମାନଙ୍କୁ, ଯେଉଁମାନେ କେତେ ନା କେତେ ଧୈର୍ଯ୍ୟ ସହିତ କୁକୁରମାନଙ୍କୁ ସେହି ବିଶେଷ କର୍ମଟିରେ ମଣ କରି ପାରୁଥିଲେ । କଳା ମଣିଷମାନଙ୍କୁ ବଶ୍ୟ ଏବଂ ବାଧ କରି ରଖିବାକୁ ଏବଂ ସେହିମାନଙ୍କର ଶ୍ରମଦ୍ୱାରା ନିଜର ଭାଗ୍ୟକୁ ସରସ କରି ଗଢ଼ିବା, ଗୋରା ବାପାମାନଙ୍କର ସେହି କୌଶଳ ଗୁଡ଼ିକର ପ୍ରଭାବ ସେମାନଙ୍କର ନିଜ ସନ୍ତତିମାନଙ୍କ ଉପରେ ମଧ୍ୟ ନିଃସନ୍ଦେହ ଭାବରେ ପଡୁଥିଲା ଏବଂ ଏହି ରୀତିରେ ହିଁ ଦାସମାନଙ୍କୁ ଖଟାଇବାର ସେହି ହୀନ ପରମ୍ପରାଟି ଆମେରିକାରେ ପୁରୁଷାନୁକ୍ରମେ ଗଢ଼ି ଆସୁଥିଲା । ସେହି ଲଜ୍ଜାକର ପ୍ରକ୍ରିୟାର ଏକ ଦୃଷ୍ଟାନ୍ତରୂପେ ଶ୍ରୀମତୀ ଷ୍ଟୋ' ତାଙ୍କ ବହିରେ ଗୋଟିଏ ସତ କାହାଣୀର ଉଲ୍ଲେଖ କରିଛନ୍ତି । ତାଙ୍କର ପରିଚିତା ଜଣେ ମହିଳା ତାଙ୍କୁ ଥରେ ସେହି କାହାଣୀଟିକୁ କହିଥିଲେ । କାହାଣୀଟି ତାଙ୍କର ନିଜର କୁନି ଝିଅଟି ବିଷୟରେ । ଗୋରା ଝିଅଟିର ବୟସ ମାତ୍ର ତିନିବର୍ଷ ହୋଇଥାଏ । ଝିଅଟି ବାହାରେ ଖେଳୁଥିବା ସମୟରେ ଭଦ୍ରମହିଳା ଘର ଭିତରୁ ଝରକାବାଟେ ଘଟଣାଟିକୁ

ଦେଖିବାକୁ ପାଇଥିଲେ । ଦେଖିଲେ, ଝିଅଟି ତା'ର ଖେଳନା ଗାଡ଼ୀଟି ଉପରେ ବସିଛି ଓ ଛଅ କି ଆଠ ସରିକି କଳା ପିଲା ସେହି ଗାଡ଼ିରେ ଘୋଡ଼ା ହୋଇ ଯୋଚା ହୋଇଛନ୍ତି । ଘୋଡ଼ାମାନେ ଚାଲିବା ସହିତ ଗାଡ଼ିଟି ମଧ୍ୟ ଚାଲିବା କଥା । ଗାଡ଼ୀ ଠିକ୍ ଢ଼ଙ୍ଗରେ ଚାଲି ନ ପାରୁଥିବା ସମୟରେ ଗାଡ଼ୀରେ ଆସୀନା ଝିଅଟି ଘୋଡ଼ାମାନଙ୍କୁ ଉଦ୍ଦେଶ୍ୟ କରି ଚାଲ୍, ଚାଲ୍ ବୋଲି କହୁଥାଏ । ଦେଖଣାହାରି ଭାବରେ ସେଠାରେ ଆହୁରି ଦୁଇ ତିନିଜଣ ବୟସ୍କ ନିଗ୍ରୋ ଛିଡ଼ା ହୋଇଥାନ୍ତି । ସେମାନେ ସମସ୍ତେ କ୍ରୀତଦାସ ଭାବରେ ସେଠି କୌଣସି ନା କୌଣସି ପରିବାର ସହିତ ସମ୍ପୃକ୍ତ ହୋଇ ଅବଶ୍ୟ ରହିଥିବେ । ଗାଡ଼ୀଟି ଠିକ୍ ଭାବରେ ଚାଲି ନପାରୁଥିବାର ଦେଖି ସେମାନଙ୍କ ଭିତରୁ ଜଣେ କୋଉଠୁ ଚାବୁକଟିଏ ଆଣି ତିନିବର୍ଷର ସେହି ଝିଅଟି ହାତରେ ଧରାଇଦେଲା ଓ "ସାନ ଦେଈ, ଏହି ଚାବୁକଟିକୁ ନିଅନ୍ତୁ ଓ ଘୋଡ଼ାମାନଙ୍କୁ ଭଲ କରି ପିଟନ୍ତୁ" ବୋଲି କହିଲା । ଚାବୁକ୍ ମାରିଲେ ସିନା ଘୋଡ଼ାମାନେ ଚେଙ୍ଗା ହୋଇ ଚାଲିପାରିବେ । "ତୁମ ନିଗର୍ (nigger) ମାନଙ୍କୁ ତୁମେ ଭଲ କରି ଚାବୁକ୍ ମାର । ତେବେ ଯାଇ ସେମାନେ ଠିକ୍ ଭାବରେ ଚାଲିବେ "- ଅନୁଭବୀ ବୟସ୍କଟି ଯାବତୀୟ ଅର୍ଥରେ ସେହି ଭାବଟିକୁ ହିଁ ପ୍ରକାଶ କରୁଥିଲା ।

ଏବଂ, ପ୍ରାୟ ଦୁଇ ତିନିଶହ ବର୍ଷ କାଳ ଆମେରିକାରେ ଗଢ଼ା ହେଉଥିବା ଗୋରା ସଭ୍ୟତାଟା ପ୍ରାୟ ଏହି ଭାବରେ ଚାଲୁଥିଲା । କାଳର ପ୍ରୟୋଜନରେ ଶାସନସଭାର ଗୋରା ପ୍ରତିନିଧିମାନଙ୍କ ଠାରୁ ଆରମ୍ଭ କରି ଗୀର୍ଜାନାମକ ଧର୍ମଘରର ପ୍ରତିନିଧିମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ସମର୍ଥନରେ ହିଁ ସତେଅବା ଏକ ଅସଭ୍ୟ ପରିମଳ ପୂର୍ଣ୍ଣ ପରାକ୍ରମ ସହିତ ସେଠାରେ ରାଜତ୍ୱ କରିବାରେ ଲାଗିଥିଲା । ସେତେବେଳେ, ଏହିଭଳି ନିତିଦିନର ଅଶୋଭନୀୟତା ମଧ୍ୟରେ ବଢ଼ି ଆମେରିକାର ଗୋରା ପିଲାମାନେ କିପରି ଆଖି ନେଇ ସଂସାର ଭିତରେ ପ୍ରବେଶ କରି ଶିଖୁଥିଲେ, ଖୁବ୍ ସହଜରେ ସେହି କଥାଟିର ଅନ୍ଦାଜ କରାଯାଇ ପାରିବ । ପ୍ରତିଦିନ ଖବରକାଗଜରେ ବାହାରୁଥିବା କଳାମାନଙ୍କ ସହିତ ସମ୍ପର୍କିତ ବିଜ୍ଞପ୍ତିଗୁଡ଼ିକ ସେମାନଙ୍କର ଅନ୍ଦାଜଗୁଡ଼ିକୁ ସତେଅବା ଏକ ଷଡ଼ଯନ୍ତ୍ର କଲାପରି ହିଁ କଳୁଷିତ କରି ପକାଉଥିବ । କଳୁଷଟିକୁ ପୁରୁଷ ପରେ ପୁରୁଷ ବହି ଆଣିବାରେ ସେହି କ୍ରୂର ବ୍ୟବସ୍ଥାଟି ପ୍ରାୟ ସର୍ବବିଧ ଉତ୍‌ପ୍ରେରକ ଅବଶ୍ୟ ଯୋଗାଇ ଦେଉଥିବ । ଗୋରା ଓ କଳା ଉଭୟେ ତ ଗୋଟିଏ ଗୋଟିଏ ମଣିଷ ପରି ଦିଶୁଛନ୍ତି, ତେବେ ଜଣେ ଆଉଜଣକୁ ମଣିଷ ପରି ନଦେଖିବା ପଛରେ ପ୍ରକୃତରେ କି କାରଣ ରହିଥିବ ? ଆମ ଭାରତବର୍ଷରୁ ଏକ ଉପମା ନେଇ କହିଲେ, ମଣିଷମାତ୍ରକେ ତ ପ୍ରତ୍ୟେକେ ସେଇ ମାଟିରୁ ଆସିଛନ୍ତି ଓ ସେହି ମାଟିରେ ହିଁ ମିଶିଯିବେ ; ତେବେ ସେହି ଉଭୟେ ବାସ କରୁଥିବା ଏକ ଧର୍ମାଳବ୍ୟବସ୍ଥାରେ ଜଣେ କାହିଁକି ଗାଡ଼ୀ ଉପରେ ଚାବୁକ୍ ଧରି ବସୁଥିବ ଏବଂ ଆରପଟରେ କେତେଜଣ ଘୋଡ଼ା ହୋଇ ସେହି ଗାଡ଼ୀରେ ଯୋଚା ହୋଇଥିବେ ? ପୁନଶ୍ଚ, ଘୋଡ଼ାମାନେ ମନମୁତାବକ ଚାଲିବେ ବୋଲି ସେମାନଙ୍କ ଉପରେ ଚାବୁକ୍‌ପ୍ରହାର ବସୁଥିବ ? ଶ୍ରୀମତୀ ହାରିଏଟ୍‌ଙ୍କର

ବିଚାରରେ ଦାସବ୍ୟବସ୍ଥାଟା ଆମେରିକାର ଗୋରାମାନଙ୍କର ସମାଜରେ ଏପରି ଏକ କଳୁଷ ଆଣି ଭର୍ତ୍ତି କରିଦେଲା ଯେ, ପ୍ରାୟ ଯାବତୀୟ କାରବାରରେ ଗୋରା ମଣିଷ କଳା ମଣିଷମାନଙ୍କୁ ତୁଚ୍ଛା ଡ଼ଲାର୍‌ରେ ହିସାବ କରିବାକୁ ଶିଖାଗଲା । ସିଏ ହାଟରୁ ସେମାନଙ୍କୁ ଡ଼ଲାର ଦେଇ କିଣିଲା, ଦଲାଲମାନେ ସେହି ଡ଼ଲାର ଦେଇ ସେମାନଙ୍କର ମୂଲ କଲେ । ଏଣୁ ଅନ୍ୟ ଗୃହଆସବାବ୍ ଓ ସମ୍ପତ୍ତି ପରି ସେମାନେ ମଧ୍ୟ ଡ଼ଲାର୍‌ରେ ମୂଲ ହେଲେ ଏବଂ କେବଳ ସେହି ଗଣିତରେ ହିସାବ କରି କହିବାର ପଦ୍ଧତିଦ୍ୱାରା ହିଁ ଗୋଟିଏ ପକ୍ଷ ଅପର ପକ୍ଷଟିକୁ ସୁଗମ ଭାବରେ ବୁଝିନେଇ ପାରିଲା । ଦେହର ରଙ୍ଗଟାରେ ଯେଉଁ ଫରକଟା ରହିଥିଲା, କେବଳ ତାହାକୁ ହିଁ ଆମେ ସେହି ଅବିବେକିତାରେ ଏକମାତ୍ର କାରଣ ବୋଲି କେତେ ଦୂର ବୁଝିବା ଏବଂ ଏହିପରି ବୁଝିବାକୁ ପ୍ରକୃତରେ ଏକ ସଳଖ ବୁଝିବା ବୋଲି କେତେ ଦୂର ଗ୍ରହଣ କରାଯାଇ ପାରିବ ? ହୁଏତ ରଙ୍ଗଟା ପ୍ରଧାନତଃ ବାହାରର ଏକ ପେଖନା ବା ବାହାନା ହୋଇ ରହିଥିଲା ଓ ତାହାରି ଛାୟା ତଳେ ଯାବତୀୟ ଅବିଚାରକୁ ଆମେ ଗୌଣ କରି ଉଡ଼ାଇ ଦେବାରେ ଚେଷ୍ଟା ବି କରୁଥିଲୁ । ପୃଥିବୀରେ ଏବେ ମଧ୍ୟ ଏକାଧିକ ସମାଜରେ ବାସ୍ତବ ଜୀବନର ଯାବତୀୟ ଅନ୍ଦାଜ ଏବଂ ସମ୍ବନ୍ଧରେ କେତେ ସମୂହ ଅନ୍ୟ କେତେ ସମୂହକୁ ଅର୍ଥରେ ଅର୍ଥାତ୍ ଡ଼ଲାର୍‌ରେ ମୂଲ କରୁଛନ୍ତି । ରଙ୍ଗଟା ମାଧ୍ୟମରେ ଫରକ ଦେଖିବାର ରୀତିଟି ସବୁ ସମାଜରେ ହୁଏତ ମୋଟେ ଚଳୁନାହିଁ, ତଥାପି ଫରକମାନେ ବଳବତ୍ତର ରହିଛନ୍ତି । ସେଗୁଡ଼ିକ କେତେ କେତେ ଆଳରେ ପ୍ରାୟ ପରିପୂର୍ଣ୍ଣ ପ୍ରଶ୍ରୟ ଲାଭ କରି ବଳବତ୍ତର ରହିଛନ୍ତି । ମଣିଷମାନଙ୍କୁ ଘୋଡ଼ାଛାନରେ କାରବାର କରୁଛନ୍ତି ।

ମଣିଷମାନଙ୍କୁ ହାଟରୁ ବିକ୍ରୀ ଓ ଖରିଦ କରି ପାରିବାର ଏକ ପଣ୍ୟରୂପେ ଦେଖିବାକୁ ଆରମ୍ଭ କଲେ ମହା ମହା ସଂସାରୀଙ୍କର ମଧ୍ୟ ମତିଭ୍ରମ ହେବାକୁ ଆରମ୍ଭ କରେ । ତା'ପରେ ଆଉ ବାପା, ମାଆ, ଭାଇ ଭଉଣୀ, ପତ୍ନୀ, ପତି ବା ପୁଅ ଝିଅ ହୋଇ କେହି ଦିଶନ୍ତି ନାହିଁ । ସେମାନେ ସମସ୍ତେ କେବଳ ପଣ୍ୟ ପ୍ରାୟ ଦେଖାଯାଆନ୍ତି । ତେଣୁ ନିର୍ମଳ ଭାବରେ ହାଟସଉଦାର ଆବଶ୍ୟକତା ଅନୁସାରେ ଗୋଟିଏ ପରିବାରକୁ ସାତଛିନ୍ନ କରିଦିଆ ଯାଇପାରେ, ବୁଢ଼ାବୁଢ଼ୀଙ୍କୁ ସେମାନଙ୍କର ସନ୍ତାନମାନଙ୍କ ଠାରୁ ଅଲଗା କରିନିଆ ଯାଇପାରେ ; ସ୍ୱାମୀକୁ ତା'ର ସ୍ତ୍ରୀ' ଠାରୁ ଏବଂ କୁନି କୁନି ଛୁଆଙ୍କୁ ସେମାନଙ୍କୁ ସ୍ତନ୍ୟ ଦେଉଥିବା ମାଆମାନଙ୍କ ଠାରୁ ବ୍ୟବଚ୍ଛିନ୍ନ କରିନିଆ ଯାଇପାରେ । ପଣ୍ୟର ପୁଣି ପରିବାର ବୋଲି ସତରେ କିଛି ଥିବ, ଉଦ୍ଦଣ୍ଡ ମହାମୂର୍ଖମାନେ ସେତେବେଳେ ସେହି କଥାଟିକୁ ମୋଟେ ହୃଦୟଙ୍ଗମ କରି ପାରନ୍ତିନାହିଁ । ସେହି କାଳିମାଛନ୍ନ କାଳଟାରେ ମଧ୍ୟ ଆମେରିକାର ଗୋରା ସମାଜରେ ଗଦା ଗଦା ସାହିତ୍ୟ ଲେଖା ହୋଇଥିବ, ଅଲିଅଳ ଗୋରା ବାପା ଓ ମାଆମାନେ ନିଜ ପିଲାଙ୍କୁ ପାଖରେ ବସାଇ ଏବଂ ସୌହାର୍ଦ୍ଦ୍ୟଗୁଡ଼ାକରେ ଉଷୁମ ଭରିଦେଇ ତ୍ୟାଗ, ସାହସ, ନିଷ୍ଠା ଓ ପ୍ରେମ ବିଷୟରେ କେତେ଼ ସାହସିଆ କାହାଣୀମାନ ପଢ଼ି ଅବଶ୍ୟ

ଶୁଣାଇଥିବେ ଏବଂ ତଦ୍ୱାରା ପିଲାମାନଙ୍କର ଜୀବନକୁ ଉଚିତ୍ ଭାବରେ ଗଢ଼ା ହେବାରେ ସେମାନେ ବହୁତ ସାହାଯ୍ୟ କରୁଛନ୍ତି ବୋଲି ଖୁବ୍ ବିଚାର କରିଥିବେ । ଯୁଗେ ଯୁଗେ ପୃଥିବୀରେ ଏପରି ଅବ୍ୟକ୍ତି ସମ୍ଭବତଃ ଭୂରି ଭୂରି ସଂଖ୍ୟାରେ ରହି ଆସିଛନ୍ତି, ଯେଉଁମାନେ କି ଧର୍ମ ଓ ଧର୍ମଶାସ୍ତ୍ରଗୁଡ଼ିକ ମଧ୍ୟରେ ନିଜକୁ ବହୁ ହେପାଜତ କରି ରଖିଛନ୍ତି, ସାହିତ୍ୟରେ ସ୍ୱର୍ଗମାନଙ୍କରେ ଯାଇ ମହାପୁଲକରେ ବୁଲିଛନ୍ତି, ଜାତିକୁ ବଡ଼ କରି ଗଢ଼ିବାରେ ବହୁ କୀର୍ତ୍ତି ଅର୍ଜିଛନ୍ତି, ତଥାପି ମଣିଷମାନଙ୍କୁ ମଣିଷ ପରି ଆଦୌ ଦେଖି ପାରିନାହାନ୍ତି । ନିୟମତଃ ସେହିଭଳି ଅବ୍ୟକ୍ତିମାନଙ୍କୁ ନେଇ ହିଁ ପୃଥିବୀରେ ଅସମାଜମାନ ଗଢ଼ି ଉଠିଛନ୍ତି । ତଥାପି, କୌଣସି ଅସମାଜ ଆଗ ଆବଶ୍ୟକ ପଦକ୍ଷେପମାନ ଗ୍ରହଣ କରି ସେଥିରେ ବାସ କରୁଥିବା ବ୍ୟକ୍ତିମାନଙ୍କୁ କ୍ରମେ ଅବ୍ୟକ୍ତିରେ ପରିଣତ କରିଦିଏ ଅଥବା ଆଗ ଅବ୍ୟକ୍ତିମାନେ କ୍ଷମତାପନ୍ନ ହୋଇ ସଲା ଓ ଷଡ଼ଯନ୍ତ୍ର କଲାଭଳି ସମାଜଟାକୁ ଏକ ଅସମାଜରେ ପରିଣତ କରି ପକାନ୍ତି, ଭାଗ ଓ ମାପ କରି କିଏ ନିର୍ଭୁଲ ଭାବରେ ସେକଥା କହି ପାରିବ ?

ଶ୍ରୀମତୀ ହାରିଏଟ୍ ତାଙ୍କର ଅତ୍ୟନ୍ତ ଦରଦପୂର୍ଣ୍ଣ ଶୈଳୀରେ କହିଛନ୍ତି : ଏହି ମରଦଟା ହଜାରେ ଡ଼ଲାରରେ କିଣା ହୋଇଥିଲା, ଆଉ ସେଇଟା ପାଇଁ ମୁଁ ଆଠଶହ ଦେଇଥିଲି । ମାଆଟାର କୋଳରେ ଥିବା ସେହି କୃଷ୍ଣକାୟ ଶିଶୁଟା ସକାଶେ ମୋତେ ଅଧିକା ଶହେ ଡ଼ଲାର ଦଣ୍ଡ ଦେବାକୁ ପଡ଼ିଲା । ମଣିଷର ମନ ଆଉ ହୃଦୟ ଯଦି କେବଳ ଏହିପରି ହିସାବ ଭିତରେ ହିଁ ଛନ୍ଦି ହୋଇ ରହିଥିବେ, ତେବେ କଳା ମଣିଷଟିକୁ ସବାଆଗ ଜଣେ ମଣିଷରୂପେ ଦେଖିବାର ସେହି ଅନ୍ୟ ସାହସ ଓ ଅନ୍ୟ ବିବେକଟି ପୁଣି କେଉଁଠୁ ଆସିବ ? ହୃଦୟ ଓ ମନନଶକ୍ତି କାମ କରୁଥିଲେ ମଧ୍ୟ ଜଣେ ମନୁଷ୍ୟ କଳା ହୋଇଥିଲେ ସୁଦ୍ଧା ତଥାପି ଜଣେ ସହୋଦର ଭାଇ ପରି ବୋଧ ହେଉଥାନ୍ତା । ମାତ୍ର,ପରିସ୍ଥିତି ଆମର ଏପରି ହୋଇ ଯାଇଥିଲା ଯେ, ସିଏ କେବଳ ଏକ ପଣ୍ୟପରି ଦୃଷ୍ଟିଗୋଚର ହେଉଥିଲା । ତାକୁ ମୁଁ ଏତେ ଡ଼ଲାର ଦେଇ ହାଟରୁ କିଣିଛି ଅଥବା ତାକୁ ହାଟକୁ ନେଇ ବିକିଲେ ମୋତେ ଏତେ ଡ଼ଲାର ମିଳିବ,- ଏତିକିବ୍ୟତୀତ ସେତେବେଳେ ଆଉକିଛି ଭାବି ପାରିବାର ଅବକାଶ ହିଁ ନଥିଲା । ଏହି ଦାସଟା ବେଶ୍ ବୁଦ୍ଧିଆ ବୋଧ ହେଉଛି ;- ତେବେ ତାହାକୁ ଆଉ ଦୁଇଶହ ଡ଼ଲାର ଅଧିକାରେ ବିକ୍ରୀ କରାଯାଇ ପାରିବ । ସେଇଟା ବେଶ୍ ବିଶ୍ୱସ୍ତ ଓ ନିଷ୍ପାପର ହୋଇଥିବ ବୋଲି ମନେ ହେଉଛି ; ତେଣୁ ତା' କାଗଜ ଉପରେ ସେହି କଥାଟା ଲେଖିଦିଅ ଏବଂ ତା' ମୂଲ୍ୟକୁ ଆହୁରି ଏତେ ଶହ ଡ଼ଲାର ବେଶୀ କରିଦିଅ । ଏହିପରି ଭାବରେ ମଣିଷର ମୂଲ୍ୟ ନିରୂପଣ କରା ଯାଉଥିଲେ ଆମେ ତାକୁ ଜଣେ ମଣିଷ ବୋଲି ସ୍ୱୀକାର କରିବାପାଇଁ ଆଉ କୌଣସି ଅବସର ପାଇବାନାହିଁ । ଯିଏ ଏହିପରି ଅସ୍ୱୀକୃତ ହୋଇ ରହୁଛି, ନିଜର ଅସହାୟତା ଦୃଷ୍ଟିରୁ ସିଏ ହୁଏତ ତାହାକୁ ହିଁ ନିଜର ନିୟତି ବୋଲି ମାନିନେବ । ସିଏ ସହିବ, ଦେହରେ ପ୍ରାଣ ଥିବାଯାଏ ମୁଖ୍ୟତଃ ସହୁଥିବ, ହୁଏତ ନିଜ ବିଷୟରେ ପୂର୍ଣ୍ଣ ଉଦାସୀନ ହୋଇ କେବଳ ସହ୍ୟ କରୁଥିବ । ମାତ୍ର, ଯିଏ ଅସ୍ୱୀକାର କରୁଛି, ସିଏ ଆହୁରି ଦୁର୍ଦ୍ଦାନ୍ତ ହେବ, ନିଜର ନିୟତିକୁ ସିଏ ନିଜର ଗୁହାଳ ଭିତରେ ଆଣି

ଖୁଣ୍ଟରେ ବାନ୍ଧି ଶିଖିଛି ବୋଲି ନିଜର କେତେ ତାରିଫ କରୁଥିବ । ତଥାପି ତା' ଭିତରେ କେଉଁଠାରେ କ'ଣ ସମ୍ଭାବନାଟିଏ ନିତାନ୍ତ ଉପେକ୍ଷିତ ହୋଇ ରହିଥିବ । ନିଜ କୃତ ଅନ୍ଧାର ଭିତରେ ସିଏ ମୋଟେ କିଛିହେଲେ ଦେଖି ପାରୁନଥିବ ।

ଅପବାଦ ରହିଛି ଯେ, ସେତେବେଳେ ଆମେରିକାର ବନ୍ଦୀଶାଳା ମାନଙ୍କରେ କଏଦୀମାନେ ଦିନରେ ଯେତେ ଘଣ୍ଟା କାମ କରୁଥିଲେ, ଏହି କ୍ରୀତଦାସମାନେ ଦୈନିକ ତା'ଠାରୁ ଯଥେଷ୍ଟ ଅଧିକ ସମୟ କାମ କରିବାକୁ ବାଧ ହେଉଥିଲେ । ଦିନଟା ସେମାନଙ୍କ ପାଇଁ ପ୍ରକୃତରେ ଅତ୍ୟନ୍ତ ଦୀର୍ଘ ହୋଇ ରହିଥିଲା । ଏବଂ, ସ୍ଥଳେ ସ୍ଥଳେ ରାତିରେ ମଧ କାମ କରିବାକୁ ପଡୁଥିଲା । କୃଷିକ୍ଷେତ୍ରର ପୟୋଜନ ଅନୁସାରେ ସମୟ ସମୟରେ ସେମାନେ ରାତି ଉଜାଗର ରହି ବି କାମ କରୁଥିଲେ । ଦିନଟି ଆରମ୍ଭ ହେବା ସମୟରେ ହିଁ ସେମାନେ କାମକୁ ବାହାରି ଯାଉଥିଲେ ଏବଂ ସୂର୍ଯ୍ୟଦେବ ବୁଡ଼ି ଅନ୍ଧାର ହୋଇ ଆସିବା ପର୍ଯ୍ୟନ୍ତ କାମ କରୁଥିଲେ । ସକାଳ ଜଳଖିଆ ନିମନ୍ତେ ମଝିରେ ଘଣ୍ଟାଏ ଅଧଘଣ୍ଟାଏ ଛୁଟି ଅବଶ୍ୟ ମିଳୁଥିଲା ଏବଂ ମଧ୍ୟାହ୍ନର ଭୋଜନ ସମୟକୁ ଆଉ ଘଣ୍ଟାଏ କି ଦୁଇ ଘଣ୍ଟାର ଛୁଟି । ଏବଂ, ଋତୁ ଅନୁସାରେ ଓ ସେମାନେ କରୁଥିବା କାମର ସ୍ୱଭାବ ଅନୁସାରେ ମଧ ଏହି ବିରତିର ସମୟଗୁଡ଼ିକରେ ମଧ ଏପାଖ ସେପାଖ ହୋଇ ଯାଉଥିଲା । ହଁ, ଫୁରସତ ସମୟରେ ନିଜ ଖୁସୀରେ ବା ନିଜ ପ୍ରୟୋଜନରେ ବାହାରକୁ ଯିବାକୁ ହେଲେ ମାଲିକ ବା ଜମାଦାରଙ୍କଠାରୁ ବିହିତ ଅନୁମତି ନେବା ଆବଶ୍ୟକ ହେଉଥିଲା । ବେଳେ ବେଳେ ନିୟମଭଙ୍ଗ ଖୁବ୍ ହେଉଥିଲା ଏବଂ ଅକ୍ଷମଣୀୟ କ୍ଷେତ୍ରଗୁଡ଼ିକରେ ସେଥିଲାଗି ଶାସ୍ତି ମଧ ମିଳୁଥିଲା । ନିଜ ପରିବାରଙ୍କ ପାଖକୁ ଅନୁମତି ନେଇ ମଝିରେ ମଝିରେ ଯାଇ ହେଉଥିଲା । ଦାସମାନେ ନିଜ ଦାୟିତ୍ୱରେ ଓ ନିଜ ଉଦ୍ଦେଶ୍ୟରେ କୁକୁଡ଼ା ଓ ବତକ ପ୍ରଭୃତି ପାଳନ କରି ପାରୁଥିଲେ ଏବଂ ଏହିପରି ଭାବରେ କିଛି ରୋଜଗାର ଓ ସଂଚୟ କରି ପାରୁଥିଲେ । ହଁ, ଏକଥା ସତ ଯେ ରାଜ୍ୟ ରାଜ୍ୟ ଫରକରେ ଏହି ସୁଯୋଗ ତଥା ନିୟମଗୁଡ଼ିକ ମଧ ଭିନ୍ନ ଭିନ୍ନ ଥିଲା । ସାମର୍ଥ୍ୟ ଅର୍ଜନ କରି ପାରିଲେ ଦାସମାନେ ପଇସା ଦେଇ ନିଜ ଦାସତ୍ୱରୁ ମଧ ମୁକ୍ତ ହୋଇ ପାରୁଥିଲେ । ନିଜ ଉପାର୍ଜିତ ଅର୍ଥ ସେତେବେଳେ ପ୍ରକୃତରେ ଖୁବ୍ କାମରେ ଲାଗି ପାରୁଥିଲା ।

ମାତ୍ର, କାମରେ ହେଳା କଲେ ଦଣ୍ଡ, ନିୟମ ଭଙ୍ଗ କଲେ ଦଣ୍ଡ, ଅବାଧ ହେଲେ ଦଣ୍ଡ,- ଏହାହିଁ ସଚରାଚର ଅସଲ ନିୟମ ହୋଇ ରହିଥିଲା । କ୍ରୀତଦାସ ହେଉଛି ମାଲିକର ନିଜ ସମ୍ପତ୍ତି । ସିଏ ଅର୍ଥ ଦେଇ ସେହି ସମ୍ପତ୍ତିକୁ କିଣିଛି ; ଅନ୍ୟ ଯାବତୀୟ ସମ୍ପତ୍ତିକୁ ଯେମିତି କିଣିଛି, କ୍ରୀତଦାସକୁ ମଧ ଠିକ୍ ସେହିପରି କିଣିଛି । ସିଏ ଯେମିତି ଯେତେବେଳେ ଇଚ୍ଛା କରିବ, ଭୃତ୍ୟକୁ ସେହିଭଳି ଦଣ୍ଡ ଦେଇ ପାରିବ । ନ୍ୟାୟାଳୟର ନ୍ୟାୟ ମଧ ମାଲିକ ପକ୍ଷର ସମର୍ଥନ କରିବ । ସବୁଠାରୁ ଅଧିକ ସୁଲଭ ଦଣ୍ଡ ହେଉଛି ବେତମାଡ଼ । ହାତଗୋଡ଼ ବାନ୍ଧି ଦେଇ ପିଠିରେ ଚାବୁକ୍ ପ୍ରହାର ହେବ ଏବଂ ନୋଳା ଫାଟିଯିବ,- ସ୍ୱୟଂ ଇନ୍ଦ୍ର ଇଚ୍ଛା

କଲେ ମଧ୍ୟ ଏଥିରୁ କଦାପି ରକ୍ଷା କରି ପାରିବେନାହିଁ । ଏହି ସବୁକିଛି କୃତ୍ୟ ସମ୍ପୂର୍ଣ୍ଣ ପ୍ରକାଶ୍ୟ ଭାବରେ ହେବ । ପଡ଼ୋଶୀ ଦେଖୁଥିବେ, ଅନ୍ୟ କ୍ରୀତଦାସମାନେ ମଧ୍ୟ ଦେଖୁଥିବେ ଏବଂ ପ୍ରମାଦ ଗଣୁଥିବେ । ସେଇଠି ଗଛ ଉପରେ ଯଦି ଦୁଇତିନିଟା ବୋଧ ମାଙ୍କଡ଼ ମଧ୍ୟ ବସି ଥାଆନ୍ତେ, ତେବେ ସେମାନେ ମଧ୍ୟ କେବଳ ସେହିପରି ଦେଖୁଥାଆନ୍ତେ, ଆଦୌ କିଛି କରି ପାରନ୍ତେନାହିଁ । ଏ ପୃଥିବୀ ଗୋରାମାନଙ୍କର ପୃଥିବୀ, ଏଠି ସବୁଯାକ ନିୟମ ସେଇମାନେ ତିଆରି କରିଛନ୍ତି, ଏସବୁ - ଯାହାକିଛି କଲେ ମଧ୍ୟ ସେମାନେ ଅବଶ୍ୟ ଧର୍ମରେ ରହିଛନ୍ତି ବୋଲି ବିଶ୍ୱାସ କରୁଛନ୍ତି । ତେଣୁ, ଅବାଧ କ୍ରୀତଦାସକୁ ସିଏ ଗଛରେ ବାନ୍ଧିଦେଇ ପାରିବ ଏବଂ ମନଇଚ୍ଛା ପ୍ରବଳ ହୋଇ ଚାବୁକ୍ ବସାଇଦେଇ ପାରିବ । ସବୁଠାରୁ କଠୋର ବେତମାଡ଼ ବସୁଥିଲା କୌଣସି କ୍ରୀତଦାସ ପଳାଇ ଯିବାର ଚେଷ୍ଟା କରୁଛି ବୋଲି ଜଣା ପଡ଼ିଲେ ଅଥବା ଖସି ପଳାଇଯିବା ପରେ ପୁନର୍ବାର ଧରା ହୋଇ ଆସିବା ପରେ । ସେମାନଙ୍କୁ ପୂରା ଲଙ୍ଗଳା କରି ଦିଆଯିବ ଓ ବେତପ୍ରହାର ହେବ । ଏହି କ୍ଷେତ୍ରରେ ନାରୀ, ନର, ବଡ଼, ସାନ, ଆଦୌ କୌଣସି ତାରତମ୍ୟ କରା ଯିବନାହିଁ ।

ପାଖରେ ଗଛଟାଏ ଥିଲେ ଦଉଡ଼ିରେ ଦୁଇ ହାତକୁ ବାନ୍ଧି ଗଛରେ ଲଟକାଇ ଦିଆଯିବ । କିମ୍ୱା, ଗୋଟାଏ ଖୁଣ୍ଟରେ ବାନ୍ଧି ଦିଆଯାଇ ପାରିବ । ତା'ପରେ ଶୁଖିଲା ଗୋରୁଚମଡ଼ାକୁ ଚାବୁକ୍ କରି ମାଡ଼ ବସାଯିବ । ମାଡ଼ ବସି ଝରଝର ରକ୍ତ ବୋହୁଥିବ ଓ ସମସ୍ତେ ତାକୁ ଦେଖୁଥିବେ କିନ୍ତୁ କିଛି କରି ପାରୁନଥିବେ । କାହାର ବିକଳ ଦେଖି ବିକଳ ଲାଗୁଥିବ, ଅଥଚ କିଛି କରି ହେଉନଥିବ, ଏହାଠାରୁ ବଳି ବିକଳ ଅବସ୍ଥାଟିଏ ଆମ ଜୀବନରେ ପ୍ରକୃତରେ ଆଉ କ'ଣଅଛି କେଜାଣି ? ଏହିପରି ଜଣେ ବ୍ୟକ୍ତି ତାଙ୍କ ପିଲାଦିନେ ଦେଖିଥିବା ଏହି ବେତମାଡ଼- ତାଣ୍ଡବର ବର୍ଣ୍ଣନା ଦେବାକୁ ଚେଷ୍ଟା କରିଛନ୍ତି : ଜ୍ୟାକ୍ ନାମରେ ଗୋଟିଏ ବାଳକକୁ ଏହିଭଳି ବେତମାଡ଼ ହୋଇଥିବାର ମୁଁ ବହୁବାର ଦେଖିଛି । ମୁଁ ପିଲାଟିଏ ହୋଇଥାଏ ; ଥରେ ଆଉଗୋଟିଏ ପିଲାକୁ ଗଛରେ ବାନ୍ଧି ବେତମାଡ଼ ହେବାର ଦେଖି ମୋତେ ଅତ୍ୟନ୍ତ ବିଚିତ୍ର ଲାଗିଥିଲା । ମୋ' ଆଖିରୁ ଧାର ଧାର ଲୋତକ ବୋହି ଆସୁଥାଏ ଏବଂ ଶେଷକୁ ମୁଁ ମଧ୍ୟ ମାଡ଼ ଖାଉଥିବା ବାଳକଟି ପରି ଭେଁ ଭେଁ ହୋଇ କାନ୍ଦି ଉଠିଥିଲି । ଭାବୁଥିଲି, ସେହି ପିଲାଟି ସହିତ ମୋତେ ମଧ୍ୟ ସେହିପରି ମାଡ଼ ହୁଅନ୍ତା କି ! ମୋ'ର ଭଲ ଭାବରେ ମନେ ଅଛି, ଏପରି ସହାନୁଭୂତି ପ୍ରକାଶ କରିଥିବାର ଅପରାଧ ନିମନ୍ତେ ବାପା ମୋତେ ଅତ୍ୟନ୍ତ କର୍କଶ ଭାବରେ ଗାଳି ଦେଇଥିଲେ । ଗୋରା ଘରର ବାଳକଟି ପୁନର୍ବାର ବଡ଼ ହେବାପରେ ପଛକୁ ଅନାଇ ଲେଖିଛନ୍ତି : ନିଗ୍ରୋମାନେ ମଧ୍ୟ ମଣିଷ, ସେହି ପ୍ରତ୍ୟୟଟି ହୋଇଯିବା ପରେ ସେହି ପିଲାକାଳର ଗୋଟିଏ ଘଟଣା ମୋ'ର ଅନେକ ସମୟରେ ମନେ ପଡ଼ିଯାଏ ଏବଂ ମୋତେ ଦୁଃଖାଭିଭୂତ କରିପକାଏ । ଖୁବ୍‌ସମ୍ଭବ ମୋତେ ସେତେବେଳେ ଚଉଦ କି ପନ୍ଦର ବର୍ଷ ବୟସ ହୋଇଥିବ । ନେଡ୍ ବୋଲି ଆମ ଘରର କଳା ଭୃତ୍ୟବାଳକଟିଏ କ'ଣ ଦୋଷଟାଏ କରିଛି ବୋଲି ସମସ୍ତେ ଅନୁମାନ କରୁଥିଲେ

ଏବଂ ମୁଁ ତାକୁ 'ସଂଶୋଧନ' କରିବାକୁ ଡ଼କାଇ ଆଣିଲି । ବୋଧହୁଏ ଗୋଟାଏ ପଘାକୁ ସିଏ ପ୍ରକୃତ ଜାଗାରେ ନରଖି ଆଉଗୋଟାଏ ଜାଗାରେ ରଖି ଦେଇଥିଲା । ନେଡ୍ ମୋ'ଠାରୁ ବେଶ୍ ଅଧିକ ବଡ଼ ଦେଖା ଯାଉଥାଏ, ତା' ଦେହରେ ମୋ'ଠାରୁ ଅଧିକ ବଳ ବି ରହିଥାଏ । ମୁଁ ତାକୁ ପ୍ରହାର କରିବାକୁ ବାହାରିଲା ବେଳକୁ ସିଏ ମୋ' ବାହା ଦୁଇଟାକୁ ନିଜ ହାତରେ ଧରିନେଲା । ମୋ' ମାଡ଼ରୁ ରକ୍ଷା ପାଇବାକୁ ହିଁ ସିଏ ସେହିଭଳି କରିଥିଲା । ତା'ର ଏହି ଦୁଃସାହସିକ ଅବାଧତା ଦେଖି ମୋ'ର ରାଗ ତତ୍‌କ୍ଷଣାତ୍ ମୁଣ୍ଡ ଉପରକୁ ଚଢ଼ି ଯାଇଥିଲା ଓ ମୁଁ ଦଉଡ଼ି ଆସ, ଦଉଡ଼ି ଆସ ବୋଲି କହି ବଡ଼ ପାଟିରେ ଚିତ୍କାର କରି ଉଠିଲି । ମୋତେ ରକ୍ଷା କରିବା ସକାଶେ ମୋ' ପିତାମାତା ଦଉଡ଼ି ଆସିଲେ । ବାପା ତାକୁ ବାଡ଼େଇ ବାଡ଼େଇ ହାଲିଆ କରିଦେଲେ ଓ ଦଉଡ଼ିରେ ବାନ୍ଧି ପକାଇଥିଲେ । ସେଠାରୁ ତାକୁ ବଗିଚା ଭିତରକୁ ନେଇ ନିଆଗଲା । ସେଠାରେ ବହୁତ ଗଛଡ଼ାଳ ପଡ଼ିଥିଲା ଓ ବାପା ସେଇଥିରୁ ଗୋଟାଏ ମୋ' ହାତରେ ଧରାଇ ଦେଇ ନେଡ୍‌କୁ ପିଟିବାକୁ କହିଲେ । ଗୋଟାଏ ଛେଚ଼େରେ ହୋଇଗଲେ ସିଏ ଆଉ ଗୋଟାଏ ମୋ' ହାତରେ ଧରାଇ ଦେଉଥାନ୍ତି । ମୁଁ ଲୋକଟାକୁ ବେଶ୍ କିଛି ସମୟ ପିଟି ସାରିବା ପରେ ବିଚରା ଆସି ମୋ' ଆଗରେ ଆଣ୍ଠୁ ମାଡ଼ି କ୍ଷମା ପ୍ରାର୍ଥନା କଲା ଏବଂ ମୁଁ ତା' ମୁହଁ ଉପରେ ଗୋଇଠିରେ ଗୋଇଠାଏ ପକାଇଥିଲି । ବାପା କହିଲେ, ''ନାଇଁ ଗୋଇଠା ନମାରି ତୁ ବେତରେ ମାର ।'' ମୁଁ ଠିକ୍ ତାହାହିଁ କଲି ଓ ତା' ପିଠିଯାକ ଫୁଲି ଆବୁ ଆବୁ ହୋଇ ବାହାରି ପଡ଼ିଲା । ଏହି କଥା ମନେ ପଡ଼ିଲେ ମୁଁ ନିଜ ଭିତରେ ତୀବ୍ର ଅନୁତାପ ଅନୁଭବ କରିଛି ଓ ଘଟଣାଟିକୁ ଏବେ ସୁଦ୍ଧା ଭୁଲି ପାରିନାହିଁ ।

ଯେଉଁ ମାଲିକମାନେ କ୍ରୀତଦାସମାନଙ୍କୁ 'ସଂଶୋଧନ' କରିବାକୁ ପଠୁଥିବା ସମୟରେ ସେମାନଙ୍କୁ ନିଜେ ଚାବୁକ୍ ଓ ବେତ ମାରିବାରେ କଷ୍ଟଟିକୁ ସ୍ୱୀକାର କରୁନଥିଲେ, ସେମାନଙ୍କ ନିମନ୍ତେ ଅନ୍ୟ ବ୍ୟବସ୍ଥା ରହିଥିଲା । ଏହି କ୍ଷେତ୍ରରେ ଭୃତ୍ୟମାନଙ୍କୁ ଜେଲଖାନାକୁ ନେଇ ବେତ ମରାଇ ଆଣିବାକୁ ପଠୁଥିଲା । ଏହି କାର୍ଯ୍ୟ ସକାଶେ ସେଠି ଜେଲଖାନାରେ ସ୍ୱତନ୍ତ୍ର ମଣିଷମାନେ ନାଗୁଆ ହୋଇ ରହିଥିଲେ ଏବଂ ଜେଲ୍ କର୍ତ୍ତୃପକ୍ଷଙ୍କୁ କିଛି ଅର୍ଥପାଉଣା ଦେଇ ନିଯୁକ୍ତ ସେହି ଲୋକମାନଙ୍କ ଦ୍ୱାରା କାର୍ଯ୍ୟଟିକୁ ସମ୍ପନ୍ନ କରାଯାଇ ପାରୁଥିଲା । କୌଣସି ସ୍ଥଳରେ କଳା କ୍ରୀତଦାସଟିଏ ଜଣେ ଗୋରା ମଣିଷକୁ ହତ୍ୟା କଲେ ସେଥିପାଇଁ ଆଖି ବୁଜି ଫାଶୀଦଣ୍ଡ ଦିଆଯାଇ ପାରୁଥିଲା । କେବଳ ଗୋରା ଲୋକହିଁ ନ୍ୟାୟାଳୟରେ ସାକ୍ଷ୍ୟ ଦେଇ ପାରୁଥିଲେ ଏବଂ ତାହା ନ୍ୟାୟାଳୟର ଗ୍ରହଣୀୟ ହେଉଥିଲା । ଅନେକ ସମୟରେ ଏହିପରି ମିଛ ସାକ୍ଷ୍ୟପ୍ରଦାନ ଦ୍ୱାରା ନିର୍ଦ୍ଦୋଷ ଦାସଟିଏ ଯେ ଅନ୍ୟାୟରେ ଫାଶୀ ନପାଉଥିବ, ସେହି କଥାଟିକୁ କିଏ ଅସ୍ୱୀକାର କରି ପାରିବ ? ଏବଂ, ଯଦି ଜଣେ ଗୋରା ଖାମିନ୍ଦ ନିଜେ ରଖିଥିବା କ୍ରୀତଦାସଟିକୁ ହତ୍ୟା କରୁଥିଲା, ତେବେ ସେଥିପାଇଁ ତାକୁ ଫାଶୀରେ ଝୁଲିବାର ଆଦୌ କୌଣସି ପ୍ରୟୋଜନ ନଥିଲା । ନିଗ୍ରୋଟା ତ ମଣିଷ ନୁହେଁ, ସିଏ ହେଉଛି ଜଣେ ମୁନିବ ଥୋକ ବଜାରରୁ ଡ଼ଲାର ଦେଇ କିଣିକରି ଆଣିଥିବା ଏକ

ପଣ୍ୟ, ଏକ ଦ୍ରବ୍ୟ, ତା'ର ଗୋଟିଏ ସମ୍ପତ୍ତି । ତେଣୁ, କ୍ରୀତଦାସକୁ ହତ୍ୟା କଲେ ତାହାକୁ ଆଦୌ ହତ୍ୟାର ଏକ ଅପରାଧ ବୋଲି କୁହାଯାଇ ପାରିବ କି ନାହିଁ, ସେଥିଲାଗି ନ୍ୟାୟମୂର୍ତ୍ତି ଏବଂ ଆଇନ୍‌ବେତ୍ତାମାନେ ନ୍ୟାୟାଳୟରେ ଆଲୋଚନା କରୁଥିଲେ । ହତ୍ୟାରେ ମଧ୍ୟ ମାତ୍ରାଭେଦ ରହିଥିଲା । ଯଦି ତୁମେ ଅମୁକ ଭୃତ୍ୟଟିକୁ ଜୀବନରୁ ମାରିଦେବ ବୋଲି ସ୍ଥିର କରି ସେଥିଲାଗି ବନ୍ଧୁକ ସଜ କରି ବାହାରି ପଡ଼ିଲ ଏବଂ ମନସ୍ଥ କରିଥିବା ନିଜର ସେହି କାର୍ଯ୍ୟଟିକୁ ସମ୍ପନ୍ନ କଲ, ତେବେ ହୁଏତ ସେହି କାର୍ଯ୍ୟଟିକୁ ଏକ ହତ୍ୟା ବୋଲି କୁହାଯିବ । ଏହିଭଳି ଭାବେ, ଅପରାଧଟି ଏକ ହତ୍ୟା ବୋଲି ସାବ୍ୟସ୍ତ ହୋଇ ଯାଉଥିଲେ ମଧ୍ୟ ତଥାପି ସମ୍ଭ୍ରାନ୍ତ ନ୍ୟାୟଦାତା ମାନଙ୍କର କ୍ଷମା କରିବାର ଅଧିକାରଟି ମଧ୍ୟ ଅବଶ୍ୟ ରହିଥିବ ଓ ସେହି ପ୍ରକ୍ରିୟାରେ ହତ୍ୟାକାରୀକୁ ସାତଖୁଣ ମାଫ ବି ମିଳିଯିବ ।

ମାତ୍ର, ଅପର ପକ୍ଷରେ ଯଦି ତୁମେ ତୁମର ଭୃତ୍ୟ କୌଣସି କୃଷ୍ଣକାୟକୁ ତାହାର ଏକ ତୁମ ବୁଝିବା ଅନୁସାରେ ଗର୍ହିତ କାର୍ଯ୍ୟ ପାଇଁ ପିଟିଲ, ଅନ୍ୟାନ୍ୟ ଦଣ୍ଡ ଦେଲ, ଦଣ୍ଡ ଦେଉ ଦେଉ ତୁମ କ୍ରୋଧର ମାତ୍ରା ମଧ୍ୟ କ୍ରମଶଃ ବଢ଼ିବାକୁ ଲାଗିଲା, ଅର୍ଥାତ୍ ଯଦି ତୁମେ ମାତ୍ରାରେ ଏକ କ୍ରମବୃଦ୍ଧି କରି ତାକୁ ବାନ୍ଧିଲ, ଘୋଷାରିଲ, ତା' ଦେହରେ ଚିଆଁ ଦେଲ, ତାକୁ ବାନ୍ଧି କରି ଅନ୍ଧାରଘରେ ପକାଇ ରଖିଲ, ଏବଂ, ଏହିପରି ବାର ଘଣ୍ଟା ବା ବାଇଶି ଘଣ୍ଟା ନାନାବିଧ କାଣ୍ଡ ଘଟିବା ହେତୁ ଯଦି ଅପରାଧୀଟିର ପ୍ରାଣବାୟୁଟି ଉଡ଼ିଗଲା, ତେବେ କେତେକ ରାଜ୍ୟରେ ଥିବା ନ୍ୟାୟନୀତି ଅନୁସାରେ ତାହାକୁ ଏକ ଶୁଦ୍ଧ ହତ୍ୟା ବୋଲି କୁହା ଯାଉନଥିଲା ଏବଂ ତେଣୁ ଆସାମୀକୁ କ୍ଷମା ମିଳିବା ଅଧିକ ସମ୍ଭବ ହୋଇ ପାରୁଥିଲା । ଏବଂ, ଅସଲ କଥା ହେଉଛି, ଗୋଟାଏ ମନୁଷ୍ୟ ଉପରେ ଯେ ଏତେମନ୍ତେ ଅତ୍ୟାଚାର ହୋଇଛି, ସେଥିପାଇଁ ତ ପୁଣି ସାକ୍ଷୀଗୁଡ଼ା ରହିଥିବା ଆବଶ୍ୟକ । କୃଷ୍ଣକାୟମାନଙ୍କୁ ମାରି ପିଟି ଓ ଜୀବନରୁ ମାରି ବାଧ କରିବା ସମୟରେ ଆଦୌ କିଛିହେଲେ ଲୁଚାଇ କରାଯାଉ ନଥିଲା । ତାହାକୁ ଗୋରା ଏବଂ କଳା ଉଭୟେ ଦେଖୁଥିଲେ । କିନ୍ତୁ, ଗୋରା ମଣିଷଟିଏ କିପରି ଆଉଜଣେ ଗୋରା ବିରୁଦ୍ଧରେ ସାକ୍ଷ୍ୟ ଦେବ ? କାହିଁକି ବା ସାକ୍ଷ୍ୟ ଦେବ ? ଏବଂ, ଦି' କୋଡ଼ି କଳା ସାକ୍ଷୀ ଆଣି କଚେରିରେ ଠୁଳ କଲେ ମଧ୍ୟ ସେଗୁଡ଼ିକ ନ୍ୟାୟାଳୟ ଦ୍ୱାରା ଗ୍ରହଣୀୟ ହେବନାହିଁ । ଘଟଣାଟିକୁ ପ୍ରତିପାଦିତ କରିବାକୁ ହେଲେ ତୁମକୁ ଗୋରାଙ୍କ ଭିତରୁ ସାକ୍ଷୀ ଯୋଗାଡ଼ କରିବାକୁ ପଡ଼ିବ । ଏବଂ, ସେହି ଯୋଗାଡ଼ କରିବାଟା ସମ୍ଭବ ହେଉନଥିଲା ।

ସତ୍ୟଟାକୁ ଅଧିକ ଚାକ୍ଷୁଷ କରିବାପାଇଁ ଶ୍ରୀମତୀ ହାରିଏଟ୍ ତାଙ୍କର ପୁସ୍ତକରେ ୧୮୫୦ ମସିହାରେ ହୋଇଥିବା କୌଣସି ଏକ ନ୍ୟାୟର ଦୃଷ୍ଟାନ୍ତ ଉଦ୍ଧାର କରିଛନ୍ତି । ଘଟଣାଟି ହେଉଛି ଯେ, ଦିନେ ଅଭିଯୁକ୍ତ ଗୋରା ମାଲିକଟି ସାମ୍ ନାମକ ତାଙ୍କର ଜଣେ କ୍ରୀତଦାସକୁ ଦଉଡ଼ାରେ ବାନ୍ଧି ପକାଇଲେ ; ତା'ର ହାତ, ବେକ, ଆଣ୍ଠୁ ଓ ଗୋଡ଼ ସବୁଆଡ଼ ଏହିପରି ବନ୍ଧା ହୋଇଗଲା ଏବଂ ତା'ପରେ ମାଲିକ ତାକୁ ଚାବୁକ୍‌ରେ ମାରିବାକୁ ଲାଗିଲେ । ତା'ପରେ ଗୋଟାଏ କାଠଫାଳିଆ ଆଣି ତାକୁ ପିଟିଲେ ଏବଂ ତାଙ୍କର ଅନ୍ୟ ଦୁଇଜଣ

ଦାସଙ୍କୁ ମଧ୍ୟ ଖଣ୍ଡେ ଖଣ୍ଡେ କାଠପଟା ଧରି ତାହାକୁ ପିଟିବା ପାଇଁ ଆଦେଶ ଦେଲେ । ବିଚରା ଦାସଟି ସେହିପରି ବନ୍ଧାହୋଇ ପଡ଼ିଥାଏ ଓ ତା'ର ମୁଣ୍ଡ ଓ ମୁହଁ ସମେତ ସମସ୍ତ ଶରୀର ଉପରେ ମାଡ଼ ବସିବାରେ ଲାଗିଥାଏ । ଦେହର ବହୁ ସ୍ଥାନ ଫାଟିଯାଇ ସେତେବେଳକୁ ରକ୍ତ ବାହାରିବାକୁ ଆରମ୍ଭ କଲାଣି । ସେଉଠୁ ସେହି କଟା ଓ ଫଟା ସ୍ଥାନଗୁଡ଼ିକ ଉପରେ ମରିଚ ମିଶାଗରମ ପାଣି ଆଣି ଢ଼ଳାଗଲା । ଆଦିଷ୍ଟ ହୋଇ ଅନ୍ୟ ଦୁଇ କ୍ରୀତଦାସ ମଧ୍ୟ ସେହି କାର୍ଯ୍ୟଟିକୁ କରୁଥାଆନ୍ତି । ସେମାନଙ୍କର ବି ତ ନିଜର ପ୍ରାଣଟା ବିଷୟରେ ଭୟ କରିବା କଥା ? ଏତେ କାଣ୍ଡ ହୋଇସାରିବା ପରେ କ୍ରୀତଦାସ ଦେହରୁ ଦଉଡ଼ି ଫିଟାଇ ଦିଆଗଲା ଏବଂ ତା'ପରେ ତାର ମୁଣ୍ଡ ଉପରେ ଗୋଇଠାବର୍ଷା ହେବାକୁ ଆରମ୍ଭ କଲା । ତା'ପରେ ସେହି ଶରୀରଟାକୁ ନେଇ ଅନ୍ଧାରଘରେ ପକାଇ ଦିଆଗଲା ଏବଂ ବେକରେ ଗୋଟାଏ ଦଉଡ଼ି ଆଣି ବାନ୍ଧି ଦିଆଗଲା । ତା'ପରେ ଶରୀରଟି ଆଉ ଅଧିକ ସହି ପାରିଲାନାହିଁ ଓ କ୍ରୀତଦାସଟିର ପ୍ରାଣବାୟୁ ଉଡ଼ି ଯାଇଥିଲା । ତଥ୍ୟରୁ ଜଣାପଡ଼ିଲା ଯେ ଏହି ଶାସ୍ତି ଦେବାର ପ୍ରକ୍ରିୟାଟି ବଡ଼ିସକାଳୁ ଆରମ୍ଭ ହୋଇଥିଲା ଓ ଦିନତମାମ ଲାଗି ରହିଥିଲା । ବିଚାରପତି ସମୁଦାୟ ବ୍ୟାପାରଟିକୁ ଶ୍ରବଣ କଲେ ଏବଂ ଆଇନ୍ ଅନୁସାରେ ଏହାକୁ ଦ୍ୱିତୀୟ କାଟର ଗୋଟିଏ ହତ୍ୟା ବୋଲି ବୟାନ ଦେଇଥିଲେ । ଅର୍ଥାତ୍, ହତ୍ୟାକାଣ୍ଡଟି ସିଧା ଘଟିନାହିଁ, ସଂଶୋଧନ କରୁ କରୁ ଅର୍ଥାତ୍ ଶାସ୍ତି ଦେଉ ଦେଉ ଘଟିଛି । ହାକିମ ଭାବିଚିନ୍ତି ଦଣ୍ଡାଦେଶ ଦେଲେ ଯେ ହତ୍ୟାକାରୀ ପାଞ୍ଚବର୍ଷ ପାଇଁ ଜେଲଖାନାରେ ରହିବ । କହିବା ବାହୁଲ୍ୟ, ଏହି ଆଦେଶ ବିରୋଧରେ ଆସାମୀ ପକ୍ଷରୁ ଉଚ୍ଚତର ବିଚାରାଳୟରେ ଆପିଲ ହୋଇଥିଲା ଏବଂ ଆସାମୀ କ୍ଷମା ପାଇ ବନ୍ଦୀଶାଳାରୁ ମୁକୁଳି ଆସିଥିଲା । ଗୋଟିଏ କୃଷ୍ଣକାୟର ମୂଲ୍ୟ କେତେ, ସେକାଳର ଆମେରିକାରେ ଗୋରାମାନେ ଏହିପରି ଭାବରେ ତାହାର ବିଚାର କରୁଥିଲେ । ଗୋରା ପିଲାମାନେ କୁଆଡ଼େ ସେକାଳରେ ଖେଳ ଖେଳିବା ସମୟରେ କେତେ କେତେ ଥର ଗୋଟିଏ ଢ଼ଗର ଆବୃତ୍ତି କରି ଖୁବ୍ ଆନନ୍ଦ ପାଉଥିଲେ, "It is worth sixpence to kill a nigger, and sixpence more to bury him !" ''ଗୋଟାଏ କଳା ନିଗର୍‌କୁ ମାରିବାକୁ ମୋଟେ ଛଅ ଛଦାମ ଲାଗିବ, ଆଉ ଛଅ ଛଦାମରେ ଆମେ ତାକୁ ପୋତି ଦେଇ ବି ଆସି ପାରିବା ।''- ଆମେ ଏହିପରି ଭାବରେ ସେହି କଥାଟିର ଅନୁବାଦ କରି ପାରିବା କି ?

ତତ୍କାଳୀନ ଆମେରିକାରେ ବିଭିନ୍ନ ରାଜ୍ୟରେ ପ୍ରଚଳିତ ଅର୍ଥାତ୍ ଆଚରିତ ଲିଖିତ ଆଇନ୍‌ଗୁଡ଼ିକ ଅନୁସାରେ ଏହି କ୍ରୀତଦାସପ୍ରଥାର କିଭଳି ସଂଜ୍ଞାମାନ କରା ଯାଇଥିଲା ? ତେଣୁ, ସେହିସବୁ ସ୍ଥାନ ଓ ଜନପଦର ଜୀବନସଂସ୍କାରରେ ଶାସକ ଗୋରାସମାଜ ସେମାନେ ଖୁଣ୍ଟରେ ବାନ୍ଧି ଦାମୁଡ଼ି କରି ରଖିଥିବା କଳାମାନଙ୍କୁ କିଭଳି ବା କେଉଁ ଦୃଷ୍ଟିରେ ଦେଖୁଥିଲେ, ସେଇଥିରୁ ଏଇଟିର ଅବଶ୍ୟ କିଛି ଅନୁମାନ କରାଯାଇ ପାରିବ । ଦକ୍ଷିଣାଞ୍ଚଳରେ ଅବସ୍ଥିତ ଲୁଇସିଆନା ନାମକ ଗୋଟିଏ ରାଜ୍ୟର ବିଧାନରୂପେ ଲିପିବଦ୍ଧ ସଂଜ୍ଞାଟି ଅନୁସାରେ,

''ଜଣେ କ୍ରୀତଦାସ କହିଲେ ସେହିପରି ଗୋଟିଏ ମଣିଷକୁ ବୁଝାଇବ, ଯିଏକି ତା' ମୁନିବର ପୂର୍ଣ୍ଣ କର୍ତ୍ତୃତ୍ୱ ମଧ୍ୟରେ ରହିଛି, ଯାବତୀୟ ଅର୍ଥରେ ସିଏ ସେହି ବ୍ୟକ୍ତିଟିର ସମ୍ପତ୍ତିରୂପେ ହିଁ ତା'ପାଖରେ ରହିଛି । ମୁନିବ ଇଚ୍ଛା କଲେ ତାକୁ ଯେକୌଣସି ସମ୍ପତ୍ତି ଭଳି ବିକ୍ରୟ କରିପାରିବ; ମୁନିବ ତାହାକୁ ନେଇ ଯାହା ମର୍ଜି ତାହା କରିପାରିବ ; ଏବଂ, ଦାସ ସେସବୁ ପରିସ୍ଥିତିରେ ଆଦୌ କିଛି କରି ପାରିବନାହିଁ । ଦାସର ନିଜର ସମ୍ପତ୍ତି ବୋଲି କିଛି ନଥିବ । ତାହାର ସବୁକିଛି ଖାମିନ୍ଦର ସମ୍ପତ୍ତି ହୋଇ ରହିଥିବ ।'' ଦକ୍ଷିଣ କାରୋଲିନା ରାଜ୍ୟର ଆଇନ୍‌ରେ ଲେଖା ହୋଇଥିଲା : ''କ୍ରୀତଦାସମାନେ ଖାମିନ୍ଦର ଅଧୀନ ହୋଇ ରହିବେ, ବିକା ହୋଇ ପାରିବେ ; ଖାମିନ୍ଦମାନଙ୍କ ହାତରେ ସମ୍ପତ୍ତିବଦ୍ଧ ହୋଇ ରହିଥିବେ ।'' ଉତ୍ତର କାରୋଲିନା ରାଜ୍ୟର ସର୍ବୋଚ୍ଚ ନ୍ୟାୟଗୃହର ଜଣେ ବିଚାରପତିଙ୍କର ଭାଷାରେ , ''ଜଣେ କ୍ରୀତଦାସ ତା' ମାଲିକ ଓ ଏହାର ବଂଶଧରମାନଙ୍କର ହାତରେ ଚିରକାଳ ଏକ ସମ୍ପତ୍ତି ହୋଇ ରହିଥିବ, ଚିରଦିନ ଯାବତୀୟ ଜ୍ଞାନରୁ ବଞ୍ଚିତ ହୋଇ ରହିଥିବ, ତା'ର ନିଜର ସମ୍ପତ୍ତି ବୋଲି ଆଦୌ କିଛି ନଥିବ ; ସିଏ କେବଳ ଖଟିବ, ଶ୍ରମ ହିଁ କରିବ, ଯେପରିକି ଆଉଜଣେ, ତା'ର ମାଲିକ, ସେହି ଶ୍ରମରୁ ଲବ୍ଧ ହେଉଥିବା ଫଳକୁ ଉପଭୋଗ କରି ପାରିବ । ଅର୍ଥାତ୍, ଏହି ନିୟମଗୁଡ଼ିକର ଅଙ୍କୁଶବଳରେ ଆମେରିକାର ବିଭିନ୍ନ ରାଜ୍ୟରେ ଲକ୍ଷ ଲକ୍ଷ ମନୁଷ୍ୟ ସତେଅବା ଆଉ କେଉଁମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି ହୋଇ ରହିଥିଲେ । ସେମାନେ ଏପରି ଏକ ଦୁର୍ଗତ ଅବସ୍ଥାରେ ଥିଲେ, ଯାହାଦ୍ୱାରା କି ଜଣେ ମାଲିକ ସେମାନଙ୍କୁ ଇଚ୍ଛା କଲେ ବିକି ପାରୁଥିଲା ଏବଂ ନିଜର ମରଜୀ ଅନୁସାରେ ସେମାନଙ୍କର ସମୟ, ଶ୍ରମ ଓ ସାମର୍ଥ୍ୟକୁ ନିଜର କାମରେ ଲଗାଇ ପାରୁଥିଲା । ସେମାନେ ପୁରୁଷାନୁକ୍ରମରେ ଅଜ୍ଞାନ ଓ ଅଚେତନପ୍ରାୟ ହୋଇ ରହୁଥିଲେ । କେବଳ ଅନ୍ୟଜଣେ ଫଳକୁ ଭୋଗ କରିବ ବୋଲି ଖଟିବାକୁ ବାଧ୍ୟ ହେଉଥିଲେ ।

ଏହି ଆଇନ୍‌ଗୁଡ଼ିକୁ ଗୋରା ମାଲିକମାନେ କରିଥିଲେ ; କଳାମାନଙ୍କର ଭାଗ୍ୟ ବିଷୟରେ ଏଥିରେ ଯାବତୀୟ ମୀମାଂସା କରା ଯାଇଥିଲେ ମଧ୍ୟ ଆଇନ୍‌ଗୁଡ଼ିକୁ ପ୍ରଣୟନ କରିବାରେ ସେମାନଙ୍କର ଆଦୌ କୌଣସି ଭାଗ ନଥିଲା । ପୃଥିବୀରେ ଏବେ ମଧ୍ୟ ଯେଉଁସବୁ ଦେଶ ଏବଂ ଯେଉଁସବୁ ସମାଜରେ ବହୁସଂଖ୍ୟକ ମଣିଷଙ୍କୁ କ୍ଷମତାଶାଳୀ କୌଣସି ବର୍ଗ ବା ସ୍ୱାର୍ଥ ବଞ୍ଚିତ କରି ରଖିଛି, ସେମାନଙ୍କୁ ବୁଝିବା ନିମନ୍ତେ ଏକ ସମାନଚିତ୍ର ଖୋଜିବାକୁ ଯାଇ ଅନେକ ସମୟରେ ସେକାଳର ଆମେରିକା କଥା ତତ୍‌କ୍ଷଣାତ୍ ମନେ ପଡ଼ିଯାଏ । ଦଳେ ମନୁଷ୍ୟଙ୍କର ଦେହର ରଙ୍ଗ ଅଲଗା, ତେଣୁ ସେମାନେ ଅଧିକ ଅସହାୟ, ଅଧିକ ସମ୍ବଳହୀନ ଏବଂ ଅଦୃଷ୍ଟକୁ ମାନି ପଡ଼ିରହିବା ବ୍ୟତୀତ ସେମାନଙ୍କର ସତେଅବା କୌଣସି ଗତ୍ୟନ୍ତର ହିଁ ନାହିଁ । ସେମାନେ ହୀନ, ହେୟ, ତେଣୁ ଯାବତୀୟ ଅନାଚରଣ ସେହିମାନଙ୍କ ପାଇଁ ଦେଖାଯିବ ଓ ତାହାକୁ ଏକ ଭଦ୍ର ବ୍ୟବସ୍ଥା ବୋଲି ସ୍ୱୀକାର କରାଯିବ । ଯାବତୀୟ ମେଳରେ ସିଏ ଅସ୍ପୃଶ୍ୟ ହୋଇ ଅଲଗା ବସିଥିବ ; ଗୀର୍ଜାରେ ଭଗବଦ୍‌ଉପାସନାର ସେହି

ମୁହୂର୍ତ୍ତଟିରେ ମଧ୍ୟ ଅଲଗା ହୋଇ ବସିଥିବ, ତାର ପିଲାମାନେ ଆମ ସାର୍ବଜନୀନ ବିଦ୍ୟାଳୟଗୁଡ଼ିକରେ ପ୍ରବେଶ କରି ପାରିବେନାହିଁ, ସିଏ ରେଳ ବା ମୋଟରଯାନ ମାନଙ୍କରେ ଅନ୍ୟମାନଙ୍କର ସମକକ୍ଷ ହୋଇ ଯାତ୍ରା କରି ପାରିବନାହିଁ ଏବଂ, ସିଏ ବିଚରା କିପରି ଅଲଗା, ଅସଭ୍ୟ ହୋଇ ତିଆରି ହୋଇଛି, ଅଲଗା ଦେଖାଯାଉଛି, ସେଥିଲାଗି ତାକୁ ନିରନ୍ତର ଅନ୍ୟମାନଙ୍କର ଉପହାସର ପାତ୍ର ହେବାକୁ ପଡୁଥିବ । ବହୁ ସମ୍ଭ୍ରାନ୍ତ ବ୍ୟକ୍ତି କହିଛନ୍ତି ଯେ, ସେମାନେ ସିଆଡୁ ହିଁ ଛୋଟ ଏବଂ ନିମ୍ନ ହୋଇ ତିଆରି ହୋଇ ଆସିଛନ୍ତି । ତେଣୁ, ସେମାନେ ଅନୁରୂପ ବ୍ୟବହାର ପାଇବେ ହିଁ ପାଇବେ । ଏହି କଥାଟି ଉପରେ ମନ୍ତବ୍ୟ ଦେଇ ଶ୍ରୀମତୀ ହାରିଏଟ୍ କହିଛନ୍ତି : କେବଳ କଳାମାନଙ୍କୁ ନୁହେଁ, ପୃଥିବୀର ଯେକୌଣସି ମାନବଗୋଷ୍ଠୀକୁ ଦୃଷ୍ଟାନ୍ତ ହିସାବରେ ନିଅ, ଶିକ୍ଷାଲାଭ କରିବାର ସକଳ ପଥକୁ ସେମାନଙ୍କ ଲାଗି ବନ୍ଦ କରି ରଖ. ସେମାନଙ୍କୁ ଯାବତୀୟ ଆଶା ଏବଂ ସମ୍ମାନବୋଧରୁ ବଞ୍ଚିତ କରି ରଖ, ସେମାନଙ୍କ ଲାଗି ଉଚ୍ଚାଶା ପୋଷଣ କରିବାର ସକଳ ମାର୍ଗକୁ ବନ୍ଦ କରି ରଖ, ତେବେ ସେମାନେ ତାହାର ପରିଣାମ ସ୍ୱରୂପ ଯେପରି ହେବା ଅବଶ୍ୟମ୍ଭାବୀ, ନିଗ୍ରୋମାନେ ତାହାହିଁ ହୋଇଛନ୍ତି ।

ଘୃଣା, ଘୃଣାରୁ ଭୟ ଏବଂ ଭୟରୁ ହିଂସ୍ରତା । ଏବଂ, ଯେଉଁ ଗୋଷ୍ଠୀଟି କୌଣସି ସମାଜରେ ଅଧିକ ସମର୍ଥ ସ୍ତରରେ ଥାଏ, ଅର୍ଥରେ, ବିଦ୍ୟାରେ ଏବଂ କୌଶଳରେ ଅଧିକ ବଳବାନ୍ ହୋଇଥାଏ, ତେବେ ସିଏ ସତେଅବା ନିତାନ୍ତ ଅଳପ ଅବକାଶ ପାଇବା ମାତ୍ରକେ ଅଧିକ ହିଂସ୍ର ହୋଇ ଉଠିଥାଏ । ବେଶୀ ଡ଼ରେ, ତେଣୁ ବେଶୀ ହିଂସ୍ର ହୁଏ ; ନିଜ ପାଖରେ ଥିବା ଅର୍ଥବଳ, ଅସ୍ତ୍ରବଳ ଏବଂ କ୍ଷମତାବଳ ତାହାରି ପାଖରେ ହିଁ ଠିକ୍‌ଟା ରହିଛି ବୋଲି ତାକୁ ଏପରି ଏକ ମିଛ ଦମ୍ଭ ଆଣି ଦେଉଥାନ୍ତି ଯେ, ସିଏ ଅତ୍ୟନ୍ତ ଅବଲୀଳା କ୍ରମେ ହିଂସ୍ର ହୋଇପଡ଼େ ଏବଂ ହିଂସ୍ର ହେଉ ହେଉ ଗାର ଡ଼େଇଁପଡ଼େ । ଶ୍ରୀମତୀ ହାରିଏଟ୍ ଷ୍ଟୋ' ସେହିଭଳି ଗୋଟିଏ ଦୃଷ୍ଟାନ୍ତର ଉଲ୍ଲେଖ କରିଛନ୍ତି । ସିଏ ନିଜର ଜଣେ ବନ୍ଧୁଙ୍କୁ ସାକ୍ଷାତ୍ କରିବା ନିମନ୍ତେ କୌଣସି ସ୍ଥାନକୁ ଯାଇଥିବା ସମୟରେ ସେଠାରେ ପହଞ୍ଚି ଶୁଣିବାକୁ ପାଇଲେ ଯେ ସେଠି ପଡ଼ିଶାରେ ଥିବା ଗୋଟିଏ ଘର ପୂର୍ବଦିନ ରାତିରେ କ'ଣ ପାଇଁ ନିଆ ଲାଗି ପୂରା ପୋଡ଼ିଯାଇଛି । ଏକଣା ହୋଇ ଅତି ସାଧାରଣ ଘରଟିଏ, ଜନରବ ହେଉଥାଏ ଯେ ସେଥିରେ କେହି ଜଣେ ନିଶ୍ଚୟ ନିଆଁ ଲଗାଇ ଦେଇଛି । ''କେହି ଆସି ନିଆଁ ଲଗାଇଦେବା ପଛରେ କ'ଣ ଗୋଟିଏ ମତଲବ ତ ରହିଥିବ !''- ଶ୍ରୀମତୀ ହାରିଏଟ୍ ପଚାରିଥିଲେ । ଉତ୍ତର ହେଲା, ''ଶୁଣା ଯାଉଥିଲା ଯେ କିଛିଦିନ ପରେ ଏକ କୃଷ୍ଣକାୟ ପରିବାର ସେହି ଘରେ ବାସ କରିବାକୁ ଆସିବ ଏବଂ ପ୍ରଧାନତଃ ଗୋରା ଲୋକଙ୍କର ଏହି ଅଞ୍ଚଳଟି ସେପରି ହେଉ ବୋଲି ଆଦୌ ଇଚ୍ଛା କରୁନଥିଲା । ତେଣୁ, ହୁଏତ ସେହି କାରଣରୁ କେହି ଘରଟିରେ ନିଆଁ ଲଗାଇ ଦେଇଥିବ ବୋଲି ସମସ୍ତେ ଭାବୁଛନ୍ତି । ନିଜ ଭିତରେ କୌଣସି ବିବେକଦଂଶନ ଅନୁଭବ ନକରି ଉତ୍ତରଟି ଦିଆ ଯାଇଥିଲା । ତା' ପରେ ଲେଖିକା ମନାନିଥିଲେ. ''ସେଠାକୁ

ଆସୁଥିବା ପରିବାରରେ କୌଣସି ବ୍ୟକ୍ତିର କୌଣସି ବଦନାମ ଥିଲା କି ?'' ନାଇଁ, ସେପରି କିଛି ନଥିଲା, କିନ୍ତୁ ସେମାନେ କଳା ଚମ. ନିଗ୍ରୋ ଲୋକ । ତାହାହିଁ ସବୁକିଛି ବ୍ୟାଖ୍ୟା କରି ଦେଉଥିଲା ।

ଦକ୍ଷିଣ କାରେଲିନା ରାଜ୍ୟର ଗୋଟିଏ ଆଇନ୍‌ରେ ଲେଖା ହୋଇଥିଲା ଯେ, ଯଦି କ୍ରୀତଦାସମାନଙ୍କୁ କେହି ଲେଖି ପଢ଼ି ଶିଖାଇବ, ତେବେ ତାକୁ ବହୁତ ଅସୁବିଧାରେ ଯାଇ ପଡ଼ିବାକୁ ହେବ । ଅସୁବିଧା, ଅର୍ଥାତ୍ ଆଇନ୍‌ଗତ ଏକାଧିକ ଅସୁବିଧା । ଉଦାହରଣ ଦେଇ କହିଲେ, କୌଣସି କ୍ରୀତଦାସକୁ ବର୍ଣ୍ଣମାଳା ଶିଖାଇଦେଲେ ଅଥବା ତା' ହାତରେ କିଛି ଲେଖାଇବାକୁ ଚେଷ୍ଟା କଲେ ଶାସ୍ତିସ୍ୱରୂପ ସେତେବେଳେ ହଜାର ପାଉଣ୍ଡ ଜୋରିମାନା ଦେବାକୁ ପଡୁଥିଲା । ୧୮୦୦ ଖ୍ରୀଷ୍ଟାବ୍ଦରେ ପ୍ରଶାସନ ତରଫରୁ ଘୋଷଣା କରା ଯାଇଥିଲା ଯେ, ''ଯଦି କ୍ରୀତଦାସମାନେ କିମ୍ବା ଅର୍ଥଭରଣା ଦେଇ ମୁକ୍ତି ହାସଲ କରିଥିବା ନିଗ୍ରୋମାନେ ପାଠ ପଢ଼ିବାର ଅଭିପ୍ରାୟରେ କେଉଁଠାରେ ଏକତ୍ର ରୁଣ୍ଡ ହେବେ,ସେହିପରି ଏକ ଗୁପ୍ତ ଜାଗାରେ ଯାଇ ଠୁଳ ହେବେ, ତେବେ ସେମାନଙ୍କର ସେହି ଏକାଠି ବସିବାକୁ ବେଆଇନ୍ ବୋଲି ଘୋଷଣା କରାଯିବ ; ସେଥିପାଇଁ ଦଣ୍ଡ ସ୍ୱରୂପ ବେତମାଡ଼ର ବ୍ୟବସ୍ଥା ଥିଲା ଏବଂ କୋଡ଼ିଏ ବେତ ପର୍ଯ୍ୟନ୍ତ ପ୍ରହାର କରାଯିବ ବୋଲି ନିୟମ ଥିଲା । ଯେପରି ସେମାନେ ଭବିଷ୍ୟତରେ କେବେହେଲେ ଏଭଳି ଠୁଳ ହେବେନାହିଁ, ସେଥିଲାଗି ସେମାନଙ୍କୁ ସତର୍କ କରିଦେବା ଉଦ୍ଦେଶ୍ୟରେ ଏପରି କରା ଯାଇଥିଲା । ଅଧିକନ୍ତୁ, କେତେ ସ୍ଥଳରେ ଗୋଟିଏ ପ୍ରତିବ୍ୟବସ୍ଥା ମଧ୍ୟ ରହିଥିଲା ଯେ, ଯଦି କୌଣସି ଶ୍ୱେତକାୟ ବ୍ୟକ୍ତି କ୍ରୀତଦାସ ଅଥବା ମୁକ୍ତିପ୍ରାପ୍ତ କଳାମାନଙ୍କୁ ପଢ଼ିଲେଖି ଶିଖାଇବ ଅଥବା ସେମାନଙ୍କର ଏହି ସାମର୍ଥ୍ୟ ହାସଲ କରିବାରେ କୌଣସି ପ୍ରକାରେ ସହାୟକ ହେବ, ତେବେ ସେହି ଅପରାଧ ସକାଶେ ତାକୁ ତିରିଶି ଡ଼ଲାର ଜୋରିମାନା ଦେବାକୁ ହେବ । ଜୋରିମାନା ଅନାଦାୟେ ସିଏ ଦଶଦିନ ସକାଶେ ଜେଲ୍‌କୁ ଯିବ । ତା' ସହିତ ତାକୁ ୩୯ଟି ବେତମାଡ଼ ବି ଖାଇବାକୁ ପଡ଼ିବ ।

ପଢ଼ିଲେଖି ଶିଖିଲେ ତ ବାହାରକୁ ଆଖି ଖୋଲିଯିବ ଏବଂ ଭିତରକୁ ବାଟ ଦିଶିଯିବ । ଏବଂ, ଯଦି କଳାଲୋକଙ୍କର ବାହାରକୁ ଆଖି ଖୋଲିଯାଏ ଏବଂ ଭିତରକୁ ବାଟ ଦିଶିଯାଏ, ତେବେ ଗୋରାମାନଙ୍କର ସେଠା ନିରଙ୍କୁଶ ସଂସାର ପାଟଣାରେ ଅନେକାନେକ ପ୍ରମାଦ ଆସି ପହଞ୍ଚିଯିବ । ତେଣୁ, କଳାମାନଙ୍କର ପଢ଼ିଲେଖି ଶିଖିବାର କ୍ଷେତ୍ରରେ ଯେ ସମ୍ପୂର୍ଣ୍ଣ ସର୍ବତ୍ର କାହିଁକି ଏତେ କଡ଼ା କଟକଣାମାନ ରହିଥିଲା, ସେକଥା ଖୁବ୍ ସହଜରେ ବୁଝି ହୋଇଯିବ । ଏହି ସନ୍ଦର୍ଭରେ ଶ୍ରୀମତୀ ହାରିଏଟ୍ ଗୋଟିଏ କଳା ପିଲାର ଇତିବୃତ୍ତ ବର୍ଣ୍ଣନା କରିଛନ୍ତି । ଡ଼ଗ୍‌ଲାସ୍ ନାମକ ଏହି ବାଳକଟି ବଲ୍‌ଟିମୋର୍ ସହରରେ କାହାଘରେ ଚାକର ହୋଇ ରହିଥିଲା । ଖାମିନ୍ଦାଣୀ ଅତ୍ୟନ୍ତ ଭଲ ମଣିଷ, କ୍ରୀତଦାସମାନଙ୍କୁ କିପରି ସାଧ ଓ ମଣ କରି ରଖାଯାଏ, ସେବିଷୟରେ ତାଙ୍କୁ ବେଶୀ କିଛି ଜଣା ନଥିଲା । ନୂଆ ହୋଇ ବାହା ହୋଇ ଖାମିନ୍ଦଙ୍କ ଘରକୁ ଆସିଥାନ୍ତି, ସମ୍ଭବତଃ ନିଜେ ମଧ୍ୟ ଖାମିନ୍ଦଙ୍କର ସ୍ତ୍ରୀ ଭାବରେ

ଉଚିତ୍ ପ୍ରକାରେ ମଣ ହୋଇନଥାନ୍ତି । ସିଏ ପିଲାଟି ଉପରେ ଅତ୍ୟନ୍ତ ସୁଦୃଷ୍ଟି ରଖିଥିଲେ, ତା'ସହିତ ସର୍ବଦା ଅନୁକମ୍ପା ସହିତ ବ୍ୟବହାର କରୁଥିଲେ । ସିଏ କ'ଣ ବିଚାର କରି ଡ଼ଗ୍‌ଲାସ୍‌କୁ ପଢ଼ାଲେଖା ଶିଖାଇବାକୁ ଆରମ୍ଭ କରିଦେଲେ । ନିଜ ମନଖୁସୀରେ କଥାଟିକୁ କରିଥିଲେ, ତେଣୁ ନିଜ ସ୍ୱାମୀଙ୍କୁ କାହିଁକି କିଛି ଜଣାଇ ଥାଆନ୍ତେ ? କିନ୍ତୁ କଥାଟା ବେଶୀ ଦିନ ଅଛପା ରହିଲାନାହିଁ । କଳା ଚାକରପିଲାଟା ମାଆଙ୍କ ଠାରୁ ପଢ଼ାଲେଖା ଶିଖୁଛି ବୋଲି ସିଏ ଦିନେ ଜାଣିବାକୁ ପାଇଲେ । ତା'ପରେ ଯାହା ଯେପରି ଘଟିଲା, ପିଲାଟି ବଡ଼ ହୋଇ ସ୍ୱୟଂ ଲେଖିଥିବା ଜୀବନ ବିବରଣୀରୁ ଆମେ ତାହା ଶୁଣିବା :

''ଜାଣିବାକୁ ପାଇବା ମାତ୍ରକେ ଖାମିନ୍ଦ ମୋତେ ଆଉ ପଢ଼ାଲେଖା ନଶିଖାଇବା ଲାଗି ଖାମିନ୍ଦାଣୀଙ୍କୁ ନିର୍ଦ୍ଦେଶ ଦେଲେ । ତାଙ୍କୁ ସିଏ ସାବଧାନ କରିଦେଇ କହିଥିଲେ ଯେ, କ୍ରୀତଦାସକୁ ପଢ଼ାଲେଖା ଶିକ୍ଷା ଦେବା ଆଇନ୍ ଅନୁସାରେ ମନା ହୋଇଛି । ଏପରି କରିବାରେ ବହୁତ ବିପଦ ମଧ୍ୟ ରହିଛି । ତାଙ୍କର ନିଜ ଭାଷାକୁ ମନେ ପକାଇ କହିଲେ : 'ଯଦି ତୁମେ ଗୋଟାଏ ନିଗ୍ରୋକୁ ଗୋଟିଏ ଆଙ୍ଗୁଳି ବାଟ ଛାଡ଼ିଦେବ, ତେବେ ସିଏ ତତ୍‌କ୍ଷଣାତ୍ ହାତେ ବାଟ ମାଡ଼ି ବସିବ ।' ସିଏ ଯୁକ୍ତି ଦେଇ କହିଥିଲେ ଯେ, କଳା କ୍ରୀତଦାସ କେବଳ ତା' ଖାମିନ୍ଦର ହୁକୁମକୁ ମାନିବ । ସେତିକି ବ୍ୟତୀତ କୌଣସି ପରିସ୍ଥିତିରେ ମଧ୍ୟ ତା'ର ଆଉ କୌଣସି ଅଧିକାର ରହିବନାହିଁ । ଖାମିନ୍ଦ ତାକୁ ଯାହା ଯେପରି କରିବାଲାଗି କହିବ, ସିଏ କେବଳ ସେହିକଥା ହିଁ କରିବ । ପଢ଼ାଲେଖା ଶିଖିଗଲେ ଗୋଟାଏ ଉତ୍ତମରୁ ଆହୁରି ଉତ୍ତମ ନିଗ୍ରୋକୁ ମଧ୍ୟ କେବଳ ବିଗାଡ଼ିଦେବା ହିଁ ସାର ହେବ । ଯଦି ତୁମେ ଏହି ନିଗ୍ରୋଟାକୁ ପଢ଼ାଲେଖା ଶିଖାଇଦେବ (ଖାମିନ୍ଦ ମୋ' ବିଷୟରେ ହିଁ କହୁଥିଲେ), ତେବେ ତାକୁ ଆଉ ଏଠି ଆମ ଘରେ ରଖିବା ମୋତେ ସମ୍ଭବ ହେବନାହିଁ । ଗୋଟିଏ କ୍ରୀତଦାସ ହୋଇ କାହାପାଖରେ ରହିବାର ସବୁଯାକ ଯୋଗ୍ୟତାକୁ ସିଏ ହରାଇ ବସିବ । ତାକୁ ତେଣିକି ଆଉ ଆଦୌ ଆମ ନିୟନ୍ତ୍ରଣରେ ରଖି ହେବନାହିଁ ଏବଂ, ନିଜର ଖାମିନ୍ଦ ଲାଗି ସିଏ ଆଉ ଆଦୌ କୌଣସି କାମର ବି ହେବନାହିଁ । ପଢ଼ି ଲେଖି ଶିଖିଲେ ତା' ନିଜର ମଧ୍ୟ ପ୍ରକୃତରେ କୌଣସି ଉପକାର ହେବନାହିଁ, ଏହାଦ୍ୱାରା ତା'ର ବରଂ ବହୁତ କ୍ଷତି ହିଁ ହେବ । ସିଏ ତା' ବର୍ତ୍ତମାନର ସକଳ ସନ୍ତୋଷ ଏବଂ ମନର ଆନନ୍ଦକୁ ହରାଇ ବସିବ । ଏହିସବୁ ଶବ୍ଦ ପ୍ରକୃତରେ ଏକାବେଳେକେ ମୋ'ର ହୃଦୟ ଭିତରକୁ ଭେଦି ଯାଇଥିଲା ; ଆଗରୁ ସୁପ୍ତ ହୋଇ ରହିଥିବା ବହୁ ଭାବନା ମୋ' ଭିତରେ ଜାଗ୍ରତ ହୋଇ ଉଠିଲେ ଏବଂ ମୋତେ ଏକାବେଳେକେ ଏକ ନୂତନ ପ୍ରକାରେ ଚିନ୍ତା କରି ଶିଖାଇଦେଲେ । ମୋ'ର ଆଖି ଆଗରେ ସତେଅବା ଅଭୂତପୂର୍ବ ନୂତନ ନାନା ଦିଗ ହଠାତ୍ ଉଦ୍‌ଘାଟିତ ହୋଇଗଲା । ମୁଁ ସତେଅବା ଅନ୍ଧକାର ଦ୍ୱାରା ଆଚ୍ଛନ୍ନ ହୋଇ ରହିଥିବା ବହୁତ କିଛି ରହସ୍ୟର ଅର୍ଥ ମଧ୍ୟ ପାଇଗଲି । ମୋ' ତରୁଣ ବୟସରେ ସେହି ଅଳପ ବୁଦ୍ଧିରେ ମୁଁ ସେଗୁଡ଼ିକ ସହିତ କେତେ ସଂଗ୍ରାମ କରିନଥିଲି ! ସେତେବେଳେ ସେଗୁଡ଼ିକର କୌଣସି ସମାଧାନ ପାଇନଥିଲି । ଏବେ ମୋତେ

ବାଟ ପାଇଲି, ମୋତେ ଛନ୍ଦି ରଖିଥିବା ବହୁ ସଂଶୟକୁ ମୁଁ ଭେଦ କରି ପାରିଲି । ଜଣେ ଗୋରା ଲୋକ କଳାମାନଙ୍କୁ କେଉଁ କାରଣରୁ ନିଜର ଅକ୍ତିଆର ଓ କ୍ଷମତା ଭିତରେ ରଖି ପାରୁଛି, ମୋତେ ସେହି ପ୍ରହେଳିଟିର ଏକ ଉତ୍ତର ବି ମିଳିଗଲା । ଜୀବନରେ ଏକ ଅତିବଡ଼ କଥା ହାସଲ ହୋଇଯାଇ ପାରିଲା ଏବଂ ସେହି ହାସଲ କରିବାଟିକୁ ମୁଁ ପ୍ରକୃତରେ ମୋ' ଜୀବନର ଏକ ଅମୂଲ୍ୟ ଲାଭରୂପେ ଗ୍ରହଣ କରି ପାରିଥିଲି । ଦାସତ୍ୱ ମଧ୍ୟରୁ ମୁକ୍ତ ଜୀବନ ମଧ୍ୟକୁ ଯେଉଁ ମାର୍ଗଟି ସବୁବେଳେ ସୁନିଶ୍ଚିତ ହୋଇ ରହିଛି, ମୁଁ ସେହି ମୁହୂର୍ତ୍ତଟି ଠାରୁ ହିଁ ସେହି ମାର୍ଗଟିକୁ ଅନୁଭବ କରିପାରିଲି. ସତେଅବା ଚାକ୍ଷୁଷ କରି ଦେଖି ମଧ୍ୟ ପାରିଥିଲି ।'' ଏବଂ ତା'ପରେ ଆହୁରି ଆଗକୁ ଯାହାସବୁ ହେଲା ବା ଘଟିଲା, ଆମେ ସେହି କଥାଟିକୁ ଶୁଣିବା :

ତା'ପରେ ଖାମିନ୍ଦାଣୀ ବି ସତର୍କ ହୋଇଗଲେ । ସିଏ ନିଜ ସ୍ୱାମୀଙ୍କ କଥା ମାନିଲେ । ଚାକରଟା ଯେମିତି ଆଉ ମୋଟେ ପଢ଼ାଲେଖା ପାଇଁ ମନ କରିବନାହିଁ ଓ ମନ କଲେ ମଧ୍ୟ ସେଥିଲାଗି ସମୟ ପାଇବନାହିଁ, ସିଏ ସେହି କଥାଟି ଉପରେ କଠୋର ନଜର ରଖିଲେ । ''ହଁ, ତା'ପରେ ଖାମିନ୍ଦାଣୀ ମୋତେ ଗୋଡ଼େ ଗୋଡ଼େ ଜଗିଲେ । ଯଦି ମୁଁ ବହୁତ ସମୟ ଲାଗି କୌଣସି କୋଠରୀରେ ଏକା ରହି ଯାଉଥିଲି, ତେବେ ସିଏ ତତ୍‌କ୍ଷଣାତ୍ ସନ୍ଦେହ କରିବାରେ ଲାଗୁଥିଲେ ଯେ ମୁଁ ନିଶ୍ଚୟ ସେହି ଘରେ ଗୋଟାଏ ବହି ଧରି ପଢୁଛି । ସାଙ୍ଗେ ସାଙ୍ଗେ ମୋତେ ଡ଼ାକରା ପଡୁଥିଲା ଓ ସେଠାରେ ମୁଁ କ'ଣ କରୁଥିଲି ବୋଲି କୈଫିୟତ ଦେବାକୁ ପଡୁଥିଲା । ମାତ୍ର , ସେସବୁ ଆଉ କିଛିହେଲେ କାମ ଦେଲାନାହିଁ । ଥରେ ଯେତେବେଳେ ଆଖି ଖୋଲି ଯାଇଥିଲା, ସେତେବେଳେ ପୁଣି ପୂର୍ବ ଅବସ୍ଥାକୁ ଲେଉଟି ଯିବାର ପ୍ରଶ୍ନ ହିଁ ନଥିଲା । ମୋତେ ଅକ୍ଷରଗୁଡ଼ିକୁ ଶିଖାଇ ଦେଇ ଖାମିନ୍ଦାଣୀ ମାଆ ମୋତେ ଯେଉଁ ଟିପଟିଏ ଆଗେଇ ନେଇଥିଲେ, ବର୍ତ୍ତମାନ ସେତିକିରେ ରୁକି ଯିବାର ଆଉ କୌଣସି ସମ୍ଭାବନା ନଥିଲା । ମୁଁ ସେହି ଦିଗରେ ମୋ'ର ବୁଦ୍ଧି ଅନୁସାରେ ଯୋଜନାଟିଏ ଆରମ୍ଭ କରିଦେଲି ଏବଂ ସେଥିରେ ବେଶ୍ ସଫଳତା ମଧ୍ୟ ମିଳିଥିଲା । ପଡ଼ିଶାରେ ଦରିଦ୍ର ଘରମାନଙ୍କରେ କେତେକ ଗୋରା ପିଲା ଥିଲେ ଯେଉଁମାନଙ୍କୁ ମୁଁ ଆଗରୁ ଜାଣିଥିଲି । ମୁଁ ସେମାନଙ୍କୁ ମୋର ଶିକ୍ଷକ କରିନେଲି । ସେମାନେ ସମସ୍ତେ ରାଜି ହୋଇଗଲେ ଓ ସ୍ଥାନ ଓ ସମୟ ସ୍ଥିର କରି ମୁଁ ସେମାନଙ୍କ ମଧ୍ୟରୁ ଜଣଜଣଙ୍କ ପାଖକୁ ଯାଇଥିଲି ଏବଂ ଏହିପରି ଭାବରେ ପଢ଼ା ଶିଖିଗଲି । ମୋତେ ଘରୁ କୌଣସି କାମରେ ବାହାରକୁ ପଠା ଯାଉଥିବା ସମୟରେ ମୁଁ ସର୍ବଦା ସାଙ୍ଗରେ ଖଣ୍ଡେ ବହି ନେଇ ଯାଉଥିଲି ଏବଂ ଦିଆ ଯାଇଥିବା କାମଟାକୁ ଶୀଘ୍ର ସାରିଦେଇ ଫେରିବା ବାଟରେ ଜଣେ କାହାରିଠାରୁ ଯାଇ ଟିକିଏ କ'ଣ ପଢ଼ି ପକାଉଥିଲି । ହଁ, ଖାମିନ୍ଦଙ୍କ ଘରେ ସବୁବେଳେ ଯଥେଷ୍ଟ ପରିମାଣରେ ପାଉଁରୁଟି ମହଜୁଦ ରହୁଥିଲା । ମୁଁ ବାହାରକୁ ଯିବାବେଳେ ସେଇଥିରୁ କିଛିଦ୍ ସାଙ୍ଗରେ ନେଇ ଯାଉଥିଲି ଏବଂ ମୋତେ ବହି ପଢ଼ାଇ ଦେଉଥିବା ପିଲାମାନଙ୍କୁ ଦେଉଥିଲି । ଏହି କ୍ଷେତ୍ରରେ ସେହି

ପିଲାମାନଙ୍କ ଅପେକ୍ଷା ମୁଁ ଅଧିକ ଧନୀ ଥିଲି । ତେଣୁ, ମୋ' ଭୋକିଲା ଶିକ୍ଷକମାନଙ୍କୁ ସାଙ୍ଗରେ ନେଇଥିବା ପାଉଁରୁଟିକୁ ଖାଇବାକୁ ଦେଇ ସେମାନଙ୍କ ଠାରୁ ମୁଁ ବିଦ୍ୟାରୂପକ ଅଧିକ ମୂଲ୍ୟବାନ ଖାଦ୍ୟଟିକୁ ଲାଭ କରି ପାରୁଥିଲି । ସେହି କୁନି ଶିକ୍ଷକମାନଙ୍କ ପ୍ରତି ରହିଥିବା ମୋ'ର ସ୍ନେହ ଓ କୃତଜ୍ଞ ଭାବ ହେତୁ ସେମାନଙ୍କ ମଧ୍ୟରୁ ଦୁଇ ବା ତିନି ଜଣଙ୍କର ନାଆଁ କହିଦେବାକୁ ମୋ'ର ଭାରି ମନ ସିନା ହେଉଛି, ମାତ୍ର ମୋର ବିବେକ ତାହା କରିବାକୁ ଦେଉନାହିଁ । ନାଆଁ କହିଦେଲେ ମୋର କିଛି କ୍ଷତି ହେବନାହିଁ । ମାତ୍ର ସେମାନଙ୍କୁ ହୁଏତ କେମିତି କେମିତି ଲାଗିବ ।

''କାରଣ ଖ୍ରୀଷ୍ଟିଆନ୍‌ମାନେ ବହୁସଂଖ୍ୟାରେ ବାସ କରୁଥିବା ଏହି ରାଜ୍ୟରେ କ୍ରୀତଦାସମାନଙ୍କୁ ପଢ଼ାଲେଖା ଶିକ୍ଷା ଦେବା ଏବେ ମଧ୍ୟ ଏକ ଅକ୍ଷମଣୀୟ ଅପରାଧ ପରି ଗଣା ହେଉଛି । ହଁ, ସେହି ପିଲାମାନଙ୍କ ସହିତ ବେଳେ ବେଳେ ମୁଁ ଏହି କ୍ରୀତଦାସ ପ୍ରଥା ବିଷୟରେ ମଧ୍ୟ କଥାବର୍ତ୍ତା ହେଉଥିଲି । ମୁଁ ମଧ୍ୟ ବଡ଼ ହୋଇ କିପରି ସେମାନଙ୍କ ଭଳି ମୁକ୍ତ ହୋଇଯିବି ଓ ଆଉ ମୋତେ ଦାସ ହୋଇ ରହିବିନାହିଁ,- ସେମାନଙ୍କୁ ସେହି କଥାଟି ମଧ୍ୟ କହୁଥିଲି । 'ଏକୋଇଶି ବର୍ଷ ହୋଇଗଲେ ତ ତୁମେମାନେ ଜଣେ ଜଣେ ସ୍ୱାଧୀନ ନାଗରିକ ହୋଇଯିବ, କିନ୍ତୁ ମୁଁ ଜୀବନସାରା ଦାସ ହୋଇ ରହିଥିବି ବୋଲି ସେମାନଙ୍କୁ କହୁଥିଲି । ଏକଥା ଶୁଣି ସେମାନେ ସତେଅବା ବଡ଼ ଅଡୁଆରେ ପଡ଼ି ଯାଉଥିଲେ । ମୋ' ଲାଗି ସେମାନଙ୍କ ମନରେ ପୂରା ସହାନୁଭୂତି ରହିଥିଲା ଏବଂ ସେମାନେ ମୋତେ ଆଶ୍ୱାସନା ଦେଇ କହୁଥିଲେ ଯେ କିଛି ନା କିଛି ନିଶ୍ଚୟ ଘଟିବ ଏବଂ ତା' ଫଳରେ ମୁଁ ମଧ୍ୟ ମୁକ୍ତ ହୋଇଯିବି । ଏହିଭଳି ଦେଖୁ ଦେଖୁ ମୋତେ ବାର ବର୍ଷ ବୟସ ହୋଇଗଲା ଏବଂ, ମୁଁ ଯେ ଜୀବନଯାକ ଏହିପରି ଦାସଟିଏ ହୋଇ ରହିବି, ମୋ'ର ହୃଦୟକୁ ସେହି ଚିନ୍ତାଟି ସବୁବେଳେ ଘାରି ରଖୁଥିଲା । ସେହି ସମୟରେ ମୁଁ ଗୋଟିଏ ବହି ପଢ଼ିବାକୁ ପାଇଲି, ଯେଉଁଥିରେ କି ଅନ୍ୟ ନାନା ବିଷୟ ମଧ୍ୟରେ ଜଣେ ମାଲିକ ଏବଂ ଜଣେ କ୍ରୀତଦାସ ମଧ୍ୟରେ ହୋଇଥିବା ଏକ କଥୋପକଥନର ବିବରଣୀ ମଧ୍ୟ ଦିଆ ଯାଇଥିଲା । ଏହି କ୍ରୀତଦାସଟି ତା' ମାଲିକଙ୍କ ପାଖରୁ ଥର ଥର ହୋଇ ତିନିଥର ପଳାଇ ଯାଇଥିଲା । ଏବଂ, ପୁଣି ତୃତୀୟ ଥର ପାଇଁ ଧରା ହୋଇ ଆସିଥିଲା ।

''କଥୋପକଥନରେ ମାଲିକ ଦାସପ୍ରଥାର ପକ୍ଷକୁ ସମର୍ଥନ କରି ଯୁକ୍ତି ପରେ ଯୁକ୍ତ ଆଣି ବାଢ଼ୁଥିଲା ଓ ଦାସଟି ସେଗୁଡ଼ିକର ଖଣ୍ଡନ କରୁଥିଲା । କ୍ରୀତଦାସ ନିର୍ଭୟ ଭାବରେ ଯୁକ୍ତିଗୁଡ଼ିକର ଉତ୍ତର ଦେଉଥିଲା । ଉତ୍ତରଗୁଡ଼ିକ ଖୁବ୍ ପ୍ରଭାବଶାଳୀ ଥିଲା ଏବଂ ଶେଷକୁ ଏପରି ହେଲା ଯେ ମାଲିକ ସତେଅବା ସେଗୁଡ଼ିକୁ ସ୍ୱୀକାର କରିନେଇ ସ୍ୱୟଂ ନିଜ ଆଡୁ ଦାସଟିକୁ ତା' ଦାସତ୍ୱର ବନ୍ଧନରୁ ମୁକ୍ତି ପ୍ରଦାନ କରିଥିଲା । ଏହି ବିବରଣୀ ଓ ଆହୁରି କେତେ ସାମଗ୍ରୀ ପାଠ କରି ମୋ'ର ସାହସଘର ସତେଅବା ଉନ୍ମୋଚିତ ହୋଇ ଯାଇଥିଲା । ଯାହା ସତ୍ୟ, ତାହା ନିଜର ଶକ୍ତିବଳରେ କିପରି ଜଣେ ମାଲିକର ବିବେକକୁ ମଧ୍ୟ ବଦଳାଇ

ଦେଇପାରେ, ମୁଁ ସେହି ଘଟଣାଟିକୁ ବାର ବାର ଚିନ୍ତା କରିବାକୁ ଲାଗିଲି । ମୁଁ ନିଜେ ମଧ୍ୟ ସେହି କଥାଗୁଡ଼ିକୁ ଅଧିକରୁ ଅଧିକ ପ୍ରତ୍ୟୟର ସହିତ ଭାବିଲି ଏବଂ, ଯେଉଁମାନେ ଅନ୍ୟମାନଙ୍କୁ କ୍ରୀତଦାସ ଭାବରେ ଆଣି ବ୍ୟବହାର କରୁଛନ୍ତି, ସେମାନଙ୍କ ପ୍ରତି ମୋ'ର ତୀବ୍ର ଘୃଣାଭାବ ମଧ୍ୟ ଜାତ ହେଲା । ସେମାନଙ୍କୁ ମୁଁ ଦଳେ ଡ଼ାକୁ ବୋଲି ଭାବିଲି, ଯେଉଁମାନେ କି ଆଫ୍ରିକା ଯାଇ ସେହି ସ୍ଥାନର ଅଧିବାସୀମାନଙ୍କୁ ଅପହରଣ କରି ଆଣିଛନ୍ତି ଏବଂ ଏଠି କ୍ରୀତଦାସ କରି ବାନ୍ଧି ରଖିଛନ୍ତି । ଏମାନଙ୍କ ଠାରୁ ଅଧିକ ନିମ୍ନ ସ୍ତରର ଲୋକ ହୁଏତ ପୃଥିବୀରେ ଆଉ କେଉଁଠି ହେଲେ ନଥିବେ ! କ୍ରମେ ମୋ'ର ଅବସ୍ଥା ଏଭଳି ହେଲା, ଠିକ୍ ଯାହା ହେବ ବୋଲି ମୋର ମାଲିକ ଏକଦା ଭବିଷ୍ୟବାଣୀ କରି କହିଥିଲେ । ଭିତରେ ମୁଁ ଅନୁକ୍ଷଣ ସତେଅବା କୌଣସି ଦଂଶନର ଜ୍ୱାଳା ଅନୁଭବ କରିବାକୁ ଲାଗିଲି ଏବଂ ତାହା ମୋତେ ସର୍ବଦା ଅସ୍ଥିର କରି ରଖିଲା । ପଢ଼ାଲେଖା ଶିଖିବାରୁ ସିନା ମୋତେ ଏପରି ଦଶାରେ ଆସି ପଡ଼ିବାକୁ ହେଲା, - ଅସ୍ଥିର ହୋଇ ମୁଁ ବେଳେ ବେଳେ ସେକଥା ମଧ୍ୟ ଭାବୁଥିଲି । ମୋତେ ତାହା ମୋ' ନିଜର ଦୁର୍ଗତ ଅବସ୍ଥାଟି ବିଷୟରେ ସତେଅବା ଅସହ୍ୟ ଭାବରେ ସଚେତନ କରିଦେଲା । ମୋତେ ଆଣି ଏକ ଭୟାନକ ମନସ୍ତାପର ଖାତରେ ଆଣି ସିନା ପକାଇଦେଲା, ମାତ୍ର ଏଥିରୁ ମୁକୁଳି ବାହାରି ଯିବାପାଇଁ କାହିଁ ସିଡ଼ିଟିଏ ଆଣି ଯୋଗାଇ ଦେଲାନାହିଁ ତ ! ଏହା ଅପେକ୍ଷା ତ ଯେଉଁମାନେ କ୍ରୀତଦାସ ହୋଇ ରହିଛନ୍ତି ଓ ନିଜର ଅବସ୍ଥା ବିଷୟରେ ସଚେତନ ନାହାନ୍ତି, ସେମାନେ ମୋ'ଠାରୁ ନିଶ୍ଚୟ ଅଧିକ ଭଲରେ ଅଛନ୍ତି । ପଶୁ ହୋଇ ରହିଥିବ, ଅଥଚ ସେ ବିଷୟରେ ସଚେତନ ହୋଇନଥିବ,- ତାହା ବରଂ ଅଧିକ ସହ୍ୟ କରି ହୋଇଯିବ । ଏହିପରି ଅସନ୍ତୋଷ ମଧ୍ୟରେ କାଳ ଅତିବାହିତ କରୁ କରୁ ମୁଁ ମୁକ୍ତିର ରେଖାଟିକୁ ମଧ୍ୟ ଦେଖିବାକୁ ସମର୍ଥ ହେଲି । ମୁଁ ମଧ୍ୟ ଦିନେ ଏହି ଅବସ୍ଥାରୁ ମୁକ୍ତ ହୋଇ ବାହାରିଯିବ ବୋଲି ଆଶା କରିବାକୁ ଆରମ୍ଭ କଲି । ଏବଂ, ସେତିକି ସମ୍ଭବ ହୋଇନଥିଲେ ମୁଁ ହୁଏତ ନିଜ ହାତରେ ନିଜର ପ୍ରାଣ ନେଇଥାନ୍ତି । ମୁଁ ଆତ୍ମହତ୍ୟା କରିଥାନ୍ତି । ମୁଁ ଜାଣିବାକୁ ପାଇଲି ଯେ କ୍ରମେ କେତେ ଲୋକ ବାହାରିଲେଣି, ଯେଉଁମାନେ କି ଦାସପ୍ରଥା ବିରୋଧରେ ଏକ ଶକ୍ତିଶାଳୀ ଆନ୍ଦୋଳନ ବି କଲେଣି । ମାଲିକମାନେ ସେମାନଙ୍କୁ ଭାରି ତ୍ରସ୍ତ ଭାବରେ ଦେଖିବାକୁ ଆରମ୍ଭ କଲେଣି ।

''ଯେତେବେଳେ ଜଣେ ଦାସ ମାଲିକର ଘରୁ ଲୁଚି କରି ସଫଳ ଭାବରେ ପଳାଇ ଯାଉଥିଲା ଅର୍ଥାତ୍ ଆଉ ଧରା ପଡୁନଥିଲା, ଯେତେବେଳେ କୌଣସି ଦାସ ନିଜ ମାଲିକକୁ ପ୍ରାଣରୁ ମାରି ଦେଉଥିଲା ଅଥବା ମାଲିକର ଅମାରରେ ନିଆଁ ଲଗାଇ ଦେଉଥିଲା, ଏସବୁ ଘଟଣା ସେହି ଆନ୍ଦୋଳନକାରୀମାନେ ହିମ୍ମତ ଦେବାରୁ ଘଟୁଛି ବୋଲି ସମସ୍ତେ କୁହାକୁହି ହେଉଥିଲେ । ଘଟଣାକ୍ରମେ ମୁଁ ଏପରି ଦୁଇଜଣ ବ୍ୟକ୍ତିଙ୍କୁ ଭେଟିଲି ଯେଉଁମାନେ କି ମୋତେ ମାଲିକ ଘରୁ ଲୁଚି ପଳାଇବା ନିମନ୍ତେ ମନ୍ତ୍ରଣା ଦେଇଥିଲେ । ସେମାନେ କହିଲେ, ଏଡ଼ିକି ବକଟେ ପିଲା, ସାରା ଜୀବନଲାଗି ପରାଧୀନ ଦାସ ହୋଇ ରହିଲେ ତାହା ନିତାନ୍ତ

ଦୁଃଖଦାୟକ ବ୍ୟାପାରଟିଏ ହେବ । ସେମାନେ ମୋତେ ସାହସ ଦେଲେ ଯେ ଯଦି ମୁଁ ଏହି ରାଜ୍ୟରୁ ଖସି ଉତ୍ତରାଞ୍ଚଳର କୌଣସି ରାଜ୍ୟକୁ ପଳାଇଯାଇ ପାରିବି, ତେବେ ସେଠାରେ ମୋତେ ସହାନୁଭୂତି ଦେଖାଇବାକୁ ବହୁତ ଲୋକ ମିଳିବେ ଓ ମୁଁ ମୁକ୍ତି ଲାଭ କରିବି । ସେମାନଙ୍କ କଥାରେ ମୁଁ ଆଗ ମୋଟେ ବିଶ୍ୱାସ କଲିନାହିଁ । ଏମାନେ କାଳେ ମୋ' ସହିତ ବିଶ୍ୱାସଘାତକତା କରୁଥିବେ ? ମୋତେ ଲୁଚି ପଳାଇବାକୁ ଉତ୍ସାହ ଦେବେ ଏବଂ ମୁଁ ପଳାଇଗଲେ ମୋତେ ଧରି ଆଣି ମାଲିକ ପାଖରେ ପହଞ୍ଚାଇବେ ଓ ମାଲିକଠାରୁ ପୁରସ୍କାର ପାଇବେ । ମାତ୍ର,ସେମାନଙ୍କ ପାଖରେ ସିନା ଛଳନା କଲି, କିନ୍ତୁ ଲୁଚି ପଳାଇଯିବାର କଥାଟା ମୋତେ ଖୁବ୍ ଛୁଇଁଲା ଓ ମୁଁ ସେହିଭଳି କୌଣସି ସୁଯୋଗର ଅପେକ୍ଷା କରିବାକୁ ଚେଷ୍ଟା କଲି ।

''ପଢ଼ିବାଟା ଶିଖି ଯାଇଥିଲି, ଏଥର ଲେଖି ଶିଖିବା ଆରମ୍ଭ କଲି । ଏଥିରେ ମଧ୍ୟ ପଡ଼ିଶାର ପିଲାମାନେ ମୋତେ ଖୁବ୍ ସାହାଯ୍ୟ କରିଥିଲେ । କାଗଜ ତ ନଥିଲା, ତେଣୁ ଖଣ୍ଡେ ଖଡ଼ି ଧରି ପାଚେରୀ, କାନ୍ଥ ଓ ରାସ୍ତା- ସବୁକିଛିକୁ ମନଇଚ୍ଛା ଗାରେଇ ପକାଇଲି । ଏହି ସମୟରେ ମୋ' ମାଲିକଙ୍କ ପୁଅ ଇସ୍କୁଲକୁ ଗଲେ, ପଢ଼ି ଲେଖି ଶିଖିଲେ ଓ ଖାତାମାନଙ୍କରେ ନିଜର ପାଠଗୁଡ଼ିକୁ ଲେଖୁଥିଲେ । ଖାତାସବୁ ପୂରିଗଲା ପରେ ଘରକୁ ଆସୁଥିଲା, ପଡ଼ିଶାମାନେ ସେଗୁଡ଼ିକୁ ଦେଖି ଆମ ବାବୁ କେତେ ପଢ଼ିଗଲାଣି ବୋଲି କହି ପ୍ରଶଂସା କରୁଥିଲେ । ତା'ପରେ ସେଗୁଡ଼ିକୁ ଫୋପାଡ଼ି ଦିଆ ଯାଉଥିଲା । ପ୍ରତି ସୋମବାର ଦିନ ଉପରଓଳି ଖାମିନ୍ଦାଣୀ ଯେତେବେଳେ ମାଆମାନଙ୍କ ବୈଠକରେ ଯୋଗ ଦେବାକୁ ପୁଅର ଇସ୍କୁଲକୁ ଯାଉଥିଲେ ଓ ସେତେବେଳେ ଘରେ ଆଉ କେହି ରହୁନଥିଲେ, ସେତେବେଳେ ସେ ମୋତେ ଘରେ ରହିବାକୁ ଛାଡ଼ି ଯାଉଥିଲେ । ସେହି ସମୟଟିରେ ମୁଁ କୁନାବାବୁଙ୍କର ଫୋପଡ଼ା ଖାତାଗୁଡ଼ିକୁ ସାଉଁଟି ଆଣି ଖାଲି ରହିଥିବା ଜାଗାଗୁଡ଼ିକୁ ଲେଖି ଭର୍ତ୍ତି କରି ଦେଉଥିଲି । ସିଏ ଆଗରୁ ଯାହାସବୁ ଲେଖିଥିଲେ, ମୁଁ ସେହିଗୁଡ଼ିକ ନକଲ କରି ପକାଉଥିଲି । ଧୀରେ ଧୀରେ ମୋ' ଅକ୍ଷରଗୁଡ଼ିକ ବି ଠିକ୍ କୁନାବାବୁଙ୍କ ଅକ୍ଷରପରି ହୋଇ ଆସିଲା । ଲେଖିବାଟି ଭଲ ଭାବରେ ସାଧ ହୋଇଗଲା ।'' କାହାଣୀଟି ଏହିପରି ଭାବରେ ଆଗକୁ ଆଗକୁ ଗତି କରିଛି । ଏହା କେବଳ ଜଣେ ଦୁଇଜଣଙ୍କର କାହାଣୀ ନୁହେଁ, ଅଗଣିତ କଳା ପିଲାଙ୍କର କାହାଣୀ, ଯେଉଁମାନେ କି ହାଟ କିଣାକିମାନଙ୍କ ଦ୍ୱାରା ନିଜ ବାପାମାଆଙ୍କ ଠାରୁ ବିଚ୍ଛିନ୍ନ ହୋଇଥିବେ, ଏକ ନିଦାରୁଣ ଅଦୃଷ୍ଟକୁ ନିଜର ନିୟତି ବୋଲି ଗ୍ରହଣ କରିନେବାକୁ ବାଧ୍ୟ ହୋଇଥିବେ । ସେହି ପ୍ରକ୍ରିୟାରେ ବହୁତଙ୍କର ଜୀବନ ଉଚ୍ଛନ୍ନ ହୋଇ ଯାଇଥିବ ସତ, ମାତ୍ର ତଥାପି ଯେଉଁ କେତେଜଣ ବିରୁଦ୍ଧ ସୁଅରେ ପହଁରି ଓ ସଂଘର୍ଷ କରି ତଥାପି ନିଜ ଭିତରେ ନିଜର ସତ ପରିଚୟଟିକୁ ଆବିଷ୍କାର କରି ଜୀବନରେ କିଛି ହୋଇଥିବେ, ସେହିମାନେ ନିଜର କାହାଣୀଗୁଡ଼ିକୁ ଲିପିବଦ୍ଧ କରି ଯାଇଛନ୍ତି ଓ ସେହି କାହାଣୀଗୁଡ଼ିକ ହିଁ ସେହି ଦୁର୍ଦ୍ଦିନର ଇତିବୃତ୍ତ ହୋଇ ରହିଯାଇଛି ।

ଅସଲ କଷଣ ହେଉଛି ଦାସତ୍ୱର କଷଣ । ଗୋଟିଏ ସମାଜରେ ତୁମ ଚମଡ଼ାର ରଙ୍ଗଟା ସକାଶେ ସମସ୍ତେ ତୁମକୁ ହେୟ କରି ଦେଖୁଥିବେ, ତୁମକୁ ମନୁଷ୍ୟ ବୋଲି ଗଣନା କରୁନଥିବେ,- ଖାଲି ଆମେରିକାରେ ନୁହେଁ, ପୃଥିବୀ ତମାମ ମନୁଷ୍ୟ ଲାଗି ତାହାହିଁ ତା'ର ଘୋରତମ ଦୁଃଖର କାରଣ ହୋଇ ଆସିଛି । ନିଜର ଦାସତ୍ୱ ମଧ୍ୟରୁ ଲୁଚି ପଳାଇ ଯାଇଥିବା ଜଣେ ଭଦ୍ରଲୋକ ଶ୍ରୀମତୀ ହାରିଏଟ୍‌ଙ୍କ ପାଖକୁ ଗୋଟିଏ ପତ୍ରରେ ଯାହା ଲେଖିଛନ୍ତି, ସେହି ବର୍ଣ୍ଣନାରୁ ହିଁ ଆମେ ତାହାର ପ୍ରତ୍ୟକ୍ଷ ପ୍ରମାଣ ପାଇ ପାରିବା । ''ୱାଶିଙ୍ଗଟନ ଅଞ୍ଚଳରେ ମୁଁ ଯେଉଁଠି ଦାସତ୍ୱ ଭିତରେ ଥିଲି, ସେଠାରେ କମାରର କାମ କରୁଥିଲି । ସେଠାରୁ ଖସି ପଳାଇ ଆସିବା ପରେ ମଧ୍ୟ ମୋତେ ବହୁତ ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ପଡ଼ିଥିଲା । କାଳେ କିଏ ମୋତେ ଧରା ପକାଇଦେବ, ସର୍ବଦା ସେହି ଆଶଙ୍କା ହିଁ ମୋତେ ଅଶାନ୍ତ କରି ରଖିଥିଲା । ମୋ'ର ଅତିପରିଚିତ ବନ୍ଧୁମାନଙ୍କୁ ମଧ୍ୟ ମୁଁ କେଉଁଠାରୁ ଲୁଚି ପଳାଇ ଆସିଛି ବୋଲି ଫିଟାଇ କରି କହିନଥିଲି । ତା'ପରେ ଘଟଣାକ୍ରମେ ୧୮୪୬ରେ ମୁଁ ଜାମାଇକା ଦ୍ୱୀପରେ ଆସି ପହଞ୍ଚିଲି । ଜାମାଇକା କଳା ଲୋକଙ୍କର ଦେଶ, ସବୁଠାରେ କଳାମାନେ ହିଁ ନିଯୁକ୍ତ ହୋଇ ରହିଛନ୍ତି । ସେଠାରେ ଶାସନ, ସମାଜ, ହାଟ, ବଜାର ମୋତେ ସବୁକିଛି ଅନ୍ୟଭଳି ଅନୁଭବ ହେଲା । ଆଗରୁ ଆମେରିକାରେ ତ ଏସବୁ ସ୍ଥାନରେ ମୁଁ କେବଳ ଗୋରାମାନଙ୍କୁ ଦେଖିଥିଲି । ଏଠାକୁ ଆସି ଅନ୍ୟପ୍ରକାରେ ଦେଖି ମୋ' ଭିତରେ ଆଗରୁ ରହି ଆସିଥିବା ଘାଆରେ ସତେଅବା କୌଣସି ମଲମ ଲେପି ହୋଇଗଲା ପରି ମନେହେଲା । ଜୀବନରେ ପ୍ରଥମ ଥର ସକାଶେ ଅନୁଭବ କଲି ଯେ ଜଣେ ନିଗ୍ରୋ ହେଉଛି ଯେକୌଣସି ମଣିଷ ପରି ଜଣେ ମଣିଷ ଏବଂ ତୁମେ ତାକୁ 'ନିଗର୍' ବୋଲି କହି କଦାପି ଅବଜ୍ଞା କରି ପାରିବନାହିଁ । ସେଠାରେ ମୁଁ ବିଧାନସଭାକୁ ଗଲି, ଦେଖିଲି ସେଠାରେ ୪୫ଜଣ ସଦସ୍ୟଙ୍କ ଭିତରୁ ପନ୍ଦର ଜଣ ହେଉଛନ୍ତି କଳା ମଣିଷ । ବିଚାରାଳୟକୁ ଗଲି ; ଦେଖିଲି ସେଠାରେ କଳା ଓ ଗୋରା ଉଭୟେ ଜୁରୀ ହିସାବରେ ଗୋଟିଏ ଗୋଷ୍ଠୀ ହୋଇ ବସିଛନ୍ତି । ଓକିଲମାନଙ୍କ ଭିତରେ ମଧ୍ୟ ଗୋରା ଅଛନ୍ତି, କଳା ଅଛନ୍ତି । କେଉଁଠି ହେଲେ କିଛି ବାରଣ ନାହିଁ, ହୀନ ଦୃଷ୍ଟି ନାହିଁ । ଘୃଣାର ଭାବ କେଉଁଠିହେଲେ ନାହିଁ ।''

ନିଜ ଭିତରେ ମଣିଷଟିଏ ଅବଶ୍ୟ ରହିଛି ବୋଲି କୌଣସି କାରଣରୁ ତା'ର ଶିକ୍ଷା ହୋଇଯିବା ପରେ କଳା କ୍ରୀତଦାସ ବେଡ଼ୀ ଛିଣ୍ଡାଇ ଆଇନ୍ ଭଙ୍ଗ କରି ପଳାଇ ଯାଉଥିଲା । ତା'ପରେ ତା' ପାଇଁ ଅନେକାନେକ ବିପଦ ଅପେକ୍ଷା କରି ରହିଥିଲେ ସତ, ମାତ୍ର ସିଏ ତଥାପି ପଳାଇ ଯାଉଥିଲା । ଶ୍ରୀମତୀ ହାରିଏଟ୍ ସେହି ମର୍ମର ଆଉ ଗୋଟିଏ କାହାଣୀର ଆଲୋଚନା ତାଙ୍କର ପୁସ୍ତକଟିରେ କରିଛନ୍ତି । ''ସେହି ସମୟରେ ୧୮୪୮ ଏପ୍ରିଲ ମାସରେ ଗୋଟିଏ ସାନ ଜାହଜ (Pearl - ମୋତି) ଇଉରୋପରୁ ଆସି ୱାଶିଙ୍ଗଟନ ଉପକୂଳରେ ନଙ୍ଗର ପକାଇଲା । ସେତିକିବେଳେ ମନରେ ବହୁ ଉତ୍ତେଜନା ସୃଷ୍ଟି କରି

ଇଉରୋପରୁ ଫରାସୀ ବିପ୍ଳବ ବିଷୟରେ ମଧ୍ୟ ସମ୍ବାଦମାନ ଆସିଥାଏ । ଫରାସୀ ଦେଶରୁ କିପରି ରାଜତନ୍ତ୍ର ଗଲାଣି ଓ ଏକ ଲୋକତନ୍ତ୍ରର ସ୍ଥାପନା ହେଲାଣି, ସେହି କଥାଗୁଡ଼ିକ ମାହସାଗରର ଏ ତୀରରେ ମଧ୍ୟ ଉଲ୍ଲାସ ସୃଷ୍ଟି କରୁଥାଏ ଏବଂ ଏଠାରେ ମଧ୍ୟ ସ୍ୱାଧୀନତାର ବିଜୟ-ମହୋତ୍ସବ ପାଳନ କରିବା ନିମନ୍ତେ ବହୁ ପ୍ରସ୍ତୁତି ଆରମ୍ଭ ହୋଇ ଯାଇଥାଏ । ପଥବୀଥିର ଦୁଇ ପାର୍ଶ୍ୱ ଅତ୍ୟନ୍ତ ବର୍ଣ୍ଣାଢ୍ୟ ଭାବରେ ସଜା ହୋଇଥାଏ, ବାଜା ବାଜୁଥାଏ ଏବଂ ସଙ୍ଗୀତର ଉଚ୍ଛାସରେ ନଗରଟି ମୁଖରିତ ହୋଇ ଉଠିଥାଏ, ଦେଶର ରାଷ୍ଟ୍ରପତି ଓ ଅନ୍ୟ ରାଷ୍ଟ୍ରୀୟ ଉଚ୍ଚମାନଙ୍କର ପ୍ରାସାଦଗୁଡ଼ିକରୁ ଆଲୋକମାଳା ଝଲସି ଉଠୁଥାଏ । ସେହି ଆନନ୍ଦରେ ଯୋଗ ଦେବାକୁ ଆବାଳବୃଦ୍ଧବନିତା ରାସ୍ତା ଉପରକୁ ବାହାରି ଆସିଲେ ଏବଂ ମୁକ୍ତିର ନାରାମାନ ଦେଇ ଶୋଭାଯାତ୍ରା ସହିତ ଚାଲିବାକୁ ଆରମ୍ଭ କଲେ । ନଗରର କଳା କ୍ରୀତଦାସମାନେ ବା କିପରି ସେହି ଉତ୍ସବରୁ ବାଦ୍ ପଡ଼ି ଯାଇଥାଆନ୍ତେ ? ପ୍ରାୟ ସ୍ୱଭାବତଃ ବିଶେଷ ଭାବରେ ସଙ୍ଗୀତପ୍ରିୟ ହୋଇଥିବାରୁ ସେମାନେ ନିଜକୁ ସେହି ଆନନ୍ଦ ମଧ୍ୟରେ ଲୀନ କରି ଦେଇଥିଲେ । ଗୋଟିଏ ପ୍ରଶସ୍ତ ସାଧାରଣ ଜାଗାରେ ସଭା ହେଲା, ବଡ଼ ବଡ଼ ନେତାମାନେ ଓଜସ୍ୱିନୀ ଭାଷାରେ ଭାଷଣ ଦେଉଥିଲେ । ସେମାନେ ସମଗ୍ର ବିଶ୍ୱର ମୁକ୍ତି ବିଷୟରେ ଉଚ୍ଛ୍ୱସିତ ଉଦ୍‌ଗାରମାନ ପ୍ରକଟ କରିବାରେ ଲାଗିଥିଲେ । ବିଡ଼ମ୍ବନାର ବିଷୟ ହେଉଛି ଯେ, ନିଜ ଦେଶରେ ସେମାନେ ପ୍ରାୟ ସମସ୍ତେ କଳାକୁ ଦାସ କରି ରଖିବାର ପ୍ରଚଳିତ ବିଧିଟିର ସମର୍ଥନ କରୁଥିଲେ ଓ ନିଜ ଘରମାନଙ୍କରେ ମଧ୍ୟ କଳାମାନଙ୍କୁ ଦାସରୂପେ ଖଟାଉଥିଲେ । ଅବସରଟିର ଉତ୍ତାପରେ ଅବଶ୍ୟ ସେମାନେ ସେ କଥାଟିକୁ ପାସୋରି ପକାଇଥିଲେ ।

ଭାଷଣକର୍ତ୍ତା ମାନଙ୍କର ଭାଷଣ ଦ୍ୱାରା ଭାସି ନଯିବାକୁ ସତେଯେପରି କୌଣସି କାରଣ ନଥିଲା । ସେଠାରେ ଉପସ୍ଥିତ ଦାସମାନଙ୍କ ମଧ୍ୟରୁ ସତସ୍ତରୀ ଜଣ ବୁଦ୍ଧିମାନ ତରୁଣ ତରୁଣୀ ଭାବିବାକୁ ଓ ଅନୁଭବ କରିବାକୁ ଲାଗିଲେ ଯେ, ଏଥର ସତକୁ ସତ ଆଗର ସ୍ଥିତି ବଦଳିଯିବ, କାରଣ ଉତ୍ପୀଡ଼ନ ଓ ଦାସତ୍ୱର ଯୁଗଟା ଏଥର ପ୍ରକୃତରେ ସରିଯିବ ଏବଂ ବିଶ୍ୱଭ୍ରାତୃତ୍ୱର ଯୁଗ ଆସି ନିଶ୍ଚୟ ପହଞ୍ଚିଯିବ । ସେମାନେ ପରସ୍ପର ସହିତ ସେହିଠାରେ ହିଁ ଏକଜୁଟ ହୋଇଗଲେ ଏବଂ ଆସନ୍ନ ଅନ୍ୟ ବ୍ୟବସ୍ଥାଟି ମଧ୍ୟରେ ସମ୍ମିଳିତ ହେବାକୁ ପଣ କରି ପକାଇଲେ । 'ମୋତି' ଜାହଜଟି ସେଇଠାରେ ପୋତାଶ୍ରୟ ଭିତରେ ହିଁ ଥିଲା । ଜାହଜର କପ୍ତାନ୍ ଏମାନଙ୍କୁ ପୋତର ନିମ୍ନଭାଗରେ (Hole) ଲୁଚାଇ ଅନ୍ୟତ୍ର ସରବରାହ କରି ନିଅନ୍ତୁ ବୋଲି ସେମାନେ ତାଙ୍କୁ ଯାଇ ଅନୁରୋଧ କରିଥିଲେ । କପ୍ତାନ ଗୋରା ହେଲେ ମଧ୍ୟ କିଛିଟ୍ ଉଦାର ପ୍ରକୃତିର ଥିଲେ ଏବଂ ସିଏ ମଧ୍ୟ ମୁକ୍ତି ଓ ଭ୍ରାତୃତ୍ୱ ସମ୍ବନ୍ଧରେ ଦିଆ ଯାଇଥିବା ଭାଷଣ ଗୁଡ଼ିକୁ ଶ୍ରବଣ କରିଥିଲେ । ସିଏ ରାଜୀ ହେଲେ ଏବଂ ଗୁପ୍ତ ମାଲଗୁଡ଼ିକୁ ନେଇ ସନ୍ଧ୍ୟା ସମୟରେ ଜାହଜଟି ବନ୍ଦର ଛାଡ଼ିଦେଲା । ଜାହଜ ବନ୍ଦରାଞ୍ଚଳରୁ ବାହାରିବା ବେଳକୁ ଠିକ୍ ଅଧରାତି ହୋଇଥାଏ । ପବନ ମଧ୍ୟ ଅନୁକୂଳ ରହିଥାଏ ଏବଂ ଏହିପରି ପର ଦିନ ରାତି ଏଗାରଟା ବେଳକୁ ଏମାନେ ସମସ୍ତେ ଦୁଇଶହ ମାଇଲ୍ ପଥ

ଅତିକ୍ରମ କରି ଯାଇଥିଲେ । ମନରେ ଦମ୍ଭ ଆସୁଥାଏ ଯେ ସେମାନେ ଏଥର ବିପଦରୁ ମୁକ୍ତ ହୋଇ ଆସିଛନ୍ତି । ନିଶ୍ଚିନ୍ତ ହୋଇ ଜାହଜ ବାଟରେ ଗୋଟିଏ ବନ୍ଦରରେ ଅଟକିଲା ଓ ପରଦିନ ସିନ୍ଦୂରା ଫାଟିବାଯାଏ ସେହିଠାରେ ଅପେକ୍ଷା କରି ରହିବାକୁ ସ୍ଥିର କଲା । ସମସ୍ତେ ନିଶ୍ଚିନ୍ତ ହୋଇ ସେପର୍ଯ୍ୟନ୍ତ ଶୋଇବାକୁ ଚାଲିଗଲେ । ପାଣିର ଢେଉଗୁଡ଼ିକ ତରୀ ଦେହରେ ବାଜି ଏକ ମୃଦୁ ହିଲୋଳ ସୃଷ୍ଟି କରିଥାଏ ଏବଂ ଏକ ବିଶେଷ ଆବେଗ ଆଣି ଦେଇ ଯାଉଥାଏ ।

ଭୋର ଦୁଇଟା ସମୟରେ ହଠାତ୍ ଜାହଜ ଉପରେ ଭୟଙ୍କର ଆର୍ତ୍ତରୋଳ ଆରମ୍ଭ ହୋଇଗଲା ଏବଂ ଡେ଼କ୍ ଉପରେ ଲୋକମାନଙ୍କର ବିକଳ ଚିତ୍କାର ଶୁଭିଲା । ଆଉଗୋଟିଏ ତରୀ ଏହି ଜାହଜଟିର ପିଛା ଧରି ଆସି ସେମାନଙ୍କର ବାଟ ଓଗାଳିଲା ଏବଂ 'ମୋତି' ସାରା ଭୀଷଣ ଅସ୍ତ୍ରମାନ ଧରିଥିବା ମନୁଷ୍ୟମାନେ ଆସି ଭର୍ତ୍ତି ହୋଇ ଯାଇଥିଲେ । ମୁହୂର୍ତ୍ତକ ମଧ୍ୟରେ ଏମାନେ କପ୍ତାନ ଏବଂ ଅନ୍ୟ କର୍ମଚାରୀମାନଙ୍କୁ କବଳିତ କରିନେଲେ ଏବଂ ସେମାନଙ୍କୁ ଦଉଡ଼ିରେ ବାନ୍ଧି ପକାଇଥିଲେ । ସେମାନଙ୍କୁ ପ୍ରାଣରୁ ମାରି ଦିଆଯିବ ବୋଲି ଧମକମାନ ଶୁଣା ଯାଉଥାଏ । ତା'ପରେ ନିମ୍ନ ଦେଶକୁ ଓହ୍ଲାଇ ଯାଇ କ୍ରୀତଦାସମାନଙ୍କୁ ଘେରି ଯାଇଥିଲେ । ଏକାନ୍ତ ଭୀତ ହୋଇ ପଡ଼ିଥିବାରୁ ସେମାନଙ୍କର ମୁହଁରୁ ଆଦୌ କୌଣସି କଥା ବାହାରୁ ନଥାଏ । ଦାସମାନଙ୍କୁ ଏକାଠି ବାନ୍ଧି ଜାହଜଟି ଉପରେ ବୋଝାଇ କରାଗଲା । ଏହି ଘଟଣାଟି କିପରି ଯେ ଘଟିଥିଲା, ପରେ ଯାଇ ତାହାର ତଥ୍ୟଗୁଡ଼ିକୁ ଜାଣିବା ସମ୍ଭବ ହେଲା । କ୍ରୀତଦାସମାନେ 'ମୋତି' ଜାହଜରେ ବସି କୂଳ ଛାଡ଼ିବା ପରେ ଯେତେବେଳେ ସକାଳ ଫାଟିଲା, ସେତେବେଳେ ମାଲିକମାନେ ସେମାନଙ୍କର ଦାସମାନଙ୍କୁ କେଉଁଠାରେ ହେଲେ ଦେଖିବାକୁ ପାଇଲେନାହିଁ । ଏମାନେ ଯେ ଦଳ ବାନ୍ଧି ପଳାଇ ଯାଇଛନ୍ତି, ସେଥିରେ କୌଣସି ସନ୍ଦେହ ନଥିଲା । ସଙ୍ଗେ ସଙ୍ଗେ ଶହେ ଖଣ୍ଡେ ଗୋରା ଲୋକ ଘୋଡ଼ାଉପରେ ଚଢ଼ି ବାହାରି ପଡ଼ିଥିଲେ । ଏମାନେ ସେମାନଙ୍କୁ ଆଖପାଖରେ ଖୁବ୍ ଖୋଜିଥାନ୍ତେ ଏବଂ ନପାଇ ଫେରି ଆସିଥାଆନ୍ତେ । ଏତିକିବେଳେ ହିଁ ଆଉଜଣେ କୃଷ୍ଣକାୟ ସତ ଘଟଣାଟିକୁ ଖୋଲି କହି ଦେଇଥିଲା । ଅସଲ କଥା ହେଉଛି, ଜଣେ ଦରିଦ୍ର ମହିଳାଙ୍କୁ ମଧ୍ୟ ସିଏ ଜାହଜ ଉପରକୁ ଟେକି ଦେବାକୁ ଇଚ୍ଛା କରୁଥିଲା ; ମାତ୍ର ବାଟ ପାଇଁ ଜାହଜକୁ ଦେୟ ପଚିଶି ସେଣ୍ଟ ତାଙ୍କ ପାଖରେ ନଥିବାରୁ ସିଏ ଆଉ ଜାହଜକୁ ଉଠି ପାରିନଥିଲେ । ସେହି ବ୍ୟକ୍ତିଟି ଅଶ୍ୱାରୂଢ଼ମାନଙ୍କୁ କହି ଦେଇଥିଲା ଯେ ସେମାନେ ଦାସମାନଙ୍କୁ ସ୍ଥଳଭାଗରେ ଜାଲ ପକାଇ ଖୋଜିଲେ ମଧ୍ୟ ମୋଟେ ସେମାନଙ୍କୁ ପାଇବେନାହିଁ, କାରଣ ଏମାନେ ଜଳପଥରେ ପଳାୟନ କରିଛନ୍ତି । ଏହାପରେ ଦୁଇଶହ ଲୋକ ଅସ୍ତ୍ରସଜ୍ଜିତ ହୋଇ ଆଉଗୋଟିଏ ତରୀ ଧରି ସେମାନଙ୍କର ପିଛା କରିଥିଲେ ।

ଦାସମାନଙ୍କୁ ଧରି ସେମାନେ ୱାଶିଙ୍ଗଟନରେ ଆସି ପହଞ୍ଚିବା ପରେ ସେଠାରେ ହଲଚଲ ବ୍ୟାପି ଯାଇଥିଲା । ବିଚରା ଦାସମାନଙ୍କୁ ଦଉଡ଼ିରେ ବାନ୍ଧି ରାସ୍ତାରେ ପରେଡ୍

କରା ଯାଇଥିଲା । ଚାରିଆଡ଼ରୁ ଗାଳିବର୍ଷଣ ମଧ୍ୟ ହେବାରେ ଲାଗିଥାଏ । ଜାହାଜର କପ୍ତାନ ଓ ଅନ୍ୟ କର୍ମଚାରୀଙ୍କୁ ଧରି ଗୁଣ୍ଡାଦ୍ୱାରା ବିଶେଷ ଆକ୍ରମଣ ହୋଇଥିଲା । ଏହି ନିମକହାରାମ ଦାସମାନଙ୍କୁ ଯେ ମୋଟେ କ୍ଷମା ଦିଆଯିବା ଉଚିତ ନୁହେଁ, ଉତ୍‌କ୍ଷିପ୍ତ ଗୋରାମାନେ ବଡ଼ ପାଟିରେ ସେହିକଥା ବାରମ୍ବାର କହିବାରେ ଲାଗିଥାନ୍ତି । ସେମାନଙ୍କ ପ୍ରତି କୌଣସି ଦୟାମାୟା ନଦେଖାଇ ବିକ୍ରୀ ହେବାଲାଗି ଦକ୍ଷିଣ ରାଜ୍ୟର କୌଣସି ଦାସବଜାରକୁ ହିଁ ପଠାଇଦେବା ଉଚିତ ବୋଲି ଅନେକେ ମନ୍ତବ୍ୟ ଦେଉଥିଲେ ।

ଅନ୍ତତଃ କଳା କ୍ରୀତଦାସମାନଙ୍କର କ୍ଷେତ୍ରରେ ତତ୍କାଳୀନ ଆମେରିକାର ଗୋରାମାନେ ବିବେକର ଘରେ ଗୋଟାସୁଦ୍ଧା ପଥର ହୋଇ ଯାଇଥିଲେ । କଳାମାନଙ୍କୁ ବିକି, କିଣି ଏବଂ ଘୁଷୁରି ପରି କାମରେ ଲଗାଇବା ସମୟରେ ତେଣେ ମାନବିକ ସମ୍ମାନ ତଥା ଲୋକଶାସନ ବିଷୟରେ ସେମାନଙ୍କର ବଡ଼ ନେତାମାନେ ଉଦ୍‌ଗାରି ଯାଇଥିବା ଉଚ୍ଚ ଉଚ୍ଚ କଥାମାନଙ୍କୁ ଚୂଲୀକୁ ଫିଙ୍ଗି ଦିଆ ଯାଉଥିଲା । ଦାସପ୍ରଥାରୁ ସେମାନେ ସବୁଯାକ ଲାଭ ପାଉଥିଲେ ଏବଂ ସେଥିରେ ଏତେ ଅଧିକ ପରିମାଣରେ ଅଭ୍ୟସ୍ତ ହୋଇ ରହିଥିଲେ ଯେ, ସମ୍ପୂର୍ଣ୍ଣ ଉଦାସୀନ ଭାବରେ ଯାହା ଯେପରି ରହିଛି, ସେହିଭଳି ହିଁ ରହିଥାଉ ବୋଲି ଇଚ୍ଛା କରୁଥିଲେ । ବହୁ ବୀଭତ୍ସ କଥାକୁ ମଣିଷମାନେ କିପରି ଅଭ୍ୟସ୍ତ ଭାବରେ ଗ୍ରହଣ କରିନିଅନ୍ତି ଏବଂ ପଥର ହୋଇ ବସି ଯାଇଥାନ୍ତି, ଆମେରିକାକୁ ଆମେ ତାହାରି ଏକ ଦୃଷ୍ଟାନ୍ତ ବୋଲି ଅବଶ୍ୟ କହିପାରିବା । ପୁରୁଣା କେତେ ବର୍ବରତା ବିଷୟରେ ହୁଏତ ସମଗ୍ର ପୃଥିବୀ କ୍ରୋଧ ଓ ପ୍ରତିବାଦରେ ଚିହିଙ୍କି ଉଠିଛି, ମାତ୍ର ଆମେରିକା ଜଡ଼ପ୍ରାୟ ହୋଇ ''କ'ଣ ହେଲା ସେଉଠୁ ?'' ବୋଲି କହି କଥାଟିକୁ ଟାଳି ଦେଇଛି । ଶ୍ରୀମତୀ ହାରିଏଟ୍ ଏହି ପ୍ରସଙ୍ଗଟିକୁ ଇଉରୋପର ପ୍ରତିବାଦ ଓ ସେଥିକୁ ଆମେରିକାର ପ୍ରତିକ୍ରିୟା ଆକାରରେ ଅତ୍ୟନ୍ତ ଚମତ୍କାର ଭାବରେ ଉପସ୍ଥାପିତ କରିଛନ୍ତି : ଇଉରୋପ ଖୁଞ୍ଚା ଦେଇ କହୁଛି : ''ଆମେ ଖବର ପାଉଛୁ ଯେ ତୁମ ଦେଶରେ ମଣିଷମାନଙ୍କୁ ଗୋରୁଗାଈ ପରି ବିକ୍ରୀ କରାଯାଉଛି ।'' ଆମେରିକା ଉତ୍ତର ଦେଉଛି : ''ହଁ, ହେଉଛି । କିନ୍ତୁ କ'ଣ ହେଲା ସେଉଠୁ ?'' ପୁନଶ୍ଚ, ଇଉରୋପ କହୁଛି, ''ଆମେ ଶୁଣୁଛୁ, ତୁମେ ନିଜ ଦେଶରେ ଲକ୍ଷ ଲକ୍ଷ ମନୁଷ୍ୟଙ୍କୁ ପଢ଼ିଲେଖି ଶିଖିବାରୁ ବଞ୍ଚିତ କରି ରଖିଛ !'' ଆମେରିକା ଉତ୍ତର ଦେଇ କହୁଛି : ''ଆମକୁ ଜଣା ଅଛି । କିନ୍ତୁ କ'ଣ ହେଲା ସେଉଠୁ ?'' ପୁଣି ପ୍ରଶ୍ନ ହେଉଛି : ''ଖ୍ରୀଷ୍ଟିଆନ୍ ବାଳିକାମାନଙ୍କୁ ଅତ୍ୟନ୍ତ ଲଜ୍ଜାହୀନ ଭାବରେ ହାଟରେ ନେଇ ବିକ୍ରୀ କରାଯାଉଛି ।'' ଆମେରିକା ଉତ୍ତର ଦେଇଛି :'' ହଁ, ସେପରି ହେବା ପ୍ରକୃତରେ ଉଚିତ ନୁହେଁ । କିନ୍ତୁ କ'ଣ ହେଲା ସେଇଠୁ''? ଇଉରୋପ କହୁଛି, ''ଆମେ ଶୁଣୁଛୁ, ତୁମ ଦେଶର ଷାଠିଏ ଲକ୍ଷ ମନୁଷ୍ୟ ଆଇନ୍‌ସମ୍ମତ ଭାବରେ ବିବାହିତ ହୋଇ ପାରନ୍ତି ନାହିଁ ।'' ଆମେରିକା ପୁନର୍ବାର କହୁଛି, ''କ'ଣ ହେଲା ସେଉଠୁ ? ଏଥିରେ ଏପରି ଆତଙ୍କିତ ହୋଇପଡ଼ିବା ଭଳି କ'ଣ ଅଛି ?'' ଇଉରୋପ ମନ୍ତବ୍ୟ କରୁଛି ! ''ତଥାପି ତୁମର ଏହି ଦେଶଟିକୁ ତୁମେ ଗୋଟିଏ ସ୍ୱାଧୀନ ଓ ମୁକ୍ତ ଦେଶ ବୋଲି କହୁଛ ।'' ଉତ୍ତର ଦିଆଯାଉଛି !

''ଆମେ ଯେ ପୃଥିବୀରେ ସବୁଠାରୁ ଅଧିକ ମୁକ୍ତ ଓ ସବୁଠାରୁ ଅଧିକ ସ୍ୱାଧୀନ, ସେଥିରେ କୌଣସି ସନ୍ଦେହ ଅଛି ନା ! ମାତ୍ର, କ'ଣ ହେଲା ସେଉଠୁ ?'' ଇତ୍ୟାଦି, ଇତ୍ୟାଦି ।

ଏକାଧିକ ଶତାବ୍ଦୀ ଧରି ଆମେରିକାରେ କଳା ମଣିଷଙ୍କ ଉପରେ ଏହି ଅତ୍ୟାଚାର ହେଉଥିଲା ଏବଂ ସେହି ଦେଶରେ ରହିଥିବା ଗୀର୍ଜା-ଅନୁଷ୍ଠାନମାନେ ସେହି ବିଷୟରେ କ'ଣ କରୁଥିଲେ ? ଏମାନେ ପାଦ୍ରୀ ଓ ପ୍ରଚାରକ ପଠାଇ ଆଫ୍ରିକା ଓ ଏସିଆକୁ ଠିକ୍ ଧର୍ମଟାର ବାଡ଼ ଭିତରେ ଆଣି ଭର୍ତ୍ତି କରିବାକୁ କେତେ ଉଦ୍ୟମ କରୁଥିଲେ, ମାତ୍ର ଦାସପ୍ରଥାଟି ପ୍ରତି ସେମାନଙ୍କର କିଭଳି ଦୃଷ୍ଟିକୋଣ ରହିଥିଲା ? ସମଗ୍ର ପୃଥିବୀର ପରିତ୍ରାଣ ନିମନ୍ତେ ଏକ ରାଜକୀୟ କଳ୍ପନାରେ ପ୍ରଚାରର କାର୍ଯ୍ୟ କରୁଥିବା ସମୟରେ ଗୀର୍ଜାମାନେ ସାହସ କରି କ୍ରୀତଦାସ-ପ୍ରଥାକୁ ଏକ ଅମାନୁଷିକ ଅପକର୍ମ ବୋଲି ଘୋଷଣା କରି ପାରିଥିଲେ କି ? ପ୍ରଚାରକ ମାନଙ୍କର ଆଖିମାନେ ଏତେ ଏତେ ଦମ୍ଭର ସହିତ ବାହାରେ କେତେ କେତେ ଦୂରକୁ ପ୍ରସାରିତ ହୋଇ ରହିଥିବା ସମୟରେ ସେମାନେ ନିଜ ଘରେ ଅର୍ଥାତ୍ ନିକଟତମ ଆହ୍ୱାନଗୁଡ଼ିକର କ୍ଷେତ୍ରରେ ଏପରି ଅସମର୍ଥ ହୋଇ ରହନ୍ତି କାହିଁକି କେଜାଣି ? ଶ୍ରୀମତୀ ହାରିଏଟ୍ ଏହି ପ୍ରସଙ୍ଗରେ ପ୍ରଥମରୁ ହିଁ ଉପସଂହାର କଲାପରି କହିଛନ୍ତି: ଗୀର୍ଜାଗୁଡ଼ିକ ଦାସବ୍ୟବସ୍ଥାର ବିଲୋପସାଧନ କରି ପାରିନାହାନ୍ତି । ସେହି ବ୍ୟବସ୍ଥାର ପ୍ରସାରକୁ ଅଟକାଇ ପାରିନାହାନ୍ତି । ଜଣେ କ୍ରୀତଦାସ ପାଇଁ ଶିକ୍ଷାର ସକଳ ଅଧିକାର ନିଷିଦ୍ଧ ହୋଇ ରହିବ ବୋଲି ଯେଉଁ ଆଇନ୍ କରାଯାଇଛି ; ଗୀର୍ଜାମାନେ ସେଇଟିକୁ ଅସିଦ୍ଧ କରାଇବା ଦିଗରେ କିଛି କରିନାହାନ୍ତି । ଦାସ ପରିବାରର ସଦସ୍ୟମାନେ ଯେପରି ସେମାନଙ୍କୁ କ୍ରୟ ଓ ବିକ୍ରୟ କରିବା ସମୟରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ନଯିବେ, ସେଥିପାଇଁ ଆଇନ୍ ପ୍ରଣୟନ କରିବାର କ୍ଷେତ୍ରରେ ଏହି ଗୀର୍ଜାମାନେ କିଛି କରିନାହାନ୍ତି । ହଁ, ସେମାନେ କାର୍ଯ୍ୟରେ ସିନା କିଛି କରିନାହାନ୍ତି, ମାତ୍ର ଦାସପ୍ରଥାକୁ ଏକ ଅସୁସ୍ଥ ପ୍ରଥା ବୋଲି ଘୋଷଣା କରିଛନ୍ତି । ବ୍ୟକ୍ତିଗତ ଭାବରେ କେହି କେହି ଦାସପ୍ରଥାର ବିରୋଧରେ ଆପଣାର ମତ ମଧ ବ୍ୟକ୍ତ କରିଛନ୍ତି । ତଥାପି, ସାମଗ୍ରିକ ଭାବରେ ଦେଖିଲେ, ଏହି କ୍ଷେତ୍ରରେ ଯେ ସେମାନଙ୍କର କୌଣସି ଏକ ଦାୟିତ୍ୱ ରହିଛି, ସେମାନେ ସତର୍କ ଓ ଚତୁର ଭାବରେ ତାହାକୁ ଏଡ଼ି ଯାଇଛନ୍ତି । କେତେ ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟ ଦାସପ୍ରଥାଟି ହେଉଛି ଏକ ସାମାଜିକ ଏବଂ ପରିବାର-ଜୀବନର ଅନୁଷ୍ଠାନ ଏବଂ ଧର୍ମାଧିକରଣ ଗୁଡ଼ିକର ସେଥିରେ ହସ୍ତକ୍ଷେପ କରିବା ଆଦୌ ଉଚିତ୍ ନୁହେଁ ବୋଲି ବଡ଼ ହାସ୍ୟାସ୍ପଦ ଭାବରେ ଘୋଷଣା ବି କରିଛନ୍ତି । କେବଳ ଖ୍ରୀଷ୍ଟିଆନ୍ ଧର୍ମସଂସ୍ଥାର କ୍ୱେକର୍ ଶାଖାଟି ହିଁ ତାହାର ଏକ ବ୍ୟତିକ୍ରମ ହୋଇ ରହିଥିଲା ।

କ୍ୱେକର୍ ଉପାସକ-ଶାଖାର କୌଣସି ବ୍ୟକ୍ତି ଯେପରି କଳା ମଣିଷଙ୍କର କିଣାବିକାରେ କୌଣସି ଅଂଶଗ୍ରହଣ ନକରିବେ, ସେଥିଲାଗି ଶାଖା ସର୍ବଦା ଜାଗରୂକ ରହିଥିଲା । ନିଜ ପୁସ୍ତକରେ ଗୋଟିଏ ସମ୍ପୂର୍ଣ୍ଣ ଅଧ୍ୟାୟରେ ହାରିଏଟ୍ ଷ୍ଟୋ' ସେହି ବିଷୟରେ ବିବରଣୀମାନ ଦେଇଛନ୍ତି । ଜଣେ ତରୁଣ କ୍ୱେକର୍ ଯୁବକଙ୍କୁ କିପରି ଗୋଟିଏ କୃଷ୍ଣକାୟ

ପରିବାର, ମାଆ ଓ ତାଙ୍କର ଚାରିଜଣ ପୁଅଙ୍କୁ ଘୋଡ଼ାଗାଡ଼ୀରେ ବସାଇ ପାଞ୍ଚ ମାଇଲ୍ ବାଟ ନେଇଥିବାର ଅପରାଧରେ ବିଚାରାଳୟରେ ଦଣ୍ଡିତ ହେବାକୁ ପଡ଼ିଥିଲା, ଲେଖିକା ସେହି ଘଟଣାଟିର ଉଲ୍ଲେଖ କରିଛନ୍ତି । ଏହି ସନ୍ଦର୍ଭରେ ସ୍ୱୟଂ ସେହି ତରୁଣଜଣକ ଶ୍ରୀମତୀ ହାରିଏଟ୍‌ଙ୍କୁ ଯେଉଁ ଚିଠି ଲେଖି ପଠାଇଥିଲେ, ହାରିଏଟ୍ ସମ୍ପୂର୍ଣ୍ଣ ଭାବରେ ତାହାର ଉଦ୍ଧାର କରିଛନ୍ତି : "୧୮୪୬ ମସିହା ଡ଼ିସେମ୍ବର ମାସରେ ଦିନେ ପ୍ରାୟ ସୂର୍ଯ୍ୟାସ୍ତ ସମୟରେ ଗୋଟିଏ ପରିବାର ଜଣେ ବନ୍ଧୁଙ୍କ ଘରେ ଆସି ପହଞ୍ଚିଲେ ଓ ସେଠାରେ ଖାଇବା ପିଇବା କରିବେ ଏବଂ ରାତିରେ ସେଠାରେ ରହିବେ ବୋଲି କହିଥିଲେ । ପରିବାର କହିଲେ, ପତ୍ନୀ, ପତି ଓ ତାଙ୍କର ପିଲାମାନେ । ଏମାନେ ଯେ ଗୋଟିଏ କ୍ରୀତଦାସ ପରିବାରର ଲୋକ,ସେତେବେଳେ କେହି ସେକଥା ଜାଣିନଥିଲେ । ସେତେବେଳେ ସେହି ବନ୍ଧୁଙ୍କର ପଡ଼ିଶାରେ ଅନ୍ୟମାନେ ତାହା ଦେଖିଥିଲେ ଏବଂ ଜଣେ ଗୋରା ଗୃହସ୍ୱାମୀ କଳାମାନଙ୍କୁ କିପରି ଘରେ ସ୍ଥାନ ଦେଉଛନ୍ତି, ସେମାନେ ତାହା ସହ୍ୟ କରି ପାରିନଥିଲେ । ସେମାନେ ଜଣେ କନ୍‌ଷ୍ଟେବ୍‌ଲ୍‌ଙ୍କୁ ସାଙ୍ଗରେ ନେଇ ସେଠାରେ ଆସି ପହଞ୍ଚିଲେ ଓ ଆଗନ୍ତୁକମାନଙ୍କୁ ଜଣେ ମାଜିଷ୍ଟ୍ରେଟଙ୍କ ପାଖକୁ ନେଇ ଯାଇଥିଲେ । ସେତେବେଳେ ଗୃହସ୍ୱାମୀ ପାଖରେ ଥିବା ଆଉଗୋଟିଏ ଜାଗାକୁ ଯାଇଥିଲେ ଏବଂ ଯିବା ଆଗରୁ ପରିବାରଟି ପାଇଁ ନିଜର ରୋଷେଇଘରେ ଜାଗା କରିଦେଇ ଯାଇଥିଲେ । ମାଜିଷ୍ଟ୍ରେଟଙ୍କ ଠାରୁ ୱାରଣ୍ଟ ନେଇ ଲୋକମାନେ ତାଙ୍କ ଘରେ ଆସି ପହଞ୍ଚିଲେ ଓ କୃଷ୍ଣକାୟମାନେ କେଉଁଠାରେ ଅଛନ୍ତି ବୋଲି ଜାଣିବାକୁ ପଚାରିଲେ । ଇତିମଧ୍ୟରେ ଗୃହସ୍ୱାମିନୀ ସେମାନଙ୍କୁ ଅଧିକ ନିରାପଦ ହେବ ବୋଲି ଭାବି ସିଡ଼ିବାଟେ ଉପର ମହଲାକୁ ନେଇ ଯାଇଥିଲେ ଏବଂ ସେମାନଙ୍କୁ ସେହିଠାରେ ହିଁ ଆବିଷ୍କାର କରା ଯାଇଥିଲା । ଗୃହମାଲିକଙ୍କ ତରଫରୁ କୌଣସି ପ୍ରତିରୋଧ କରାଯାଇ ନଥିଲା ଓ କଳା ପରିବାରଟିକୁ ମାଜିଷ୍ଟ୍ରେଟଙ୍କ ପାଖକୁ ନେଇ ନିଆଗଲା । ମାଜିଷ୍ଟ୍ରେଟ୍ ସେମାନଙ୍କୁ ସିଧା ପାଖରେ ଥିବା ଗୋଟିଏ ଜେଲ୍‌ଖାନାକୁ ପଠାଇଦେଲେ । ସେତେବେଳକୁ ରାତି ଗୋଟାଏ ବାଜିଲାଣି ।"

ବନ୍ଦୀମାନଙ୍କ ପକ୍ଷରୁ ବିଧିବଦ୍ଧ ଭାବରେ ଦରଖାସ୍ତ ଦିଆଗଲା ଓ ବିଚାରକର୍ତ୍ତା ସେମାନଙ୍କର କୌଣସି ଦୋଷ ନାହିଁ ବୋଲି ଜାଣି ସେମାନଙ୍କୁ ଖଲାସ କରିଦେଲେ । ପାଗ ଭଲ ନଥାଏ, ରାସ୍ତା ମଧ୍ୟ ଭଲ ନଥିଲା । ଗୋଟିଏ ପିଲା ଛୋଟ ଥିବାରୁ ଚାଲି ପାରୁନଥିଲା ଓ ଆଉଗୋଟିଏ ମାଆକୋଳରେ ଥିଲା । ସେମାନଙ୍କୁ ପୁଣି ପାଞ୍ଚ ମାଇଲ ରାସ୍ତା ପାର କରାଇ ଉଚିତ ସ୍ଥାନକୁ ଆଣିବା କଥା । ଆଲୋଚ୍ୟ କୁଏକର୍ ତରୁଣ ଜଣକ ପରିବାରଟିକୁ ଗାଡ଼ିରେ ବସାଇ ନେଇଗଲେ କିଛି ଆଇନ୍‌ଗତ ଅସୁବିଧା ହେବ କି ନାହିଁ ବୋଲି ବିଚାରପତିଙ୍କୁ ପଚାରିଥିଲେ । ବିଚାରପତି ସେପରି କୌଣସି ଅସୁବିଧା ନାହିଁ ବୋଲି ମତ ଦେବାରୁ ଗାଡ଼ୀଟିଏ ଡ଼କାଗଲା ଓ ପରିବାରଟି ତାହାରି ସାହାଯ୍ୟରେ ସେଠାରୁ ଚାଲିଗଲେ । ସେମାନେ ପ୍ରକୃତରେ ଆଉକୁଆଡ଼େ ଖସି ପଳାଇ ଯାଇଥିଲେ । ପରିଣାମ ସ୍ୱରୂପ ଦୁଇଜଣଯାକଙ୍କୁ ପୁନର୍ବାର ବିଚାରର ସମ୍ମୁଖୀନ ହେବାକୁ ହୋଇଥିଲା । ଗୋଟିଏ କୃଷ୍ଣକାୟ

ପରିବାରକୁ ଘରେ ସ୍ଥାନ ଦେଇଥିବାରୁ ଉକ୍ତ ଗୃହସ୍ୱାମୀଙ୍କୁ ଅଢ଼େଇ ହଜାର ଡ଼ଲାର ଜୋରିମାନା କରାଗଲା ଏବଂ ତରୁଣ କୁଏକର୍‌ଙ୍କ ଉପରେ ମୋଟ ପାଞ୍ଚ ହଜାର ଚାରିଶହ ଡ଼ଲାର ଅର୍ଥଦଣ୍ଡ ଧାର୍ଯ୍ୟ କରା ଯାଇଥିଲା । କଳାମାନଙ୍କ ପାଇଁ ଗାଡ଼ୀଟିଏ ଯୋଗାଡ଼ କରି ଦେଇଥିବାରୁ ସାଢ଼େ ତିନି ହଜାର ଓ ପଳାଇ ଯାଇଥିବା କ୍ରୀତଦାସ ପରିବାରର ମୂଲ୍ୟସ୍ୱରୂପ ଆଉ ହଜାରେ ନଅଶହ ଡ଼ଲାର । ବିଚାର ସମାପ୍ତ ହୋଇ ରାୟ ଶୁଣାଇ ଦିଆଯିବା ପରେ କୁଏକର୍ ଶ୍ରୀଯୁକ୍ତ ଜନ୍ ଗାରେଟ୍ ଦଣ୍ଡାୟମାନ ହେଲେ ଓ ନିଜ ତରଫରୁ କିଛି କହିବା ନିମନ୍ତେ ବିଚାରପତିଙ୍କର ଅନୁମତି ପ୍ରାର୍ଥନା କରିଥିଲେ । ଅନୁମତି ମଞ୍ଜୁର ହେଲା ଓ ସେ ନିମ୍ନଲିଖିତ ପ୍ରକାରେ ନିଜର ବୟାନ ଉପସ୍ଥାପିତ କରିଥିଲେ :

''କେବଳ ନ୍ୟାୟ ଓ ମାନବିକତା ଦୃଷ୍ଟିରୁ ନିଜର କର୍ତ୍ତବ୍ୟ ମନେ କରି ମୁଁ ଯାହା କରିଥିଲି, ମାନ୍ୟବର କୋର୍ଟ୍ ତାହାର ସମୁଚିତ ବିଚାର କରି ମୋ' ଉପରେ ବିହିତ ଦଣ୍ଡାଦେଶ ପ୍ରଦାନ କରିଛନ୍ତି । ମୁଁ ବର୍ତ୍ତମାନ ଯାହାକିଛି କହିବି, ଆପଣମାନେ ନିଜ ନିଜ ଘରକୁ ଯାଇ ତାହା ବିଷୟରେ ଚିନ୍ତା କରିବେ । ଯେଉଁ ପରିବାରଟିକୁ ମୁଁ କିଞ୍ଚିଦ୍ ସହାୟତା କରିଛି, ସେମାନେ ପ୍ରକୃତରେ କ୍ରୀତଦାସ ବୋଲି ସନ୍ଦେହ କରିବା ନିମନ୍ତେ ମୋ' ପାଖରେ କୌଣସି କାରଣ ନଥିଲା । ମାତ୍ର, ସେମାନେ ପ୍ରତ୍ୟେକେ ଜଣେ ଜଣେ କ୍ରୀତଦାସ ବୋଲି ଜାଣିଥିଲେ ମଧ ମୁଁ ଯାହା କରିଛି ତାହାହିଁ କରିଥାଆନ୍ତି । ଏହି ବ୍ୟକ୍ତିମାନଙ୍କୁ ମୁକ୍ତ ହେବାଲାଗି କିଞ୍ଚିଦ୍ ସାହାଯ୍ୟ କରିନଥିଲେ ମୁଁ ମୋର ବିବେକ ଏବଂ ବିଶ୍ୱାସ ପାଖରେ ପ୍ରକୃତରେ ଦ୍ରୋହୀ ହିଁ ହୋଇଥାନ୍ତି । କ୍ରୀତଦାସ-ପ୍ରଥାକୁ ଉଠାଇ ଦେବାପାଇଁ ମୁଁ ଚାହୁଁଛି ବୋଲି ମୋ' ବିରୋଧରେ ଅଭିଯୋଗ କରାଯାଇଛି । ଏକଥା ଏହି ଶବ୍ଦଟିକୁ କୌଣସି ବ୍ୟକ୍ତିକୁ ଭର୍ତ୍ସନା କରିବାପାଇଁ ସିନା ବ୍ୟବହାର କରା ଯାଉଥିଲା ; ମାତ୍ର, ବର୍ତ୍ତମାନ ମୋ'ଲାଗି ଏହି ଶବ୍ଦଟିକୁ ପ୍ରୟୋଗ କରା ଯାଇଥିବାରୁ ମୁଁ ଗର୍ବ ଅନୁଭବ କରୁଛି । ବିଗତ ପଚିଶି ବର୍ଷ ହେଲା ମୁଁ ଏହି ଦୁର୍ଗତ ଓ ଭାଗ୍ୟହୀନ କୃଷ୍ଣକାୟମାନଙ୍କ ସକାଶେ କାର୍ଯ୍ୟ କରି ଆସିଛି । ସେମାନଙ୍କ ନିମନ୍ତେ କିଛି କରିବାକୁ ମୁଁ ସର୍ବଦା ନିଜର କର୍ତ୍ତବ୍ୟ ବୋଲି ବିଚାର କରିଛି । ସେହି କାର୍ଯ୍ୟଟି କରିବାକୁ ଯାଇ ଦୁଃଖ ବା ଦଣ୍ଡ ପାଇଲେ ମୁଁ ଆଦୌ କୌଣସି ପ୍ରକାରେ ଗ୍ଲାନି ଅନୁଭବ କରିନାହିଁ ।''

''ଏହି ନିର୍ଦ୍ଦୋଷ ଗୋଷ୍ଠୀଟି ପ୍ରତି କରାଯାଇ ଆସିଥିବା ଅନ୍ୟାୟ ଏବଂ ଅବିଚାର କ୍ରମେ ଏକ ଅସହନୀୟ ସୀମାରେ ଆସି ପହଞ୍ଚିଲାଣି । ଏବଂ, ଆପଣମାନଙ୍କର ଉପସ୍ଥିତିରେ ମୁଁ ଶପଥଗ୍ରହଣ କରୁଛି ଯେ, ଅତ୍ୟାଚାରିତ ଏହି ମନୁଷ୍ୟଗୋଷ୍ଠୀର ଦୁଃଖକୁ ଲାଘବ କରିବାପାଇଁ ସମ୍ମାନଜନକ ଓ ଆଇନ୍‌ସମ୍ମତ ଭାବରେ ଯାହାକିଛି ମୋ' ଦେଇ ସମ୍ଭବ ହେବ, ମୁଁ ତାହା ଅବଶ୍ୟ କରିବି । ମୋ'ର ସାମର୍ଥ୍ୟ ଅନୁସାରେ ସେମାନଙ୍କର ବେଡ଼ୀକୁ ଛିଣ୍ଡାଇ ଫିଙ୍ଗି ଦେବାରେ ମୁଁ ସବୁ ପ୍ରକାରର ଉଦ୍ୟମ ଅବଶ୍ୟ କରିବି । ସେମାନଙ୍କର ମୁକ୍ତିବିଧାନ ନିମନ୍ତେ ସର୍ବଦା ସକ୍ରିୟ ରହିବି । ଶାରୀରିକ ଭାବରେ ସୁସ୍ଥ ରହିଥିବା ଯାଏ ମୋ'ର ସେହି ପ୍ରଚେଷ୍ଟାରେ ମୁଁ ଆଦୌ କୌଣସି ହେଳା କେବେହେଲେ କରିବିନାହିଁ ।

ଏବଂ, ବହୁତ ଗମ୍ଭୀର ଭାବରେ ଚିନ୍ତା କରିବାପରେ ମୁଁ ଏଠାରେ ଆପଣମାନଙ୍କୁ ସମ୍ପୂର୍ଣ୍ଣ ନିର୍ଭର ସହିତ କହିବାକୁ ଇଚ୍ଛା କରୁଛି ଯେ, ମୋ' ମତରେ , ଆମ ଦୁହିଁଙ୍କ ନିମନ୍ତେ ଆପଣମାନେ ଯେଉଁ ରାୟ ଶୁଣାଇଲେ, ତାହା ବିଷୟରେ ରାଜ୍ୟ ତମାମ ନିଷ୍ଚୟ ଅଧିକରୁ ଅଧିକ ବିତର୍କ ଓ ଆଲୋଚନା ହେବ । ଯେଉଁମାନେ ଏପର୍ଯ୍ୟନ୍ତ ହୁଏତ ସମସ୍ୟାଟି ବିଷୟରେ କେବେ ମୁଣ୍ଡ ଖେଳାଇ ନାହାନ୍ତି, ସେମାନେ ମଧ ଚିନ୍ତା କରିବାକୁ ଆରମ୍ଭ କରିବେ ଏବଂ କ୍ରୀତଦାସପ୍ରଥା ନାମକ ସେହି ଦୈତ୍ୟଟିର ସମ୍ମୁଖୀନ ହେବାକୁ ଆପଣାର କର୍ତ୍ତବ୍ୟ ବୋଲି ଜାଣିବେ । ଏହି ବିଚାରର ବିବରଣୀଗୁଡ଼ିକ ଏହି ଦେଶର ଦୈର୍ଘ୍ୟ ପ୍ରସ୍ଥ ଚତୁର୍ଦ୍ଦିଗରେ ପ୍ରଚାରିତ ହେବ ଏବଂ, ଆପଣମାନେ ଚିନ୍ତା କରି କହିଲେ, ତାହାର କିଭଳି ପରିଣାମ ହେବ ! କ୍ରୀତଦାସପ୍ରଥାର ବିରୋଧରେ ଦେଶରେ ଯେଉଁ ଶିବିରଟି କ୍ରମଶଃ ଗଠିତ ହୋଇ ଆସୁଛି, ଏହା ଫଳରେ ଆହୁରି ଶହ ବା ହଜାର ସଂଖ୍ୟାରେ ଅଧିକ ବ୍ୟକ୍ତି ସେହି ଶିବିର ଭିତରେ ଆସି ସମ୍ମିଳିତ ହେବେ । ଆପଣ, ଅର୍ଥାତ୍ ଏହି ବିଚାରାଳୟ ଆମ ପ୍ରତି ଯେଉଁ ଦଣ୍ଡବିଧାନ କରିଛି, ତଦ୍ୱାରା ବ୍ୟକ୍ତିଗତ ଭାବରେ ଆମ ଦୁହିଁଙ୍କୁ ଅନେକ କ୍ଷତି ସହିବାକୁ ପଡ଼ିବ ; ମାତ୍ର ଅନ୍ୟ ପକ୍ଷରେ ଏହି ଭୂମିରୁ କ୍ରୀତଦାସପ୍ରଥାର ମୂଳୋତ୍ପାଟନ କରିବା ଦିଗରେ ତାହା ସୁନିଶ୍ଚିତ ଭାବରେ ଏକ ଶକ୍ତିଶାଳୀ ପ୍ରଭାବ ପକାଇବ । ଏହି ଭୂମିଟରେ ଆମର ସ୍ୱାଧୀନତାକୁ ନେଇ ସିନା ଆମେ ଏପରି ମିଛ ଗର୍ବ କରୁଛୁ, ମାତ୍ର ଏହି ଦେଶର ଦକ୍ଷିଣ ରାଜ୍ୟଗୁଡ଼ିକରେ କଳା କ୍ରୀତଦାସମାନେ ଗୋରା ମାଲିକମାନଙ୍କ ପାଖରେ ଦାସତ୍ୱଶୃଙ୍ଖଳରେ ବନ୍ଧା ହୋଇ ପଡ଼ିଛନ୍ତି ଏବଂ ଆମେ ଉତ୍ତରାଞ୍ଚଳର ରାଜ୍ୟଗୁଡ଼ିକରେ ମଧ ଦକ୍ଷିଣର ମାଲିକମାନଙ୍କର ନିର୍ଦ୍ଦେଶରେ ହିଁ ପରିଚାଳିତ ହେବାରେ ଲାଗିଛୁ ।'' ଜନ୍ ଗ୍ୟାରେଟ୍ ଲେଖିକାଙ୍କୁ ପଠାଇଥିବା ତାଙ୍କର ଚିଠିରେ ଶେଷରେ ଲେଖିଥିଲେ ଯେ, ତାଙ୍କର ଏହି ଭାଷଣଟି ଶେଷ ହେବା ପରେ ଜୁରୀମାନଙ୍କ ମଧ୍ୟରୁ ଜଣେ ତରୁଣ ଭଦ୍ରଲୋକ ତାଙ୍କ ପାଖକୁ ସିଧା ଚାଲି ଆସିଥିଲେ ଓ କହିଥିଲେ : ''ଆପଣ ଯାହାକିଛି ବର୍ତ୍ତମାନ କହିଲେ, ମୁଁ ସେଗୁଡ଼ିକ ସହିତ ସମ୍ପୂର୍ଣ୍ଣ ଭାବରେ ଏକମତ । ଆଜି ଘରୁ ଏଠାକୁ ଆସିବା ସମୟରେ ଆପଣଙ୍କ ବିଷୟରେ ମୋର ଅନେକ ଭୁଲ ଧାରଣା ରହିଥିଲା, ଏବଂ ବର୍ତ୍ତମାନ ସ୍ୱୀକାର କରିବି ଯେ ଆପଣଙ୍କ ପ୍ରତି ଅନ୍ୟାୟବିଧାନ ହେବାରେ ମୋ'ର ମଧ ଭାଗ ରହିଛି ।''

ଏହିପରି ଆଉଗୋଟିଏ ଦୃଷ୍ଟାନ୍ତ ହେଉଛନ୍ତି ରିଚାର୍ଡ଼ ଡ଼ିଲିଙ୍ଗ୍‌ହାମ୍ । ସିଏ ଆମେରିକାରେ ଗୋଟିଏ ସହରରେ କଳା ଲୋକମାନଙ୍କୁ ପାଠ ପଢ଼ାଉଥିଲେ ଏବଂ ଜେଲ୍‌ଗୁଡ଼ିକୁ ଯାଇ ବନ୍ଦୀମାନଙ୍କୁ ସାକ୍ଷାତ୍ ମଧ କରୁଥିଲେ । ବନ୍ଦୀମାନଙ୍କ ଠାରୁ ସେମାନଙ୍କର ଆତ୍ମୀୟସ୍ୱଜନ ମାନଙ୍କ ବିଷୟରେ କରୁଣ କାହାଣୀମାନ ଶୁଣି ସେ ଏତେ ବ୍ୟଥିତ ହୋଇ ପଡ଼ିଥିଲେ ଯେ, ରିଚାର୍ଡ଼ ସେହି ଆତ୍ମୀୟସ୍ୱଜନଙ୍କ ପାଖକୁ ମଧ ଯାଇଥିଲେ । ମାତ୍ର ସେଠାରେ ସେହି ରାଜ୍ୟର ସରକାର ତାଙ୍କୁ ଧରିନେଲେ ଏବଂ ଜେଲ୍‌ରେ ଭର୍ତ୍ତି କରିଦେଲେ । ବାପାମାଆଙ୍କ ପାଖକୁ ଦେଇଥିବା ଏକ ପତ୍ରରେ ଡ଼ିଲିଙ୍ଗହାମ୍ ସେହିସବୁ ଘଟଣାର ବର୍ଣ୍ଣନା ଦେଇଛନ୍ତି । କଳା ଲୋକମାନଙ୍କୁ ଜେଲ୍ ଭିତରୁ ଖସି ପଳାଇ ଯିବାରେ ସାହାଯ୍ୟ କରୁଥିବାର

ଅପରାଧ ପାଇଁ ତାଙ୍କୁ ଗିରଫ କରାଗଲା ବୋଲି ସେ ଉଲ୍ଲେଖ କରିଛନ୍ତି । ଯେତେବେଳେ ଏକ ନ୍ୟାୟାଳୟକୁ ତାଙ୍କୁ ବିଚାର ପାଇଁ ଅଣା ଯାଇଥିଲା, ଦୁଇ ପକ୍ଷର ଶୁଣାଣି ପରେ ସିଏ ମଧ୍ୟ ନିଜ ତରଫରୁ କିଛି ନିବେଦନ କରିବାକୁ ଇଚ୍ଛା କରିଥିଲେ । ଅନୁମତି ପାଇ ଅତ୍ୟନ୍ତ ନମ୍ର ଭାବରେ କହିଥିଲେ : ''ପିଲା ସମୟରୁ ମୁଁ ପିତାମାତାଙ୍କ ଠାରୁ ଯେଉଁ ଶିକ୍ଷା ପାଇଛି ତାହା ଫଳରେ ମୁଁ ସାଧାରଣତଃ ନିୟମ ଭଙ୍ଗ କରେନାହିଁ ଓ କୌଣସି ଅପରାଧ କରିବାକୁ ମୋର ଇଚ୍ଛା ହୁଏନାହିଁ । ମାତ୍ର, ଏହି ଅପରାଧଟିକୁ ମୁଁ ତଥାପି କରିଛି ଏବଂ ତେଣୁ ଆପଣମାନଙ୍କ ସମକ୍ଷରେ ଜଣେ ଅପରାଧୀ ଭାବରେ ଛିଡ଼ା ହୋଇଛି । ମୋ' ଭିତରେ ଯେଉଁ ମାନବିକତା ଗୁଣ ରହିଛି, ତାହାରିଦ୍ୱାରା ପ୍ରେରିତ ହୋଇ ମୁଁ ଅପରାଧଟିକୁ କରିଛି ।'' ସେହି ବିଚାରରେ ରିଚାର୍ଡ୍‌ଙ୍କୁ ତିନିବର୍ଷ ଜେଲଦଣ୍ଡ ଭୋଗିବା ନିମନ୍ତେ ଆଦେଶ ହୋଇଥିଲା । ବିବରଣୀରୁ ଜଣାଯାଏ, ସେ ବନ୍ଦୀଶାଳାରେ ପ୍ରାୟ ବର୍ଷେ ରହିବା ପରେ ସେଠାରେ ହଇଜା ରୋଗ ଆକ୍ରମଣ କରିଥିଲା । ରିଚାର୍ଡ଼ ଦିନ ରାତି ନମାନି ରୋଗୀମାନଙ୍କର ଶୁଶ୍ରୂଷା କରିବାରେ ଲାଗି ପଡ଼ିଲେ । ଶେଷରେ ସିଏ ନିଜେ ମଧ୍ୟ ସେହି ରୋଗରେ ପୀଡ଼ିତ ହୋଇଥିଲେ ଓ ମୃତ୍ୟୁମୁଖରେ ପତିତ ହୋଇଥିଲେ ।

ଯଦି ସ୍ୱୟଂ ଖ୍ରୀଷ୍ଟ ଭଗବାନ ପୁନର୍ବାର ଧରାତଳକୁ ଓହ୍ଲାଇ ଆସନ୍ତେ ଏବଂ ଆମେରିକାର ଜନଜୀବନ କିପରି ଚାଲିଛି, ତାହାକୁ ନିଜ ଆଖିରେ ଦେଖନ୍ତେ, ତେବେ ଚମର କଳା ଗୋରା ରଙ୍ଗ ଅନୁସାରେ ସେଠାରେ ଯେଉଁ ଦୂରତା ଗୁଡ଼ିକୁ ସୃଷ୍ଟି କରାଯାଇଛି, ସେଗୁଡ଼ିକ ପ୍ରତି ତାଙ୍କର କିଭଳି ପ୍ରତିକ୍ରିୟା ହୁଅନ୍ତା,- ଲେଖିକା ନିଜ ପୁସ୍ତକର ଗୋଟିଏ ସ୍ଥାନରେ ସେହି ପ୍ରଶ୍ନଟିକୁ କରିଛନ୍ତି । ଯଦି ଖ୍ରୀଷ୍ଟ ତାଙ୍କ ନାମରେ ଉପାସନା ହେଉଥିବା ସମୟରେ କୌଣସି ଗୀର୍ଜା ଭିତରକୁ ଯାଆନ୍ତେ ଏବଂ ଗୋଟିଏ ପାଖରେ ଗୋରାମାନେ ବସିଥିବା ବେଳେ କଳା ଲୋକଟିଏ ଅଲଗା ହୋଇ ଖଣ୍ଡେ ଦୂର ଛଡ଼ାରେ ବସିଛି ବୋଲି ଦେଖିବାକୁ ପାଆନ୍ତେ, ତେବେ ଲେଖିକାଙ୍କର ଅନୁମାନ ଅନୁସାରେ ସିଏ ମୋଟେ ଗୋରାମାନଙ୍କ ପଟେ ନବସି ସେହି କଳା ଲୋକଟିର ପାଖରେ ଯାଇ ବସି ପଡ଼ନ୍ତେ । ଆମ ପୃଥିବୀରେ ଏବେ ମଧ୍ୟ ବହୁ ସମାଜରେ ପ୍ରାୟ ଏକାଭଳି ଦୂରତା ଏବଂ ବାରଣଗୁଡ଼ିକୁ ଦେଖିବାକୁ ମିଳିବ । ଏବଂ, ଭଗବାନ୍ କ'ଣ ମନ କରି ପୁଣି ଏହି ପୃଥିବୀ ଆଡ଼େ ମାଡ଼ି ଆସିଲେ ନିଶ୍ଚୟ ବଞ୍ଚିତମାନଙ୍କର ବର୍ଗଟିକୁ ଯେ ବରି ନିଅନ୍ତେ, ଅନେକ ସଦିଚ୍ଛା-ସମ୍ପନ୍ନ ମନୁଷ୍ୟ ନିଶ୍ଚିତ ଭାବରେ ସେକଥାଟିକୁ ମଧ୍ୟ କହିବାକୁ ଇଚ୍ଛା କରିବେ ।

ତଥାପି ଆଗକୁ ଆହୁରି ଭଲ ସମୟ ଆସୁଛି ବୋଲି ଶ୍ରୀମତୀ ହାରିଏଟ୍ କେତେ ଆଶାର ସହିତ ଘୋଷଣା କରିଛନ୍ତି । ତାଙ୍କ ମତରେ ସେହି ସମୟଟି ଖୁବ୍ ଶୀଘ୍ର ଆସୁଛି । ସେତେବେଳେ ମନୁଷ୍ୟ ସମାଜ ଏହି ଅସଲ କଥାଟିକୁ ଅବଶ୍ୟ ଶିକ୍ଷା କରିଥିବ ଯେ, ଏହି ପୃଥିବୀରେ ମନୁଷ୍ୟମାନେ ଅର୍ଜନ କରିଥିବା ଯାବତୀୟ ଶିକ୍ଷା, ଧନସମ୍ପତ୍ତି ଏବଂ ସମ୍ଭ୍ରାନ୍ତପଣିଆ ସେମାନଙ୍କର ନିଜର ଏକଚାଟିଆ ଆଦୌ ନୁହେଁ । ଏବଂ ତେଣୁ, ସେଗୁଡ଼ିକୁ

କେବଳ ଆପଣାର ସ୍ୱାର୍ଥସିଦ୍ଧିର ଉଦ୍ଦେଶ୍ୟରେ ବ୍ୟବହାର କରିବା ନିମନ୍ତେ ସେମାନଙ୍କର ମୋଟେ କୌଣସି ଅଧିକାର ନାହିଁ । ବରଂ, ସେମାନେ ସେହିସବୁ ସମ୍ପତ୍ତି ଓ ସମ୍ପଦର ନ୍ୟାସୀ ବା ମାରଫତଦାର ହୋଇ ରହିବେ ଏବଂ ସର୍ବଦା ଭାବିବେ ଯେ ନିଜର ଅପେକ୍ଷାକୃତ ଅଧିକ ଦରିଦ୍ର ଓ ସେମାନଙ୍କର ଭାତୃସ୍ୱରୂପ ଅନ୍ୟ ମନୁଷ୍ୟମାନଙ୍କ ସକାଶେ ହିଁ ତାହାକୁ ସେମାନେ ନିଜପାଖରେ ରଖିଛନ୍ତି । ଲେଖିକା ଏହିପରି ଗୋଟିଏ ସମାଧାନକୁ ପ୍ରକୃତ ସାମ୍ୟବାଦ ବୋଲି କହିଛନ୍ତି । ଆମେରିକା ଏବଂ ବିଲାତରୁ କେତେକ ଉଦାହରଣ ଦେଇ ଅର୍ଥାତ୍ ଧନୀ ଏବଂ ସଦାହିତୈଷୀ ବ୍ୟକ୍ତିମାନଙ୍କର ଦୃଷ୍ଟାନ୍ତ ବ୍ୟବହାର କରି ସେହି ସମୟଟି ଏଥର ଆସନ୍ନ ହୋଇ ଆସିଲା ବୋଲି ଲେଖିକା ଆମକୁ ଉଦ୍‌ବୋଧନ ମଧ ଦେଇଛନ୍ତି । ଏସବୁ ଲେଖିଥିବାର ପ୍ରାୟ କଣ୍ଟାକଣ୍ଟି ଦେଢ଼ଶହ ବର୍ଷ ପରେ ସିଏ ଯଦି ଆଉଥରେ ଆମ ପୃଥିବୀକୁ ଆସନ୍ତେ ଓ କେବଳ ଆମେରିକା ନୁହେଁ, ଆମର ତମାମ ମନୁଷ୍ୟ ସଂସାରଟାକୁ ପ୍ରତ୍ୟକ୍ଷ କରନ୍ତେ, ତେବେ ବର୍ତ୍ତମାନ ତାଙ୍କ ମନରେ କିଭଳି ପ୍ରତିକ୍ରିୟାମାନ ହୁଅନ୍ତା କେଜାଣି ? ଲେଖିକାଙ୍କର ମୂଳ ଦୃଷ୍ଟିକୋଣଟି ସମାଜଭିତ୍ତିକ ନୁହେଁ, ତାହା ଧର୍ମପ୍ରସୂତ । ଏବଂ, ଧର୍ମ କହିଲେ ସିଏ କେବଳ ଯୀଶୁଖ୍ରୀଷ୍ଟଙ୍କ ଦ୍ୱାରା ପ୍ରଦର୍ଶିତ ଧର୍ମଟିକୁ ହିଁ ବୁଝିଛନ୍ତି । ବର୍ତ୍ତମାନ ତ ଯିଏ ଯେଉଁଠାରେ ଜନ୍ମଗ୍ରହଣ କରିଥାଉ ଅର୍ଥାତ୍ ଯେଉଁ ଧର୍ମର ସଂସ୍କାର ମଧରେ ପ୍ରତିଫଳିତ ହେଉଥାଉ ପଛକେ, ତଥାକଥିତ ଅନ୍ୟାନ୍ୟ ଧର୍ମର ସମ୍ପର୍କରେ ସିଏ ଅବଶ୍ୟ ଆସିବ । ଗୋଟିଏ ଧର୍ମକୁ ଆଉଗୋଟିଏ ଧର୍ମ ସହିତ ତୁଳନା କରି ଦେଖିବା ନିମନ୍ତେ ତାକୁ ପ୍ରଭୂତ ଅବକାଶ ମିଳିଯିବ । ଦକ୍ଷିଣ ଆଫ୍ରିକାରେ ଖ୍ରୀଷ୍ଟିଆନ୍ ମାର୍ଗର ଗୋରା ମଣିଷମାନେ ହିଁ ପ୍ରାୟ ଗତକାଲି ପର୍ଯ୍ୟନ୍ତ ସଂଖ୍ୟାରେ ସେମାନଙ୍କ ଠାରୁ ବହୁଗୁଣ ହୋଇ ରହିଥିବା କଳାମାନଙ୍କୁ ଘୁଷୁରି ଖୁଆଡ଼ରେ ଉତ୍ପୀଡ଼ିତ କରି ରଖିଥିଲେ । ଶ୍ରୀମତୀ ହ୍ୟାରିଏଟ୍ ସେହି ଦୃଷ୍ଟାନ୍ତଟିକୁ କିପରି କେଉଁ ମୂଲ୍ୟପ୍ରଚକ୍ଷୁରେ ଦେଖିବାକୁ ଇଚ୍ଛା କରିଥାନ୍ତେ କେଜାଣି ? ତଥାପି, ତାଙ୍କ କାଳର ଆମେରିକାରେ ମଣିଷ ମଣିଷ ଭିତରେ ସମସ୍ତ ଧୂର୍ତ୍ତତା ସହିତ ସୃଷ୍ଟି ହୋଇଥିବା ବ୍ୟବଧାନଟା ବିଷୟରେ ସିଏ ଯେ ବହୁ ଅଧବସାୟ ସହିତ ବିସ୍ତାରିତ ତଥ୍ୟାଦି ସଂଗ୍ରହ କରି ଆମ ବିବେକ ସମ୍ମୁଖରେ ଆଣି ଉପସ୍ଥାପିତ କରିଛନ୍ତି,ସେଥିଲାଗି ତାଙ୍କ ପାଖରେ ଆମେ ଅତ୍ୟନ୍ତ କୃତଜ୍ଞ ରହିବା ।

\+ + +

ବିଗତ ଏହି ଶହେବର୍ଷ ମଧରେ କେବଳ ଆମେରିକାରେ ନୁହେଁ, ସମଗ୍ର ପୃଥିବୀରେ ମଧ କେତେ କେତେ ପରିବର୍ତ୍ତନ ଘଟିଲାଣି । ପୃଥିବୀରେ ନାନାଭଳି ବରାଦ ହୋଇ ଦାସମାନେ ରହିଛନ୍ତି ସତ, କିନ୍ତୁ ସେକାଳର କିଣାବିକାର ମାଧମରେ ଏବଂ ପ୍ରତିଷ୍ଠିତ ଧର୍ମଘର ମାନଙ୍କର ସମର୍ଥନରେ ଏକଦା ଆମେରିକାରେ ଚାଲିଥିବା କଳାମାନଙ୍କୁ ଦାସ କରି ରଖିବାର ପ୍ରଥାଟି ଏବେ ଆଉ ନାହିଁ । ସେକାଳର ସତ କଥାଗୁଡ଼ିକୁ ଶୁଣିଲେ ଏବେ ଅନେକଙ୍କୁ ମଧ ଉପନ୍ୟାସ ପରି ହିଁ ଲାଗୁଥିବ । ବର୍ତ୍ତମାନ ଆମେରିକାର ନିଗ୍ରୋମାନେ ବି

ହୁଏତ ସେହି ଘଟଣାଗୁଡ଼ିକୁ ଉପନ୍ୟାସର କାହାଣୀ ଭଳି ଅନୁଭବ କରୁଥିବେ । ଏହି ଏକଶହ ବର୍ଷର ସମ୍ଭବତଃ ସବୁଠାରୁ ବଡ଼ ଘଟଣା ହେଉଛି ଯେ ଆଫ୍ରିକା ମହାଦେଶରେ ବି ନୂଆ ଆତ୍ମହାଦୟର ଆଲୋକ ପଡ଼ି ସେଠାରେ ଭିନ୍ନ ଭିନ୍ନ ନାମରେ ଦେଶ, ସରକାର ଏବଂ ଶାସନମାନେ ପରିଦୃଷ୍ଟ ହେଲେଣି । ତେଣୁ, ଗୋରାମାନେ ବା ଆଉ କେଉଁମାନେ ବର୍ତ୍ତମାନ ଇଚ୍ଛା କଲେ ମଧ କେହି ସେଠାରେ ଆଉ କୌଣସି ଦେଶକୁ ଯାଇ ପାରିବେନାହିଁ କିମ୍ବା ଲୋକମାନଙ୍କୁ ଟେକି ଆଣି ପୃଥିବୀର ଆଉ କେଉଁଠାରେ ଦାସରୂପେ ବିକ୍ରୟ କରିଦେଇ ପାରିବେନାହିଁ । ଏପରି ହେବାଦ୍ୱାରା କେତେ ଭଲ ବା ମନ୍ଦ କ'ଣ ହେଲା, ତାହା କହିବା ଆମ ପ୍ରତ୍ୟେକଙ୍କର ନିଜନିଜର ଭଦ୍ରତାବୋଧ ଉପରେ ହିଁ ନିର୍ଭର କରିବ । ସେକାଳର କ୍ରୀତଦାସମାନେ ଏବେ ଆମେରିକାରେ ପୂର୍ଣ୍ଣ ନାଗରିକତାର ସ୍ୱୀକୃତି ଲାଭ କରି ସାରିଲେଣି । ଆଗେ ତ ନିଗ୍ରୋମାନଙ୍କୁ ଆହୁରି ଅଧିକ ତାଚ୍ଛିଲ୍ୟ ପ୍ରଦର୍ଶନ କରି ନିଗର୍ (Nigger) ବୋଲି କୁହା ଯାଉଥିଲା । ଏବେ ନିଗ୍ରୋ କହିବାକୁ ମଧ ଲୋକାବସର ମାନଙ୍କରେ ଅଶାଳୀନପ୍ରାୟ ବୋଧ ହେଲାଣି ଓ ଆଫ୍ରିକୀୟ ଆମେରିକାନ୍ ନାମକ ନୂଆ ନାମରେ ସେମାନଙ୍କୁ ଅଭିହିତ କରାଯାଉଛି । ଏଣୁ, ଠୋ କରି କହିଦେଇ ହେଉଛି ଯେ ସେ କଷଣ ଆଉ ନାହିଁ । ପୃଥିବୀଯାକ, ଆମେରିକା ସମେତ୍, ଏବେ ମଧ ବହୁତ କଷଣ ରହିଛି ସତ, ମାତ୍ର ସେ ଆଗର କଷଣ ଆଉ ନାହିଁ । ତାହା ଏକ ଐତିହାସିକ ଉପନ୍ୟାସରେ ପରିଣତ ହୋଇଯାଉଛି ।

ମାତ୍ର, ଏତିକି ପାଇଁ କ'ଣ ଆମେରିକାର ରାଷ୍ଟ୍ରୀୟ ଜୀବନକୁ କମ୍ ନାକ ଘଷି ଓ କାନ ମୋଡ଼ିହେବାକୁ ପଡ଼ିଛି ? ଆମେରିକାର ଯେଉଁ ରାଷ୍ଟ୍ରପତି କ୍ରୀତଦାସର ବିଲୋପସାଧନ କରିବା ନିମନ୍ତେ ବଦ୍ଧପରିକର ହୋଇ ଏକ ଗୃହଯୁଦ୍ଧର ଅବତାରଣା କରିଥିଲେ ଏବଂ ପୃଥିବୀଯାକ ଚିରସ୍ମରଣୀୟ ହୋଇ ରହିଲେ, ତାଙ୍କୁ ସେଥିସକାଶେ ଆତତାୟୀର ଗୁଳିରେ ପ୍ରାଣ ଦେବାକୁ ପଡ଼ିଥିଲା । ମାତ୍ର, ଯୁଦ୍ଧରେ ଦାସପ୍ରଥାର ସମର୍ଥନ କରୁଥିବା ରାଜ୍ୟମାନେ ପରାସ୍ତ ହେଲେ, ବାଧ ହୋଇ ବିଜେତାପକ୍ଷର ଜିଦ୍‌କୁ ସ୍ୱୀକାର କରି ନେଇଥିଲେ । ସରକାରୀ ଭାବରେ ଏହାରି ଦ୍ୱାରା ହିଁ ଆମେରିକାରୁ କ୍ରୀତଦାସ ପ୍ରଥା ଉଠିଗଲା ବୋଲି ସ୍ୱୀକାର କରାଗଲା, ଉତ୍ସବ ବି ପାଳିତ ହେଲା । କଳାମାନେ ଦାସତ୍ୱମୁକ୍ତ ହେଲେ । ସେମାନଙ୍କ ମଧରୁ ଅଧିକାଂଶ ସେହି ଆମେରିକାରେ ହିଁ ରହିବାକୁ ନିଷ୍ପତ୍ତି ନେଇଥିଲେ । ଯେଉଁମାନେ ମୂଳ ମାଟିକୁ ଫେରି ଯିବା ନିମନ୍ତେ ଆଗ୍ରହୀ ହେଲେ, ସେମାନଙ୍କୁ ଗୋଟାଏ ଭୂରା ଭୂମି ଛାଡ଼ି ଦିଆଗଲା ; ଲାଇବେରିଆ ଅର୍ଥାତ୍ ମୁକ୍ତଭୂମି ନାମକ ଏହି ଦେଶଟି ତାହାର ସ୍ମାରକ ହୋଇ ରହିଛି । ଏହା ଫଳରେ ଆମେରିକା କିମ୍ବା ଲାଇବେରିଆରେ ଯେ କଳା ମନୁଷ୍ୟସଂସାରଟିର କଷଣମାନ ଦୂର ହୋଇ ଯାଇଛି, ସେକଥା ଆଦୌ ନୁହେଁ । କଷଣର ଏକ ସ୍ତରପରିବର୍ତ୍ତନ ଅବଶ୍ୟ ହୋଇଛି । କଷଣ ସହିତ ସଂଗ୍ରାମ କରିବାର ଇତିହାସରେ ଏତିକି ହାସଲ କରିବାକୁ ମଧ କଦାପି ଅଳପ ବୋଲି କୁହାଯିବ ନାହିଁ ।

ଗୋଟିଏ ହିସାବରୁ ଜଣାଯାଉଛି ଯେ ଆମେରିକା ଯୁକ୍ତରାଜ୍ୟରେ ସଂପ୍ରତି ବାସ କରୁଥିବା ଆଫ୍ରୋ-ଆମେରିକାନ ଜନଭାଗଟିରେ ବାର ପଣ ଅର୍ଥାତ୍ ତିନିଚଉଠ ଲୋକ ଏପରି ରହିଛନ୍ତି, ଯେଉଁମାନଙ୍କର ବଂଶଲତାରେ କେଉଁଠି ନା କେଉଁଠି ଗୋରାମାନଙ୍କର ପ୍ରବେଶ ମଧ୍ୟ ଘଟିଛି । ଜନ୍ମଗତ ଶୁଦ୍ଧତା ସମ୍ବନ୍ଧରେ ରହିଥିବା ଉତ୍ତେଜିତ ଧାରଣାଗୁଡ଼ିକ ଟିକିଏ ନରମ ଓ ନମନୀୟ ହୋଇ ଆସିଲେ ହିଁ ପୃଥିବୀରେ ଯେକୌଣସି ମନୁଷ୍ୟକୁ ମୁଖ୍ୟତଃ ଜଣେ ମନୁଷ୍ୟ ବୋଲି ଦେଖିବାର ଏକ ଅନ୍ୟ ଶୁଦ୍ଧତା ଜନ୍ମଲାଭ କରିଥାଏ ଏବଂ ତା'ପରେ ପାରିବାରିକତାବୋଧର ପୁରୁଣା କୁଣ୍ଡାଗୁଡ଼ିକ କ୍ରମେ ଅପସରି ଯିବାକୁ ଆରମ୍ଭ କରନ୍ତି । ନିଜ ଦେଶରେ ଗଣତନ୍ତ୍ରର ଶାସନ ମଧ୍ୟ କ୍ରମଶଃ ଏକ ନୂତନ ପାରିବାରିକତାବୋଧକୁ ସମ୍ଭବ କରାଇ ଆଣେ, ଯାହାଫଳରେ ମଣିଷ ଏକ ଭିନ୍ନ ଆଖିରେ ଆଉଜଣେ ମନୁଷ୍ୟକୁ ଦେଖିବାକୁ ଆରମ୍ଭ କରେ, କ୍ରମଶଃ ଅଧିକ ଗ୍ରହଣଶୀଳ ହୁଏ । ଆମେରିକା ସମେତ ସମଗ୍ର ପୃଥିବୀରେ ଯହୁଁ ଯହୁଁ ସେହି ଗ୍ରହଣଶୀଳତା ନିମନ୍ତେ ଅଧିକରୁ ଅଧିକ ଅନୁକୂଳତା ସୃଷ୍ଟି ହୋଇଛି, ତହୁଁ ତହୁଁ ଆମକୁ ବହୁ କୁଣ୍ଡା ତଥା ସ୍ୱର୍ଣକାତରତା ମଧ୍ୟରେ ବାନ୍ଧି ରଖିଥିବା ଭାବନାମାନେ ପରାସ୍ତ ହୋଇ ପଳାଇ ଯାଇଛନ୍ତି ।

ରାଷ୍ଟ୍ରପତି ଲିଙ୍କନ୍ ସିନା ଯୁଦ୍ଧଟାଏ କରାଇ ଆମେରିକାର ରାଷ୍ଟ୍ରବ୍ୟବସ୍ଥା ଭିତରୁ ବର୍ଣ୍ଣଭେଦକୁ ଉଠାଇ ଦେଲେ, ମାତ୍ର ମନୁଷ୍ୟମାନଙ୍କର ମନ ଭିତରୁ ମୂଳଭୂତ ଅନିଚ୍ଛୁକତା ଗୁଡ଼ିକୁ ଦୂର କରିବା ପାଇଁ ସେତିକି କଦାପି ଯଥେଷ୍ଟ ହୋଇ ନଥାନ୍ତା । ଉପରବାଲା ଉଦାର ଅଥବା ଦୟାଳୁ ହେଲେ ଯେ ତଳମାନଙ୍କୁ ନିଜକୁ ସମ୍ମାନିତ ଭାବରେ ଆବିଷ୍କାର କରିବାକୁ ଏବଂ ନିଜପାଇଁ ପୂର୍ଣ୍ଣ ମନୁଷ୍ୟର ଏକ ପ୍ରତିଷ୍ଠା ଦାବୀ କରି ବାହାରିବାକୁ ଆବଶ୍ୟକ ସଚେତନତାଟି ପ୍ରାପ୍ତ ହୋଇଯାଏ, ସେକଥା ମୋଟେ ନୁହେଁ । ଆମେରିକାରେ ନିଗ୍ରୋ ମୁକ୍ତି ଆନ୍ଦୋଳନର ଏକ ଦୀର୍ଘ ଇତିହାସ ରହିଛି । ଏଥିପାଇଁ ସମାଧାନ ତଥା ପରିବର୍ତ୍ତନ-ସାଧନର ନାନା ପଥ ଖୋଜାଯାଇଛି । କେଉଁମାନେ ହିଂସ୍ର ହୋଇଛନ୍ତି, କେଉଁମାନେ ନିଜକୁ ଅଧିକରୁ ଅଧିକ ସୁନିର୍ଦ୍ଦିଷ୍ଟ ଭାବରେ କଳା ବୋଲି ଭାବିବାରେ ହିଁ ପ୍ରତିକାରର ଚାବି ପାଇଗଲା ପରି ଅନୁଭବ କରିଛନ୍ତି । ଗୋରାମାନେ ଯେପରି ନିଜକୁ କଳା ନୁହନ୍ତି ବୋଲି ସଘନ ଭାବରେ ଅନୁଭବ କରି କଳାମାନଙ୍କ ପ୍ରତି ପାରମ୍ପରିକ ଭାବରେ ନିର୍ମମ ହୋଇ ଉଠିଥିଲେ, ଏଥର କଳାମାନେ ମଧ୍ୟ ନିଜକୁ ଖାଲି କଳା ବୋଲି ଭାବିବେ, କଳାକୁ ଗୋରା ଅପେକ୍ଷା ଅଧିକ ଶୁଦ୍ଧତାଯୁକ୍ତ ବୋଲି କହି ଯାବତୀୟ ପ୍ରକାରେ କଳା ହୋଇ ରହିବାକୁ ପ୍ରୟାସମାନ କରିବେ, ଆମେରିକାରେ ଏହି ଉପାୟଟିର ବି ପରୀକ୍ଷା ହୋଇଛି । ନିଜେ ସ୍ୱର୍ଣକାତର ହେବାଦ୍ୱାରା ତୁମେ ଆଉ କେଉଁମାନଙ୍କ ଭିତରେ ରହିଥିବା ସ୍ୱର୍ଣକାତରତାକୁ ଯଥାର୍ଥ ଚ୍ୟାଲେଞ୍ଜଟିଏ ଦେଇପାରିବ, ସେହି ବିତର୍କଟି ଏବେ ମଧ୍ୟ ଛିଣ୍ଡି ପାରିନାହିଁ । ତଥାପି ପରୀକ୍ଷା ଚାଲିଛି, ନିଷ୍ଠାର ସହିତ ପରୀକ୍ଷା ଚାଲିଛି ।

ଆମେରିକାର କୃଷ୍ଣକାୟମାନଙ୍କର ଏହି ଦ୍ୱିତୀୟ ସୋପାନର ସାମାଜିକ ମୁକ୍ତି-ଆନ୍ଦୋଳନରେ ଏକଦା ଶ୍ରୀଯୁକ୍ତ ମାର୍ଟିନ୍ ଲୁଥର୍ କିଙ୍ଗ ଯେଉଁ ଅଭିନବ ନେତୃତ୍ୱଟିକୁ ସମ୍ଭବ କରିଥିଲେ, ସାରା ପୃଥିବୀରେ ମନୁଷ୍ୟମାନଙ୍କର ବିମୋଚନ-କାହାଣୀରେ ତାହା ଏକ ସ୍ୱତନ୍ତ୍ର ତାତ୍ପର୍ଯ୍ୟର ହୋଇ ରହିଗଲା । ଶ୍ରୀଯୁକ୍ତ କିଙ୍ଗ୍ ମଧ୍ୟ ତାଙ୍କ ସଫଳତାର ସେତୁ ଉପରେ ଆତତାୟୀ ଦ୍ୱାରା ନିହତ ହେଲେ । ସେଥିରୁ ଅନ୍ତତଃ ଏତିକି ପ୍ରତିପାଦିତ ହୋଇଗଲା ଯେ, ସମ୍ଭବତଃ ସେହି ମାର୍ଗଟି ହିଁ ଉଚିତ ମାର୍ଗ ଥିଲା ଏବଂ ତେଣୁ ତାଙ୍କର ବିରୋଧୀ ଶିବିରଟି ତ୍ରସ୍ତ ହୋଇ ଉଠିଲା । ଆଦୌ କୌଣସି ଅସ୍ତ୍ର ଧାରଣ ନକରି ଏବଂ ଆଦୌ କାହାର ନିପାତ କରିବା ନିମନ୍ତେ ମନଭିତରେ କୌଣସି ହିଂସ୍ର ଭାବ ନରଖି କେବଳ ନିଜ ଭିତରେ ଅନ୍ୟାୟ ଏବଂ ଅବିଚାରକୁ ମାନି ନେବାନାହିଁ ଏବଂ ସେଥିପାଇଁ ଚରମ ପରିଣାମକୁ ବରିନେବାକୁ ପ୍ରସ୍ତୁତ ହୋଇଥିବାର ଏକ ପୂର୍ଣ୍ଣଶାନ୍ତ ସଂକଳ୍ପରେ ହଜାର ହଜାର ମାଇଲ୍ ପଦବ୍ରଜରେ ବାହାରିବା ଏବଂ ନିଜ ସବଳତାର ପରିଚୟ ଦେବା,- ସମଗ୍ର ପୃଥିବୀରେ ତାହା କାଳକାଳକୁ ସତେଅବା ଏକ ଦୃଷ୍ଟାନ୍ତ ହୋଇ ରହିଗଲା । କେବଳ କୃଷ୍ଣକାୟମାନଙ୍କ ନିମନ୍ତେ ନୁହେଁ, ପୀଡ଼ିତ ହେଉଥିବା ମନୁଷ୍ୟସମାଜର ଯେକୌଣସି ଗୋଷ୍ଠୀ ନିମନ୍ତେ । ଆମେରିକାର ଏକ ଜନସମୂହ ହିସାବରେ ଅଭିଜ୍ଞତା ମାତ୍ର କେତେ ଶହ ବର୍ଷର, ସେହି ଦୃଷ୍ଟିରୁ ଆମେରିକାର ସେପରି କୌଣସି ବିଶ୍ୱ-ଆବେଦନ ରହିଥିବା ଇତିହାସ ନାହିଁ ବୋଲି ହୁଏତ ଏକାଧିକ ଯୁକ୍ତିର ସହିତ କୁହାଯାଇ ପାରିବ । ତଥାପି, ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ପରି ଆମେରିକାରେ ଶ୍ରୀ ମାର୍ଟିନ୍ ଲୁଥର୍ କିଙ୍ଗଙ୍କର ନେତୃତ୍ୱରେ ହୋଇଥିବା ସଂଗ୍ରାମଟିର ସମସ୍ତ ବିଶ୍ୱ ଲାଗି ଆଗାମୀ ବହୁବର୍ଷ ଲାଗି ଏକ ଆବେଦନ ଅବଶ୍ୟ ରହିବ ।

ଶ୍ରୀଯୁକ୍ତ କିଙ୍ଗଙ୍କ ପରେ ସମସ୍ତ ଅଭିମୁଖ୍ୟଟିକୁ ନେତୃତ୍ୱ ଦେବାଲାଗି ସମ୍ଭବତଃ ପରବର୍ତ୍ତୀ ଦୃଷ୍ଟିବାନ୍ କେହି ନଥିଲେ ଏବଂ ଇତିମଧ୍ୟରେ ବିଶ୍ୱରେ ସଂଗ୍ରାମ ଦ୍ୱାରା ନ୍ୟାୟ ହାସଲ କରିବାର ପରିସ୍ଥିତିଟି ହୁଏତ ମୂଳଭୂତ ଭାବରେ ବଦଳି ମଧ୍ୟ ଯାଇଥିଲା । ମାର୍ଟିନ୍ ଲୁଥର୍ କିଙ୍ଗ ଏପରି ହଠାତ୍ ଅପସରି ଯିବାପରେ ବିରୋଧୀ ଶିବିରଟିରେ ତତ୍ତ୍ୱମାନେ ସମ୍ଭବତଃ ଅଧିକ ବଳିଷ୍ଠ ଓ ସୋଚ୍ଚାର ହୋଇ ଉଠିଥିଲେ । ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କୁ ହଟାଇ ଦିଆଯିବା ପରେ ବିରୋଧୀ ଶିବିରଟି ପ୍ରାୟ ସେହିପରି ନାନାବିଧ ଉତ୍ସାହ ପାଇଲାନାହିଁ କି? ପରିମଳଟି ଆମେରିକାରେ ମଧ୍ୟ ପ୍ରାୟ ସେହିପରି ପଛକୁ ଚାଲି ଯାଇଥିଲା । ଆମେରିକାର କୃଷ୍ଣକାୟମାନେ ସମ୍ମାନସ୍ପଦ ମନୁଷ୍ୟରୂପେ ସ୍ୱୀକୃତି ଲାଭ କରିବେ,- ସମ୍ଭବତଃ ସେହି ଆସ୍ପୃହାଟା ପଛକୁ ଅପସରି ଗଲା ; ଏବଂ, ସେମାନେ ଅଧିକ ଟାଣ ଏବଂ ଶକ୍ତିଶାଳୀ ହେବେ, ଶତ୍ରୁ ପରି ଦୁର୍ଦ୍ଧର୍ଷ ହେବେ, ଶତ୍ରୁର ବ୍ୟାକରଣରେ ହିଁ ଶତ୍ରୁକୁ ପ୍ରତ୍ୟୁତ୍ତର ଦେଇପାରିବେ, ସେତେବେଳେ ଏହି ଉନ୍ମାଦକାରୀ ଭାବନାଟି ସବୁଠାରୁ ଠିକ୍ ବୋଲି ଦେଖାଗଲା । ମୁକ୍ତିର ମାର୍ଗରୂପେ ଆମେରିକାରେ ଇସ୍‌ଲାମ୍ ଧର୍ମର ନୂଆ ମଡ଼େଲ୍‌ଟି ଆସି ପହଞ୍ଚିଲା, ଯାହାକି ସମାଧାନର ଏକ ପ୍ରଶସ୍ତ ମାର୍ଗ ଭଳି ମନେ ହୋଇଥିଲା ।

ଭାରତବର୍ଷରେ ହିନ୍ଦୁ ଅସମର୍ଥତା ଦ୍ୱାରା ପ୍ରାୟ ଆଦୃତ ଏବଂ ଉତ୍‌କ୍ଷିପ୍ତ ହୋଇ ସ୍ୱାଧୀନତା ପ୍ରାପ୍ତି ସମୟକୁ ଯେପରି ନିପୀଡ଼ିତ ଅଛୁଅମାନଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରି ଏକ ଅନ୍ୟମନସ୍କକାରୀ ହଲଚଲର ସୂତ୍ରପାତ କରା ଯାଇଥିଲା ଏବଂ ଏବେ ମଧ୍ୟ ଯାହାର ଅବଶେଷ ଗୁଡ଼ିକ ଭାରତୀୟ ରାଜନୀତିକ ତଥା ସାମାଜିକ ପରିପକ୍ୱତାକୁ ଭରି ବିକ୍ଷୁବ୍ଧ କରି ରଖିଛି, ଦୂର ଆମେରିକାର ସେହି ନୂତନ ଧର୍ମଗ୍ରହଣକୁ ଆମେ ଅନେକାଂଶରେ ପ୍ରାୟ ସେହିପରି ଗୋଟିଏ ପ୍ରୟାସ ବୋଲି ଗ୍ରହଣ କରି ପାରିବା । ଏ ଧର୍ମରୁ ଭେକ କାଟିନେଇ ସେହି ଧର୍ମରେ କେତେଟା ଭେକକୁ ଦେହ ଉପରେ ଗୁଡ଼ାଇନେଲେ ତାହାଦ୍ୱାରା ବେଳେ ବେଳେ ବାହ୍ୟ ଭୂମିକାଟି ବେଶ୍ ଢମକାଣିଆ ମନେ ହୋଇଥାଏ ସତ, ମାତ୍ର ତାହା ଅସଲ ସମାଧାନଗୁଡ଼ିକୁ ହୁଏତ ଆହୁରି ଅଧିକ ଅବହେଳିତ ହୋଇ ରହିବାରେ ସାହାଯ୍ୟ କରେ ।

ଆମେରିକାରେ ପୂର୍ବେ କୁ କ୍ଲୁକ୍ସ୍ କ୍ଲାନ୍ ବୋଲି ଏକ ଗୁପ୍ତ ସଂଗଠନ ଥିଲା । କଳାମାନଙ୍କୁ ସାଧି କରି ରଖିବା ନିମନ୍ତେ ଏକ ବିଶେଷ ଦମନମାର୍ଗରେ ବିଶ୍ୱାସ କରୁଥିବା ଗୋରାମାନେ ସାଧାରଣତଃ ତାହାର ସଦସ୍ୟ ହେଉଥିଲେ । ଏମାନେ ତାଲୀମ୍ ପାଉଥିଲେ ଏବଂ ଗୋରାମାନେ ଯେଉଁ ସମାଜରେ ସଂଖ୍ୟାରେ, ସାମର୍ଥ୍ୟରେ, ସମ୍ପତ୍ତିରେ ତଥା ଅର୍ଥବଳରେ ଅଧିକ, ସେଠାରେ ଗୋରା ପଲ ଗଢ଼ି ମନ କଲେ ସବୁକିଛି କରିପାରିବ ବୋଲି ଏହି ବିଶେଷ ସଂଗଠନଟି ଇଚ୍ଛୁକ ସଦସ୍ୟମାନଙ୍କୁ ଆବଶ୍ୟକ ହିମ୍ମତ ଯୋଗାଇ ଦେଉଥିଲା । କଳାଙ୍କ ମଧ୍ୟରୁ କେହି ମଣିଷ ପରି ମୁହଁ ଖୋଲି କଥା କହିଲେ ରାତ୍ରିର ଅନ୍ଧକାରରେ ତାକୁ ହରଣଚାଲ କରିନେବାର ରୀତିଟିକୁ ସେମାନେ ସତେଅବା ଆମ ଢାଗାଘର ମାନଙ୍କର ଅନୁଜ୍ଞା ପରି ନିଷ୍ଠାର ସହିତ ପାଳନ କରୁଥିଲେ । ପ୍ରାୟ ସେହି ପ୍ରଣାଳୀଗୁଡ଼ିକ ଏକ ପରବର୍ତ୍ତୀ କାଳରେ ହିଟଲର୍ ଏବଂ ସାନବଡ଼ ଷ୍ଟାଲିନ୍‌ମାନେ ଗ୍ରହଣ କରିଥିଲେ । କେତେକ ମୌଳବାଦୀ ରାଷ୍ଟ୍ର ତଥା ମୌଳବାଦୀ ସଂଗଠନ ଏବେ ସେହି ରୀତିଗୁଡ଼ିକର ଆଚରଣ କରୁଛନ୍ତି । ଏବେ ମଧ୍ୟ ଆମେରିକାରେ ଏସବୁ ଘଟଣା କାଁ ଭାଁ ଘଟିବାରେ ଲାଗିଛି । ପୋଲିସ୍ ଅଛନ୍ତି, ଗୋଇନ୍ଦା ଅଛନ୍ତି, ତଥାପି ବିଶେଷ କିଛି କରି ପାରୁନାହାନ୍ତି, ସମ୍ଭବତଃ କରୁ ବି ନାହାନ୍ତି । ପ୍ରତିବେଶରେ ଏପରି ସଂଗଠନଟିଏ କ୍ରମେ ସକ୍ରିୟ ହେଲାଣି ବୋଲି ସ୍ଥାନୀୟ ଗୋରାମାନେ ଅବଶ୍ୟ ସୂଚନା ପାଉଥିବେ, ସେମାନେ ସେଥିରେ ପ୍ରତ୍ୟକ୍ଷ ଭାବରେ ଯୋଗ ଦେଉ ନଥିବେ ସିନା, କିନ୍ତୁ ଆପଣା ଯୁଥଭାବନା ଦ୍ୱାରା ପରିଚାଳିତ ହୋଇ ସେମାନେ ବରଂ ମୌନ ହୋଇ ରହି ଯାଉଥିବେ । ନିଗ୍ରୋମାନଙ୍କ ପ୍ରତି ଗୋରାମାନଙ୍କର ଆଉଗୋଟିଏ ହିଂସ୍ର ଆଚରଣ ହେଉଚି lynching ଏବଂ ସେହି ଦେଶର କଳାଗୋରା ସମ୍ପର୍କର ଇତିହାସରେ ତାହା ବହୁ ବର୍ଷ ସକାଶେ ପ୍ରାୟ ଏକ ପରମ୍ପରା ହୋଇ ରହି ଆସିଥିଲା । ଜଣେ କଳା ମଣିଷ ଏକ ଅପରାଧ କରିଛି ବୋଲି ଜଣାପଡ଼ିବା ପରେ ଶ୍ୱେତକାୟମାନେ ତାକୁ କାବୁ ଭିତରକୁ ନେଇ ଆସୁଥିଲେ, ଶୋଭାଯାତ୍ରାରେ ବାହାର କରୁଥିଲେ ଏବଂ ତାହାର ଶରୀର ଉପରେ ଯାବତୀୟ ପ୍ରକାରର ଅତ୍ୟାଚାର କରୁଥିଲେ । ଅନେକ ସମୟରେ କୌଣସି ବ୍ୟକ୍ତି ଉପରେ ସନ୍ଦେହକାରୀ ବହୁତଙ୍କର ନଜର ପଡ଼ିଗଲେ

ମଧ୍ୟ ଲିନ୍‌ଚଙ୍ଗର ନାଟକଟି ଆରମ୍ଭ ହୋଇ ଯାଉଥିଲା । ସିଏ କାଳେ ନିରପରାଧ ହୋଇଥିବ ବୋଲି ଧୈର୍ଯ୍ୟ ଧରି ବିଚାର କରିବାକୁ ଫୁରସତ୍ ରହୁନଥିଲା । ପଥର ଫିଙ୍ଗା ହେଉଥିଲା, ପ୍ରାୟ ଏକ ନୃଶଂସ ବୁଦ୍ଧିମତ୍ତା ସହିତ ଅସ୍ତ୍ର ଦ୍ୱାରା ତାହାର ଅଙ୍ଗହାନି କରା ଯାଉଥିଲା । ଉତ୍ସାହ ବଳବତ୍ତର ରହିଥିଲେ ଅପରାଧୀଟିର ପ୍ରାଣ ଚାଲିଯିବା ପର୍ଯ୍ୟନ୍ତ ସେହି ଅକାଣ୍ଡଗୁଡ଼ିକ ହେଉଥିଲା । ଏକଦା ସେହି ପ୍ରଥମ ଯୁଗରେ ଗୋରା ମାଲିକମାନେ ନିଜେ କିଣି ଆଣିଥିବା କୃଷ୍ଣକାୟକୁ ନେଇ ଯାହା ମନ ତାହା କରି ପାରୁଥିଲେ । ବର୍ତ୍ତମାନ ଯୁଗଟା କ୍ରମେ ବହୁତ ଭଦ୍ର ଓ ଶାଳୀନ ଦିଶିଲାଣି ; ତଥାପି, ଅବଶେଷ ପରି ରହି ଯାଇଥିବା ସେହି ପାରିବାପଣଟା ଅବଚେତନରୁ ବାହାରି ଆସିଲେ ଅନୁରୂପ ମଉକାଟିଏ ପ୍ରସ୍ତୁତ କରି ସେହି ଆଚରଣଟିକୁ କରୁଛି କି ?

କ୍ରୀତଦାସ ହେବା ସକାଶେ ଆଫ୍ରିକାରୁ ଧରା ହୋଇ ବଣିକଦସ୍ୟୁ ମାନଙ୍କ ଦ୍ୱାରା ଆମେରିକାକୁ ବୁହା ହୋଇ ଆସୁଥିବା ସମୟରେ କୃଷ୍ଣକାୟ ମନୁଷ୍ୟମାନେ ଗୀତ ଗାଉଥିଲେ, ଗୀତ ଗାଇ କଷଣକୁ ସହନୀୟ କରି ନେଉଥିଲେ । କ୍ରୀତଦାସ ହେବାର ପରମ୍ପରାଟି ମଧ୍ୟରେ ସେମାନଙ୍କର ସେହି ସଙ୍ଗୀତ ମଧ୍ୟ କ୍ରମେ ଏକ ସମ୍ପଦ ହୋଇ ରହିଗଲା । ଖାଲି ସେହି କୃଷ୍ଣକାୟମାନଙ୍କ ନିମନ୍ତେ ନୁହେଁ, ସମଗ୍ର ଆମେରିକା ନିମନ୍ତେ ହିଁ ରହିଗଲା । ସେତେବେଳେ ପାଦ୍ରୀମାନେ ସେମାନଙ୍କୁ ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ କରି ସାରିଥିଲେ । ଖ୍ରୀଷ୍ଟିଆନ୍ ଧର୍ମକୁ ନିଗ୍ରୋ ଅତ୍ୟନ୍ତ ସମୀଚୀନ ଭାବରେ ନିଜ ପରିପ୍ରେକ୍ଷୀଟିର ବିଶେଷ ଆବେଦନରେ ହିଁ ଗ୍ରହଣ କରି ନେଇଥିଲା । ତା' ନହେଲେ, ଅତ୍ୟାଚାରୀର ନିଜ ଧର୍ମ ବୋଲି ଯାହାକୁ କୁହାଯାଉଛି, ଅତ୍ୟାଚାରିତ ମଧ୍ୟ ସେହି ଧର୍ମଟାକୁ ନିଜର ଧର୍ମ ହିସାବରେ ଗ୍ରହଣ କରିନେବାର ଅନ୍ୟ କୌଣସି ଉପାୟ ନଥିଲା । ଏବେ ପୃଥିବୀ ଯାହାକୁ Negro Spirituals ବୋଲି ଜାଣୁଛି, ତାହା ହେଉଛି ସେହି କାଳର ଅର୍ଥାତ୍ ସେହି ପରିପ୍ରେକ୍ଷୀର ଏକ ସର୍ଜନା, ଅତ୍ୟାଚାରିତ ମନୁଷ୍ୟଟିଏ ତା'ର ଯାବତୀୟ କଷଣ ସତ୍ତ୍ୱେ ତଥାପି ନିଜର ଜୀବନଟାକୁ ସହନୀୟ କରିନେବାର ଏକ ତାତ୍କାଳିକ କବିତ୍ୱପ୍ରୟାସ । ସେଗୁଡ଼ିକର ସଙ୍ଗୀତଟି ଯେମିତି, ସେଥିରେ ବସା ଯାଇଥିବା ଶବ୍ଦଗୁଡ଼ିକ ମଧ୍ୟ ସେମିତି । No body knows the trouble I have seen ହେଉଚି ସେହି Spiritual ରୁ ଗୋଟିଏ, ଯାହାକି ନିଜର ଜର୍ଜର ଓ କଷଣମୟ ଜୀବନ ଉପରେ ତଥାପି ଏକ ଅବଲୋକନ କରିବାକୁ ଚେଷ୍ଟା କରୁଛି । Swing low, Sweet chariot, Coming for to carry me home,- ସେହିପରି ଆଉଗୋଟିଏ spiritual ଯେଉଁଥିରେ ଖ୍ରୀଷ୍ଟିଆନ୍ ସ୍ୱର୍ଗକଳ୍ପନା ସହିତ ଏକ ଆଫ୍ରିକୀୟ ଆକୁଳତା ଏକ ସ୍ୱକୀୟ ଚିତ୍ରକଳ୍ପ ଦେବାପାଇଁ ପ୍ରୟାସ କରୁଛି ।

ଆଧୁନିକ ସଙ୍ଗୀତସର୍ଜନାର ଜଗତରେ ଆମେ ଏବେ ଯାହାକୁ Jazz ବୋଲି ଚିହ୍ନୁଛୁ, ସେଥିରେ ଏବେ ଆମେରିକାରେ କଳା ଓ ଗୋରା ଉଭୟେ ଭାଗ ନେଲେଣି । ତଥାପି, ଆମେରିକାର ସାଙ୍ଗୀତିକ ଭଣ୍ଡାରକୁ ଏଇଟି କଳାମାନଙ୍କର ହିଁ ଏକ ବିଶେଷ ଅବଦାନ ହୋଇ ରହିଛି । ଆଧୁନିକ ପ୍ରଦର୍ଶନ-ସଙ୍ଗୀତରେ କେତୋଟି ମୁଖ୍ୟ ନାମ ହେଉଛି

କଳାଙ୍କର ନାମ । ଆମେରିକାର କ୍ରୀଡ଼ା କସରତ୍ ଜଗତରେ, ବିଶେଷ କରି ମୁଷ୍ଟି ଯୁଦ୍ଧରେ ବିଶ୍ୱବାସୀ ଯେଉଁମାନଙ୍କୁ ଆଗ ସ୍ମରଣ କରିବେ, ସେମାନେ ପ୍ରାୟ ସମସ୍ତେ ହେଉଛନ୍ତି କୃଷ୍ଣକାୟ । ବେଳେ ବେଳେ ମନେହୁଏ, ଗୋଟିଏ ଗୋଟିଏ ପ୍ରାଜାତିକ ସମଷ୍ଟିର ସ୍ୱପ୍ରତିଭାପ୍ରକାଶ କରିବାର ବିଶେଷ କ୍ଷେତ୍ରମାନ ରହିଥାଏ କି ? ପ୍ରତିଯୋଗିତାର ଅନ୍ୟ କ୍ଷେତ୍ରଗୁଡ଼ିକରେ ଆମେରିକାର କୃଷ୍ଣକାୟ ଯେ ଶ୍ୱେତକାୟର ସମକକ୍ଷ ହୋଇ ପାରିନାହିଁ ବା ପାରୁନାହିଁ, ପ୍ରାୟ ଏହିଭଳି ଗୋଟିଏ ସୂତ୍ର ଦେଇ ଆମେ ତାହାକୁ ବୁଝିବା ପାଇଁ ଚେଷ୍ଟା କରିବା କି ? ଅଥବା, ଆହୁରି ଅଧିକ ପ୍ରସାରଣ ଦେଇ କହିଲେ, ଗୋଟିଏ ଗୋଟିଏ ପ୍ରଜାତିର ଏକ ବିଶେଷ କ୍ଷେତ୍ରରେ ହିଁ ନିଜର ପରିଚୟକୁ ପ୍ରତିଷ୍ଠିତ କରିବାର ସାମର୍ଥ୍ୟ ପ୍ରକୃତରେ ରହିଥାଏ କି ? ମଣିଷମାନେ କ'ଣ ଏହିପରି ଭାବରେ କୌଣସି ବିଶେଷ କଳାକୁ ସିଆଡୁ ସାଙ୍ଗରେ ନେଇ ଏହି ପୃଥିବୀକୁ ଆସି ଥାଆନ୍ତି କି ? ନା ଏହି ଯାବତୀୟ ନିଷରି ସାମାଜିକ ପରିବେଶ ହିଁ ନିୟନ୍ତ୍ରିତ କରିଥାଏ ? ଏହାର ଉତ୍ତର ଦେଇ ଉଭୟ ବିଜ୍ଞାନ ତଥା ଅବିଜ୍ଞାନର ଶିବିରରୁ ନାନାଭଳି ଅନୁମାନ ବ୍ୟକ୍ତ କରାଯାଇଛି ଏବଂ ନିଜର ବିଶେଷ ଚାହାଣିଟି ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ନିଜପାଇଁ ଅବଶ୍ୟ କିଛି ଅନୁମାନ କରିନେଇ ପାରିବ ।

କୃଷ୍ଣକାୟମାନଙ୍କୁ ଅଳପ ଅଥବା ଅକ୍ଷମ କରି ରଖିବା ନିମନ୍ତେ ଆମେରିକାର କାଗଜପତ୍ରରେ କେଉଁଠି କିଛି ରହିଥିବାର ଦେଖିବାକୁ ମିଳିବନାହିଁ । ସେଠି ସବୁକିଛି ସମସ୍ତଙ୍କ ସକାଶେ ଉନ୍ମୁକ୍ତ ହୋଇ ରହିଛି । ସୁଯୋଗଗୁଡ଼ିକ ସମାନ ରହିଥିବା ବେଳେ ଅସମାନତା କାହିଁକି ରହିଛି ? ଉଦାହରଣ ସ୍ୱରୂପ, ଗୋଟିଏ ହିସାବ କହୁଛି ଯେ, ଆମେରିକା ଦେଶରେ ଗୋରା ପୁରୁଷମାନଙ୍କର ଅନୁପାତ କେବଳ ୪୩% ହୋଇଥିବା ବେଳେ ସେମାନେ ସେହି ଦେଶର ଉଚ୍ଚ ପ୍ରଶାସନିକ କାର୍ଯ୍ୟର କ୍ଷେତ୍ରଗୁଡ଼ିକରେ ଏକାବେଳକେ ୯୫% ସ୍ଥାନ ଅଧିକାର କରି ରହିଛନ୍ତି । କୃଷ୍ଣକାୟ ବୟଃପ୍ରାପ୍ତ ପୁରୁଷମାନଙ୍କ ମଧ୍ୟରୁ ଯେଉଁମାନେ କୌଣସି କାମ ନପାଇ ବେକାର ରହିଛନ୍ତି, ସେମାନଙ୍କର ସଂଖ୍ୟା ଦେଶର ସେହିବିଷୟକ ଜାତୀୟ ହାରଟିରୁ ପାଞ୍ଚଗୁଣ ଅଧିକ ବୋଲି ଜଣାପଡୁଛି । ଏପରିକି ଦେଶର ବିଚାରବିଭାଗରେ ମଧ୍ୟ କଳାମାନେ ସେମାନଙ୍କର ସଂଖ୍ୟାନୁପାତ ଅନୁସାରେ ରହିନାହାନ୍ତି । ପ୍ରତିଯୋଗିତା ମାନଙ୍କରେ ପାରି ଉଠୁଥିଲେ ସେମାନେ ବି ଏହିସବୁ କ୍ଷେତ୍ରରେ ନିଜର ଉଚିତ୍ ଅନୁପାତ ଅନୁସାରେ ରହି ପାରିଥାନ୍ତେ । ଚିକାଗୋ ବିଶ୍ୱବିଦ୍ୟାଳୟର ଜଣେ ପ୍ରାକ୍ତନ ଅଧ୍ୟାପକ ଏହି କଥାଟି ବିଷୟରେ କିଞ୍ଚିତ୍ ଅଧିକ ଗମ୍ଭୀର ଭାବରେ ଚିନ୍ତା ଏବଂ ଅଧ୍ୟୟନ କରିଛନ୍ତି । ଜଣେ ଅଧ୍ୟାପକ ହିସାବରେ ଆପେ ଅଙ୍ଗେ ନିଭାଇଥିବା ପ୍ରକୃତ କଥାଗୁଡ଼ିକରୁ ମଧ୍ୟ ସିଏ କେତେକ ଅନୁମାନ କରିଛନ୍ତି । ସିଏ ଏକ ମନ୍ତବ୍ୟ ପ୍ରକାଶ କରି କହିଛନ୍ତି ଯେ, ଆମେରିକାର କେତୋଟି ଉତ୍ତମ ବିଶ୍ୱବିଦ୍ୟାଳୟରେ ଗୋରା ଛାତ୍ରମାନେ ଯେତେ ସନ୍ତୋଷଜନକ ଭାବରେ ନିଜ ପ୍ରତିଭାର ପରିଚୟ ଦେଇ ପାରୁଛନ୍ତି ଓ ଯୋଗାଇ ଦିଆ ଯାଉଥିବା ବିଦ୍ୟାନୁକୂଳ ପରିବେଶଗୁଡ଼ିକ ଦ୍ୱାରା ଲାଭବାନ୍ ହୋଇ ପାରୁଛନ୍ତି, କୃଷ୍ଣକାୟ ଛାତ୍ରମାନେ ସେପରି ପରିଚୟ ଦେଉନାହାନ୍ତି । ବାହାରକୁ ଦେଖିବାକୁ କଳା ଓ ଗୋରା ଉଭୟେ ହୁଏତ ସେଇ

ଏକା ଡ଼ିଗ୍ରୀର ପ୍ରମାଣପତ୍ର ପାଉଛନ୍ତି, ମାତ୍ର ନିଯୁକ୍ତକାରୀ ସଂସ୍ଥାଗୁଡ଼ିକୁ ଏକଥା ଅତ୍ୟନ୍ତ ଉତ୍ତମ ଭାବରେ ବିଦିତ ରହିଛି ଯେ ଉଭୟଟିକୁ କଦାପି ସମାନ ମୂଲ୍ୟ ଦେଇ ବିଚାର କରାଯାଇ ପାରିବନାହିଁ । ଗୋଟିଏ କେବେହେଲେ ଆରଟିର ସମକକ୍ଷ ହୋଇ ପାରିବନାହିଁ । ନିଯୁକ୍ତି ପ୍ରଦାନ କରୁଥିବା ସଂସ୍ଥାମାନେ ମଧ୍ୟ ଉତ୍ତମରୂପେ ଜାଣିଛନ୍ତି ଯେ, ଯୋଗ୍ୟତା ଅର୍ଜନ କରିଥିବାର କାଗଜ ପ୍ରମାଣ ଦେଖି ତୁମେ ହୁଏତ ସହାନୁଭୂତି ଦେଖାଇ ଜଣେ କଳା ପ୍ରାର୍ଥୀକୁ ନିର୍ବାଚିତ କରିପାରିବ । ତଥାପି ତା'ଠାରୁ ତୁମେ କଦାପି ସମାନ ଦକ୍ଷତାର ପ୍ରତ୍ୟାଶା ରଖି ପାରିବନାହିଁ ବୋଲି ଖୁବ୍ ଭଲ କରି ଜାଣିଥିବ । ପ୍ରମାଣପତ୍ର ମାନଙ୍କରେ ସବୁ ଦୋରସ୍ତ ହୋଇ ଲେଖା ହୋଇଥିଲେ ମଧ୍ୟ ନିଯୁକ୍ତି ପ୍ରଦାନ କରୁଥିବା ସଂସ୍ଥା ଓ ତାହାର କର୍ତ୍ତାମାନେ ତାହାକୁ ତଥାପି ସନ୍ଦେହର ଚକ୍ଷୁରେ ଦେଖନ୍ତି ଓ ସେଗୁଡ଼ିକୁ ପୂର୍ଣ୍ଣ ବିଶ୍ୱାସର ସହିତ ଗ୍ରହଣ କରି ପାରନ୍ତିନାହିଁ ।

ଚିକାଗୋର ଉକ୍ତ ଅଧ୍ୟାପକଙ୍କର ମନ୍ତବ୍ୟ ହେଉଛି ଯେ, ବିଶ୍ୱବିଦ୍ୟାଳୟରେ ଅଧ୍ୟୟନକାଳରେ ସେମାନେ ପରସ୍ପରର ସହପାଠୀ ହୋଇ ରହିଥିଲେ ମଧ୍ୟ ଗୋରା ଓ କଳା ଛାତ୍ରଛାତ୍ରୀମାନେ ପରସ୍ପର ସହିତ ପ୍ରକୃତ ବନ୍ଧୁତା ସମ୍ଭବ କରି ପାରନ୍ତିନାହିଁ । ଅଧ୍ୟୟନର ଉପଲକ୍ଷ୍ୟରେ ଜଣେ ଆରଜଣକ ପାଖରେ ବସିଥିଲେ ମଧ୍ୟ ସେମାନେ ବି କ'ଣ ସବାଆଗ ନିଜ ଦେହର ଚମଡ଼ାରଙ୍ଗଟା ଭିତରେ ରହିଥିବା ଫରକଟାକୁ ଦେଖନ୍ତି ଓ ସେହି କାରଣରୁ ପ୍ରୀତିର କ୍ଷେତ୍ରରେ ଏପରି ଭାବରେ ଚିହିଙ୍କି ରହିଯାଆନ୍ତି କି ? ନିଜର ସେହି ମନ୍ତବ୍ୟର ଏକ ସମାଧାନ ଅନୁମାନ କରିଥିବା ପରି ଅଧ୍ୟାପକ କହିଛନ୍ତି ଯେ, ଆମେରିକାରେ ବର୍ତ୍ତମାନ ସମସ୍ତେ ନିଜକୁ 'ବ୍ୟକ୍ତି' ବୋଲି ଭାବୁଥିବା ସମୟରେ କଳାମାନେ ନିଜକୁ କଳା ବୋଲି ହିଁ ଅନୁଭବ କରୁଛନ୍ତି । ଶିକ୍ଷିତ କଳାମାନେ ସମ୍ଭବତଃ ବିଶେଷ ଅଧିକ ପରିମାଣରେ ତଥା ଉତ୍କଟ ଭାବରେ ସେପରି ଭାବୁଛନ୍ତି ଏବଂ ଅନୁଭବ କରୁଛନ୍ତି । ଭାରତବର୍ଷରେ ଶିକ୍ଷାର ସୁଯୋଗ ଅଧିକ ମନୁଷ୍ୟଙ୍କର ପହୁଞ୍ଚ ଭିତରକୁ ଆସିପାରିବା ହେତୁ ଆଧୁନିକ ରୀତିଧାରା ଦ୍ୱାରା ଶିକ୍ଷାପ୍ରାପ୍ତ ପାରମ୍ପରିକ ନିମ୍ନ ବର୍ଣ୍ଣରୁ ଆସିଥିବା ବ୍ୟକ୍ତିମାନେ ଯେପରି ଅଧିକ ସଚେତନ ଏବଂ ଉତ୍କଟ ଭାବରେ ଆପଣାକୁ ମନୁଷ୍ୟ ବୋଲି ଭାବିବା ଅପେକ୍ଷା ଅଧିକ ସଚେତନ ତଥା ଦ୍ୱେଷ କଟାକ୍ଷଯୁକ୍ତ ଭାବରେ ସବାଆଗ ସେହି ବର୍ଣ୍ଣର ଗଡ଼ିଆଟି ଭିତରେ ସୀମାବଦ୍ଧ କରି ଭାବିଲେ, ଆମେରିକାରେ ବି କ'ଣ ଅନ୍ତ୍ରବହୁତ ସେହିପରି କଥାଟିଏ ଘଟିଥିଲା କି ? ଏବଂ, ଏପର୍ଯ୍ୟନ୍ତ ମଧ୍ୟ ଅବଚେତନଗତ ସେହି ଭାବନାଟା ମଣିଷମାନଙ୍କୁ ଛାଡ଼ି ପାରୁନାହିଁ କାହିଁକି ? ଏବେ ତ ସେଠାରେ Black Power ଓ Black Panther ନାମକ କଥାଗୁଡ଼ିକର ପରାକ୍ରମ ଅଧିକ ସୁଦୃଶ୍ୟ ହୋଇ ଦିଶିଲାଣି ଏବଂ ଏସବୁର ମୂଳରେ ଶିକ୍ଷିତ କଳାମାନେ ହୁଏତ ନାହାକା ଚେର ପରି କାର୍ଯ୍ୟ କରୁଛନ୍ତି । ହୁଏତ ଗୋଟାଏ ବିକୃତିକୁ ସ୍ଥାନଚ୍ୟୁତ କରିବା ନିମନ୍ତେ ଆଉଗୋଟାଏ ବିକୃତି ଆଧୁନିକତମ ଭାବନା ତଥା ଉତ୍ତେଜନାକୁ ସଂଗ୍ରହ କରି ବାହାରିଛି ; ମାତ୍ର ବିକୃତିରୁ ମୁକ୍ତି ମିଳିନାହିଁ । ଗୋଟିଏ ସମାଜର ଏକ ନବବିଧାନ ସକାଶେ ରାଜନୀତିକ ଅନୁକୂଳତା ଅବଶ୍ୟ ଦରକାର, ଏକ ସାମାଜିକ ନବପ୍ଲାବନ ବି

ଦରକାର, ଅର୍ଥରେ ଓ ସାମର୍ଥ୍ୟରେ କେତେ ନା କେତେ ବୈପୁଲ୍ୟ ଦରକାର । ଅବଶ୍ୟ ଦରକାର । ମାତ୍ର, ସେଗୁଡ଼ିକ ପୂରଣ ହେବାର ସେରମାଣ ପୁରି ଆସୁଥିଲେ ମଧ୍ୟ ବିକୃତି ଯେ ତଥାପି ଯାଏନାହିଁ, ସେଇଟି ବିଷୟରେ ଅଧିକ ସହାନୁଭୂତି ସହିତ ଉପଯୁକ୍ତ ମନନ ହୋଇପାରିବା ଉଚିତ୍ ।

ଆମେରିକାରେ ଜଣେ ଶିକ୍ଷିତ ତରୁଣମତି କଳା ମଣିଷ ଏସବୁ ବିଷୟରେ କ'ଣ ଚିନ୍ତା ଦରୁଥିବ ? ଏସବୁ ବିଷୟରେ ଅଦ୍ୟାବଧି ଯାହାସବୁ ଚିନ୍ତନ ହୋଇଛି, ସେଗୁଡ଼ିକୁ ମୁଖ୍ୟତଃ ସେଠି ଗୋରାମାନେ କରିଛନ୍ତି । ଦେଶରେ ଅଥବା କାଳରେ ଯେତେ ଆଳରେ ଯେତେ ଓଲଟପାଲଟ ହେଉ ପଛକେ, ଉପରର ଭିଡ଼ମାନଙ୍କରେ ଆଗାମୀ ବହୁଦୀର୍ଘ କାଳ ପର୍ଯ୍ୟନ୍ତ ଗୋରାମାନଙ୍କର ଆସ୍ଥାନଟା ଯେ ତଥାପି ଅପରିବର୍ତ୍ତନୀୟ ହୋଇ ରହିବ, ସେହିଭଳି ଏକ ଦମ୍ଭାନୁମାନର ଭିତ୍ତି ଉପରେ ହୁଏତ ଗୋରାମାନେ ସେହି ଚିନ୍ତନଗୁଡ଼ିକୁ କରିଛନ୍ତି । ଏମାନଙ୍କର ଅସୁବିଧାଗୁଡ଼ିକୁ ଖୁବ୍ ଭଲ ଭାବରେ ବୁଝି ହେଉଛି । କିନ୍ତୁ, ଅପର ପକ୍ଷରେ , କଳାମାନଙ୍କ ଭିତରୁ ଆଗଧାଡ଼ୀ ମାନଙ୍କରେ ରହିଥିବା ବିଶେଷମାନେ କ'ଣ କରିଛନ୍ତି ? ସେମାନେ ଗୋରାମାନଙ୍କୁ ଅନୁକରଣ କରିଛନ୍ତି । କେବଳ ଚମଡ଼ାର ରଙ୍ଗଟାକୁ ଛାଡ଼ିଦେଲେ ଉଭୟ ଶିବିର ମଧ୍ୟରେ ଆଉ କୌଣସି ପୃଥକ୍‌ପଣ ରହିବନାହିଁ, ସେମାନେ ପ୍ରାୟ ଅଣନିଃଶ୍ୱାସୀ ହୋଇ ସେହି ସାଧନାଟିକୁ କରିଛନ୍ତି, କରୁଛନ୍ତି । ମାତ୍ର, ଚମଡ଼ାର ରଙ୍ଗଭେଦ ତଳେ ସବୁ ମଣିଷଙ୍କର ଯେଉଁ ପରିଚୟ, ତାହାକୁ ହିଁ ସମ୍ମୁଖକୁ ଆଣିବାଲାଗି ଆମେରିକାରେ କେଉଁଠି କେଉଁ ପ୍ରୟାସ ହେଉଛି ? ଗୋରା କଳା ଚର୍ମଗତ ରଙ୍ଗର ତଳକୁ ଯାଇ ଆମେରିକାବାସୀଙ୍କୁ ଅନ୍ତରଙ୍ଗ ଭାବରେ ଦେଖିବାକୁ ମନ କଲା ମାତ୍ରକେ ଏହିସବୁ ଭାବନା ଭାରି ଅତୁଆ ଭିତରେ ଆଣି ପକାଇ ଦେଲାପରି ମନେ ହୋଇଥାନ୍ତି । ଆମେ ପୁନଶ୍ଚ କିଛି କ୍ଷଣପାଇଁ ଶ୍ରୀମତୀ ହାରିଏଟ୍ ବୀଚର୍ ଷ୍ଟୋ'ଙ୍କ ପାଖକୁ ଫେରିଯିବା ।

ସେକାଳରେ ମଧ୍ୟ କଳା ପିଲାମାନେ ପାଠ ପଢ଼ିବାର ସୁଯୋଗ ଲାଭ କଲେ ମଧ୍ୟ କ୍ରମେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ପାଠ ପଢ଼ିବା ବିଷୟରେ ଉଦାସୀନ ହୋଇ ଯାଉଥିଲେ । କ୍ରୀତଦାସ ରଖିଥିବା କୌଣସି ମୁନିବ ହୁଏତ ଦୟାପରବଶ ହୋଇ ସେମାନଙ୍କର ପିଲାଙ୍କ ସକାଶେ ପାଠ ପଢ଼ିବାର କିଛି ବ୍ୟବସ୍ଥା କରି ଦେଉଥିବେ । ପ୍ରଥମେ ପ୍ରଥମେ ପିଲାଏ ସବୁ ପିଲାଙ୍କ ପରି କେଡ଼େ ଉତ୍ସାହରେ ପାଠ ପୋଖରୀକୁ ଡ଼େଇଁ ପଡୁଥିଲେ ଓ ମନଆନନ୍ଦରେ ସେଥିରେ ପହଁରିବାକୁ ଆରମ୍ଭ କରୁଥିଲେ । ମାତ୍ର, ଏଣେ ମୁଦେଇ ବୟସଟା ବି ବଢୁଥିଲା ଓ ବୟସ ବଢ଼ିବା ସଙ୍ଗେ ସଙ୍ଗେ ପହଁରାଳିମାନେ ହାଲିଆ ହୋଇ ପଡୁଥିଲେ । ସେମାନେ ପାଠ ପଢ଼ିବେ, ଭଲ କଥା । ବାପାମାଆଙ୍କର ଖାମିନ୍ଦ ଦୟା କରି ଓ ନିଜଆଡ଼ୁ ପଦକ୍ଷେପ ନେଇ ସେମାନଙ୍କୁ ଦି' ଅକ୍ଷର ପାଠ ପଢ଼ିବା ଲାଗି ଅବସରଟିଏ ସମ୍ଭବ କରିଛନ୍ତି, ସେଥିରେ କେଉଁଠି ସାଧୁତାର ଅଭାବ ଅଛି ବୋଲି ମୋଟେ କହି ହେବନାହିଁ । କିନ୍ତୁ, ପାଠ ପଢ଼ି ମୋ' କଳା ଚମଟା କ'ଣ ଗୋରା ହୋଇଯିବ ? ପାଠ ପଢ଼ିଲେ ମଧ୍ୟ ତ କ୍ରୀତଦାସ

ହୋଇ ହାଟରେ ବିକା ହେବି ଏବଂ ହାଟରୁ କିଣା ହେବି । ଶ୍ରମ ଖଟିବି । ଆଉ କାହାର ଇଚ୍ଛାରେ ବାପାମାଆଙ୍କଠାରୁ ବିଚ୍ଛିନ୍ନ ହେବି । ସେତେବେଳେ ମୁଁ ଅର୍ଜନ କରିଥିବା ଏହି ପାଠ ମୋତେ ସେହି ସ୍ଥିତିରେ କୌଣସି ସାହାଯ୍ୟ କରି ପାରିବନାହିଁ । ତେଣୁ, ତେନାହଂ କିଂ କୁର୍ଯ୍ୟାଂ- କ'ଣ ହେବ ସେ ପାଠ ପଢ଼ିବାରୁ ? ମଣିଷ ଭିତରେ, ଆମେ ବୁଝିପାରିଲେ ପ୍ରତ୍ୟେକ ମଣିଷ ଭିତରେ ଏପରି ଗୋଟିଏ ମର୍ଯ୍ୟାଦାବନ୍ତ ଉପାଦାନ ରହିଥାଏ, ଯିଏକି ଏହିପରି ଭାବରେ ଜାଣି ଜାଣି କେତେ କ'ଣସବୁକୁ ବର୍ଜନ କରି ଚାଲିଆସେ ।

ଅର୍ଥାତ୍ ଯେତେ ଯାହା ସମକକ୍ଷତା ହାସଲ କଲେ ମଧ କଳାକୁ ଗୋରାମାନେ ତଥାପି କଳା ବୋଲି ଦେଖିବେ, ମୋତେ ମଣିଷ ପରି ଦେଖିବେନାହିଁ, ଏହିପରି ଗୋଟିଏ ସତକଥାକୁ ହୃଦୟଙ୍ଗମ କରିବାର ବୟସ ହୋଇ ଆସିବା ସଙ୍ଗେ ସଙ୍ଗେ ସେହି ଅନ୍ଧାରୀ ସମାଜଟାରେ କଳା ପିଲା କ୍ରମେ ଉଦାସୀନ ହୋଇ ଆସୁଥିଲା । ଏବେ ମଧ କ'ଣ ସେହିପରି କୌଣସି ବିମୁଖତା ସେଠି ତଥାପି କଳାମାନଙ୍କର ଗୋଡ଼ରେ ପଥର ପରି ବନ୍ଧାହୋଇ ରହିଛି କି ? ଗୋରା ମଣିଷ କଳା ମଣିଷମାନଙ୍କୁ ମଣିଷ ବୋଲି ଦେଖିପାରିବା ପୂର୍ବରୁ ତାକୁ ଆଗ କଳା ବୋଲି ଦେଖୁଥିବ, ହୁଏତ ଏକ ଦାମ୍ଭିକ ଅତୀତର ଅବଚେତନ ଦ୍ୱାରା ତାଡ଼ିତ ହୋଇ ସିଏ ତାହା କରୁଥିବ,- ସେହି କଥାଟିକୁ ତଥାପି ବୁଝି ହେଉଛି । ମାତ୍ର, ଜଣେ କଳା ଲୋକ ନିଜକୁ ସବାଆଗ ମଣିଷ ବୋଲି ଆବିଷ୍କାର କରି ସାରିବାପରେ ତଥାପି କାହିଁକି ଗୋରା ମଣିଷକୁ ଆଗ ଗୋରା ବୋଲି ଦେଖିବ, ସବାଆଗ ଜଣେ ମଣିଷ ବୋଲି ଦେଖିବାକୁ ରାଜୀ ହୋଇ ପାରିବନାହିଁ ? ଏହି ଘଟଣାଟି ଖାଲି ଆମେରିକାରେ ନୁହେଁ, ପୃଥିବୀର ଏକାଧିକ ସ୍ଥଳରେ ଘଟିଛି, ଘଟୁଛି । ଭାରତବର୍ଷରେ ବି ଘଟିଛି, ଘଟୁଛି । ଗୋଟାଏ ଅତୀତ ଯୁଗର ଦାରୁଣ ସ୍ମୃତିମାନେ ଇଙ୍ଗୁଡ଼ ହୋଇ ମୁକ୍ତିଲାଭ କରିଥିବା ମଣିଷକୁ କାହିଁକି ଅସହଜ କରି ରଖିଥିବ ? ଏକଦା ମଣିଷମାନଙ୍କର ବୁଦ୍ଧିକୁ ମାପୁଥିବା ଗୋରା ମନୋବିଜ୍ଞାନୀକୁଳ କେଡ଼େ ସହଜରେ ଗୋରା ପିଲାମାନେ କଳା ପିଲାମାନଙ୍କ ଠାରୁ ଅଧିକ ବୁଦ୍ଧିମାନ ଓ ସମ୍ଭାବନାଯୁକ୍ତ ବୋଲି ଗଣିତ କଷି ଦେଖାଇ ଦେଇ ପାରୁଥିଲେ । ସମଗ୍ର ପୃଥିବୀ ଲାଗି ଏକ ସୌଭାଗ୍ୟର କଥା ଯେ ସେହି ହାସ୍ୟାସ୍ପଦ ସମୟଟା ଏବେ ଅବସାନ ଘଟିଛି । ତଥାପି କାହିଁକି ଉଦାସୀନତା ରହିଛି ? ତଥାପି କାହିଁକି ଧର୍ମତଃ ଏକ ଅନୁକରଣ ପଡ଼ିଆରେ ହାରଜିତ୍‌ର ନାଟକ ଚାଲିଛି ? ଖୁସୀ ହୋଇ ଆମେରିକାର ଜନପଦ ମାନଙ୍କରେ ଆମେରିକାକୁ ଦେଖୁଥିବା ସମୟରେ ନିଜକୁ ସେହି ପ୍ରଶ୍ନଗୁଡ଼ିକ କରିବା ପାଇଁ ଇଚ୍ଛା ହୁଏ । କିଛିଡ଼୍ ଅନୁମାନ କରିହୁଏ, ମାତ୍ର ତଥାପି ବହୁତ କିଛି ଅଜବାବ ହୋଇ ରହିଯାଏ । ଆହୁରି ଅଧିକ ପାଖକୁ ଯାଇ ଆମେରିକା ସହିତ ଏକାଠି ବସିବାକୁ ଇଚ୍ଛା ହୁଏ ।



ଆମେରିକାରେ ମଣିଷମାନଙ୍କୁ ଦେଖିବାକୁ ଇଚ୍ଛା କରିବ ତ, ଆମେରିକାରେ ଦୋକାନମାନଙ୍କୁ ହିଁ ଯିବ । ଲକ୍ଷ ଲକ୍ଷ ଆମେରିକାବାସୀ ଅଫିସ୍‌ମାନଙ୍କରେ କାମ କରୁଥିବେ, ଗୃହମାନଙ୍କରେ ବାସ କରୁଥବେ, ସେସବୁ ଏପରି ଆଧୁନିକ ଶୈଳୀ ଏବଂ ସମ୍ଭ୍ରମରେ ଗଢ଼ା ହୋଇଛି, ଫନ୍ଦା ହୋଇଛି ଓ ଚାଲିଛି ଯେ ମଣିଷମାନେ ଅଲବତ ଥିବେ, ମାତ୍ର ତଥାପି ସର୍ବପ୍ରଧାନ ହୋଇ ମୋଟେ ଦେଖା ଯାଉନଥିବେ । ଘରଗୁଡ଼ାକ କେଡ଼େ କେଡ଼େ, କେଡ଼େ ପୋଲା ଓ କେଡ଼େ ଫାଙ୍କା- ସେହି ଫାଙ୍କାଗୁଡ଼ାକ ଭିତରେ ମଣିଷଗୁଡ଼ିକ ସତେଅବା କେଡ଼େ ସାନ ଏବଂ କେଡ଼େ ଗୌଣ ହୋଇ ଦେଖାଯିବେ । ମଣିଷ ଅଳପ, ଘର ଭିତରେ ଜାଗା ବେଶୀ । ଏବଂ, ଅଧିକାଂଶ ଥାନକୁ ସେଠାରେ ମଧ ବସ୍ତୁମାନେ ହିଁ ଭରି କରି ରଖିଛନ୍ତି । ସେହି ମଣିଷ ପ୍ରକୃତରେ କେଉଁ ଧାତୁରେ ଗଢ଼ା ହୋଇଥବ୍, ଯିଏକି ନିଜର ତଥାକଥିତ ରହିବାଘର ମାନଙ୍କରେ ମଧ ନିଜପାଇଁ କମ୍ ଜାଗା ରଖିଛି ? ଜିନିଷମାନଙ୍କ ପାଇଁ ଆଗ ଜାଗା ଛାଡ଼ି ଦେଇଛି ; ତା'ପରେ ଯେତିକି ଜାଗା ରହିଲା, ତାହାରି ଭିତରେ ନିଜପାଇଁ ଯାହିତାହି କିଛି ଥାନ ବାହାର କରିନେଲେ ହେଲା । ବାହାରକୁ କାହା ଆଖିକୁ ବିଳାସ ବୋଲି ଦେଖା ଯାଇପାରେ ସିନା, ମାତ୍ର ହୁଏତ ଏଇଟି ମଧ ଗୋଟିଏ ପ୍ରକାରର ବୈରାଗ୍ୟ ହୋଇପାରେ । ସଂସାରଟା ଭଲ ଲାଗିଲାନାହିଁ ; ଅନିତ୍ୟ ଲାଗିଲା, ଅଳୀକ ଲାଗିଲା, ସେଥିରେ ପୁଣି ଚାରିପାଖରେ ମଣିଷମାନେ ଜାଲ ପରି ହୋଇ ଏପରି ଛନ୍ଦି ପକାଇଲେ ଯେ, ଛାଟିପିଟି ପଳାଇବା ସକାଶେ ମନ ହେଲା । ଇଏ ଗୋଟାଏ ପ୍ରକାରର ବୈରାଗ୍ୟ, ଭାରତବର୍ଷରେ ଯୁଗ ଯୁଗ ଧରି ଆମର ଅତିଚିହ୍ନା ହୋଇ ରହିଥିବା ବୈରାଗ୍ୟ । ଏବଂ, ଏଠି ଆମେରିକାରେ, ମୋ' ପାଖରେ ପ୍ରୀତି ବୋଲି ଯାହାକିଛି ଥିଲା, ମୁଁ ସେହି ସବୁକିଛିକୁ ନେଇ ମୁଁ ସାଉଁଟି ଆଣି ସଜାଇ ରଖିଥିବା ଏହି ଦ୍ରବ୍ୟର ଧାଡ଼ୀ ଧାଡ଼ୀ ଓ କୁଢ଼ କୁଢ଼ ମଧରେ ମୂର୍ତ୍ତ ଓ ପ୍ରକଟ ହୋଇ ଉଠିଛି । ସେଗୁଡ଼ିକ ଆଡ଼କୁ ଅନାଇଦେବା ମାତ୍ରକେ ସେମାନଙ୍କର କାମସ୍ପର୍ଶ ପ୍ରାୟ ଅଭ୍ୟସ୍ତ ଭାବରେ ମୋତେ ହିଁ ଉଙ୍କୁଟାଇ ଆଣୁଛି, ପ୍ରାୟ ଏକ ଅତିଜାଗତିକ ଆଶ୍ୱସ୍ତି ବି ଆଣି ଦେଉଛି । ମୁଁ ନଥିବି, ମାତ୍ର ସେମାନେ ଥିବେ । ତେଣୁ, ସେହିମାନେ ହିଁ ଅସଲ, ସେମାନଙ୍କୁ ନିଜର ବୋଲି କହୁଥିବା ମୁଁ ହେଉଛି ନିମିତ୍ତମାତ୍ର । ଏଇଟି ହୁଏତ ଆଉ ଗୋଟିଏ ପ୍ରକାରର ବୈରାଗ୍ୟ । ବୈରାଗୀମାନେ ସଚରାଚର ପ୍ରାୟ ଏମିତି କ'ଣକୁ ବା କ'ଣସବୁକୁ ସାର କରି ଦେଖୁଥାଆନ୍ତି ଯେ, ନିଜକୁ ଭାରି ଗୌଣ କରିଦେଖନ୍ତି ?

ଅତିବୃହତ୍ କେତୋଟି ସହରର କେତେକ ବିଶେଷ ଅଞ୍ଚଳକୁ ଛାଡ଼ିଦେଲେ ମଣିଷମାନଙ୍କର ଭିଡ଼ଟାକୁ କେଉଁଠାରେ ହେଲେ ଦେଖିବାକୁ ମିଳେନାହିଁ । ଆମକୁ ସବୁ ଜାଗାରେ ବନ୍ଧୁମାନେ କହୁଥିଲେ ଆମେରିକା ଦେଶରେ ମଣିଷମାନଙ୍କର ସଂଖ୍ୟା ଯେତିକି,

ସେମାନେ ଚଳାଉଥିବା ମୋଟରଗାଡ଼ୀ ଗୁଡ଼ିକର ସଂଖ୍ୟା ହେଉଛି ତା'ଠାରୁ ଆହୁରି ବେଶୀ । ତେଣୁ , ରାସ୍ତାରେ ମଣିଷମାନଙ୍କୁ ନୁହେଁ,ଏହି ମୋଟରଗାଡ଼ୀ ମାନଙ୍କୁ ହିଁ ଦେଖିବାକୁ ମିଳିଥାଏ । ଗାଡ଼ୀ ଭିତରେ ତ ଶୀତତାପନିୟନ୍ତ୍ରକ ବ୍ରହ୍ମା ତାଙ୍କର ସୃଷ୍ଟିଟିକୁ ଆଣି ଖଞ୍ଜି ଦେଇଥାନ୍ତି । ତେଣୁ ଚାରିପାଖରୁ କାଚର ଗବାକ୍ଷଗୁଡ଼ିକୁ ନିବୁଜ ଭାବରେ ବନ୍ଦ କରି ରଖା ଯାଇଥାଏ । ନିବୁଜ ଭାବରେ ତୁଙ୍ଗି ପାରିଲେ ଜଣେ ମଣିଷର ମୁହଁଟା ଗବାକ୍ଷ ସେପାଖରୁ ଆଭାସରେ ଅଥବା ଉଦ୍‌ଭାସରେ ଦେଖାଯାଏ ସିନା, କିନ୍ତୁ ଅଧିକାଂଶ ସମୟରେ ଭ୍ରମ ସୃଷ୍ଟି ହେବାରେ ଲାଗିଥାଏ ଯେ, ଗାଡ଼ୀଟା ସିନା ଈଶ୍ୱରଙ୍କର ମହିମାରେ ଅଳବତ ଚାଲିଛି, ମାତ୍ର ତା'ଭିତରେ ମଣିଷ ବୋଲି କେହି କେଉଁଠିହେଲେ ନାହାନ୍ତି । ଯେଉଁଠି ଯେତେବେଳେ ଅନାଇବ, ତୁମ ଆଗରେ ଏବଂ ପଛରେ ହୁଏତ କୋଡ଼ି କୋଡ଼ି ବିବିଧ କିସମର ମୋଟରଗାଡ଼ୀ ଧାଡ଼ୀ ଧାଡ଼ୀ ହୋଇ ବେଙ୍ଗ ପରି ଚିକଣ ରାସ୍ତାଗୁଡ଼ିକ ଉପରେ ଖସ୍‌କି ଯିବାରେ ଲାଗିଥିବେ, ମାତ୍ର ଭିତରେ ମଣିଷ ଅଛନ୍ତି କି ନାହିଁ ଆଦୌ ଜଣା ପଡୁନଥିବ । ଏବଂ, ଯଦିବା ମଣିଷ ରହିଥିବେ, ତେବେ ନିଶବ୍ଦରେ ବେଙ୍ଗ ପରି ଖସି ଯାଉଥିବା ଏହି ଗାଡ଼ୀମାନଙ୍କ ଭିତରେ ସେମାନେ ଆହୁରି କେଡ଼େ ସାନ ଓ ଛୋଟ ହୋଇ ରହିନଥିବେ ! ଆମ ଦେଶରେ ସିନା ଗାଡ଼ୀମାନଙ୍କର ପରାକ୍ରମ ଅପେକ୍ଷା ସେଗୁଡ଼ିକୁ ବାହୁଥିବା ଏବଂ ସେଗୁଡ଼ିକ ଭିତରେ ବସିଥିବା ମଣିଷମାନଙ୍କର ପରାକ୍ରମକୁ ଆମ ସାମାଜିକତା ଅନୁସାରେ ଅଧିକ ବୋଲି ସ୍ୱୀକାର କରାଯାଉଛି ଏବଂ ତେଣୁ ମୋଟରଗାଡ଼ୀଟିଏ ଚାଲିଗଲେ କିମ୍ବା କେଉଁଠାରେ ରଖା ହୋଇଥିଲେ ଗାଡ଼ୀ ସମେତ ଗାଡ଼ୀରେ ବସିଥିବା ମନୁଷ୍ୟମାନଙ୍କ ଆଡ଼କୁ ଆଗ୍ରହ ଚାଲିଯାଉଛି, ଆମେରିକାରେ ସେହି କାଳଟା ଯାଇ କେତେ ପଛରେ ରହିଲାଣି ।

ରାସ୍ତାରେ ପାଦ ଚାଲି ଯିବା ମଣିଷଙ୍କ ନିମନ୍ତେ ଦୁଇପାଖରେ ଅଲଗା ପଟି ରହିଛି, ମାତ୍ର ତା'ଉପରେ ହୁଏତ ନିତାନ୍ତ କଦବା କାହାକୁ ଦେଖିବାକୁ ମିଳୁଛି । ସାଇକେଲର ବଉଁଶ ପ୍ରାୟ ମରି ମରି ଆସିଲେଣି । ଅଥବା ଛାତ୍ରଛାତ୍ରୀ ତଥା ତରୁଣମାନେ ଯେତେବେଳେ ସଉକରେ ଇଚ୍ଛା କରୁଛନ୍ତି, ସେତେବେଳେ ଯାଇ ସାଇକେଲମାନଙ୍କୁ ସ୍ମରଣ କରୁଛନ୍ତି । ପର୍ଯ୍ୟଟକମାନଙ୍କ ପାଇଁ ବିଶେଷ ଭାବରେ ରଖା ଯାଇଥିବା ସ୍ଥାନମାନଙ୍କରେ ଆମେ ଦେଖିଲୁ, ସାଇକେଲମାନେ ଘରୁ ବାହାରିବା ସମୟରେ ମୋଟରଗାଡ଼ୀ ଉପରେ ବନ୍ଧା ହୋଇ ଯାଉଛନ୍ତି ଏବଂ ଠିକ୍‌ଣା ଜାଗାମାନଙ୍କରେ ସେଗୁଡ଼ିକୁ ରଖାଉ ସାଇକେଲମାନଙ୍କୁ ଫିଟାଇ ବ୍ୟବହାର କରାଯାଉଛି । ପ୍ରୟୋଜନ ନାହିଁ, କେବଳ ଆନନ୍ଦବର୍ଦ୍ଧନ ପାଇଁ କରାଯାଉଛି । ମୋଟର ସାଇକେଲ୍ ମଧ କାଁ ଭାଁ କେଉଁଠି କେଉଁଠି ଅଛି ଏବଂ ରାସ୍ତାକୁ ବାହାରୁଛି । ସଉକ ହେଲେ ବାହାରୁଛି । ସାଇକେଲ ଓ ମୋଟର ସାଇକେଲ୍‌ରେ ଆରୋହୀମାନଙ୍କୁ ଯେ ଦେଖିହୁଏ, ତାହା ଏକ ଭାଗ୍ୟର କଥା ବୋଲି ଆମେରିକାରେ ଆସି ହୃଦୟଙ୍ଗମ କରି ହେଉଛି । ପଦବ୍ରଜରେ ଯାଉଥିବା ମଣିଷଟି ତ ଗୋଟାସୁଦ୍ଧା

ମଣିଷଟିଏ । ତାକୁ ଚିହ୍ନି ହୁଏ, ଠାବ କରିହୁଏ । ବ୍ୟକ୍ତିଗତ ଭାବରେ ଚିହ୍ନା ନଥିଲେ ମଧ୍ୟ ଗୋଟିଏ ପଦବ୍ରଜୀ ବାଟୋଇ ଆଉଗୋଟିଏ ବାଟୋଇକୁ ହାବୁଡ଼ିଗଲେ ପ୍ରାୟ ଜଣେ ସମଧର୍ମାକୁ ଭେଟି ପକାଇବା ପରି ଅନୁଭବ କରିଥାଏ । ସେହି ଅତୀତଟା ଉପରେ ବିଜୟ ହାସଲ କରି ଏବେ ଆମେରିକାରେ ପ୍ରାୟ ସବୁଯାକ ମନୁଷ୍ୟ ଯେ ଗାଡ଼ୀଭିତରେ ଯାଇ ପଶିଲେଣି, ସେମାନେ ଆଉ ଏକ ଆରେକୁ ଚିହ୍ନିବେନାହିଁ ବୋଲି ମନସ୍ଥ କରି ଏପରି ଏକ ଚଳଣି ମଧ୍ୟରେ ଆସି ପଶି ଯାଇଛନ୍ତି କି ? ମଣିଷଟା ନିବୁଜ ହୋଇ ଭିତରେ ପଶିଛି, ବାହାରକୁ ମୋଟେ ଦେଖା ଯାଉନାହିଁ । ବାହାରକୁ ମୋଟରଗାଡ଼ୀଟା ହିଁ ଦିଶୁଛି । ମୋଟରଗାଡ଼ୀଟା ହିଁ ଚାଲି ଯାଉଛି । ତା' ଭିତରେ ମଣିଷଟାଏ ଯେ ଅବଶ୍ୟ ଥିବ, ସେକଥା ଦାବୀ କରାଯାଇ ପାରିଲେ ମଧ୍ୟ ମୋଟରଗାଡ଼ୀମାନେ ବେଙ୍ଗ ପରି ଚାଲି ଯାଉଥିବାର ଏହି ଦୃଶ୍ୟପଟଟି ମଧ୍ୟରେ ବେଙ୍ଗଟା ଭିତରେ ମଣିଷ ବୋଲି କେହି ରହିଥିବ ବୋଲି ହଠାତ୍ ଅନ୍ଦାଜରେ ଆସି ବାଜୁନାହିଁ ।

ତେଣୁ, ଆମେ ଲମ୍ବାଇ ଆଣିଥିବା କଥାଟିର ଖିଏ ଖିଏ ପଛକୁ ଫେରିଯାଇ ପୁନର୍ବାର କହିବା ଯେ,ଆମେରିକାର ଏହି ଆଧୁନିକ ମନୁମହାମଣ୍ଡଳଟିରେ ଦୋକାନମାନଙ୍କ ଭିତରେ ଯାଇ ପ୍ରବେଶ କଲେ ଯାଇ ସେହି ମୁଲକରେ ମଣିଷ ଅଛନ୍ତି ବୋଲି ପ୍ରତ୍ୟୟ ମିଳୁଛି । ବଡ଼ ବଡ଼ ଦୋକାନଗୁଡ଼ିକର ଗର୍ଭକୁ ଭର୍ତ୍ତି କରି ରଖିଥିବା ପଦାର୍ଥମାନେ ସ୍ୱକୀୟ ମହିମାରେ ଏପରି ଭାବରେ ପ୍ରତିଭାତ ହେବାରେ ଲାଗିଛନ୍ତି ଯେ, ମଣିଷମାନେ ମଧ୍ୟ ସେଠାରେ କେଡ଼େ ସାନ ସାନ ଦେଖା ଯାଉଛନ୍ତି । ଏକାବେଳେକେ ପାଞ୍ଚ କି ସାତ ମହଲା କୋଠାଉପରୁ ତଳେ ରାସ୍ତା ଉପରେ ଯାଆଆସ କରୁଥିବା ମନୁଷ୍ୟମାନଙ୍କୁ ନିଘା କରି ଦେଖିଲେ ସେମାନେ ଯେଉଁପରି ଦେଖାଯାଆନ୍ତି, ଏଠାରେ ଦେଢ଼ କିମ୍ବା ଦୁଇ ପୁରୁଷ ଉଚ୍ଚ ଯାଏ ଭାଡ଼ି ମରା ହୋଇ ଶୋଭା ପାଉଥିବା କ୍ଷୁଦ୍ର ତଥା ବୃହଦ୍ ବସ୍ତୁମାନେ ସମ୍ଭବତଃ ତଳକୁ ଅନାଇ ଅଭ୍ୟାଗତ ମଣିଷମାନଙ୍କୁ ସେହିପରି କିଛି ଗୋଟାଏ ନଜରରେ ହିଁ ଦେଖୁଥିବେ । ପ୍ରଥମେ ମଣିଷ ତା' ନିଜ ଚାହିଦା ମେଣ୍ଟାଇବା ନିମନ୍ତେ ଏହି ଯାବତୀୟ ଦୋକାନର ତିଆଣ ଯେ ଅବଶ୍ୟ କରିଥିଲା, ସେଥିରେ କେହି କଦାପି ଦ୍ୱିରୁକ୍ତି କରିବନାହିଁ ସତ, ମାତ୍ର ପୃଥିବୀଉପରେ ମନୁଷ୍ୟର ଅଗ୍ରଗତିଶୀଳ ବିବର୍ତ୍ତନରେ ହୁଏତ ଏପରି ଗୋଟିଏ ମୁହୂର୍ତ୍ତ ଆସି ପହଞ୍ଚିଲା, ଯେତେବେଳେ କି ଦୋକାନ ହିଁ ତା' ଚାହିଦା ଅନୁସାରେ ମଣିଷ ମଣ ହେଉ ବୋଲି ଅଡ଼ଟ କରିବାକୁ ଆରମ୍ଭ କଲା । ଆଗେ ମଣିଷ ସିନା ନିଜ ପ୍ରୟୋଜନ ଅନୁସାରେ ଦୋକାନମାନଙ୍କୁ ଛିଡ଼ା କରାଉଥିଲା,ମାତ୍ର କ୍ରମେ ଦୋକାନମାନେ ହିଁ ନିଜ ପ୍ରୟୋଜନ ମୁତାବକ ମଣିଷମାନଙ୍କୁ ମଣ କଲେ ! ଦୋକାନ ହିଁ ଗୁରୁ ହୋଇ ସେମାନଙ୍କୁ ପାଠ ପଢ଼ାଇଲା, ଜ୍ଞାନ ଦେଲା । ପୃଥିବୀର ଆଉ ଆଉ ଜାଗାରେ ଅବଶ୍ୟ ଏହି ପ୍ରବୃତ୍ତିଟି ଶନୈଃ ଶନୈଃ ଦେଖାଦେବାକୁ ଆରମ୍ଭ କଲାଣି ସତ,ମାତ୍ର ଆମେରିକା ହିଁ ଖୁବ୍ ସମ୍ଭବ ଜନନୀ ପରି ତାହାର ଉଦ୍ଭାବନ କରିଛି, ଧାତ୍ରୀ ହୋଇ ତାହାର ପରିପାଳନ କରାଇଛି ଓ

ଉଦାରୀକରଣ ନାମକ ଏକ ନବବିଧାନର ମନ୍ତ୍ର ଦେଇ ପୃଥିବୀଟାଯାକକୁ ନିଜର ସମଧର୍ମା ଭଳି ଦେଖିବାକୁ ଇଚ୍ଛା କରୁଛି ।

ରାସ୍ତା କଡ଼କୁ ଦୋକାନମାନେ ରହିବେ, ଆମେରିକାରେ ସେଇଟା ପୁରୁଣା ରୀତି ହୋଇଗଲାଣି । ବଡ଼ ବଡ଼ ସହରମାନଙ୍କରେ ଅବଶ୍ୟ ସେହି ପୁରୁଣା ରୀତିଟା ଏବେ ଚାଲୁଛି । ମାତ୍ର, ଉପଭୋକ୍ତା ମାନଙ୍କର ପ୍ରୀତ୍ୟର୍ଥେ ଏବେ ଏକାବେଳେକେ ଅନ୍ୟ ବାଗରେ ସେଗୁଡ଼ିକର ଯୋଜନା ହେଲାଣି । ରାସ୍ତା ଉପରୁ ଗୋଟାଏ ଜାଗାରୁ ତୁମକୁ ନିଜର ଗାଡ଼ୀକୁ ବଙ୍କାଇ ନେବାକୁ ପଡ଼ିବ । ତା'ପରେ ଗାଡ଼ୀ ରଖିବାର ସ୍ଥାନ । ତୁମେ ଯେଉଁ ମୂଳ ରାସ୍ତାଟିକୁ ଧରି ଆସିଥିଲ, ସେଇଟା ହୁଏତ ଆଉ ମୋଟେ ଦୃଷ୍ଟିଗୋଚର ହେଉନାହିଁ । ଯୋଉଠି ଗାଡ଼ୀ ରଖିଲ, ସେଇଠାରେ ତୁମକୁ ଘେରିକରି ଦୋକାନମାନେ ତିଆରି ହୋଇଛନ୍ତି । ଆଗରେ ଫଳକମାନଙ୍କରୁ ପରିଚୟ ବି ମିଳିଯାଉଛି । ତୁମର ଯେଉଁଟିକୁ ଯିବାର ପ୍ରୟୋଜନ ଥିବ, ତୁମେ ସେଇଟି ଭିତରକୁ ଯାଇପାରିବ । ଦୋକାନର ନାଆଁଗୁଡ଼ାକ ମଧ୍ୟ ଗୋଟିଏ ଆରେକୁ ବଳି ଅଧିକ ଚମତ୍କାର, ଏକାବେଳେକେ ତୁମର କଲିଜାଗୁଡ଼ାକର ଗଣ୍ଠିରେ ଯାଇ ଆଘାତ କରି ପାରିବାଭଳି ମଧୁରିମା ଦେଇ ତିଆରି ହୋଇଛି । ଗୋଟିଏ ହେଉଛି The Good Guys- ଅର୍ଥାତ୍ ଏହି ଦୋକାନର ଦୋକାନୀମାନେ ଅତ୍ୟନ୍ତ ଭଲ, ଗୋଟାସୁଦ୍ଧା ତୁମରି ପରିଚର୍ଯ୍ୟା ନିମନ୍ତେ ନିଯୁକ୍ତ ହୋଇ ରହିଛନ୍ତି । ପ୍ରକୃତରେ ତୁମକୁ ସଂସାରଜୀବନ ନାମକ ଏହି ବଜାର ଭିତରେ ପୂରାପୂରି ତୁମରି ପଟେ ରହି ତୁମକୁ ଉପକୃତ କରିବା ନିମନ୍ତେ ଆତ୍ମନିଯୁକ୍ତ ହୋଇ ଆସିଛନ୍ତି । ହୁଏତ ଆଉଗୋଟିଏ ନାଆଁ ହେଉଛି Dress Barn- ପୋଷାକ ବୋଲି ତୁମେ ଯାହା ଖୋଜିବ, ତାହା ପାଇ ପାରିବ । ଖାଲି ଭିତରକୁ ଥରେ ପଶିଗଲେ ହେଲା । ଖଳା ଭିତରେ ରହିଥିବା ପରି ପରିଚ୍ଛଦମାନେ ଅତି ସୁଚିନ୍ତିତ ପରିପାଟୀରେ ବହୁପ୍ରକାରେ ସଜ୍ଜିତ, ପ୍ରଦର୍ଶିତ ଏବଂ ପ୍ରତ୍ୟକ୍ଷମାଣ ହୋଇ ରହିଛନ୍ତି । ତୁମେ ଖାଲି ପଶିଯାଅ, - ଯୋଉଟା ତୁମର ମନକୁ ଆସିବ, ତୁମେ ସେଇଟିକୁ ଉଠାଇନେଇ ପାରିବ । ମନଲାଖି ପଦାର୍ଥଟିଏ ପାଇଯିବା ଦ୍ୱାରା ତୁମେ ଏତେ ଅଧିକ ପରିମାଣରେ ପୁଲକିତ ହୋଇଯିବ ଯେ, ତା'ପରେ ସତକୁ ସତ ପଇସା ଦେଇ କିଛି କିଣିଲ ବୋଲି ତୁମର ଆଦୌ ମନେ ହେବନାହିଁ । ତେଣୁ, କେବଳ ବଳଦଟାଏ ପରି ପଶିଯାଆନ୍ତୁ, ଖଳାଟା ଭିତରୁ ନିଜର ପସନ୍ଦ ଅନୁସାରେ ହଳାଟାଏ ଉଠାଇ ଆଣନ୍ତୁ । ଏହି ସବୁକିଛି ସମ୍ପୂର୍ଣ୍ଣଭାବରେ ଆପଣଙ୍କର । ଏକଥା କୋଉ ବଳଦକୁ କାହିଁକି ଭଲ ନଲାଗିବ ?

ନିଉୟର୍କର ଗୋଟିଏ ଦୋକାନର ନାଆଁ ଦିଆଯାଇଛି The Forgoten Woman, –ପୁରୁଷ, ଯଥାର୍ଥ ପୁରୁଷମାନଙ୍କୁ ନାଆଁଟି କେଡ଼େ ଉଦ୍ଦୀପକ ବୋଧ ହେଉନଥିବ ! ନାରୀ, –ସିଏ ଘରଣୀ ହୋଇପାରେ, ପ୍ରେୟସୀ ହୋଇପାରେ, କନ୍ୟା ଅଥବା ବାନ୍ଧବୀ ବି ହୋଇପାରେ । ଇଏ ବୋଧହୁଏ ସେଇକାଳର ଗୋଟିଏ ଅପବାଦକର କଥା, ଯେତେବେଳେ

ପୁରୁଷ ହିଁ ନାରୀପାଇଁ ପରିଚ୍ଛଦ କ୍ରୟ କରି ଆଣୁଥିଲା । ନାରୀକୁ ସୁଆଭରଣା, ସୁଆବୃତା ଅଥବା ସୁଶୋଭିତା ରୂପେ ଦେଖିବା ସାମାଜିକ ନୈତିକତା ଅନୁରୋଧରେ ପୁରୁଷର ଏକ ମହାନ୍ କାର୍ଯ୍ୟ ହୋଇ ରହିଥିଲା । ଏବେ ନାରୀ ପୁରୁଷ ସମାନ ସ୍ୱୀକୃତି ହାସଲ କରିଯିବା ପରେ ପୁରୁଷ ତା'ର ସେହି କର୍ତ୍ତବ୍ୟଟିକୁ ପାସୋରି ପକାଇଲା ନାହିଁକି ? ତେଣୁ, ପ୍ରକାରାନ୍ତରେ ପୁନର୍ବାର ସେହି ପାରମ୍ପରିକ କର୍ତ୍ତବ୍ୟବୋଧକୁ ଫେରି ଆସିବା ନିମନ୍ତେ ଦୋକାନର ଏପରି ଏକ ନାମକରଣ ଦ୍ୱାରା ସତେଯେପରି ଏକ ଆହ୍ୱାନ ଦିଆଯାଇଛି । କହିବା ବାହୁଲ୍ୟ, ଆଲୋଚ୍ୟ ଦୋକାନଟି ଭିତରେ ନାରୀ ଆବଶ୍ୟକ କରୁଥିବା, - ପରିଚ୍ଛଦ, ଅଙ୍ଗଭୋଗ, ଜୀବନକୁ ବହୁ ମଣ୍ଡନ ଦ୍ୱାରା ମହନୀୟ କରି ରଖିବାର ଯାବତୀୟ ସରଞ୍ଜାମ ଆଧୁନିକତମ ସଲଖ ଶୈଳୀରେ ସଜ୍ଜା ହୋଇ ଥୁଆହୋଇଛି । ମାନୀ ପୁରୁଷକୁ ଆହ୍ୱାନ ଦେବାରେ ଲାଗିଛି । ନିଜ ଛୁଆମାନଙ୍କ ଲାଗି କାହାର ଚିତ୍ତ ଛନଛନ ନହୁଏ ! A Heart for the Kid ଆଉଏକ ଦୋକାନର ନାଆଁ, ଯେଉଁଠି ଛୁଆମାନେ ଲୋଡୁଥିବା ସର୍ବବିଧ ଦ୍ରବ୍ୟ ଭରପୂର ହୋଇ ରହିଛି । ଆମ ଛୁଆଟି ବା ଛୁଆମାନଙ୍କ ସକାଶେ ଆମେ ବୟସ୍କମାନେ ଅଢାଡ଼ି ଦେଉଥିବା ହୃଦୟଟିକୁ ସତେଅବା ଏଠି ଏହି ଦୋକାନ ମାଖରେ ଆଣି ପରୀକ୍ଷା କରାଇ ନେବାକୁ ସମ୍ପୃକ୍ତ ସମସ୍ତଙ୍କୁ ଟିହାଇ କହିବାକୁ ନେଷ୍ଟା କରାଯାଉଛି । ନିଜ ଘରେ ନିଜର ହୃଦୟକୁ ଆପଣ ନିଜ ପିଲାମାନଙ୍କ ଆଡ଼କୁ ପ୍ରସାରିତ କରି ଅବଶ୍ୟ ରଖିଥିବେ । ମାତ୍ର, ସେହି ହୃଦୟ ସତକୁ ସତ ଆମର ଏହି ଦୋକାନଟା ଯାଏ ପ୍ରସାରିତ ହୋଇ ଆସିପାରିଛି କି ନାହିଁ, ସେହି କଥାଟିକୁ ବିଚ୍ଛିବା ନିମନ୍ତେ ଆମେ ଏଠି ଦୋକାନଟିଏ ଜମାଇ ରଖିଛୁ । ଆପଣଙ୍କର ଛୁଆ ସକାଶେ ଯାହାକିଛି ପଦାର୍ଥ ଆବଶ୍ୟକ ବୋଲି ଏହି ପୃଥିବୀରେ କଳ୍ପନା କରା ଯାଇପାରେ, ଆମେ ତିନି ପୁରରୁ ସାଉଁଟି ଆଣି ଏଠାରେ ଆପଣଙ୍କର କ୍ରୟାର୍ଥେ ଗଦା କରି ରଖିଛୁ । ତେଣୁ, ହେ ଭଦ୍ରଗଣ, ସାମନ୍ତ ତଥା ସୀମନ୍ତିନୀଗଣ, ଆପଣମାନେ ଏହି ଖାସ୍ ବିପଣିଟି ମଧ୍ୟରେ ପ୍ରବେଶ କରନ୍ତୁ ଏବଂ ଆପଣାର ପିଲାମାନଙ୍କ ଲାଗି ଆପଣଙ୍କର ହୃଦୟଗୁଡ଼ିକ ଉଜ୍ଜୀବିତ ହୋଇ ରହିଛି କି ନାହିଁ, ନିଜର ଗୋଚରାର୍ଥେ ତାହା ପରୀକ୍ଷା କରିନିଅନ୍ତୁ । କେତେ ନା କେତେ ଉଦାର ହୋଇ ଏଠି ସମ୍ପୃକ୍ତ ଦୋକାନଦାରଟି ସାରା ଗରହାକସଂସାରର ପିଲାମାନଙ୍କୁ ସତେଅବା ନିଜର ପିଲା ପରି ଭାବିଲେ ଯେ ଏପରି ଗୋଟିଏ ଦୋକାନ ତଥା ସେହି ଦୋକାନ ପାଇଁ ଏପରି ଏକ ନାମକରଣର କଳ୍ପନା ତା'ର ମସ୍ତିଷ୍କ ଭିତରେ ଆସି ପ୍ରବେଶ କରିଥିବ, ଦୋକାନଟିର ଏରୁଣ୍ଡିଟି ଡେଇଁ ଚାଲି ଯାଉଥିବା ସମୟରେ ମୁଁ ସେଦିନ ସେହିକଥା ଚିନ୍ତା କରୁଥିଲି । ଯଦି କଳା ନାମକ ସେହି ସୂକ୍ଷ୍ମ ବୃତ୍ତିଟି ପ୍ରାୟ ଜଗଦ୍ଧାତ୍ରୀ ପରି ହୋଇ ଆମେରିକାର ବଜାର ଭିତରେ ପ୍ରବେଶ କରିବାର ଅବାଧ ସ୍ୱାଧୀନତା ଲାଭ କରି ନଥାନ୍ତା, ତେବେ ଏ ବଜାର କଦାପି ଏଭଳି ଚହଟି ପାରୁନଥାନ୍ତା ।

ଆଉ କେତୋଟି ସେହିପରି ମଉଜିଆ ଏବଂ ପ୍ରାଣମତାଣିଆ ନାଆଁ ହେଉଚି : Sweet Escape, Together, After thought, ଇତ୍ୟାଦି, ଇତ୍ୟାଦି । ଏମିତି କେତେ

କେତେ । ଯଦି ଅଧିକ କେତୋଟି ନାଆଁ ଟିପି ଆଣି ପାରିଥାନ୍ତି, ତେବେ ଏହି ତାଲିକାଟିକୁ ଅବଶ୍ୟ ଦୀର୍ଘତର କରି ପାରିଥାନ୍ତି । ଭାରତବର୍ଷରେ ଦୋକାନଗୁଡ଼ିକର ନାମକରଣ କରାଯିବା ସମୟରେ ଏଠାରେ ମଧ ବେଶ୍ କେତେ ପରିମାଣରେ ଏହି କଳାତ୍ମକ ଉର୍ବରତା ତଥା କଳାତ୍ମକ ହୃଦୟବତ୍ତାର ସାହାଯ୍ୟ ନିଆଗଲାଣି । ଆମେ ତଥାପି ଗୌରବ, ସୌରଭ, କିରଣ ବା ମିଳନ ଯାଏ ମାଡ଼ି ଆସି ପାରିଲୁଣି- ତୁଚ୍ଛା କପଡ଼ା ବିକ୍ରୀ କରୁଥିବା ଦୋକାନମାନଙ୍କର ନାମକରଣ ଗାୟତ୍ରୀ ଅଥବା ସତ୍ୟ ଶିବ ସୁନ୍ଦରଯାଏ ମଧ ଉହୁଙ୍କି ଆସି ପାରିଲାଣି । ମାତ୍ର, ସ୍ୱୀକାର କରିବାକୁ ପଡ଼ିବ ଯେ, ଆମେରିକା ଏବେ ମଧ ବହୁତ ଆଗରେ ରହିଛି । ଭାରତବର୍ଷ କୋଉ ପଛରେ ଯାଇ ରହିଛି । ଏବଂ, ନିରବଧି ଆଧୁନିକ କାଳ ପର୍ଯ୍ୟନ୍ତ ଆମେରିକା ହିଁ ସର୍ବଦା ଆଗରେ ରହିଥିବ । ସମଗ୍ର ପୃଥିବୀ ଯେପରି ମନ କଲା ମାତ୍ରକେ କାହାକୁ ନିଜ ଯାବତୀୟ ଅଭିଳାଷର କ୍ଷେତ୍ରରେ ଧ୍ରୁବତାରା ସଦୃଶ ଦେଖିବାକୁ ପାଇଯିବ, ପୃଥିବୀର ବିଧାତା ସତେଅବା ସଂପ୍ରତି ଅନ୍ତତଃ ବହୁ ଶତାବ୍ଦୀ ନିମନ୍ତେ ସେଥିପାଇଁ ଆମେରିକାକୁ ହିଁ ଆସ୍ଥାନ ଯୋଗାଇ ଦେଇ ରଖିଛନ୍ତି । ଯେଉଁ ଦେଶର ସାଂସ୍କୃତିକ ଚିତ୍ତକଳ୍ପନା ଗୁଡ଼ିକ ସେହି ଦେଶର ଦୈନନ୍ଦିନ ଜୀବନ ଉପରକୁ ଅଧିକରୁ ଅଧିକ ନିକଟ ହୋଇ ଲାଗି ଆସୁଥିବ, ଅର୍ଥାତ୍ ଯେଉଁଠି ଭୂମି ଏବଂ ଆକାଶ ମଧରେ ରହିଥିବା ପାର୍ଥକ୍ୟ ଏବଂ ଦୂରତାରେ କ୍ଷିପ୍ର ହ୍ରାସମାନ ସମ୍ଭବ ହୋଇଯିବ, ସମ୍ଭବତଃ ସେହି ଦେଶର ବିପଣିଗତ ମଣ୍ଡନା ଏବଂ ଜୀବନଗତ କଳ୍ପନାଗୁଡ଼ିକ ଭିତରେ ମଧ ଦୂରତା ସେତିକି କମ୍ ହୋଇଯିବ । ଆଦର୍ଶ କହିଲେ ବିପଣିକୁ ବୁଝାଇବ ଏବଂ ବିପଣି କହିଲେ ଆଦର୍ଶକୁ ମଧ ବୁଝାଇବ । ବିପଣିଗୁଡ଼ିକ ଭିତରେ ଥରେ ପଶିଯାଇ ପାରିଲେ ସିଏ ଆଉ ଅଲଗା କରି ନିଜ ଆଦର୍ଶଗୁଡ଼ିକୁ ଖୋଜି ବାହାରିବାର କୌଣସି ପ୍ରୟୋଜନ ଆଦୌ ଅନୁଭବ କରିବନାହିଁ । ବିପଣି ଭିତରେ ପଶିଗଲେ ଆମେରିକାରେ ଏହି ବିପଣିଗୁଡ଼ିକର ଅନୁଶୀଳନ କିପରି ମନୁଷ୍ୟମାନଙ୍କର ଏକ ଅହୋଧର୍ମରେ ପରିଣତ ହେଲାଣି, ତାହାର ବହୁ ଉତ୍ସାହପ୍ରଦ ଇଙ୍ଗିତ ମିଳି ଯାଇଥାଏ । ଭାରତବର୍ଷରେ ଜାଗାଏ ଜାଗାଏ ଅବଶ୍ୟ ମିଳେ ।

After thought ନାମଟି ବସ୍ତୁତଃ ଅତୀବ ମନୋରମ ହୋଇଛି । କେତେ ସହାନୁଭୂତି ସହିତ ଏହି ନାମକରଣଟି ଯେ ଅବଶ୍ୟ କରା ଯାଇଥିବ, ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ । ଆପଣ ସରଞ୍ଜାମ କିଣି ବଜାରକୁ ଆସିଥିଲେ ଏବଂ ସେହି ଅନୁସାରେ ଆବଶ୍ୟକ ସରଞ୍ଜାମଗୁଡ଼ିକୁ ଆଗ ଆଗ କିଣି ପକାଇଲେ । ଆବଶ୍ୟକ ଗୁଡ଼ିକୁ କିଣୁ କିଣୁ ଆଉକିଛି ଏପରି ସରଞ୍ଜାମ ବା ଅସରଞ୍ଜାମ ପାଖରେ ଆପଣଙ୍କର ପାଞ୍ଚମନ ଓ ଚଇତନ ଅଟକି ଯାଉଥିଲେ, ଅଥଚ ଏବେ ମୋ'ର ଏଗୁଡ଼ିକ ଆବଶ୍ୟକ ନାହିଁ ବୋଲି ମନକୁ ବୁଝାଇଦେଇ ଆପଣ ଆଗକୁ ବାହାରିଗଲେ । ଜିନିଷଗୁଡ଼ିକୁ ଗାଡ଼ୀରେ ଲଦି ଗାଡ଼ୀ ଚଳାଇବାକୁ ଯାଉଛନ୍ତି, ହଠାତ୍ ଆଉଗୋଟିଏ ବିବେକ ଆପଣଙ୍କର ପଥ ଓଗାଳି ଛିଡ଼ା ହେଲା । ହଁ, ଏଇଟା ଏତେ ଆବଶ୍ୟକ ନଥିଲା ସିନା, କିନ୍ତୁ ତା' ବୋଲି ତାକୁ ଅନାବଶ୍ୟକ

ବୋଲି କାହିଁକି କୁହାଯିବ ? ଯାହା ଅନାବଶ୍ୟକ ନୁହେଁ, ତାହା ଅବଶ୍ୟ ଆବଶ୍ୟକ । ବିଶେଷତଃ, ଯଦି ପକେଟରେ ସାମର୍ଥ୍ୟ ରହିଛି, ତେବେ ଏହି ମୁହୂର୍ତ୍ତରେ ହିଁ ଆବଶ୍ୟକ । ମଣିଷ ଭିତରେ ଯେ ଏକାବେଳେକେ ଏତେଗୁଡ଼ିଏ ବିବେକ ରହିଛନ୍ତି ଓ ସମୟ ଜାଣି ରଜ୍ଜୁଗୁଡ଼ିକ ଟାଣିଦେଇ ପାରୁଛନ୍ତି, ସେଥିଲାଗି ମଣିଷ ପ୍ରକୃତରେ କାହାକୁ ଧନ୍ୟବାଦ ଦେବ ? ପ୍ରାୟ ସେହି କାରଣରୁ ହିଁ ମନୁଷ୍ୟମାନେ ଏପରି ଆଠପ୍ରହରଯାକ ପରିପୂର୍ଣ୍ଣ ଭାବରେ ଗତିଶୀଳ ହୋଇ ରହି ପାରୁଛନ୍ତି । ବାସ୍, ଆପଣ ନିଜର କାର୍ପଣ୍ୟ ପ୍ରତି କିଞ୍ଚିତ୍ ମୁରୁକି ହସିଦେଲେ, ନିଜର ଗାଡ଼ୀ ଅଟକାଇ ପଛରେ ଛାଡ଼ି ଆସିଥିବା ସେହି ଭାଗ୍ୟବାନ୍ ବିପଣିଗୁଡ଼ିକୁ ଗଲେ ଏବଂ ନକିଣିଥିବା ଦ୍ରବ୍ୟଗୁଡ଼ିକୁ କ୍ରୟ କଲେ । ନିଜକୁ ବଡ଼ ଉଦାର ବୋଲି ଅନୁଭବ କଲେ, ପ୍ରୀତ ହେଲେ । After thought ନାମକ ବିପଣିଟିରେ ଗରହାକ ବାଟ ହୁଡ଼ି ପୁନର୍ବାର ଦାଟକୁ ଆସିବାପରେ ଯେଉଁସବୁ ବିଦେଶୀ ପଦାର୍ଥଗୁଡ଼ିକୁ କ୍ରୟ କରି ଘରକୁ ନେବାକୁ ମନ କରିବ, ବହୁତ ଗମ୍ଭୀର ଭାବରେ ଭାବି ଚିନ୍ତି ସେହିସବୁ ସରଞ୍ଜାମ ରଖାଯାଇଛି । ଏହି ଦ୍ରବ୍ୟନିର୍ବାଚନର ପ୍ରକ୍ରିୟାଟିରେ ନିଜର ସୃଜନାତ୍ମକ ଅନୁମାନଗୁଡ଼ିକୁ କମ୍ କାମରେ ଲଗାଇବାକୁ ପଡ଼ିନାହିଁ ।

Together ନାମକ ଦୋକାନଟିର ମହତ୍ତ୍ୱଟିକୁ ବୁଝିବାଲାଗି ଆଦୌ ମେହେନତ କରିବାକୁ ପଡୁନଥିବ । ଏଠାକୁ ଦମ୍ପତିମାନେ ମିଳିତ ଭାବରେ ଆସିବେ ଏବଂ ଦାମ୍ପତ୍ୟଜୀବନର ସମ୍ପଦଗୁଡ଼ିକୁ ଏକାଠି ବାଛି ଘରକୁ ନେଇଯିବେ । ଘର କିସୁନ୍ଦର ଦେଖାଯିବ, ଏବଂ ଘରଟି ସୁନ୍ଦର ଦିଶିଲେ ସେଠାରେ ବାସ କରୁଥିବା ଛାଉଁଳି ଜୀବଦ୍ୱୟ ଅବଶ୍ୟ ସୁଖରେ କାଳାତିପାତ କରୁଛନ୍ତି ବୋଲି ଜାଣି ହୋଇଯିବ । ଆଧୁନିକ ପୃଥିବୀରେ ଯେତେ ଯାହା ଅଡୁଆ, ପ୍ରାୟ ସବୁଯାକ ଏକତ୍ର ବାସ କରି ନପାରିବାର ନାନା ବାସ୍ତବ ଅସୁବିଧାରେ ନିହିତ ହୋଇ ନିଶ୍ଚୟ ରହିଥିବ । ତେଣୁ, ସମ୍ପୃକ୍ତ ଉଭୟ ପ୍ରାଣୀଙ୍କର ପ୍ରୀତ୍ୟର୍ଥେ ଆପାତତଃ ଯାହାକିଛି ଦରକାର ଓ ଯାହାକିଛି ସେମାନଙ୍କୁ ନିଜର ଯୌଥ ଜୀବନର ଆନନ୍ଦ ଓ ସୁଖ ବିଷୟରେ ସ୍ମରଣ କରାଇ ଦେଇ ପାରୁଥିବ, ସେହିଭଳି ପଦାର୍ଥକୁ ଗୋଟିଏ ଦୋକାନରେ ଗଣ୍ଠାଇ କରି ରଖିବା ଏହା ମୋଟେ କମ୍ ବୁଦ୍ଧିମତ୍ତାର ବ୍ୟାପାର ନୁହେଁ । ସମସ୍ତେ କଦାପି ତାହା କରି ପାରନ୍ତେନାହିଁ । ଦୋକାନଟି ଏପରି ଭାବରେ ମଣ୍ଡନପୂର୍ଣ୍ଣ ହୋଇ ରହିଥିବ ଯେ, ତା' ଭିତରେ ପଶି ଦ୍ରବ୍ୟଗୁଡ଼ିକୁ ଚାହିଁଦେଲା ମାତ୍ରକେ ନିଜ ଭିତରଟା ମଧ ଖୁସୀ ଓ ରଙ୍ଗଯୁକ୍ତ ହୋଇ ଦେଖାଯିବ ଏବଂ ସମ୍ପୃକ୍ତ ଦୁଇଜଣଙ୍କୁ ପରସ୍ପରର ଆହୁରି ଅଧିକ ନିକଟ ସାନ୍ନିଧ୍ୟକୁ ଟାଣି ନେଇ ଆସିବାପରି ପ୍ରତୀତି ଆଣି ଦେଉଥିବ, ଏହି ରହସ୍ୟଟି ଯେକୌଣସି ମୁଣ୍ଡଦ୍ୱାରା ମୋଟେ ସମ୍ଭବ ହେବନାହିଁ । ଏବଂ, Sweet Escape ନାମଟିର ପ୍ରକୃତରେ ତୁଳନା ହିଁ ନାହିଁ । ମିଠା ଦ୍ରବ୍ୟ ଖାଇବାକୁ ସତେଅବା ସ୍ୱୟଂ ଭଗବାନଙ୍କର ବେଶ୍ ଦୁର୍ବଳତା ରହିଥିଲା କି କ'ଣ କେଜାଣି, ମଣିଷକୁ ରଚିଥିବା ଭଗବାନ ମଣିଷର ଭିତରେ ମଧ ସେହି ମିଠା ନିମନ୍ତେ ପ୍ରବଳ ଆକର୍ଷଣଟିଏ ସେହି ମୂଳରୁ ହିଁ ରୋପଣ କରି

ରଖିଛନ୍ତି । ଭୋକ ସିନା ତେଣେ ପେଟରେ ଯାଇ ଦେଇଛନ୍ତି, ମାତ୍ର ଏକାବେଳେକେ ଏହି ଦୁଆରମୁହଁରେ ରହିଥିବା ସର୍ବଦା ଓଦାସଡ଼ସଡ଼ ଜିହ୍ୱାଟା ମଧରେ ହିଁ ସେ ଯାବତୀୟ ଖାଦ୍ୟର ଆକର୍ଷଣକୁ ଭରି ରଖିଛନ୍ତି । ପାକସ୍ଥଳୀରେ ପହଞ୍ଚି ସିନା ମିଠା ଜିନିଷଟାର ବିଶେଷ ସ୍ୱାଦ ଅନ୍ୟ ଯାବତୀୟ ସ୍ୱାଦ ତଥା ରସ ସହିତ ଏକାଠି ମିଶି କୁଆଡ଼େ ଲୀନ ହୋଇ ଯାଉଥିବ, ମାତ୍ର ଜିଭ ଦରବାରର ଏହି ପ୍ରଥମ ବରଣିଟିର ବେଳରେ ତାହାର ଏକ ସ୍ୱତନ୍ତ୍ର କଦର ଅବଶ୍ୟ ରହିଛି । ତେଣୁ, ଏକ ସ୍ୱତନ୍ତ୍ର ଆକର୍ଷଣ ମଧ ରହିଛି । ସଚରାଚର ପୃଥିବୀଯାକର ପିଲାମାନେ ମିଠା ପ୍ରତି ବେଶୀ ଆକର୍ଷିତ ହୋଇଥାଆନ୍ତି । ଏବଂ, ତତ୍ତ୍ୱର କୌଣସି ଏକ ଖାସ୍ ମୀମାଂସା ଅନୁସାରେ ହୁଏତ ଏକଥା ମଧ କୁହାଗଲେ ମୋଟେ ଅସଙ୍ଗତ ବି ହେବ ନାହିଁ ଯେ, ଯେଉଁ ମଣିଷ ଭିତରେ ପ୍ରଥମ ଜୀବନର ସେହି ପିଲାଟି ଯେତେ ଅଧିକ ବୟସ ହେବା ପର୍ଯ୍ୟନ୍ତ ତଥାପି ବଞ୍ଚି ରହିଥାଏ, ସିଏ ଯେତେ ବେଶୀ ବଡ଼ ହୋଇ ଯାଉଥିଲେ ମଧ ମିଠାର ଲାଳସାଟି ତା' ଭିତରେ ତଥାପି ଜବରଦସ୍ତ ଏବଂ ଜୀବନ୍ତ ହୋଇ ରହିଥାଏ । ମଣିଷ ବୁଢ଼ା ହେବାଯାଏ ମଧ ତାକୁ ଛାଡ଼ିନଥାଏ ।

ତେଣୁ ମିଠା ପ୍ରତି ପିଲାମାନଙ୍କ ସମେତ ତୁମର ଆମର ଏକ ସ୍ୱଭାବଗତ ଦୁର୍ବଳତା ଯେ ଅବଶ୍ୟ ରହିବ, ସେହି କଥାଟିକୁ ବୁଝି ହେଉଛି । ମାତ୍ର, ଯା'ଭିତରେ escape କଥାଟିକୁ ଆଣି କାହିଁକି ଯୋଡ଼ି ଦିଆଯାଇଛି ? ମିଠା ପଦାର୍ଥ ଆମକୁ ପଳାୟନ କରିବାର ଏକ ସୁଯୋଗ ଆଣିଦିଏ, ଏହାର ପୁଣି କିଭଳି ବ୍ୟଞ୍ଜନାର୍ଥ ରହିଥିବ ? ହଁ ଭୁଲି ଯିବାଟାକୁ ଏକାଧିକ ଅର୍ଥପ୍ରସାରଣ ଦ୍ୱାରା ଏକ escape ବା ପଳାୟନ ବୋଲି ଅବଶ୍ୟ କୁହାଯାଇ ପାରିବ । ପିଲାମାନେ ମିଠା ଖାଇବାକୁ ପାଇଲେ ସତକୁ ସତ କେତେ କ'ଣ ଭୁଲି ନଯାଉଛନ୍ତି ! ପୃଥିବୀରେ ଭଳି ଭଳି ମିଷ୍ଟା ମନୋହରଣକାରୀ ପଦାର୍ଥ ରହିଛି ବୋଲି ସିନା ବାପାମାଆଙ୍କ ସମେତ ଅନ୍ୟ ବରିଷ୍ଠମାନେ ପିଲାମାନଙ୍କର ଅଡ଼ଟକୁ ଯଥାତଥା ସମ୍ଭାଳି ପାରୁଛନ୍ତି ! ଭୋକ ନକରୁଥିବା ସମୟରେ ପିଲାମାନେ ଖାଇବାକୁ ଅଡ଼ଟ କଲେ କିମ୍ବା ରାହା ବାହାରକଲେ ତାହାର ସୁନିଶ୍ଚିତ କାରଣଟାକୁ ପୂରା ଜାଣିଥିବା ପରି ମାଆମାନେ କିପରି ପିଲାମାନଙ୍କର ହାତରେ କିମ୍ବା ପାଟିରେ ମିଠା ଚିଜଟିଏ ଦେଇ ସେମାନଙ୍କୁ ପ୍ରସନ୍ନ ଓ ପ୍ରୀତ କରିପାରନ୍ତି, ସେସବୁ ଦେଖିଲେ ଆମକୁ କେତେ ନା କେତେ ବିଚିତ୍ର ଅବଶ୍ୟ ଲାଗିଥିବ । ସଂସାର ଖଟା ଲାଗେ ବୋଲି କେତେକ ମଣିଷଙ୍କୁ ସନ୍ନ୍ୟାସ ମିଠା ଲାଗେ । ଭଗବାନ୍ ମଧ କେଡ଼େ ମିଠା ଲଗାନ୍ତି । ଅନେକ ମଣିଷଙ୍କୁ ଘରେ ଖଟା ଲାଗେ, ତେଣୁ ଦାଣ୍ଡଟା କେତେକେଜାଣି ମିଠା ଲାଗେ । ସେମାନେ ଦିନତମାମ ଦାଣ୍ଡରେ ମାମଲତକାରୀ କରି ବୁଲନ୍ତି, ରାତିକୁ ଯାହା ଶୋଇବା ନିମନ୍ତେ ଘରକୁ ଆସନ୍ତି । ଶୋଇବା ଅବସ୍ଥାରେ ସ୍ୱପ୍ନଟା ଭିତରେ ମଧ ସେଇ ଦାଣ୍ଡଟାକୁ ହିଁ ଦେଖୁଥାନ୍ତି । ସୁଇଟ୍ ଏସ୍କେପ୍ ଦୋକାନରେ ଭଳି ଭଳି ଚକୋଲେଟ୍, ଭଳି ଭଳି ଆଇସ୍କ୍ରୀମ୍ ଏବଂ ଭଳି ଭଳି ଆହୁରି କେତେ କଅଣ । ସଂସାରଟାରେ ଖଟାଗୁଡ଼ାକରୁ ଘଡ଼ିଏ ବିସ୍ମରଣ ଲାଭ କରିପାରିବ ବୋଲି ସିନା ମଣିଷମାନେ

ମିଠାର ଢ଼େଣାଟି ଉପରେ ବସି ସତର ନିୟୁତ ଉଦ୍‌ଭାବନ କରି ସମ୍ମୁଖରେ ଆଣି ରଖି ଦେଇଛନ୍ତି ! ଏବଂ, ଏହି ଉଦ୍‌ଭାବନଗୁଡ଼ିକ କରିଥିବାରୁ ମଣିଷ ଅନେକ ସମୟରେ ନିଜକୁ ଭଗବାନଙ୍କର ସମକକ୍ଷ ବୋଲି ଭାବିପାରୁଛି । ମାତ୍ର, କୋଉ ଖଟାରୁ ଖସି ପଳାଇ ଯିବାର ମତଲବ ରଖି ସ୍ୱୟଂ ଭଗବାନ୍ ପୃଥିବୀରେ ଯେ ମିଠା ବୋଲି ସମ୍ପଦଟିଏ ସର୍ଜନା କରି ରଖିଛନ୍ତି, ତାହାର ଉତ୍ତର କିଏ ଦେଇପାରିବ କେଜାଣି ?

ଏଇ ଦୋକାନମାନେ ତ ଦୋକାନ ନୁହନ୍ତି, ବସ୍ତୁତ ଗୋଟିଏ ଗୋଟିଏ ଗନ୍ଧମାଦନ ପର୍ବତ । ସତେଅବା ଖାସ୍ ଏହି ଯୁଗର ହନୁମାନ୍‌ମାନଙ୍କ ପାଇଁ ଫନ୍ଦା ହୋଇ ରହିଛି ! ମହାବଳୀମାନେ ନଥିଲେ ଏସବୁ ଭିତରେ ପ୍ରବେଶ କରିବାକୁ କେହି କଦାପି ସାହସ କରିନଥାନ୍ତା । ସମ୍ଭବତଃ, ପ୍ରକୃତ ସତକଥାଟି ହେଉଛି, ମଣିଷମାନେ ଆପଣାକୁ ମହାବଳୀ କରି ତିଆରି କରି ଆଣିବା ସଙ୍ଗେ ସଙ୍ଗେ ଯାଇ ସେମାନଙ୍କର କାରବାର ଏବଂ ପ୍ରୀତି ସମ୍ପାଦନ ନିମନ୍ତେ ଏହି ଗନ୍ଧମାଦନ ଗୁଡ଼ିକର ଯୋଜନା କରିବା ଆବଶ୍ୟକ ପଡ଼ିଲା । ସାନ ସାନ ମୁଣ୍ଡିଆ ଓ ପାହାଡ଼ ହାରିଗଲେ ଏବଂ ହଟି ପଳାଇଗଲେ । କେବଳ ଗନ୍ଧମାଦନମାନେ ହିଁ ରହିଲେ । ପ୍ରଥମ କାଳରେ ମଣିଷ ବଡ଼ ଦୁର୍ବଳ ଥିଲା । ଦିନିଦିନିକିଆ ବଜେଟରେ ଜୀବନର ହିସାବ କରୁଥିଲା । ଆଜିର ଖାଇବା ସରିଗଲେ ଆଜିର ହାଣ୍ଡିଗୁଡ଼ିକୁ ଭାଙ୍ଗି ଦେଉଥିଲା । ପୁଣି କାଲିକୁ ଯାଇ କିଛି ରସଦ ଯୋଗାଡ଼ ହୋଇ ପାରିଲେ ତାହାରି ମାନିଆ ହାଣ୍ଡିକୁଣ୍ଡେଇ ଖୋଜି ବାହାରୁଥିଲା । ଦୁର୍ବଳରୁ ମଣିଷ କ୍ରମେ ବଳୀ ହେଲା, ବଳୀରୁ ମହାବଳୀ ହେଲା । ପୃଥିବୀର ଏହି ବୃହତ୍ ମିଉଜିଅମ୍‌ଟିରେ ସବୁ କାଳ ଏକାନ୍ତ ଯୁଗପତ୍ ଭାବରେ ରହିଥିବା ପରି ଏବେ ମଧ୍ୟ ସେଥିରେ ଦୁର୍ବଳ, ବଳୀ ଏବଂ ମହାବଳୀମାନେ ରହିଛନ୍ତି । ହତବଳ, ହୀନବଳ, ହୃତବଳ ଏବଂ ଶତବଳ ସମସ୍ତେ ରହିଛନ୍ତି ।ଶତବଳମାନେ ହିଁ ଗନ୍ଧମାଦନ ଗୁଡ଼ିକର ଅତ୍ୟାବଶ୍ୟକତାକୁ ଅନୁଭବ କରୁଛନ୍ତି । ଏବଂ, ଆହୁରି ଆନନ୍ଦର ବିଷୟ ଯେ, ହତବଳ ଏବଂ ଅଳ୍ପବଳମାନେ ଯୁଗେ ଯୁଗେ ନିଜର ପାଞ୍ଚ ମନ ତଥା ପଚିଶ ପ୍ରକୃତିକୁ ଏକତ୍ର କରି ପ୍ରାୟ ଏକ ଆଧ୍ୟାତ୍ମିକ ନିଷ୍ଠା ସହିତ ମହାବଳୀର ପାହିଆକୁ ଉଠିଯିବାକୁ ଚିରଦିନ ପ୍ରୟାସ କରି ଆସିଛନ୍ତି । ଆମର ଏହି ଆଧୁନିକ ଯୁଗରେ ସେହି ପ୍ରୟାସଟି ପ୍ରକୃତରେ ନାନା ବୈଜ୍ଞାନିକ ବୁଦ୍ଧିକୁ ଖଟା ହୋଇ କରାଯାଉଛି । ବିବର୍ଦ୍ଧନର ଆନନ୍ଦମୟ ଯୋଜନାରେ ପ୍ରାୟ ସମସ୍ତଙ୍କର ଧ୍ରୁବତାରାଟି ଏକାବେଳେକେ ସେହି ଗନ୍ଧମାଦନ ଉଚ୍ଚରେ ଆକାଶହାଣ୍ଡି ଭିତରେ ପଶି ଝୁଲୁଛି । ପୃଥିବୀରେ କ'ଣ ଶେଷକୁ କେବଳ ଏହି ଗନ୍ଧମାଦନମାନେ ହିଁ ରହିବେ ? ଅଣିମା ତଥା ଲଘିମା ଗୁଣ ବି ରହିଥିବା ସ୍ୱୟଂ ଭଗବାନ କ'ଣ କେବେ ହେଲେ ଏହି ପୃଥିବୀରେ ଏପରି ଗୋଟାଏ ଭେସରା ଐକାନ୍ତିକତାକୁ ଏକୁଟିଆ ଗାଦୀ ମାଡ଼ି ବସିବାକୁ ଛାଡ଼ିଦେବେ ? ପୃଥିବୀଲାଗି, ଆମ ଲାଗି ତୁମ ଲାଗି, ସେଇ ଏକା ସିନା ଯାହାକିଛି ଭରସା ହୋଇ ରହିଛନ୍ତି !

ଆମ ଘରପାଖ ଗନ୍ଧମାଦନଟିର ନାମ ହେଉଛି Safeway,- ଅର୍ଥଟି ଅନୁସାରେ ଏହି ବାଟଟି ସମ୍ପୂର୍ଣ୍ଣ ନିରାପଦ । ଆମେ ସପ୍ତାହକୁ ଅନ୍ତତଃ ଥରେ କି ଦୁଇଥର ସେଫଓଯେ

ଭିତରକୁ ଯାଉଥିଲୁ । ଅନତିଦୂରରେ ଆଉ ଗୋଟିଏ ଗନ୍ଧମାଦନର ନାମ ହେଉଚି Costco,- ସେଇଟି ଅଧିକ ବଡ଼ । ବାହାରୁ ନିବୁଜ ଦୁର୍ଗଟିଏ ପରି ଦେଖା ଯାଉଥିବ, ଏବଂ ଭିତରକୁ ଯିବାମାତ୍ରକେ ଆପଣଙ୍କର ସମ୍ମୁଖରେ ସମସ୍ତ ପୃଥିବୀଟା ପସରା ମେଲି ଆଁ କରି ଅନାଇଥିବା ପରି ମନେହେବ । ଚାଲନ୍ତୁ, ଆମେ ଆମ ସେଫ୍‌ଓଏ ଭିତରକୁ ଯିବା । କେତେବେଳେ ଆମେ ଯିବା, ତାହାର ଆଦୌ କୌଣସି କଟକଣା ନାହିଁ । କାରଣ, ଆମେରିକାରେ ଅଧିକାଂଶ ଗନ୍ଧମାଦନ ଦିନରାତି ଚବିଶିଘଣ୍ଟା ଖୋଲା ରହନ୍ତି । ବ୍ୟବସାୟ ଗ୍ରାହକବତ୍ସଳ ହୋଇ ଶିଖିଲେ ଏହିପରି ହୁଏ । ଗ୍ରାହକମାନେ ତ ବଡ଼ିସକାଳୁ କାମକୁ ଯିବେ, ହୁଏତ ସଞ୍ଜକୁ ଯାଇ ଘରକୁ ଫେରିବେ । ଦିନଯାକ ଘରେ କେହି ନଥିବେ । କାରଣ, ପିଲା ଥିଲା ଘରମାନଙ୍କରେ ପିଲାମାନେ ମଧ୍ୟ ସ୍କୁଲକୁ ଯାଇଥିବେ । ଆମେରିକାରେ ହପ୍ତାରେ ପାଞ୍ଚଦିନ କାମ, ଦୁଇଦିନ ଛୁଟି । ଛୁଟିର ଅର୍ଥ ପୂରାପୂରି ଛୁଟି । ତେଣୁ, ଶନିବାର ଓ ରବିବାରକୁ ଏସବୁ କର୍ମକଷଣ ରଖିଲେ ମୋଟେ ପୋଷାଇବନାହିଁ । ତେଣୁ, ରାତିରେ ହିଁ ବିଳମ୍ବିତ ରାତ୍ରିପ୍ରହର ମାନଙ୍କରେ ହିଁ ଘରସଉଦା ନିମନ୍ତେ ସମୟ ଦିଆଯାଇ ପାରିବ । ହଁ, ଆମେ ଆଗ ଗାଡ଼ୀ ରଖିବା ଜାଗାରେ ଗାଡ଼ୀଟିକୁ ରଖିବା । ସ୍ଥାନଟିର ଚାହିଦା ଅନୁସାରେ ପଟାଳି କଟାହୋଇ ଦୁଇଶହ ତିନିଶହ ମୋଟରଗାଡ଼ୀ ସକାଶେ ସ୍ଥାନ ଚିହ୍ନିତ କରି ଦିଆ ଯାଇଥିବ । ପ୍ରତ୍ୟେକ ଗାଡ଼ୀ କେତେ ସ୍ଥାନ ଅଧିକାର କରିବ, ସେହି ଅନୁସାରେ ଆପଣ ନିଜର ଗାଡ଼ୀଟିକୁ ଏକ ସୂଚିତ ସ୍ଥାନରେ ରଖିପାରିବେ । ଯଦି ଖାଲି ଥାନ ନଥିବ, ତେବେ ମଝିରେ ଅପେକ୍ଷା କରିବାକୁ ପଡ଼ିବ, ଅର୍ଥାତ୍ ଗାଡ଼ି ଅଟକାଇ ଗାଡ଼ି ପଛରେ ଥିବା ନାଲି ଆଲୁଅଟିକୁ ଫକଫକ କରିବାକୁ ହେବ । ସଉଦା ସାରି ଗନ୍ଧମାଦନ ଭିତରୁ କେହି ଜଣେ ବାହାରିବେ, ନିଜ ଗାଡ଼ୀଟିକୁ ବାହାର କରିବେ ଏବଂ ଫଳରେ ଜାଗାଟିଏ ଖାଲି ହେବ ଓ ଆମ ଅପେକ୍ଷାମାଣ ଗାଡ଼ୀଟିକୁ ଆମେ ସେହି ଖାଲି ଜାଗାଟିରେ ନେଇ ରଖିପାରିବା ।

ପରବର୍ତ୍ତୀ କାର୍ଯ୍ୟ ହେଉଛି, ଗନ୍ଧମାଦନରୁ ସରଞ୍ଜାମ ବୋହି ଆଣିବା ନିମନ୍ତେ ଆମେ ଦୁଇଚକିଆ ଗାଡୀଟିଏ ସଜିଲ କରି ନେଇଆସିବା । ସେମାନେ ସେଇଠି ସମ୍ପୂର୍ଣ୍ଣ ଅବିନ୍ୟସ୍ତ ଭାବରେ କେଉଁଠି ନା କେଉଁଠି ପଡ଼ି ରହିଥିବେ । କୌଣସି ବ୍ୟକ୍ତି ବା ପରିବାର ସେହିପରି ଗୋଟିଏ ଗାଡ଼ୀରେ ମହାବିପଣିରୁ ଖରଦି କରି ଆଣିଥିବା ସରଞ୍ଜାମଗୁଡ଼ିକୁ ଲଦି ଏହି ବାହାରଯାଏ ଆସିଥିବେ ଓ ନିଜ ଗାଡ଼ୀରେ ସେଗୁଡ଼ିକୁ ଲଦି ବୁହା ଗାଡ଼ୀଟିକୁ ସେଠାରେ ଛାଡ଼ିଦେଇ ଯାଇଥିବେ । ତେଣୁ କେତୋଟି ବଳକା ବୁହାଗାଡ଼ୀ ଆବଶ୍ୟକ କରୁଥିବା ଅନ୍ୟମାନଙ୍କ ପାଇଁ ପ୍ରାୟ ନିୟମତଃ ପଡ଼ି ରହିଥିବ । ଗାଡ଼ୀଟି ଧରି ଆପଣ ରାସ୍ତା ପାରି ହୋଇ ସେପାଖକୁ ଯିବେ ଓ ଆପଣ ଆସୁଛନ୍ତି ଜାଣି ଦୁଆରଟି ମନକୁ ମନ ଖୋଲିଯିବ । ମନେ ହେବ, ଆପଣଙ୍କୁ ସମ୍ମାନ ଦେଖାଇବାକୁ ଦୁଆରଟି ଏହିପରି ଆଚରଣ କଲା । ନାଇଁ, କେବଳ ଆପଣଙ୍କ ସକାଶେ ନୁହେଁ, ପ୍ରବେଶକାରୀ ପ୍ରତ୍ୟେକଙ୍କ ସକାଶେ ମଧ୍ୟ ସେହି ବିଧିଟିର ପୁନରାବୃତ୍ତି ହେଉଥିବ । ଗନ୍ଧମାଦନ ଭିତରେ ଆପଣ ଯାହା ଚାହିଁବେ,

ତାହା ପାଇବେ । ଦଶହଜାର କିସମର ପଦାର୍ଥ ଖୋଜୁଥିଲେ ଦଶହଜାର କିସମରୁ ମନଲାଖି ବାଛି କିଣିବାକୁ ଆପଣଙ୍କୁ ପଚାଶହଜାର ସାମାନ ମିଳିଯାଇ ପାରିବ । ଆମର ଆଜି କ'ଣସବୁ କିଣିବାକୁ ରହିଛି, ସେଇଟିକୁ ମନଭିତରେ ରଖି ଆମେ ନିର୍ଦ୍ଦିଷ୍ଟ ସରଣୀଟିଏ ଧରି ସେଇଆଡ଼େ ଯିବା ହିଁ ସ୍ୱାଭାବିକ । ଏଠି ସେଫ୍‌ଓୟେରେ ଖାଦ୍ୟପଦାର୍ଥ ହିଁ ଅଧିକ ପ୍ରଧାନ ଭାବରେ ବିକ୍ରୀ ହେଉଛି । ଉଭୟ ଟିଣ ଏବଂ ବୋତଲରେ ବନ୍ଦ ହୋଇ ରହିଥିବା ଖାଦ୍ୟପଦାର୍ଥ ଓ ସିଧା ବଗିଚାରୁ ଆସିଥିବା ପୂରା ଟଟକା ଖାଦ୍ୟପଦାର୍ଥ । ବୋତଲରେ ଆଚାର, ମହୁ, ଜାମ୍, ଜେଲି । ସଘନ ଶୀତତାପନିୟନ୍ତ୍ରଣ ଭିତରେ ମାଛ, ମାଂସ । କଟା ହୋଇ ସାରିଛି, ବଛା ହୋଇ ସାରିଛି । ମାଛ, ପକ୍ଷୀ ମାଂସ, ମେଷ ମାଂସ ଓ ଗୋମାଂସା, ସସ୍ ଅଛି, ସସେଜ୍ ଅଛି । ଅଣ୍ଡା ରହିଛି । କୋଉ ତାରିଖ ପର୍ଯ୍ୟନ୍ତ କାହାକୁ ବ୍ୟବହାର କରାଯାଇ ପାରିବ, ସେହି ତାରିଖ ସେଥିରେ ଲେଖାହୋଇ ରହିଛି । ସେଇଟାକୁ ମାନି ଚଳୁଥିବା ପର୍ଯ୍ୟନ୍ତ ଅସୁସ୍ଥ ହେବାର ଆଦୌ କୌଣସି ଆଶଙ୍କା ନାହିଁ । ପାଉଁରୁଟି ପଚାଶ ପ୍ରକାରର-ଯବରୁଟି, ମାଣ୍ଡିଆ ରୁଟି, ଗହମ ରୁଟି, ଗୋଟା ଗହମ ଅଟା ହୋଇ ତିଆରି କରା ଯାଉଥିବା ରୁଟି, ତୁଚ୍ଛା ମଇଦା'ର ପାଉଁରୁଟି, ଯାହାକୁ ଖାଇଲେ ଦାନ୍ତରେ ପୁଳାକୁ ପୁଳା ଲାଗି ଯାଉଥିବ ଓ ମୁଲାୟମ ଆନନ୍ଦ ଆଣି ଦେଇ ଯାଉଥିବ । କେକ୍‌ର ମଧ୍ୟ କିସମ ସୁମାରି କରାଯାଇ ପାରିବନାହିଁ । ସେଇଠି ଖାଇହେବ, ଘରକୁ ନେବାକୁ ହେଲେ ନିକ କରି ବାନ୍ଧି ଦିଆଯାଇ ପାରିବ ।

ପୂରା ଗୋଟିଏ ଧାଡ଼ୀ ହେଉଛି ଆଇସ୍ କ୍ରୀମ୍‌ର ମୁଦା ବାକ୍ସମାନ । କାଚ ପଟାଳି ପରି ବାକ୍ସ । କୋଉଟା କ'ଣ ବାହାରୁ ପଢ଼ାଯାଇ ପାରିବ । ଯୋଉଟା ଦେଖିବାକୁ ଇଚ୍ଛା କରିବ, ହେମାଳ ଭିତରୁ ସେଇଟାକୁ ଢ଼ାଙ୍କୁଣି ତଳୁ କାଢ଼ି ଦେଖାଯାଇ ପାରିବ । ମନ ହେଲେ କିଣିବ ନହେଲେ ନାହିଁ, ମାତ୍ର ଖାଲି ଦେଖିବାପାଇଁ ପ୍ରଚଣ୍ଡ ଓ ପରିପୂର୍ଣ୍ଣ ସ୍ୱାଧୀନତା କାହିଁକି ବା ନରହିବ । ଆସନ୍ତୁ ଆଜ୍ଞା, ଏଣେ ଏ ଧାଡ଼ୀକୁ ଆସନ୍ତୁ । ଚାଳିଶି କିସମର ବିସକୁଟ୍ ଏବଂ ପାଟିରେ ପକାଇବା ଭଳି ଆହୁରି କେତେ କଅଣ ଦ୍ରବ୍ୟ । କୋକୋ ବିସ୍‌କୁଟ୍, ମଝିରେ କେଶରୀ ରଙ୍ଗର ମିଠା ପିଠୋଉ ଦିଆ ଯାଇଥିବା ବିସ୍‌କୁଟ୍, କଫିର ବାସନା ଦେଉଥିବା ବିସ୍‌କୁଟ୍, ଖାରିଆ ବିସ୍‌କୁଟ୍, ଚିଜ୍ ବିସ୍‌କୁଟ୍ ଏବଂ ଆହୁରି କେତେ ଜାତିର । କଫି ଏବଂ ଚାହା ଏକାଧିକ ପ୍ରକାରର । ଏବଂ, ପୂରା ସେପାଖଟାଯାକ କ୍ଷୀର ଅର୍ଥାତ୍ ଗୋରସ୍ । ହୁଏତ କେତେ ବର୍ଷ ତଳେ ବୋତଲରେ ଭର୍ତ୍ତି ହୋଇ ବିକ୍ରୀ ହେଉଥିଲା । ଏବେ ତ ପେଟ୍ରୋଲ୍ ରହୁଥିବା ପାତ୍ର ପରି ବେକଭଙ୍ଗା ପ୍ଲାଷ୍ଟିକ୍‌ର ଏଡ଼େ ଏଡ଼େ ଏଡାମାନଙ୍କ ଭିତରେ ମୁଦା ହୋଇ ହେମାଳ ଭିତରେ ରହିଛି । କୋଉଟାକୁ କୋଉ ତାରିଖଯାଏ ନିଃଶଙ୍କଚିତ୍ତରେ ଘରେ ରଖି ବ୍ୟବହାର କରାଯାଇ ପାରିବ, ବୈଜ୍ଞାନିକମାନେ ନିରୂପଣ କରି ତାହା କହି ଦେଇଛନ୍ତି ଏବଂ ସେହି ତାରିଖଟି ଉପରେ ଲେଖାହୋଇଛି । ବଣା ହୋଇଯିବାର କୌଣସି କାରଣ ବା କାହିଁକି ରହିବ । କ୍ଷୀର ପରି ଦହି ମଧ୍ୟ ଭଳିକି ଭଳି । ଖଟା ଦହି, ମିଠା ଦହି, ବାଦାମ

ପଡ଼ିଥିବା ଦହି, ଚେରି, ଷ୍ଟ୍ରବେରୀ ଓ ଆହୁରି କେତେ କ'ଣ କଟାଫଳର ସୁଆଦ ମିଶିଥିବା ଦହି । ଏକାବେଳେକେ ଗରହାକମାନଙ୍କର ଦେହକୁ ସମ୍ମାନ ଦେଇ ତିଆରି ହୋଇଛି । କାହାର ବହୁମୂତ୍ର ରହିଥିବ, ତେଣୁ ତା' ପାଇଁ ଆଦୌ ଚର୍ବି ବା ସ୍ନେହସାର ନଥିବା କ୍ଷୀର ଓ ଦହି । କୋଉଟାରେ ପୂରା ସ୍ନେହସାର ରହିଛି, କୋଉଟାରୁ ପୂରା କାଢ଼ି ନିଆଯାଇଛି । କୋଉଟାରେ ଏତେ ପ୍ରତିଶତ ରହିଛି ତ ଆଉ କୋଉଟାରୁ ଏତେ ପ୍ରତିଶତ କାଢ଼ି ନିଆଯାଇଛି । ଆମେରିକାରେ ସମସ୍ତେ ପାଠ ପଢ଼ିଛନ୍ତି, କେହି ଜଣେ ହେଲେ ମୂର୍ଖ ନାହାନ୍ତି । ତେଣୁ ମାପି ଚୁପି ଜୀବନଟାକୁ ଭୋଗ କରି ପାରୁଛନ୍ତି ।

ଆଇସ୍‌କ୍ରୀମ୍‌ରୁ ଆପଣ ଯଦି ଗୋଟିଏ ବଡ଼ ଡ଼ବା କିଣିନେଇ ପାରିବେ,ତେବେ ତାକୁ ନିଜ ଘରେ ହେମାଳ ଭିତରେ ନେଇ ରଖିଦେଇ ପାରିବେ ଏବଂ ଏକାଦିକ୍ରମେ ବହୁଦିନ ଧରି ଖାଇପାରିବେ ଏବଂ ଖୁଆଇ ମଧ୍ୟ ପାରିବେ । ମଝିରେ କେତେ ଧାଡ଼ୀ ରୋଷେଇଘର ସରଞ୍ଜାମ ଭଳିକୁ ଭଳି ବିକ୍ରୀ ପାଇ ରହିଛି । ଏବଂ, ତଥାପି କାଳେ କେଉଁଠି କେଉଁ ପଦାର୍ଥ ଅଛି ବାହାର କରିବାରେ କେହି ଅସୁବିଧାରେ ପଡ଼ିଯିବେ, ସେଥିନିମନ୍ତେ ମୁଣ୍ଡଉପରେ ପୂରା ଆଖିରେ ପଡ଼ିବାଭଳି ଅଲଗା ଅଲଗା ଅଞ୍ଚଳଗୁଡ଼ିକୁ ସୂଚିତ କରିଦେଇ ପ୍ରାତଃଭୋଜନ, ମଧ୍ୟାହ୍ନଭୋଜନ ଏବଂ ରତ୍ରିଭୋଜନ ବୋଲି ଲେଖା ହୋଇ ଫଳକମାନ ଲଟକାଇ ଦିଆଯାଇଛି । ଆପଣ ଚମତ୍କାର ଭାବରେ ଲକ୍ଷ୍ୟ କରିପାରିବେ ଯେ, କେତେକ ବ୍ୟକ୍ତି ନିଜ ଗାଡ଼ୀରେ ଜିନିଷ ଭରି ବୁଲୁଛନ୍ତି ଏବଂ ସେମାନଙ୍କର ପାଟି ଚାଲୁଛି । ସାଙ୍ଗରେ ପିଲାମାନେ ଥିଲେ ତ କଥା ସରିଲା । ଜିନିଷ ଭରିବା ଆରମ୍ଭ କରିବା ଆଗରୁ ହିଁ ସେମାନଙ୍କ ମୁହଁ ପାଇଁ କୋକାକୋଲା କିମ୍ବା ଫଳରସର ପିମ୍ପାଟାଏ ଅବଶ୍ୟ ଧରାଇଦେବାକୁ ପଡ଼ିବ । ତା' ନହେଲେ ସେମାନେ ଭାରି ନିକିମା ଅନୁଭବ କରିବେ ଓ ଫଳରେ ତୁମ କାମ ସରିବାରେ ପ୍ରତିବନ୍ଧକ ହେବେ । ହଁ, ଦୁଆର ମୁହଁକୁ ଫୁଲ,- ଉଭୟ ପ୍ରକୃତିର ଫୁଲ ଓ ମଣିଷଦ୍ୱାରା ପ୍ଲାଷ୍ଟିକ୍‌ରୁ ତିଆରି କରା ଯାଇଥିବା ଫୁଲ, କୃତ୍ରିମଗୁଡ଼ିକ ମଧ୍ୟ ଆଦୌ କମ୍ ପ୍ରାକୃତିକ ଦେଖା ଯାଉନାହାନ୍ତି । ଘରେ ସଜାଇ ରଖିବା ନିମନ୍ତେ ବଡ଼ ବଡ଼ କୁଣ୍ଡରେ ଖାସ୍ କିସମର ଗୁଳ୍ମମାନ ବିକ୍ରୀ ହେଉଛି । ମନୁଷ୍ୟର ବୁଦ୍ଧିକୁ ଧନ୍ୟ କହିବାକୁ ହେବ, କୃତ୍ରିମ ଗଛର ପତ୍ରମାନେ ପ୍ରାକୃତିକ ଗଛର ପତ୍ରଗୁଚ୍ଛ ତୁଳନାରେ ଅଧିକ ସବୁଜ ଓ ଅଧିକ ଉଜ୍ଜ୍ୱଳ ଦେଖା ଯାଉଛନ୍ତି । ଅବଶ୍ୟ, ଏକଥା ସତ ଯେ, ପ୍ରାକୃତିକମାନଙ୍କର ଦାମ୍ ବେଶୀ, କୃତ୍ରିମମାନଙ୍କର ଦାମ୍ ବହୁତ ଊଣା ।

ସେଫ୍‌ଓୟେକୁ ଯାଇଥିବା ବେଳେ ଆମେ ସବାଆଗ ଯେଉଁ ବିଭାଗଟିକୁ ପ୍ରାୟ ସିଧା ଚାଲିଯାଉ, ଏହି ବିପଣି ବର୍ଣ୍ଣନାରେ ଆମେ ସବାଶେଷକୁ ସେହି ବିଭାଗଟିକୁ ଆସିବା । ସେଇଟି ହେଉଛି ଫଳ ଓ ପନିପରିବା ବିଭାଗ । ପୂରା ବିପଣିଟିରେ ଏହି ବିଭାଗଟି ପ୍ରାୟ ଚଉଠେ ଆକ୍ରାନ୍ତର ଜାଗା ଅଧିକାର କରି ରହିଛି । ମଝିରେ କେତୋଟି ଟେବୁଲ୍ ଉପରେ ଆମେ ଫଳ ଦେଖିବାକୁ ପାଇବା । ଋତୁଟା ଯାହା ହୋଇଥାଉ ସେଥିରେ କିଛି ବାଧା ନାହିଁ,

କିନ୍ତୁ ଆପଣଙ୍କୁ ସବୁ ଋତୁର ଫଳ ଅବଶ୍ୟ କିଣିବାପାଇଁ ମିଳିବ । ପ୍ରାୟ ପୃଥିବୀଯାକର ଫଳକିସମ ଏଇଠି ଆସି ଆପଣଙ୍କ ପାଇଁ ଥୁଆ ହୋଇ ରହିଥିବ । ସେଉ ନାସପାତି ଥିବ, କମଳାଲେମ୍ବୁ ଥିବ, ଅଙ୍ଗୁର ରହିଥିବ, ଫୁଟି ତରଭୁଜ ଓ ଖରଭୁଜ ମଧ୍ୟ ଜମା ହୋଇଥିବ । ପାଚିଲା କଦଳୀ ଏପରି ଭାବରେ ଗଦା ହୋଇଥିବ ଯେ, ଟେବୁଲ୍ ଉପରଟା ସତେଅବା ଗୋଟାଏ ଶଗଡ଼ର ଲୋଦର ପରି ଦେଖା ଯାଉଥିବ । ଏସବୁ ସେପାଖକୁ ବିଲାତି ବାଇଗଣ ଥିବ, ଅଦା ଥିବ, ପିଆଜ ଓ ଆଳୁ ରହିଥିବ । ଜାଲି ମୁଣାରେ ଭର୍ତ୍ତି ହୋଇଥିବ ଅଥବା ଖୋଲା ଜମା ହୋଇ ରହିଥିବ । ଦର ଅନୁସାରେ ଅଲଗା ହୋଇ ରହିଥିବ ଓ ଲିଖିତ ଦରକୁ ପଢ଼ି ଗରହାକମାନେ ଯୋଉଟିକୁ ଇଚ୍ଛା ସେଇଟିକୁ ନେଇ ମୁଣାରେ ଭରି ଗାଡ଼ୀରେ ବୋଝେଇ କରି ପାରୁଥିବେ । ପ୍ରତ୍ୟେକ ଟେବୁଲ୍‌ର କାଛରେ ଅଥବା ଆଉ କେଉଁଠି ହାତ ପାଇବାପରି ମୁଣ୍ଡ ଉପରେ ପଲିଥିନ୍ ମୁଣାଗୁଡ଼ିକ ରହିଥିବ ଯେ ଗରହାକମାନେ ନିଜ ଚାହିଦା ଅନୁସାରେ ସେଇଥିରୁ ଗୋଟାଏ ଗୋଟାଏ ଫାଡ଼ି ଆଣୁଥିବେ ଓ ଜିନିଷ ଭର୍ତ୍ତି କରି ସେଇଠି ମହଜୁଦ ରହିଥିବା ପ୍ଲାଷ୍ଟିକ୍ ଲଇରେ ମୋଡ଼ି ତାହାର ମୁହଁକୁ ବନ୍ଦ କରିଦେଇ ପାରୁଥିବେ । ହଁ, ଗୋଟିଏ ମୁଣାରେ ଗୋଟିଏ ଚିଜ ରଖିବେ । ଦୁଇଟା ବା ଅଧିକ ଚିଜକୁ ଏକତ୍ର ମିଶାଇବେ ନାହିଁ । ତା' ନହେଲେ ପଇସା ଦେବା ସମୟରେ ଓଜନ କରା ଯାଉଥିବା ଜାଗାରେ ଅସୁବିଧା ହେବ । ପ୍ରତ୍ୟେକ ପଦାର୍ଥର ଦାମ ଅଲଗା, ତେଣୁ ସେଗୁଡ଼ିକୁ ଅଲଗା ଓଜନ କରିବାକୁ ହିଁ ହେବ ।

ଆଳୁମାନେ ଗୋଟାଏ ଗୋଟାଏ ପାଏ ଓଜନ ହେବେ । ପିଆଜମାନେ ଗୋଟାଏ ଗୋଟାଏ ନଡ଼ିଆ ଆକାର ହୋଇଥିବ । ଏବଂ ଅଦାମାନେ ଗୋରା ମଣିଷଙ୍କର ଖୋଲା ପାପୁଲିରୁ ଚେନାଏ ପରି ଦିଶୁଥିବ । ରସୁଣମାନେ ଆକାରରେ ପିଆଜମାନଙ୍କ ସହିତ ଟକ୍କର ଦେବାରେ ଲାଗିଥିବେ । ହଁ, ଏଣିକି ଆମେ କାନ୍ଥ କଡ଼େ କଡ଼େ ପୂରା ପରିଧିଟାର ପରିକ୍ରମା କରିବା, ଯେଉଁଠାରେ ଶାଗ ଓ ପନିପରିବା ରଖାଯାଇଛି । ପାଳଙ୍ଗ ଶାଗ, ଧନିଆ ପତର, ଭ୍ରୃଷଙ୍ଗ ପତ୍ର, ଆହୁରି କେତେ କେତେ ଅନାମିକା ଶାଗ । ଭଳି ଭଳି ଲେଟୁସ୍ ଅର୍ଥାତ୍ ସାଲାଡ୍ ପତ୍ର, ଜହ୍ନି,ଭେଣ୍ଡି, କଖାରୁ, ବିନ୍, ଗାଜର୍, ବନ୍ଧାକୋବି, ଫୁଲକୋବି, ମୂଳା, ଲାଉ, ବାଇଗଣ ଓ ଆହୁରି କେତେ କଅଣ । ରଙ୍ଗ ଚକଚକ ବାଇଗଣମାନ ଓଟପକ୍ଷୀର ଅଣ୍ଡା ପରି ଏଡ଼େ ବଡ଼ ହୋଇଛନ୍ତି ଯେ ଇଂରାଜୀ ଭାଷାରେ ନିଜର Eggfruit ନାମଟିକୁ ସମ୍ପୂର୍ଣ୍ଣ ଭାବରେ ସାର୍ଥକ କରିଦେଉଛି । କଖାରୁମାନେ ଗର ହୋଇ ଜରି ଭିତରେ ଆଣ୍ଠୁ ହୋଇ ବନ୍ଧା ହୋଇଛନ୍ତି ଓ ଉପରୁ କ'ଣ ଅମୃତଭଣ୍ଡା ପରି ଟହଟହ ଦିଶୁଛନ୍ତି । ଲଙ୍କାମରିଚମାନ ଡ଼ାଲାମାନଙ୍କରେ କୋଠି କୋଠି ହୋଇ ଜମା ହୋଇ ରହିଛି । ତା' କଡ଼କୁ କିସମ କିସମ ଛତୁ । ଏବଂ, ସବୁକିଛି ଉପରେ ଭିତରୁ ଉଜ୍ଜ୍ୱଳ ଆଲୋକପାତ ଦ୍ୱାରା ଦିନଭଳି ଚକଚକ ଦେଖାଯାଉଛି । ପରିବାମାନେ ସତେଯେପରି ସାକ୍ଷାତ୍ ଇହାଦେ ବାଡ଼ୀରୁ

ତୋଳାହୋଇ ଆସିଛନ୍ତି । ସେଥିପାଇଁ ମଧ ବିଜ୍ଞାନନାମକ ବିଦ୍ଧାଣି ଅନୁରୂପ ବ୍ୟବସ୍ଥାଟିଏ କରିଦେଇଛି । ପାଞ୍ଚ ପାଞ୍ଚ ମିନିଟ୍ ଅନ୍ତରରେ ସେଇ ଭିତରୁ ସରବ ଭାବରେ ପାଣିଛିଟିକା ମାଡ଼ି ଆସୁଛି ଏବଂ ପରିବାଗୁଡ଼ିକ ଉପରେ ଶୀତଳ ବାଷ୍ପ ହୋଇ ବିଛାଇହୋଇ ଯାଉଛି । ଏହିପରି ଅନବରତ ସତେଜ ଦେଖାଯିବା ନିମନ୍ତେ ଅନବରତ ଊର୍ଦ୍ଧ୍ୱସ୍ନାନ ଲାଗିରହିଛି । ସବୁ ଭଗବାନଙ୍କର ଲୀଳା ପରି ଲାଗୁଛି । ସତେତ , ଶକ୍ତିମାନ୍ ମଣିଷକୁ ହିଁ ତ ଏକାଧିକ ଯୁକ୍ତି ସହିତ ଆମେ ଭଗବାନ ବୋଲି ବେଶ୍ କହିପାରିବା ।

ଅଧିକ ଅନୁଗତ ଖାଦ୍ୟ ରସିକଙ୍କ ବାସନାକୁ ଚରିତାର୍ଥ କରିବା ନିମନ୍ତେ ଖାଦ୍ୟପଦାର୍ଥର ଖାସ୍ ଖାସ୍ ବିପଣି ମଧ ରହିଛି । ଉଦାହରଣ ସ୍ୱରୂପ, ଗୋଟିଏ ମାଛ ଦୋକାନ, ଯେଉଁଠାକୁ ଆମେ ବେଶ୍ କେତେଥର ମାଛ ଆଣି ଯାଇଥିଲୁ । ଦୋକାନଟି ଚୀନାମାନଙ୍କର । ଚୀନାମାନଙ୍କ ଅପେକ୍ଷା ଖାଇବାର ମହିମାକୁ ଚିହ୍ନି ପାରିଥିବା ଓ ପୃଥିବୀବାସୀଙ୍କର ମାଛ ଖାଇବାର ଦୁର୍ବଳତାଟିକୁ ବୁଝି ପାରିଥିବା ଅଧିକ ପାରଙ୍ଗମ ଜାତି ହୁଏତ ଏହି ମହୀମଣ୍ଡଳରେ ଆଉ କେହିହେଲେ ନଥିବେ । ମାଛ, ଅର୍ଥାତ୍ ଉଭୟ ମଧୁର ପାଣି ଏବଂ ଲୁଣି ପାଣିରେ ମନୁଷ୍ୟମାନଙ୍କର ରସନାରଞ୍ଜନ ନିମନ୍ତେ ଭଗବାନଙ୍କ ଦ୍ୱାରା ମହଜୁଦ କରି ରଖା ଯାଇଥିବା ଭଳି ଭଳି ମତ୍ସ୍ୟ ବରଫ ଦିଆହୋଇ ରହିଛି, ଲୁଣ ମଡ଼ାହୋଇ ରହିଛି,- ଖାଲି ଧୂଆଁରଡ଼ରେ ସିଝି ସ୍ୱାଦିଷ୍ଟ ହୋଇ ରହିଥିବା ସାନ ଓ ମଧମ ଆକାରର ମାଛଗୁଡ଼ିକ, ଇତ୍ୟାଦି, ଇତ୍ୟାଦି । ଉପରର କାତି ଛଡ଼ାଇ ଦେଇ ସେଗୁଡ଼ିକୁ ଏପରି ଯାନ୍ତ୍ରିକ ନିଆଁରଡ଼ ଭିତରେ ନେଇ ପୂରାଇ ଦିଆଯାଇଛି ଯେ, ମଳିଚମଡ଼ାଟାକୁ ହାତରେ ଛଡ଼ାଇ ବାହାର କରିଦେବା ମାତ୍ରକେ ହିଁ ତୁମଲାଗି ଲୋଭନୀୟ ଆହାରଟି ପ୍ରସ୍ତୁତ ହୋଇଯିବ । କିମ୍ବା, ଆପଣ ଯଦି ଜୀଅନ୍ତା ମାଛ କିଣି ଆଣି ଘରେ ନିଜର ମରଜୀ ଅନୁସାରେ ରାନ୍ଧି ଖାଇବାକୁ ଇଚ୍ଛା କରୁଥିବେ, ତେବେ ଆପଣଙ୍କ ନିମନ୍ତେ ମଧ ସ୍ୱତନ୍ତ୍ରବ୍ୟବସ୍ଥା କରା ହୋଇଛି । ତାଳୁଏ ଉଚକୁ କାନ୍ଥମାନଙ୍କରେ କାଚର ଆୟତାକାର ପାତ୍ରଗୁଡ଼ିକୁ ପାଣିରେ ଭର୍ତ୍ତି କରି ରଖାଯାଇଛି । କ୍ଷଣ କ୍ଷଣକେ କଳକଳ ନାଦରେ ତାଜା ପାଣି ପଶିଯାଉଛି ତ ଏ କାନିରୁ ପୁରୁଣାପାଣି ନିଷ୍କାଶିତ ହୋଇ ଯାଉଛି । ସେହି ପାତ୍ରଗୁଡ଼ିକରେ ଜୀଅନ୍ତା ମାଛ ଭର୍ତ୍ତି ହୋଇ ରହିଛନ୍ତି । ଅଲଗା ଅଲଗା ଜାତିର ମାଛ ଅଲଗା ଅଲଗା ପାତ୍ର ମଣ୍ଡନ କରି ରହିଛନ୍ତି । ମନ ଆନନ୍ଦରେ ପହଁରୁଛନ୍ତି, ମନ ଆନନ୍ଦରେ ଗୋଡ଼ିଆଗୋଡ଼ି ହେଉଛନ୍ତି; ଏବଂ ଆଉ କେଉଁମାନଙ୍କୁ ଖୁସୀ ଲାଗୁଛି ତ ସେମାନେ ଘାଲେଇ ହୋଇ ପଡ଼ିଛନ୍ତି । ସତେ ଯେପରି କ'ଣ ଗୋଟିଏ ଚିନ୍ତାରେ ମଗ୍ନ ହୋଇ ରହିଛନ୍ତି । ସେମାନଙ୍କୁ କାହିଁକି ସେଠାରେ ଏତେ ଖିଦମତ କରି ରଖିଛନ୍ତି, ସେମାନେ ସେହି ବିଷୟରେ କୌଣସି ସୂଚନା ପାଇ ଯାଇଛନ୍ତି କି ? ଏମାନେ ଘାଲେଇ ପଡ଼ି ମଝିରେ ମଝିରେ ନିଃଶ୍ୱାସ ନେଉଛନ୍ତି, ପାଣି ଭୁରୁ ଭୁରୁ ହୋଇ ଉଠୁଛି ।

ଆପଣ କୋଉଟିକୁ କିଣିବେ, ସେଇଟିକୁ କେବଳ ଚିହ୍ନାଇଦେବେ, ଆୟଗଛରୁ ଆମ୍ବ ପାରିବାର ଖୁଣ୍ଟୁଣି ପରି ଗୋଟିଏ ନଗିକୁ ବଢ଼ାଇଦେଇ ସେଠାରେ ମହଜୁଦ ଥିବା ମଣିଷଟି ଆପଣଙ୍କ ପାଇଁ ଠିକ୍ ମାଛଟିକୁ ଖୁଣ୍ଟୁଣି ବଢ଼ାଇ ଧରିଆଣିବ । ଓଜନ କରିଦେଇ ଆପଣଙ୍କର ଫରମାସ ଅନୁସାରେ ବାଛିଦେବ, କାଟିଦେବ ଏବଂ ଆପଣ ଆହୁରି ଇଚ୍ଛା କରୁଥିଲେ ସେଇଠି ହୁତୁ ହୁତୁ ହୋଇ ଜଳୁଥିବା ଚୂଲୀ ଉପରେ ବସିଥିବା ତେଲ କଡ଼ାଇରେ ଭାଜି ବି ଦେବ । ଚିଲିକା ଭିତରୁ ଛଣା ହୋଇ ଜରିରେ ଗରମ ଗରମ ବନ୍ଧା ହୋଇ ଆପଣଙ୍କର ସ୍ୱତ୍ୱରେ ପରିଣତ ହେବାଲାଗି ମାଛଟିକୁ ପାଞ୍ଚ ମିନିଟରୁ ମଧ୍ୟ ଅଧିକ ସମୟ ଲାଗିବନାହିଁ । ଆପଣ ପଇସା ଦେବେ ଓ ନିଜର ସମ୍ପତ୍ତିଟିକୁ ଧରି ପ୍ରସନ୍ନ ଏବଂ ପରିପୂର୍ଣ୍ଣ ମୁଦ୍ରାରେ ସେଠାରୁ ବିଦାୟ ନେଇ ବାହାରି ଆସିବେ । ମାଛ ବ୍ୟତୀତ ସେହି ସୃଷ୍ଟିର ଆଉ ଯେତେ ଯାହା ଭୋଜ୍ୟଦ୍ରବ୍ୟ ପ୍ରତି ଆପଣଙ୍କର ଯଦି ସଉକ ରହିଥିବ, ସେଗୁଡ଼ିକ ମଧ୍ୟ ଆପଣଙ୍କ ନିମନ୍ତେ ଅଲବତ ଉପଲବ୍ଧ ହୋଇପାରିବ । ଆପଣ କଇଁଛ, ଗେଣ୍ଡା ଓ ସାମୁକା ମଧ୍ୟ ପାଇପାରିବେ । ଆଉ କୌଣସି ଜଳଭର୍ତ୍ତି ସ୍ଫଟିକ ଭାଣ୍ଡରେ କୋଚିଆମାନେ ମଧ୍ୟ ପହଁରୁଥିବେ ଏବଂ ଭାଣ୍ଡଟି ଭିତରେ ଚକଚକ କରୁଥିବା ଆଲୋକଟି ଯୋଗୁ କେଡ଼େ ଉଜ୍ଜ୍ୱଳ ଦେଖା ଯାଉଥିବେ । ଖାଇବାଟା ଯେ କେବଳ ଉଦରଭରଣ ଆଦୌ ନୁହେଁ, ଅଥବା, ଉଦରଟା ଭରିବାପାଇଁ ହିଁ ସଂସାରରେ ଏହି ଖାଦ୍ୟ ଖାଦକର ଲୀଳା ସର୍ବପ୍ରଥମେ ଆରମ୍ଭ ହୋଇଥିଲେ ମଧ୍ୟ ସଭ୍ୟ ଏବଂ ସମ୍ପନ୍ନ ମନୁଷ୍ୟର ବହୁ ସର୍ଜନାତ୍ମକ କଳ୍ପନାର ଘଷାମଜା ଦ୍ୱାରା ତାହା ଯେ କାଳକ୍ରମେ କିପରି ଏକ ସଂସ୍କୃତିରେ ପରିଣତ ହୋଇ ସାରିଲାଣି, ଆପଣ ଏକଥା ଯେତିକି ଭାବିବେ, ସେତିକି ଖୁସୀ ଅଲବତ ହେବେ ।

ଉପଭୋକ୍ତାର ଭୂମିକାରେ ମନୁଷ୍ୟର ଏହି ଯେଉଁ ବିଶେଷ ଜୀବନଟି ବା ପରିଚୟଟି,- ଏହାର ସମ୍ଭବତଃ ଆଦୌ କୌଣସି ଶେଷଗାର କେଉଁଠିହେଲେ ନାହିଁ । ଆମେରିକାର ଦୋକାନଗୁଡ଼ିକ ହିଁ ଆପଣଙ୍କୁ ଯାବତୀୟ ସିଦ୍ଧାନ୍ତ ତଥା ଅନୁସିଦ୍ଧାନ୍ତ ସହିତ ଯାଉଣୁ ଆସୁଣୁ ତାହା ପ୍ରତିପାଦିତ କରିଦେବାରେ ଲାଗିଥିବ । ପିଲାଦିନେ ମୁଁ ବୋଉ ପାଖରେ 'ଅଳଙ୍କାରବୋଲି' ନାମକ ଗୋଟିଏ ବହି ସହିତ 'ବଜାରବୋଲି' ବୋଲି ଆଉଗୋଟିଏ ଚଟି ବହି ବି ସର୍ବଦା ଦେଖୁଥିଲି । ବୋଉର ଝିଅ ଅମଳରେ ବଜାର କୋଉଠି କ'ଣ ଥିଲା ଯେ ବହିଟା ମୋଟା ହେବାଭଳି ବର୍ଣ୍ଣନାମାନେ ସେଥିରେ ସ୍ଥାନ ପାଇ ପାରିଥାନ୍ତେ ! ପିଲାଦିନେ ଯେତେବେଳେ ଆମ ଗାଆଁକୁ ନୂଆ ହୋଇ ଗ୍ରାମୋଫୋନ୍ ବାଜା ଆସି ପହଞ୍ଚିଲା, ସେତେବେଳେ ତାହାରି ମାଧ୍ୟମରେ ଆମେ ''କେତେ ରଙ୍ଗେ ସଜାଇଛୁ ମାଆ ଏ ବଜାର'' ବୋଲି ଗୋଟିଏ ଗୀତକୁ ବହୁତ ଥର ଶୁଣିଛୁ । ଏଠି ଏହି ସଂସାରରେ ବଜାରଟା ଏତେ ରଙ୍ଗରେ ସଜାହୋଇ ରହିଥିବାର ବାହାଦୁରୀଟା ପ୍ରକୃତରେ ଯେ କାହାର, ସେକଥା ଗୀତିକାର ଆଦୌ ବୁଝି ପାରୁନଥିଲେ ବୋଲି ସେହି ଗୀତଟି ଦ୍ୱାରା କହିବାକୁ ଚେଷ୍ଟା କରିଥିଲେ । ଆମେରିକାରେ ଯେ ଏତେ ଭଳି ବଜାରମାନ ରହିଛି,

ତାକୁ ଦେଖିଲେ ଆଖି ବୁଜିକରି ମଧ୍ୟ ତାହା ମଣିଷର ହିଁ ଏକ ବାହାଦୁରୀ ବୋଲି କୁହାଯାଇ ପାରିବ । ମଣିଷର ବାହାଦୁରୀ, ମଣିଷ ପାଇଁ ବାହାଦୁରୀ ଏବଂ ମଣିଷ ଦ୍ୱାରା ମଧ୍ୟ ବାହାଦୁରୀ । ଏତେଗୁଡ଼ାଏ ଟିକିନିଖି ଭିତରେ ପଶି ଏହି ପଣ୍ୟକୁଞ୍ଜଗୁଡ଼ିକୁ ସମ୍ଭବ କରିବା ନିମନ୍ତେ ଭଗବାନଙ୍କର ହୁଏତ ଆଦୌ ସମୟ ହୋଇନଥାନ୍ତା । ତେଣୁ, ନିଜ ସଂସାରଟିକୁ ମନୋମତ ସୁନ୍ଦର ତଥା ସୁଖସାଧକ କରି ତିଆରି କରିବାର ଦାୟିତ୍ୱଟିକୁ ଆଧୁନିକ ମନୁଷ୍ୟ ଯେଉଁଦିନ ଭଗବାନଙ୍କ ଠାରୁ ନିଜହାତକୁ ନେଲା, ଭଗବାନ ସେଦିନ ନିଶ୍ଚୟ ଖୁବ୍ ଖୁସୀ ହୋଇଥିବେ । ନିଜର ଭାଗ୍ୟଲାଗି ମଣିଷମାନେ ତାଙ୍କ ଉପରେ ଏତେଗୁଡ଼ାଏ ନିର୍ଭର କରନ୍ତୁ, ଏହି କଥାଟା ଭଗବାନଙ୍କୁ ଆଦୌ ପସନ୍ଦ ହେଉନଥିବ । ଅଥବା, ହୁଏତ ଏପରିବି କହିହେବ ଯେ, ଯେଉଁଠାରେ ଭଗବାନ ନାମକ କଳ୍ପନାଟି ଯେତେ ଅଧିକ ପୋଖତ ବା ପରିପକ୍ୱ ହୋଇଥାଏ, ସେଠାରେ ମଣିଷମାନେ ମଧ୍ୟ ନିଜକୁ ସେହିପରି ପୋଖତ ବୋଲି ଉପଲବ୍ଧି କରି ପାରନ୍ତି ଓ ଆଗରୁ ଭଗବାନଙ୍କ ମୁଣ୍ଡ ଉପରେ ଲଦାହୋଇ ରହି ଆସିଥିବା କିଛି ବୋଝକୁ ନିଜ ମୁଣ୍ଡକୁ ସ୍ୱେଚ୍ଛାରେ ନେଇ ଭଗବାନଙ୍କର କାର୍ଯ୍ୟକୁ କିଞ୍ଚିତ୍ ହାଲୁକା କରି ଦେଇଥାନ୍ତି । ସେମାନେ ଭଗବାନଙ୍କୁ ତାଙ୍କ ଯୋଗ୍ୟ ଆଉ ଆଉ କାମ ନିମନ୍ତେ ଏହାଦ୍ୱାରା ନିଶ୍ଚୟ ଅଧିକା ସମୟ ଯୋଗାଇ ଦିଅନ୍ତି । ସହଯୋଗୀ ହୁଅନ୍ତି ।

ମଣିଷର ଜୀବନ ପୂର୍ବେ ବହୁତ ସରଳ ଥିଲା ଓ କାଳକ୍ରମେ ଅଧିକରୁ ଅଧିକ ଜଟିଳ ହେଲା । ସ୍ୱୟଂ ମଣିଷ ହୋଇ ମଧ୍ୟ ଯେଉଁମାନେ ବେଳେ ବେଳେ ମଣିଷମାନଙ୍କ ନାମରେ ଏହି ଅପବାଦଟି ଦେଇଥାନ୍ତି, ସେମାନେ ସତେଯେପରି ଭାରି ଉପର ଠାଉରିଆ ଭାବରେ କଥାଟିକୁ ଭାବୁଥାନ୍ତି । ବ୍ୟକ୍ତିଗତ ତଥା ସାମୂହିକ ଚେତନାରେ କ୍ରମେ ଆଗକୁ ଆଗକୁ ଗତି କରିଥିବା ସଙ୍ଗେ ସଙ୍ଗେ ମନୁଷ୍ୟଜୀବନର ପ୍ରସ୍ଥଗୁଡ଼ିକ ମଧ୍ୟ ବଢ଼ି ବଢ଼ି ଯାଇଛି ଓ ସେହି ଅନୁସାରେ ତା'ର ପ୍ରୟୋଜନର ପରିଧିମାନେ ମଧ୍ୟ ବୃଦ୍ଧିଲାଭ କରିଛନ୍ତି । ମଣିଷ ଜାଣି ଜାଣି କେବେହେଲେ କୋଉ ଗାତ ଭିତରକୁ ଗୋଡ଼ ଖସାଇ ଦେଇନାହିଁ, ବରଂ ସିଏ ଜାଣି ଜାଣି ଅଧିକତର ଦିଗକୁ ଏବଂ ଅଧିକତର ଆଗକୁ ନିଜ ଚେତନାର, ନିଜ ଅନୁରାଗର ତଥା ନିଜ ଜୀବନାଭିପ୍ରାୟ ଗୁଡ଼ିକର ହାତଗୋଡ଼ ଗୁଡ଼ିକୁ ଅଧିକରୁ ଅଧିକ ବଢ଼ାଇ ଦେବାରେ ଆଗ୍ରହୀ ହୋଇଛି ଏବଂ ତାହାରି ଫଳରେ ତା' ବାହ୍ୟ ପୃଥିବୀଟି ମଧ୍ୟ ବହୁପ୍ରସାରିତ ଓ ବହୁପରିପୂର୍ଣ୍ଣ ହେବାରେ ଲାଗିଛି । ତଥାପି ଯେ କେତେ ମଣିଷଙ୍କର ଗୋଡ଼ ଖସିଛି, ଛୋପରା ହେଲାପରି ମାର୍ଗଚ୍ୟୁତି ଘଟିଛି, ତାହାର କାରଣକୁ ଆମେ ଦ୍ରବ୍ୟଗୁଡ଼ିକର ବୃଦ୍ଧିସାଧନରେ ନୁହେଁ, ସମ୍ଭବତଃ ଅନ୍ୟତ୍ର ଅନ୍ୱେଷଣ କରି ଯାଇପାରିବା ଏବଂ କିଛି ସମୀଚୀନ ସମାଧାନ ପାଇ ବି ପାରିବା । ଆମେରିକାକୁ ଆସିଲେ ଏବଂ ଏଠିକାର ବିପଣିଗୁଡ଼ିକର ବିପଞ୍ଜି ଭିତରେ ଏହି ଭୂଖଣ୍ଡଟିର ମନୁଷ୍ୟମାନଙ୍କୁ ମିତ୍ରବତ୍ ଲକ୍ଷ୍ୟ କରି ଦେଖିଲେ ଏହି କଥାଟି ଭାରି ଗ୍ରନ୍ଥିମୁକ୍ତ ଭାବରେ ଅନୁଭବ କରି ହୋଇଥାଏ । ବାର ବାର ରୋଷେଇଘର ଭିତରେ ପଶୁଥିଲେ ଯଦି କୌଣସି ମନୁଷ୍ୟ ସେହି କାରଣରୁ ହିଁ ଖାଇବା

ବିଷୟରେ ଆଦୌ ଟକଳା ହୋଇ ଯାଏନାହିଁ, ତେବେ ଏଠାରେ ବିପଣିଗୁଡ଼ିକର କଳାକୁଞ୍ଜ ଭିତରେ ଏତେ ସମୟ ନହରପହର ହେଉଥିବା ମଣିଷଟିଏ ସେହି କାରଣରୁ ହିଁ କାହିଁକି ଦ୍ରବ୍ୟଟକଳା ହୋଇଯିବ, ସେପରି ଅନୁମାନ କାହିଁକି କରାଯିବ ?

ପୋଷାକ ଦୋକାନରେ ପୋଷାକ, ଜୋତା ଦୋକାନରେ ଜୋତା, ଗହଣା ଦୋକାନରେ ଗହଣା ଏବଂ ଖେଳନାର ଦୋକାନରେ ଖେଳନା । ପୁନଶ୍ଚ, ଏପରି ଗୋଟିଏ ଗୋଟିଏ ବିପଣି ରହିଛି, ଯେଉଁଠାରେ ଉତ୍ପାଦନକାରୀ ଗୋଟିଏ କୋମ୍ପାନୀ ନିଜର ଜିନିଷଗୁଡ଼ିକୁ ଏକାଠି ଠୁଳ କରି ରଖିଛି । ସେଠାକୁ କଷ୍ଟସ୍ୱୀକାର କରି ଗଲେ ଆପଣ ସରଞ୍ଜାମର ସମୁଦ୍ର ମଧ୍ୟରୁ ନିଜେ ଚାହୁଁଥିବା ସରଞ୍ଜାମଟିକୁ ଅଧିକ ସ୍ୱଚ୍ଛନ୍ଦ ଭାବରେ ବାଛି ଆଣି ପାରିବେ ଏବଂ କିଞ୍ଚିତ୍ ଶସ୍ତାରେ ମଧ୍ୟ ସେଇଟିକୁ ପାଇ ପାରିବେ । ଅନେକ ସମୟରେ ଲକ୍ଷ୍ୟ କରିହୁଏ ଯେ, ଆଦୌ କିଛି କିଣିବାର ନଥିଲେ ମଧ୍ୟ ବହୁତ ବ୍ୟକ୍ତି ବିପଣିଗୁଡ଼ିକର ଅଞ୍ଚଳକୁ ମାଡ଼ି ଯାଆନ୍ତି । ବୁଲନ୍ତି, ଦେଖନ୍ତି, ନୟନ ତୃପ୍ତ କରନ୍ତି । କେଉଁ ବିପଣିକୁ କ'ଣ ସବୁ ଖାସ୍ ପଦାର୍ଥ ଆସିଛି, ସେଗୁଡ଼ିକର ବିଜ୍ଞାପନ ସ୍ଥାନୀୟ ଖବରକାଗଜ ମାନଙ୍କରେ ବାହାରେ । ଖବରକାଗଜ ଗୁଡ଼ିକୁ ଦେଖିଲେ ମନେହୁଏ, ସତେଅବା ବିପଣିଗୁଡ଼ିକର ଚଳନ୍ତି ସ୍ଥିତିଟି ବିଷୟରେ ବାରତାମାନ ଦେବାକୁ ହିଁ ସେଗୁଡ଼ିକ ଏତେ ଏତେ ଫର୍ଦ୍ଦରେ ପ୍ରକାଶିତ ହୁଅନ୍ତି । ବଳଦିଆ ଭାବରେ ଅନୁପାତ ପକାଇ କହିଲେ, ଦୈନିକ ଖବରକାଗଜ ଗୁଡ଼ିକରେ ଅଶୀ ପ୍ରତିଶତ ଥାନ ବିଜ୍ଞାପନ ଲାଗି , ଦଶ ପ୍ରତିଶତ ନୟନଲୋଭା ଛବିଗୁଡ଼ିକ ଲାଗି ବ୍ୟବହୃତ ହୋଇଥାଏ । ତା'ପରେ ବାକୀ ଯେଉଁ କେତେ ଚାଖଣ୍ଡ ବା କେତେ ପଦ ଜାଗା ରହିଲା, ସେଥିରେ ଚାଞ୍ଚଲ୍ୟ ସୃଷ୍ଟି କରୁଥିବା ସ୍ଥାନୀୟ କେତୋଟି ଖବର ଏବଂ ତା'ପରେ ଯାଇ ସତେଅବା ପୃଥବୀଟାଏ ଅଛି ବୋଲି ଦୟା ଦେଖାଇ ସ୍ୱୀକାର କରୁଥିବା ଭଳି ବୃହତ୍ତର ପୃଥିବୀର କିଛି କିଛି ସମ୍ବାଦ । ସବୁରି ଘରେ ତ ଦୂରଦର୍ଶନ ଖଞ୍ଜା ହୋଇଛି ଓ ତେଣୁ ସେଇଥିରୁ ହିଁ ଦୂର ଓ ନିକଟର ଯାବତୀୟ ଖବର ଆସି ଘରେ ପହଞ୍ଚି ଯାଉଛି । ତେଣୁ, ଖବରକାଗଜ ଆଉ ଅଧିକା କ'ଣ କହିବ ? ତେଣୁ, ବିପଣିମାନଙ୍କର ତାଜା ସ୍ଥିତି ବିଷୟରେ ଓ୍ୱାକିବ୍‌ହାଲ୍ ହେବାଲାଗି ଖବରକାଗଜରୁ ବିଜ୍ଞାପନଗୁଡ଼ିକୁ ଦେଖିବାକୁ ପଡ଼ିଥାଏ ।

ମଝିରେ ମଝିରେ ଉପଭୋକ୍ତା ମାନଙ୍କର ଆନନ୍ଦବର୍ଦ୍ଧନ କରାଇ ସରଞ୍ଜାମମାନଙ୍କର ମୂଲ୍ୟରେ ରିହାତି ଓ ବିଶେଷ ରିହାତି ମଧ୍ୟ ପ୍ରଦାନ କରା ଯାଇଥାଏ । ଏସବୁ ରୀତି ତ ଏବେ ଆମ ଦେଶକୁ ଓ ଆମ ସହରମାନଙ୍କୁ ମଧ୍ୟ ଆସିଲାଣି । ମାତ୍ର, ଏହି ରୀତିଟି ସେହି ଇଉରୋପରେ ବା ଆମେରିକାରେ ନିଶ୍ଚୟ ଜନ୍ମଗ୍ରହଣ କରିଛି । ରିହାତି ମୂଲ୍ୟରେ ବିକ୍ରୀର ପରମ୍ପରାଟି ନାନାଭଳି ବାହାନରେ ଲାଗୁ ହୋଇ ଯାଇପାରେ । ରିହାତି ନିମନ୍ତେ ଏକ ନିର୍ଦ୍ଦିଷ୍ଟ ଅବଧି ମଧ୍ୟ ନିର୍ଦ୍ଦିଷ୍ଟ କରି ଦିଆ ଯାଇଥାଏ । ସେହିସବୁ ବିଷୟରେ ନିର୍ଭୁଲ ଭାବରେ ଅବଗତ ହେବାପାଇଁ ଖବରକାଗଜର ସାହାଯ୍ୟ ଗ୍ରହଣ କରିବାକୁ ହୁଏ । ସେତିକିବେଳେ ଦୋକାନମାନଙ୍କର ଭିଡ଼ ଦେଖିଲେ ପ୍ରକୃତରେ ଅବାକ୍ ହେବାକୁ ହୋଇଥାଏ । ମନେହୁଏ,

ସତେଯେପରି କାହାରି କିଛି ଅନ୍ୟ କାମ ନାହିଁ ବୋଲି ସମସ୍ତେ ଆସି ଏହି ବିପଣିମାନଙ୍କରେ ଭିଡ଼ ଜମାଇ ଦେଇଛନ୍ତି । ସେମାନେ ନିଜନିଜର କର୍ମସ୍ଥାନରୁ ଫାଙ୍କି ଦେଇ ଲୁଚି କରି ପଳାଇ ଆସିନାହାନ୍ତି ତ । ଏସବୁ ଘଟିବାର ଆଦୌ କୌଣସି ଆଶଙ୍କା ନଥାଏ । ତେଣୁ, ସମସ୍ତେ ମନଆନନ୍ଦରେ ବଡ଼ ହାଲୁକା ହୋଇ ବୁଲୁଥାନ୍ତି, ଭାରି ହାଲୁକା ହୋଇ ଅବସର ବିନୋଦନରେ ଆସିଥାଆନ୍ତି । ଅନେକେ ପିଲାମାନଙ୍କୁ ସାଙ୍ଗରେ ନେଇ ଆସିଥାନ୍ତି । ବିପଣି ବାହାରର ରାସ୍ତା ଏବଂ ଅଙ୍ଗନଗୁଡ଼ିକ ସେହିମାନଙ୍କର କ୍ରୀଡ଼ା ଏବଂ ଧାଇଁବାରେ ମୁଖରିତ ହୋଇ ରହିଥାଏ । ମଝିରେ ମଝିରେ ବସିବାର ଜାଗା ଥାଏ । ପିଲାମାନେ ହାଲିଆ ହେଲେ ସେଇଠି କ୍ଷଣେ ବସି ବି ଯାଆନ୍ତି ଓ ପିତାମାତା କେଉଁଠାରେ ଅର୍ଥାତ୍ କେଉଁ ଦୋକାନରେ ପଶିଛନ୍ତି କିମ୍ବା କେଉଁ ଦୋକାନରୁ ବାହାରୁଛନ୍ତି, ସେହି ଅନୁସାରେ ନିଜ କ୍ରୀଡ଼ାର କକ୍ଷପଥ ନିର୍ଦ୍ଧାରଣ କରୁଥାନ୍ତି । ରକ୍ଷା ହୋଇଛି, ଆମେରିକାରେ ଖାସ୍ ଦୋକାନଗୁଡ଼ିକ ରାସ୍ତାକଡ଼ରେ ନଥାନ୍ତି । ସେମାନେ ଖାସ୍ ପ୍ରାଙ୍ଗଣମାନଙ୍କରେ ଅତ୍ୟନ୍ତ ସୁଯୋଜିତ ଭାବରେ ରହିଥାନ୍ତି । ସମ୍ଭବତଃ ଏହି କ୍ଷେତ୍ରରେ ଆଞ୍ଚଳିକ ପାର୍ଥକ୍ୟମାନ ଅବଶ୍ୟ ରହିଥିବ । ଅର୍ଥାତ୍, ଯେଉଁସବୁ ରାଜ୍ୟାଞ୍ଚଳ ସେହି ପୁରୁଣା ନକ୍ସାଗୁଡ଼ିକରେ ତିଆରି ହୋଇଥିବା ଦୋକାନଗୁଡ଼ିକୁ ଏବେ ମଧ୍ୟ ବଦଳାଇ ନାହିଁ, ସେଠାରେ ଦୋକାନମାନେ ରାସ୍ତାକଡ଼ରେ ଅଛନ୍ତି । ମାତ୍ର, ଯେଉଁସବୁ ଥାନରେ ଆଧୁନିକତମ ଢ଼ାଞ୍ଚାରେ ଆଗର ଧାରାଗୁଡ଼ିକ ବଦଳି ଗଲାଣି, ସେଠାରେ ବିପଣିଗୁଡ଼ିକୁ ରାସ୍ତା ପାଖରୁ ଘୁଞ୍ଚାଇ ନେଇ ଏକାଠି ଠୁଳ କରି ରଖାଯାଇଛି । ଗରହାକ, ବିକ୍ରେତା ଓ ଏପରିକି ପିଲାମାନଙ୍କ ନିମନ୍ତେ ତାହା ଏକ ଅଧିକ ସୁଖର ପରିବେଶ ସୃଷ୍ଟି କରି ରଖିଛି । ଅଧିକ ଘଟଣ ବି ଦେଖାଯାଉଛି ।

ଗୋଟିଏ ଗୋଟିଏ ଦୋକାନ ଅଛି, ଯେଉଁଠାରେ କି ଆପଣ ଯାହାକିଛି କିଣିବେ, ତାହାର ମୂଲ୍ୟ ହିସାବରେ ଆପଣଙ୍କୁ ମୋଟେ ଅଠାନବେ ସେଣ୍ଟ୍ ଦେବାକୁ ପଡ଼ିବ । ମାତ୍ର, ସାବଧାନ, ଆପଣ ଏହି ଦୋକାନଗୁଡ଼ିକୁ କଦାପି ଶସ୍ତାରୁ ହୀନସ୍ତାର ଦୋକାନ ବୋଲି କହିବେନାହିଁଟି ! ଶସ୍ତା ନିଶ୍ଚୟ, ମାତ୍ର ହୀନସ୍ତା ଆଦୌ ନୁହେଁ । କାରଣ କେହି ଆପଣଙ୍କୁ ଶସ୍ତାର ପ୍ରଲୋଭନ ଦେଖାଇ ଆଦୌ ହୀନସ୍ତାରେ ପକାଇବାର ମତଲବରେ ଏପରି ଦୋକାନଟିଏ ମୋଟେ ବସାଇନାହିଁ । ଅବଶ୍ୟ ଏକଥା ସତ ଯେ ଏହିସବୁ ଅଠାନବେବୋଲା ଦୋକାନ ଭିତରକୁ ପଶିଗଲା କ୍ଷଣି ମୋଟେ ଉଜ୍ଜ୍ୱଳ ଆଲୋକରେ ଆପଣଙ୍କର ଆଖି ଝଲସି ଯାଉନାହିଁ । ଏହି ଦୋକାନର ବିକାଳିମାନେ ମୋଟେ ଚକଚକ ଝଲମଲ ଦେଖା ଯାଉନାହାନ୍ତି । ଏବଂ, ଏହିସବୁ ଦୋକାନରେ ଆପଣ ଆଦୌ ଯାବତୀୟ କିସମର ସରଞ୍ଜାମ କ୍ରୟ କରିବାପାଇଁ ପାଇ ପାରିବେନାହିଁ । ଉଦାହରଣ ସ୍ୱରୂପ, ଏଠାରେ ଆପଣ ଇଲେକ୍ଟ୍ରୋନିକ୍ ସରଞ୍ଜାମ ପାଇବେନାହିଁ । କ୍ୟାମେରା ପାଇବେନାହିଁ । ମାତ୍ର, ସାବୁନ୍ ପାଇବେ, ଅତର ପାଇବେ, ବିସ୍କୁଟ୍ ଏବଂ ପାଉଁରୁଟି ପାଇବେ । ଜ୍ୟାମ୍ ଏବଂ ଜେଲି ପାଇବେ । କପ୍ ଆଉ ପିଆଲା ପାଇବେ । ଘରେ ଦୈନନ୍ଦିନ ବ୍ୟବହୃତ ହେଉଥିବା ବହୁତ

ଦ୍ରବ୍ୟ ଆପଣ ଏହି ଦୋକାନରୁ ଅବଶ୍ୟ ପାଇଯିବେ । ଦାମ୍ ଅଳପ ବୋଲି ଏଠାକୁ ଯେ କେବଳ ନିକୁଛିଆ ଅଳପିକିଆ ମନୁଷ୍ୟମାନେ ଆସନ୍ତି, ସେକଥା ଆଦୌ ନୁହେଁ। ଝଲମଲ ବିପଣିମାନଙ୍କୁ ଯେଉଁମାନେ ସାଧାରଣତଃ ଯାଆନ୍ତି, ସେମାନେ ମଧ ବେଳେ ବେଳେ ଏଣେ ବାହାରି ଆସନ୍ତି । ଏବଂ, ଏପରି ବହୁତ ଉପଯୋଗୀ ସାମାନ ମଧ ଥାଏ, ଯାହାକି ଇନ୍ଦ୍ର ବା କୁବେରମାନଙ୍କର ବିପଣିରେ ହୁଏତ ମିଳେନାହିଁ, କିନ୍ତୁ ଏହିସବୁ ଥାନରେ ମିଳିଯାଏ ।

ଅଧିକ ମୂଲ୍ୟର ଦୋକାନରେ ଆପଣ ବାଛିପାରିବେ, ତୁଳନା କରିପାରିବେ, ଚାରିଟା କିସମରୁ ଗୋଟାକୁ ସବୁଠାରୁ ଭଲ ବୋଲି ବିଚାର କରି ଖରିଦ୍ କରିପାରିବେ । ଅଠାନବେର ଦୋକାନଗୁଡ଼ିକରେ ଆପଣ ସେକଥା କରିବାର ଖୁବ୍‌ବେଶୀ ସୁଯୋଗ ପାଇ ପାରିବେନାହିଁ । ଏଠି ସେଠି ଦୁଇଟିଯାକ ଯାଗାରେ ଆପଣଙ୍କୁ ଚକୋଲେଟ ମିଳିପାରିବ ସତ, ମାତ୍ର ଆପଣଙ୍କର ପିଲାମାନେ ଯଦି ମହଙ୍ଗା ଭଣ୍ଡାରରୁ ଚକୋଲେଟ୍ ଖାଇବାରେ ଅଭ୍ୟସ୍ତ ହୋଇଥିବେ, ତେବେ ଏପାଖର ଅଳ୍ପ ପଇସାର ଚକୋଲେଟ୍ ସେମାନଙ୍କୁ କଦାପି ରୁଚିକର ବୋଧ ହେବନାହିଁ । ତେଣୁ, ଆମେ ହୁଏତ ଏପରି ଅନୁମାନ କରିପାରିବା ଯେ କୁବେରଦେଶ ଆମେରିକାରେ ମଧ ମାମୁଲି ମଣିଷମାନେ ରହିଛନ୍ତି, ଯେଉଁମାନେ କି ସେହି ଦେଶର ମାପକାଠି ଅନୁସାରେ ଅଳପ୍ ଉପାର୍ଜନ କରନ୍ତି ଏବଂ ତେଣୁ ଅଳ୍ପ ଭିତରେ ଚଳନ୍ତି । କିନ୍ତୁ, ଅଠାନବେରେ ହରେକ ମାଲ ମିଳୁଥିବା ବିପଣିମାନଙ୍କରେ କେତେବେଳେ ହେଲେ ସେପରି ବେଶୀ ଲୋକ-ଭିଡ଼ ଦେଖିବାକୁ ମିଳେନାହିଁ । ମାତ୍ର, ଯେଉଁ ପ୍ରକାରର ବିପଣିଟିଏ ହୋଇଥାଉ ପଛକେ, ସବୁଠାରେ କିଣାଳିମାନଙ୍କୁ କହିବାକୁ ସବୁମନ୍ତେ ପ୍ରୟାସ କରା ଯାଉଥାଏ ଯେ, ସେମାନେ ପ୍ରକୃତରେ ସମ୍ପୃକ୍ତ ଦ୍ରବ୍ୟଟିକୁ କିଣିବାଦ୍ୱାରା କିଛି ପଇସା ବଞ୍ଚାଇ ପାରୁଛନ୍ତି । ଭାରି ଦାମିକା ଓ ବଢ଼ିଆ ଜୋତା ବିକ୍ରୀ ହେଉଥିବା ଜୋତା ଦୋକାନର ନାମ ଯଦି Pay Less Shoe Store ରଖା ଯାଇଥିବ, ତେବେ ଆପଣ ମୋଟେ ସେହି ହିତବାକ୍ୟଟିରେ ଉଲ୍ଲସିତ ହୋଇ ପଡ଼ିବେନାହିଁ । ଅବଶ୍ୟ, ଗୋଟାଏ କ'ଣ ବାଣିଜ୍ୟିକ ହିସାବ କରି ଦେଖାଇ ଦିଆ ଯାଇଥିବ ଯେ, ସେହି ଦ୍ରବ୍ୟଟିକୁ ଅନ୍ୟ କେଉଁଠାରୁ କ୍ରୟ କରିଥିଲେ ଆପଣଙ୍କୁ ଯେତେ ଡ଼ଲାର୍ ଦେବାକୁ ପଡ଼ିଥାନ୍ତା, ଏଠାରେ ଖାସ୍ ଆପଣଙ୍କ ଲାଗି ମୂଲ୍ୟଟିକୁ ଊଣା କରି ରଖାଯାଇଛି । ତେଣୁ, ଏଇଟିକୁ ଏଠାରୁ କିଣିବି କି ନାହିଁ, ଆପଣ ଆଉ ମୋଟେ ଏପରି ଚିନ୍ତା କରନ୍ତୁନାହିଁ ।

ଏହିପରି ଭାବରେ ଲକ୍ଷ୍ମୀଭଣ୍ଡାରର ଦାଣ୍ଡଗୁଡ଼ାକୁ ନିଜର ପ୍ରୟୋଜନ ମୁତାବକ ପରିକ୍ରମା କରି କରି ଶେଷକୁ ଦ୍ରବ୍ୟସଂଗ୍ରହର ଅଭିଯାନ ଶେଷରେ ଆପଣ ପଇସା ଦେଇ ଖଲାସ ହୋଇଯିବାର ବାଟ ମୁହଁରେ ଆସି ପହଞ୍ଚି ଯାଇଥିବେ । ଆପଣଙ୍କର ସରଞ୍ଜାମ ଗାଡ଼ୀଟି ନାନା ଦ୍ରବ୍ୟରେ ଭରି ଯାଇଥିବ । ଆପଣ ଧାଡ଼ୀରେ ଛିଡ଼ାହେବେ ଏବଂ ଅପେକ୍ଷା କରିବେ । ଧାଡ଼ୀଟା ଭିତରେ ସରଞ୍ଜାମଗୁଡ଼ିକର ଲଦଉ ବୋଝଗୁଡାକ ଭିତରୁ

ଖରିଦ୍‌ଦାରମାନଙ୍କର ସାନ ସାନ ମୁଣ୍ଡଟି ଯାହା ଓଟମୁଣ୍ଡ ପରି ଉପରକୁ ଦେଖା ଯାଉଥିବ । ବିଶେଷ ଭିଡ଼ର ପ୍ରହରଗୁଡ଼ିକରେ ଏକାବେଳେକେ ପନ୍ଦର କୋଡ଼ିଏଟି ବିକ୍ରୀଦ୍ୱାର ହୁଏତ ଖୋଲା ରହିଥିବ । କୋଉ ଧାଡ଼ୀରେ କମ୍‌ସଂଖ୍ୟକ ଲୋକ ଅପେକ୍ଷା କରିଛନ୍ତି, ସେହିପରି ଧାଡ଼ୀଟିଏ ଅନ୍ଦାଜ କରି ଆପଣ ଛିଡ଼ା ହୋଇଯିବେ । ପ୍ରତ୍ୟେକ ଫାଟକରେ ଜଣେ ଜଣେ ଝିଅ ବା ପୁଅ,- ସତେଅବା ଚିତ୍ରପଟ ଭଳି ଛିଡ଼ା ହୋଇଛନ୍ତି । ବସ୍ତୁତଃ ଯନ୍ତ୍ରଗୁଡ଼ିକ ହିଁ ଯାବତୀୟ କାର୍ଯ୍ୟ କରୁଛନ୍ତି ; ଓଜନ କରି ଦେଉଛନ୍ତି, ମୂଲ୍ୟଗୁଡ଼ିକର ନିରୂପଣ କରି ଦେଉଛନ୍ତି, ପଇସା ନେଇ ପଇସା ଫେରାଇ ଦେଉଛନ୍ତି ଏବଂ ନିୟୋଜିତ ମନୁଷ୍ୟ-ଆକୃତିଟି ସତେଅବା ଯନ୍ତ୍ରର ନିମିତ୍ତବଦ୍ଧ କାର୍ଯ୍ୟ କରିଯାଉଛି । ଅନ୍ୟମନସ୍କ ହେବାକୁ ବେଳ ନାହିଁ, କାହାକୁ ଜଣେ ଅନାଇ ଆଗ ବା ପଛମାନଙ୍କ ଠାରୁ ଅଲଗା କରି ଚିହ୍ନିବାକୁ ଧର୍ମର ବାରଣ ରହିଛି । ଆପଣ ପଇସା ଦେବେ, ନିଜର ଖାଲି ଗାଡ଼ୀକୁ ନେଇ ଆଗକୁ ପହୁଞ୍ଚେ ଚାଲିଯିବେ । ସେଠାରେ ଆଉଏକ ମନୁଷ୍ୟମୂର୍ତ୍ତି ରହିଥିବ ଯିଏକି ଆପଣଙ୍କର ଦ୍ରବ୍ୟଗୁଡ଼ିକୁ ପୁନର୍ବାର ଜରିର ମୁଣାମାନଙ୍କରେ ଭରି ଦେବ ଓ ଆପଣଙ୍କର ଯାନଟିରେ ନେଇ ରଖିଦେବ । ସେତେବେଳେ ବିପଣିଟି ତରଫରୁ ଅତ୍ୟନ୍ତ ଅଭ୍ୟସ୍ତ ଭାବରେ ଏହି ଶେଷ ଯୋଡ଼ିଏ ବ୍ୟକ୍ତିଙ୍କ ଠାରୁ Thank you ପଦ ଶୁଣିବାକୁ ମିଳିବ । ପ୍ରକୃତରେ ଅତ୍ୟନ୍ତ ଅଭ୍ୟସ୍ତ ଭାବରେ । ସେପରି କରିବା ବିଷୟରେ ସେମାନେ ଅନୁରୂପ ପ୍ରଶିକ୍ଷଣ ମଧ୍ୟ ପାଇଛନ୍ତି । ଯଦି ଆପଣ ଏସବୁ କାରବାର ଭିତରକୁ ନୂଆ ଆସିଥିବେ ଅର୍ଥାତ୍ ଯଦି ମାତ୍ର ଏବେ ଆମେରିକାକୁ ଆସିଥିବେ, ତେବେ ମିଠା Thank you ପଦଟା ଶୁଣି ଆପଣ ସମ୍ଭବତଃ କିଛିଟ୍ ମୁଲାୟମ ହୋଇପଡ଼ିବେ ଓ ସମ୍ଭବତଃ ଆଉ ଟିକିଏ ଦୁଃଖସୁଖ ହେବା ଲାଗି ମନ ବଳାଇବେ । ମାତ୍ର, ସେତେବେଳକୁ ଆପଣଙ୍କର ସେହି ବ୍ୟକ୍ତିଟି ଆପଣଙ୍କ ପରେ ଧାଡ଼ୀରେ ଥିବା ଆଉଜଣଙ୍କର ସେବାରେ ବ୍ୟସ୍ତ ହୋଇ ଯାଇଥିବ । ଆପଣ ଅଗତ୍ୟା ଆଗକୁ ବାହାରି ଆସିବେ ।

ଆମେରିକାରେ ଏହି ବିପଣିଗୁଡ଼ିକୁ ପୂର୍ଣ୍ଣ ବୈଜ୍ଞାନିକ ବୁଦ୍ଧି ଦେଇ ଏପରି ତୋରା କରି ତିଆରି କରାଯାଇଛି ବୋଲି ଏଠି ମନୁଷ୍ୟମାନଙ୍କର ଜୀବନଟି ମଧ୍ୟ ଅନୁରୂପ ଭାବରେ ତୋରା ହୋଇ ରହିଛି କି ? ଦୋକାନ ଭିତରେ ଆଦୌ କିଛିହେଲେ ଧଡ଼ିଆ ଦେଖା ଯାଉନାହିଁ, କିଛିହେଲେ ସେଁତରା ଦେଖା ଯାଉନାହିଁ । ଦ୍ରବ୍ୟଗୁଡ଼ିକ ପଛରେ ଏତେ ଏତେ ମୁଣ୍ଡ ଖରଚ କରାଯାଇଛି ଯେ, ସେଗୁଡ଼ିକ ସତେଅବା ଠିକ୍ ମଣିଷମାନଙ୍କ ପରି ହସ ହସ ଏବଂ ଜୀବନ୍ତ ଦେଖା ଯାଉଛନ୍ତି । ଆମ ଘର ପଛପଟେ ଥିବା ସେଫ୍‌ଓଏ ବିପଣିର ପନିପରିବା ବିଭାଗରେ ରହିଥିବା ସେଇ କଳା ମଚମଚ ବାଇଗଣ କଥା ପୁଣି ମନେ ପଡ଼ିଯାଉଛି । ଆମ ଗାଆଁ ନଇପଠାରେ ଖରାଦିନେ ଫଳୁଥିବା ଗୋଟାଏ ଗୋଟାଏ ନଳୀ କଖାରୁ ଯେଡ଼ିକି ବଡ଼ ଦେଖାଯାଏ, ଏଠାରେ ବାଇଗଣମାନେ ଯେ ସେତିକି ବଡ଼ ହୋଇଛନ୍ତି ଏବଂ ଆପଣାର ଗୁଣରେ ଏଡ଼େ ଉଜ୍ଜ୍ୱଳ ଦେଖା ଯାଉଛନ୍ତି, କେବଳ ତା' ଜୀବନରେ ସିଏ ବ୍ୟବହାର କରୁଥିବା ଦ୍ରବ୍ୟଗୁଡ଼ିକୁ ଅଧିକରୁ ଅଧିକ ତା' ଲାଖି କରି ସମ୍ଭବ କରିବାର

ଅଧ୍ୟବସାୟ ବଳରେ ହିଁ ମଣିଷ ତାହା କରିପାରିଛି । ମୁଁ ଭାବୁଥିଲି, କେବଳ ସ୍ୱର୍ଗରେ, ଯଦି ସେଠାରେ ରାସାୟନିକ ସାରର ବୈଜ୍ଞାନିକ ପ୍ରୟୋଗର ପ୍ରଚଳନ ଥିବ, ତେବେ ସେହିଠାରେ ହିଁ ଏଡ଼େ ଏଡ଼େ ବାଇଗଣ ଅବଶ୍ୟ ଫଳୁଥିବ । ବାଇଗଣମାନେ ଯେତେବେଳେ ଗୋଟାଏ ଗୋଟାଏ ଟୋଲା ତରଭୁଜ ଆକୃତିର ହୋଇଥିବେ, ସେତେବେଳେ ପ୍ରକୃତରେ ଏହି ମଣିଷକୁ ହିଁ ବାହାଦୁରୀ ଦିଆଯିବା ଉଚିତ୍ । କେବଳ ଭଗବାନଙ୍କ କୃପାରୁ ଯୁଗ ଯୁଗ ଧରି ତୁମ ଆମ ବାରିରେ ଯେଉଁ ବାଇଗଣ ଫଳି ଆସୁଥିଲା, ସେଥିରେ ମଣିଷ ତା'ର ସ୍ୱତନ୍ତ୍ର ଉଦ୍ୟମକୁ ସାମିଲ କରିପାରିଲା ବୋଲି ସିନା ପୃଥିବୀରେ ଏତେ ଏତେ ଅସମ୍ଭବ ସମ୍ଭବ ହେଲା ! ଏହି କ୍ଷେତ୍ରରେ ସୁଆଦ କଥା ମୋଟେ ଉତ୍‌ଥାପନ କରିବା ଉଚିତନୁହେଁ । ଆପଣ ଯଦି ସେଇ ପୁରୁଣା ବାଇଗଣର ସୁଆଦକୁ ତା'ର ପ୍ରାକୃତିକ ସୁଆଦ ବୋଲି କହିବାର ଗ୍ଲାରେ ପଡ଼ି ଯାଇଥିବେ, ତେବେ ଏ ନୂଆ ସୁଆଦଟା ଆପଣଙ୍କୁ ଗୋଟାପଣେ ଶୂନ୍ ପରି ଲାଗିବ । ଆପଣ ସେହି ସାନ ବାଇଗଣକୁ ଝୁରି ହେଉଥିବେ ।

ନିଜ ଦ୍ରବ୍ୟଗୁଡ଼ିକୁ ଲଦି ପଇସା ଦେଇ ବାହାରିଯିବା ନିମନ୍ତେ ଅପେକ୍ଷା କରିଥିବା ସମୟଟା ଯେପରି କାହାର ବୃଥା ନକଟିବ, ସେଥିଲାଗି ବିପଣି ତରଫରୁ ସୁନ୍ଦର ବ୍ୟବସ୍ଥାଟିଏ କରାଯାଇଛି । ଆପଣଙ୍କର ଆଖିରେ ସିଧା ଆସି ପଡ଼ିବାଭଳି ଉଚ୍ଚତାରେ ଭରଣ ଭରଣ ପତ୍ରିକାକୁ ପ୍ରଦର୍ଶନୀ ପରି ଥାକ ମାରି ରଖାଯାଇଛି । ହଁ, ଆପଣ ପଇସା ଦେଇ ସେଗୁଡ଼ିକୁ ଯଦି କିଣିବେ, ତେବେ ସାଥିରେ ଘରକୁ ନେଇ ପାରିବେ । କିନ୍ତୁ, ନକିଣିବେ ସିନା, ଯେକୌଣସି ପତ୍ରିକାକୁ ତା' ରଖା ଯାଇଥିବା ଥାନରୁ ଟାଣିଆଣି ଆଖି ବୁଲାଇଆଣି ପାରିବେ ଏବଂ ସମୟର ସୁଚିନ୍ତିତ ସଦ୍‌ବ୍ୟବହାର କରିପାରିବେ । ପ୍ରକୃତରେ ଖୁବ୍ ଚମତ୍କାର ବ୍ୟବସ୍ଥାଟିଏ । ପତ୍ରିକାଗୁଡ଼ିକ ବିଭିନ୍ନ ବିଷୟର ହୋଇଥିଲେ ସୁଦ୍ଧା ସତେଅବା ଏକାବେଳେକେ ଗୋଟିଏ ରୁଚିର । ଏହିପରି ଏକ ରୁଚି ରହିଥିବା ମଣିଷମାନେ ଈଶ୍ୱରଙ୍କ ବରାଦରେ ତିଆରି ହୋଇଥାନ୍ତି ବୋଲି ସେମାନେ ଖୋଜି ଖୋଜି ଏହି କାଟର ପତ୍ରିକାଗୁଡ଼ିକ ପାଖରେ ଆସି ପହଞ୍ଚି ଯାଆନ୍ତି ଅଥବା ପ୍ରବଳ ପ୍ରଯୁକ୍ତିବିଦ୍ୟାର ଏକ ସମାଜରେ ମଣିଷମାନଙ୍କ ଭିତରେ ଏହି କାଟର ରୁଚିଟିଏ ତିଆରି କରି ଆଣିବାର ଅଭିପ୍ରାୟରେ ଗୋଟାଏ ସମାଜର କ୍ଷେତ୍ରପାଳମାନେ ବୁଦ୍ଧି ଖର୍ଚ୍ଚ କରି ଅନୁରୂପ ପତ୍ରିକାଗୁଡ଼ିକର ତିଆଣ କରିଥାନ୍ତି, ସେହି ବିଷୟରେ ନିଶ୍ଚୟ ବିତର୍କର ଏକ ଅବକାଶ ରହିଥିବ । ପତ୍ରିକାର ଉପର ମଲାଟରେ ମନୋରମ ନାନା ମନୁଷ୍ୟରୂପ,- ଦେଖିବା ମାତ୍ରକେ ତେଣେ ନିଜକୁ କାମସୂତ୍ରର କେଉଁ ଉଚ୍ଚମାଧ୍ୟମିକ ବିଦ୍ୟାଳୟରେ ମନିଟର ହୋଇ ରହିଥିବା ପରି ମନେ ହେବ । ଏଠାରେ ଆପଣ କେତୋଟି ଶୀର୍ଷକକୁ ପରୀକ୍ଷା କରି ଦେଖିପାରନ୍ତି ! How to shake off your anxiety in 60 seconds, 10 ways to improve American Education, ଏବଂ ସର୍ବୋପରି Fifty four tricks and tips to get the hottest face look, ଏହିପରି ଆହୁରି ଅନେକ । ସବୁକିଛି ସଂଖ୍ୟାରେ କହିଦେଇ ହେଉଛି, କବିରାଜ ଆପଣଙ୍କର

ନାଡ଼ୀଟାକୁ ଦେଖି କେତେଟା ଗୋଲମରିଚ ସହିତ କେତେଟା ବେଲପତ୍ରକୁ ଚୋବାଇ ଖାଇଲେ ଆପଣ ପୁନର୍ଜୀବନ କିମ୍ବା ପୁନଯୌବନ ଲାଭ କରିପାରିବେ, ଅବିକଳ ତାହାରି ବାଗିର୍ ନିଦା ନିଦା ପରାମର୍ଶମାନ । ଏପରି ଏକ ସଂସ୍କୃତିରେ ବଢ଼ିବାର ସୁଯୋଗ ପାଇଲେ ଜୀବନଟା ପ୍ରକୃତରେ ଭାରି ସାଧ ବୋଲି ପ୍ରତିଭାତ ହୋଇ ଉଠିବ । ସ୍ୱର୍ଗ ଆସି ହାବୁଡ଼ିଗଲା ପରି ପ୍ରତ୍ୟୟ ମିଳିଯିବ ।

ବିପଣି ଓ ବିଜ୍ଞାପନ ଭିତରେ ଆମେରିକାରେ ସାମୂହିକ ଜୀବନର ବୁଦ୍‌ବୁଦମାନେ ସତକୁ ସତ ବଡ଼ ସହଜ ଏବଂ ଉଜ୍ଜ୍ୱଳ ହୋଇ ଦେଖାଯାଆନ୍ତି । ଆମେରିକାକୁ ବହୁ ନ୍ୟାୟର ସହିତ ବିଜ୍ଞାପନର ଏକ ମଧୁଶାଳା ବୋଲି କୁହାଯିବ, ଯେଉଁଠାରେ କି ବୀର୍ଯ୍ୟମୟ ନାନା ବିଜ୍ଞାପନର ପ୍ରାୟ ଏକ ଚିରନ୍ତନ ଭିଡ଼ ଲାଗି ରହିଥାଏ । ପୃଥିବୀର ଏବର ମଇଦାନଟା ଭିତରେ ଆମେରିକା ଏକାଧିକ ଦୃଷ୍ଟିରୁ ସବାଆଗରେ ରହିଥିବା ପରି ଯେ ପ୍ରତୀତ ହୋଇଥାଏ, ହୁଏତ ସେଇଟି ପଛରେ କିମିଆ ପରି ଆମେରିକାର ବିପଣି ଏବଂ ବିଜ୍ଞାପନ ଉଭୟେ ଅତ୍ୟନ୍ତ ଦୃଢ଼ ଭାବରେ କାର୍ଯ୍ୟ କରୁଛନ୍ତି । ରାଜନୀତି ଠାରୁ ଆରମ୍ଭ କରି ରଣନୀତି ପର୍ଯ୍ୟନ୍ତ ଆମେରିକା ନିଜର ବିପଣି ଓ ବିଜ୍ଞାପନର ମାଧମରେ ହିଁ ଆମ ଅବଶିଷ୍ଟ ଅବରମାନଙ୍କୁ ଏଡ଼େ ପାଟିରେ କହିବାରେ ଲାଗିଛି ଯେ, ଆମେ ସମସ୍ତେ ଯଦି ତା' କୁହାଗୁଡ଼ିକୁ ମାନି ପାରନ୍ତେ, ଆମେରିକାର ବଚନଗୁଡ଼ିକୁ ହିଁ ପାଳନ କରନ୍ତେ, ତେବେ ପୃଥିବୀଯାକ ନିଶ୍ଚିନ୍ତ ହୋଇ ରହିପାରନ୍ତା ଓ ନିଜ ପାଇଁ ବାଟଟିଏ ଖୋଜି ଦେଶମାନଙ୍କୁ ଏତେ ରନ୍ଧାଳି ହେବାକୁ ପଡ଼ନ୍ତାନାହିଁ । ଏହି ସନ୍ଦେଶଟିକୁ ପ୍ରଚାର କରିବା ସକାଶେ ହିଁ ଆମେରିକା ପୃଥିବୀଯାକ ବିଚିତ୍ର ମେଣ୍ଟମାନ ତିଆରି କରିବାରେ ଅର୍ବୁଦ ପରିମାଣର ଅର୍ଥ ଖଇରାତ କରିବାରେ ଲାଗିଛି, କେତେ ଦେଶକୁ କେତେପ୍ରକାରେ ସାହାଯ୍ୟ କରୁଛି, ବିଭିନ୍ନ ଦେଶକୁ ବା ସରକାରଗୁଡ଼ିକୁ ନିଜ ଗଣିତଟି ଅନୁସାରେ ସଜାଡ଼ିଦେବ ବୋଲି ସେଗୁଡ଼ିକର ଅନ୍ତଃପୁରରେ ଯାଇ ପଶିଛି । ତଥାପି, ଏହି ବଣିଜରେ ଆମେରିକାର ପୁଞ୍ଜିଲଗାଣ ତୁଳନାରେ ଯଥେଷ୍ଟ ଲାଭ ହୋଇ ପାରୁନାହିଁ କାହିଁକି କେଜାଣି ? ବିପଣିଗୁଡ଼ିକ କ'ଣ ଖାଲି ବିଜ୍ଞାପନ ଦ୍ୱାରା ଚାଲିଛି ? ଏବଂ, ଅବଶିଷ୍ଟ ପୃଥିବୀଠାରୁ ଗୋଟାଏ ଗୋଟାଏ ମହାସାଗରର ତଫାତରେ ପ୍ରାୟ ଏଡ଼େ ବଡ଼ ବପୁ ସହିତ ନିଜକୁ ଛିଡ଼ା କରାଇ ରଖିଥିବା ଆମେରିକା କେଉଁ ବିଡ଼ମ୍ବନାରେ ପଡ଼ିଥିବା ପରି ଭାରି ନିଦକ ହୋଇ ସେତିକିକୁ ଯଥେଷ୍ଟ ବୋଲି ଭାବୁଛି ? ତାକୁ ସେଥିରୁ ଟଳାଇ ଆଣିବାକୁ ସତେଅବା କେହି କେଉଁଠି ନାହାନ୍ତି ।



ସାଥୀରେ ସହଧର୍ମିଣୀ ମଧ୍ୟ ଆମେରିକା ଯାଇଥିଲେ । ଆମେ ଦୁହେଁଯାକ ଏକାଠି ହୋଇ କେତେ ସ୍ଥାନକୁ ଗଲୁ, କେତେ କେତେ ଦର୍ଶନୀୟ ଦ୍ରବ୍ୟ ଦେଖିଲୁ ଏବଂ କେତେ କେତେ ଘରେ ଅତିଥି ହୋଇ ସଂଖୋଳା ହେଲୁ । ମାତ୍ର ଯୁଆଡ଼େ ଯେତେବେଳେ ଗଲେ ମଧ୍ୟ ସେଠିକାର ଗୋଟାଏ କଥା ସହଧର୍ମିଣୀଙ୍କୁ ସର୍ବଦା ଚମକାଇ ଦେଉଥିଲା । ଚମତ୍କୃତ କରି ଦେଉନଥିଲା, ମାତ୍ର ଚମକାଇ ଦେଉଥିଲା । ଆମେରିକାର ମୋଟା ମଣିଷମାନଙ୍କୁ ଦେଖି ସିଏ ସତେଅବା ନିଜର ଆଖିକୁ ମଧ୍ୟ ବିଶ୍ୱାସ କରି ପାରୁନଥିଲେ । ମଣିଷ ପୁଣି ଏଡ଼ିକି ମୋଟା ହୁଅନ୍ତି ? ଏହି କ୍ଷେତ୍ରରେ କଳା ଓ ଗୋରାରେ ଅଥବା ନାରୀ ଓ ପୁରୁଷରେ ସିଏ ଆଦୌ କୌଣସି ଫରକ ଦେଖି ପାରୁନଥାନ୍ତି । ଅନୁକୂଳ ହାଉଆଟା ମିଳିଲେ ନାରୀ ବା ପୁରୁଷ ଅଥବା କଳା ଓ ଗୋରା କାହାକୁ ହେଲେ ଦଇବ ଯେ କଦାପି ଛାଡ଼ି ଦେବନାହିଁ ଏବଂ ମଣିଷଧଡ଼ର ଛାଞ୍ଚଟା ଉପରେ ମେଦର ଛୁଆଣି କରି ନିଜର କରାମତି ଅଲବତ ଦେଖାଇଦେବ, ସହଧର୍ମିଣୀ ହଠାତ୍ ପ୍ରବାସରେ ସେହି କଥାଟିର ଚାକ୍ଷୁଷ ପ୍ରମାଣଗୁଡ଼ିକୁ ଦେଖିବେ ଏବଂ ଏପରି ଯାଉଣୁ ଆସୁଣୁ ଦେଖିବେ ବୋଲି ଆଦୌ ପ୍ରତ୍ୟାଶା କରିନଥିଲେ । ସେଇ ଗୋଟିଏ ବିସ୍ମୟ ତାଙ୍କୁ ଏପରି କଲ୍ଲୋଳିତ କରି କାମୁଡ଼ି ଧରିଥିଲା ଯେ ସିଏ ବାହାରକୁ ବାହାରିବା ମାତ୍ରକେ ମୋଟାମାନଙ୍କୁ ଭେଟିବାର ସୋହାଗ ଭିତରେ ପଡ଼ି ଯାଉଥିଲେ । ଉପରେ ଉପରେ ସିନା ମୋଟା ମଣିଷଙ୍କର ସନ୍ଦର୍ଶନରେ ବିସ୍ମୟ ପ୍ରକାଶ କରୁଥିଲେ ଏବଂ ଏମାନଙ୍କୁ ଦେଖି ସିଏ ଆଦୌ ପ୍ରୀତ ହେଉନାହାନ୍ତି ବୋଲି ଭାବଭଙ୍ଗୀ ଦେଖାଉଥିଲେ, ମାତ୍ର ଆମେରିକାରେ ଆମର ସାଢ଼େ ଚାରିମାସର ରହଣି ଭିତରେ ସିଏ ସତେଅବା ସେହି ମୋଟା ମଣିଷ ମାନଙ୍କୁ ଦେଖିବେ ବୋଲି ଟାକି କରି ରହୁଥିଲେ ।

ଆମ ଭାରତବର୍ଷରେ କ'ଣ ମୋଟା ମଣିଷ ନାହାନ୍ତି ? ଆମ ଗାଆଁରେ ତ ମୁଁ ପିଲାଦିନେ କେତେ ଅତିଶୟ ମୋଟା ଯେଉଁମାନଙ୍କୁ ଦେଖିଥିଲି, ସେମାନେ ବର୍ତ୍ତମାନ ଏହି ପ୍ରସଙ୍ଗଟି ବିଷୟରେ ଲେଖିବସିବା ସମୟରେ ଜଣ ଜଣ କରି ଆଖିଆଗରେ ଉଭା ହୋଇ ଯାଉଛନ୍ତି । ସେମାନେ ସମସ୍ତେ ସେମାନଙ୍କର ସ୍ଥାୟୀ ଧାମକୁ ପ୍ରତ୍ୟାବର୍ତ୍ତନ କରି ସାରିଲେଣି, ମାତ୍ର ସ୍ମରଣ କରିବା ମାତ୍ରକେ ପ୍ରାଞ୍ଜଳ ହୋଇ ଉଠୁଛନ୍ତି । ଆମରି ପରିବାରରେ ମୋର ଜଣେ ବଡ଼ବାପାଙ୍କ ପତ୍ନୀ ଏତେ ମୋଟା ଥିଲେ ଯେ ଆମେ ପିଲାମାନେ ତାଙ୍କୁ ବାବୁ ବୋଲି ଡ଼ାକୁଥିଲୁ । ଆମ ଗାଆଁର ନାବ ଗୁଡ଼ିଆଣୀ, ବିପ୍ର ବଡ଼ାପା, ଗୋବିନ୍ଦଦାସ ବାବାଜୀ, —ଏମାନେ ସମସ୍ତେ ମୋଟା ମଣିଷ ବୋଲି ପୂରା ଗାଆଁଟାର ସ୍ୱୀକୃତି ଲାଭ କରିଥିଲେ । ହଁ, ଆମ ପୁରାଣମାନଙ୍କରେ ସୂର୍ପଣଖା, ତାଡ଼କା ରାକ୍ଷସୀ, କଂସର ଭଉଣୀ ପୁତନା ଆଦି ପାତ୍ରୀଙ୍କର ଯେପରି ବର୍ଣ୍ଣନା କରାଯାଇଛି, ସେଥିରୁ ସେମାନଙ୍କର ପୃଥୁଳ ଶରୀରଗ୍ରାମଟାର ହିଁ ପୂର୍ଣ୍ଣ ସୂଚନା ମିଳିଯିବା ଉଚିତ୍ । କାନ୍ଧଉପରେ ଦଶ ଦଶଟା ମିଣ୍ଡକୁ ବୋହୁଥିବା ଲଙ୍କପତି ରାବଣର କବନ୍ଧଟା ନିଶ୍ଚୟ ସେହି ଅନୁପାତରେ ମୋଟା ବି ହୋଇଥିବ । ସହଧର୍ମିଣୀ ଏହି

ସବୁଯାକ ଦୃଷ୍ଟାନ୍ତ ସହିତ ଅବଶ୍ୟ ପରିଚିତ ଥିଲେ । ତଥାପି, ଗୋଟାଏ ଦେଶରେ ଏତେ ଅଧିକ ସଂଖ୍ୟାରେ ଏପରି ଅହେତୁକ ଏବଂ ଅଭାବନୀୟ ଭାବରେ ମୋଟା ନରନାରୀ ପ୍ରକୃତରେ ଦେଖିବାକୁ ମିଳିବେ ବୋଲି ସିଏ ସମ୍ଭବତଃ କଳ୍ପନା ହିଁ କରିନଥିଲେ । ସେହି କାରଣରୁ ଅବାକ୍ ହେଲେ ।

ସତେ ତ, ମଣିଷମାନେ ପ୍ରକୃତରେ ଏଡ଼ିକି ମୋଟା ହୁଅନ୍ତି ? ନଦେଖିଲେ ହୁଏତ କେହି ବିଶ୍ୱାସ ମଧ କରିବନାହିଁ । ମଣିଷ ତ ନୁହନ୍ତି, ଚାଲିଯିବା ବେଳକୁ ସତେଅବା ଗୋଟାଏ ଏଡ଼େ ଓସାରର କବାଟ ପରି ଦେଖା ଯାଉଛନ୍ତି । ମହଣେ ମହଣେ ଦେହକୁ ବୋହିବା ନିମନ୍ତେ ଗୋଡ଼ରେ ଆହୁରି ମହଣେ ଓଜନର ମୋଟା ମୋଟା ଜୋତା ପିନ୍ଧିଛନ୍ତି । ଅନେକ ସମୟରେ ଦେହର ଅନୁପାତରେ ମୁଣ୍ଡଟା ଗିଲଟିଏ ପରି ଦିଶୁଛି । କାହାର କାନ୍ଧଉପରେ ବେକ ବୋଲି ମୋଟେ କିଛି ନାହିଁ । କାହାର ଗୋଡ଼ ଦୁଇଟା ହାତୀରୋଟର ଜଂଘ ଦୁଇଟାକୁ ବୋହି ବୋହି ନୟାନ୍ତ ହୋଇଗଲେଣି । ନିତମ୍ବ ବିଷୟରେ ମୋଟେ କିଛି ନକହିବା ସମ୍ଭବତଃ ଶାଳୀନତା ଦୃଷ୍ଟିରୁ ଅଧିକ ଉଚିତ ହେବ । ପେଟ ପାଖରେ ହିଁ ଯେଉଁ ମଣିଷମାନଙ୍କର ପରିଧିଟା ସବୁଠାରୁ ଅଧିକ, ସେମାନଙ୍କୁ ପ୍ରକୃତରେ ନିଜର ଦେହଟା ବିଷୟରେ ଅନୁକ୍ଷଣ ବଡ଼ ଖଞ୍ଜି ହେବାକୁ ପଡୁଥିବ । ଏଭଳି ମନୁଷ୍ୟମାନଙ୍କର ଆଖି ଦୁଇଟାକୁ ଅନାଇଲେ ପ୍ରକୃତରେ ଭାରି ବିକଳ ଲାଗିଥାଏ । ଏଡ଼େ ବଡ଼ ନାକ, ଏଡ଼େ ବଡ଼ ହନୁ ଓ ଏଡ଼େ ବଡ଼ ପୂର୍ଣ୍ଣିମାଚନ୍ଦ୍ରବତ୍ ବର୍ତ୍ତୁଳ ଥୋଡ଼ିଟାର ଅନୁପଙ୍ଗ ଉପରେ ମିଞ୍ଜି ମିଞ୍ଜି ହୋଇ ଦିଶୁଥିବା ଆଖି ଦୁଇଟି ସତକୁ ସତ କେଉଁଠାରେ ଆଦୌ ଅଛି କି ନାହିଁ, ସେକଥାଟିକୁ ଅନେକ ସମୟରେ ଅନୁସନ୍ଧାନ କରି ଜାଣିବାକୁ ହୋଇଥାଏ । ମୁହଁଟାକୁ ଆଖିମାନେ ମୋଟେ ମାନନ୍ତିନାହିଁ ଅଥବା ଆଖି ଦୁଇଟାକୁ ମଧ ମୁହଁଟା ମୋଟେ ମାନୁନଥାଏ । ଆମେରିକାରେ ମୋଟା ମଣିଷମାନଙ୍କୁ ଦେଖି ସହଧର୍ମିଣୀ କ'ଣ ପ୍ରକୃତରେ ଏତେ ଆଉ ଏତେ କଥା ଚିନ୍ତା କରିଥିବେ ? ମାତ୍ର, ଏହି ପ୍ରସଙ୍ଗଟି ତାଙ୍କୁ ବଡ଼ ଅଡୁଆ ଲାଗୁଥିଲା ଓ ସତେଅବା ବହୁତ ଚିନ୍ତାରେ ପକାଇ ଦେଉଥିଲା । ମୋଟା ହେବାର ଅବଶ୍ୟ କିଛି କାରଣ ରହିଛି, ଠିକ୍ ଯେପରି ମୋଟା ନହେବାର ମଧ କିଛି କାରଣ ରହିଛି । କାରଣମାନଙ୍କ ବିଷୟରେ ଏବେ ମଧ ଘୋର ଗବେଷଣା ଚାଲିଛି । ଏବଂ, କେଉଁସବୁ ଉପଚାର କଲେ ମୋଟା ହୋଇଯିବାର ଦୁର୍ଗତିରୁ ନିଷ୍କୃତିଲାଭ ସମ୍ଭବ ହେବ,ସେହି ବିଷୟରେ ବିଜ୍ଞାନୀମାନେ ଫର୍ଦ୍ଦ ଫର୍ଦ୍ଦ ତଥ୍ୟ ବାହାର କରି ଥୋଇ ଦେଉଛନ୍ତି । ଦେହରେ ଯେପରି କାନେ ହେଲେ ବି କେଉଁଠି ଚର୍ବି ନଜମିବ, ସେଥିଲାଗି ଶହେପଚାଶ କିସମର ଔଷଧ ବାହାରି ସାରିଲାଣି, କିଏ ବିହିତ ଖାଦ୍ୟ ଚିକିତ୍ସାରେ ଆପଣାକୁ ମଣ କରୁଛି, ଆଉକିଏ ଯୋଗ କରି ପତଳା ହେବାର ସାଧନା କରୁଛି । ଏବଂ, ପାତଳା ଦିଶିବାଟା ଯେ ଦେହପାଇଁ କାମ୍ୟ, ସଂସ୍କୃତି ଭିତରେ ଏହିପରି ଧାରଣାଟିଏ ବଦ୍ଧମୂଳ ହୋଇ ରହିଥିବାରୁ ହୁଏତ ସେଇଥିରୁ ହିଁ ଅଧିକତର ଗ୍ଲାନିବୋଧ ଜନ୍ମଲାଭ କରୁଛି ।

ଭାରତବର୍ଷର କ୍ଲାସିକ୍ କାବ୍ୟଭାବନାରେ ପାତଳା ଦେହ, ପାତଳା ଗ୍ରୀବା ଏବଂ ପାତଳା କଟିଦେଶକୁ ସୁନ୍ଦର ବୋଲି ଘୋଷଣା କରା ଯାଇଥିଲା । ସେକାଳର ପୁରୁଷ ତତ୍ତ୍ୱକାରମାନେ କ'ଣ ସବୁ ଅନୁମାନ ଭିତରେ ଆପଣାକୁ ମଜ୍ଜାଇ ଦେଇ ଶରୀର ଅର୍ଥାତ୍ ତନୁଟାକୁ ଆଦରର ସହିତ ତନୁଲତା ବୋଲି ବର୍ଣ୍ଣନା କରିଥିଲେ କାହିଁକି କେଜାଣି ? ସ୍ମରଣ କରାଇଦେବା ଅନାବଶ୍ୟକ ଯେ ନାରୀର ତନୁକୁ ହିଁ ସାହିତ୍ୟ ଭିତରେ ସକଳ କାବ୍ୟିକ ଆଖ୍ୟାନରେ ସୌନ୍ଦର୍ଯ୍ୟର ପ୍ରତିନିଧିତ୍ୱ କରୁଥିବା ଏକମାତ୍ର ତନୁ ବୋଲି ଧରି ନିଆ ଯାଇଥିଲା । କାବ୍ୟକାର ତଥା କାବ୍ୟାଦିର ତତ୍ତ୍ୱକାର ଉଭୟେ ସେକାଳର ଚଳଣି ମୁତାବକ ଉଭୟେ ପୁରୁଷ ହିଁ ଥିଲେ । ଯଦି କେହି ନାରୀ ସେହି ନିଷିଦ୍ଧାଞ୍ଚଳ ଭିତରେ ପ୍ରବେଶ କରି ପୁରୁଷର ତନୁ ତଥା ତନୁସୌନ୍ଦର୍ଯ୍ୟକୁ ନିଜର ନଜର ମଧ୍ୟରେ ଠାବ କରିବାକୁ ଆଗ୍ରହ କରିଥାନ୍ତା, ତେବେ ସେହିସବୁ ବର୍ଣ୍ଣନା କିଭଳି କ'ଣ ଯେ ହୋଇଥାନ୍ତା,ସେକଥା କେହି କହି ପାରିବନାହିଁ। ତନୁର ସୌନ୍ଦର୍ଯ୍ୟକୁ ପ୍ରାୟ ସବୁଯାକ ସୌନ୍ଦର୍ଯ୍ୟ ଏବଂ ତନୁସହିତ ପ୍ରେମକୁ ପ୍ରାୟ ଏକମାତ୍ର ବର୍ଣ୍ଣନାଯୋଗ୍ୟ ସମ୍ପଦ ବୋଲି ମାନି ନେଇଥିବା ଭାରତୀୟ ସାହିତ୍ୟର ସେହି ଯୁଗଟିକୁ ରୀତିଯୁଗ ବୋଲି ଆଖ୍ୟାୟିତ କରାଯାଇଛି । ଆମେରିକାରେ ସହଧର୍ମିଣୀଙ୍କ ସହିତ ଏକତ୍ର ମେଳରେ ମନୁଷ୍ୟମାନଙ୍କର ତନୁରୁ ହିଁ ଆରମ୍ଭ କରି ସେମାନଙ୍କୁ ଦେଖୁଥିବା ସମୟରେ ମୁଁ ଗୋଟାଏ କଥା ଅନେକ ସମୟରେ ଭାବି ପକାଉଥିଲି ଏବଂ ବେଶ୍ କୌତୁକ ଅନୁଭବ କରୁଥିଲି । ଆମେ କେବେହେଲେ ଗଣି କରି କୌଣସି ଉପସଂହାରରେ ପହଞ୍ଚିବାକୁ କେବେ ଚେଷ୍ଟା କରିନଥିଲୁ । ମାତ୍ର, ଆମେ ସେଠାରେ ଜୀବନର ହାଟ ଭିତରେ ବୁଲୁଥିବା ସମୟରେ ମୋଟା ପୁରୁଷମାନଙ୍କ ସଂଖ୍ୟାନୁପାତ ତୁଳନାରେ ମୋଟା ନାରୀମାନଙ୍କୁ ହିଁ ଅଧିକତର ସଂଖ୍ୟାରେ ଆମକୁ ଦେଖୁଥିବା ପରି ଲାଗୁଥିଲା । ଆମର କବିମାନେ ଏବେ ମଧ୍ୟ ଆଗସମୟର ସେହି ରୀତିଯୁଗ ଭିତରେ ରହିଥିଲେ ଏହି ସ୍ଥୂଳା ତଥା ଅତିସ୍ଥୂଳାମାନଙ୍କୁ ଯେ କ'ଣସବୁ ଅନ୍ୟ ଉପମା ତଥା ଉପାଧା ଦେଇ ଚିତ୍ରୋଉ ଥାଆନ୍ତେ, ସେକଥା ନିଜକୁ ପଚାରି ସମ୍ଭାବ୍ୟ ଉତ୍ତରଟିଏ ଅନୁମାନ କଲାବେଳେ ପ୍ରକୃତରେ ବେଶ୍ ରୋମାଣ୍ଟିକ୍ ବୋଧ ହେଉଥିଲା । କଟି, ନିତମ୍ବ, ଉରଜ କିମ୍ବା ଉରୁ ଏହି ସବୁକିଛି ନିମନ୍ତେ ହୁଏତ ଏକ ଏକାବେଳେକେ ଅଲଗା କଳ୍ପନା ଏବଂ ଭାବନା ଦରକାର ପଡ଼ନ୍ତା । ପ୍ରକୃତରେ କେନ୍ତା କେନ୍ତା ଅନୁଭବ ହୁଅନ୍ତା । ପର୍ବତ, ନଦଉ କାଛ, କଂସା କବାଟ,- ହୁଏତ କାଳକ୍ରମେ ଏହିଭଳି କେତୋଟି ନୂଆ ନୂଆ ଉପମାର ସୃଷ୍ଟି ହୋଇ ଆସନ୍ତା ।

ଢ଼େର ବର୍ଷ ତଳେ ଥରେ କଟକରେ ଜାପାନଦେଶ ବିଷୟରେ ସଭାଟିଏ ହେଉଥିଲା । ଭାରତରେ ନିଯୁକ୍ତ ଜାପାନର ପ୍ରତିନିଧି ସେହି ସଭାରେ ଉପସ୍ଥିତ ଥିଲେ । ତାଙ୍କୁ ଖୁସୀ କରାଇବା ପାଇଁ କି କ'ଣ କେଜାଣି, ଆମ ସ୍ଥାନୀୟ ବକ୍ତାମାନେ ଜାପାନର ସୁଖ ଓ ସମୃଦ୍ଧି ବିଷୟରେ ଉଚ୍ଚଧ୍ୱନି କରି କେତେ କ'ଣ କହିଯିବାରେ ଲାଗିଥାନ୍ତି । ଜଣେ ଗୁରୁଜନସ୍ଥାନୀୟ ଅଧ୍ୟାପକ, ଯିଏ ସ୍ୱୟଂ ଜାପାନକୁ ଯାଇଥିଲେ, ସିଏ ସମ୍ଭବତଃ ଅନ୍ୟ

ସମସ୍ତଙ୍କୁ ବଳିଯିବାକୁ ଇଚ୍ଛା କରୁଥିଲେ । ବସ୍ତୁତଃ କବିତ୍ୱ କରି ସିଏ କହିଥିଲେ ଯେ, ଜାପାନରେ କାଉମାନେ ମଧ ଭାରତବର୍ଷର କାଉମାନଙ୍କଠାରୁ ହୃଷ୍ଟପୁଷ୍ଟ ଦେଖାଯାଆନ୍ତି । ଏଠା କାଉମାନେ ପ୍ରାୟ ନିୟମିତ ଭାବରେ ଦରପେଟ ହୋଇ ରହିଥାଆନ୍ତି,ତେଣୁ ଭାରି ଶୁଖିଲା ଓ ଝଡ଼ିଆ ଦିଶନ୍ତି । ଜାପାନ ଦେଶରେ ତ ଖାଇବାର ଅଭାବ ନାହିଁ । ତେଣୁ କାଉମାନଙ୍କୁ ମଧ ଯଥେଷ୍ଟ ମିଳେ । ସେମାନେ ସେଥିପାଇଁ ମୋଟା ଦିଶନ୍ତି, ସେମାନଙ୍କର ଦେହଟା ଚିକ୍‌କଣ ଓ ଛନ ଛନ ଦେଖା ଯାଉଥାଏ । ମୁଁ ଭାବୁଛି, ଜାପାନର ଅବସ୍ଥାଠାରୁ ତ ଆମେରିକାର ଅବସ୍ଥା ଆହୁରି ଅଧିକ ଭଲ । କ'ଣ ସେହି କାରଣରୁ ଆମେରିକାରେ ମଣିଷମାନେ ଏତେ ଅପରିମିତ ସଂଖ୍ୟାରେ ମୋଟ ଏବଂ ଚର୍ବିଯୁକ୍ତ ହୋଇ ପାରିଛନ୍ତି କି ? ଅଳପ ଖାଇଲେ ଅର୍ଥାତ୍ ଦେହକୁ ପୂରା ଓ ପୁଷ୍ଟିକର ଖୋରାକ ନମିଳିଲେ ଦେହ ଝଡ଼ି ଝଡ଼ି ଯାଏ । ଛାର ବାଛୁରୀଟାକୁ ଯଥେଷ୍ଟ ଖାଦ୍ୟ ନମିଳିଲେ ତା'ର ଦେହରୁ ହିଁ ତା' ଦୁରବସ୍ଥାର ପ୍ରମାଣ ମିଳିଯାଉଛି । ତେଣୁ, ଅଧିକ ଖାଇବାଦ୍ୱାରା ହିଁ ମଣିଷମାନେ ମୋଟା ହୁଅନ୍ତି ବୋଲି ଏକ ସାଧାରଣ ବିଶ୍ୱାସ ଆମ ନିଅଣ୍ଟିଆ ଭାରତବର୍ଷରେ ସମ୍ଭବତଃ ବହୁଦିନରୁ ରହିଆସିଛି । ମାତ୍ର, ଏଇଟା କ'ଣ ପୂରା ସତ କଥା ? ଆମେରିକାବାସୀ ଏବେ ଅଧିକ କମାଉଛନ୍ତି ଓ ତେଣୁ ଅଧିକ ଓ ଭଲ ଖାଇବି ପାରୁଛନ୍ତି, ସେମାନଙ୍କର ଏଭଳି ଅତିରିକ୍ତ ଭାବରେ ମୋଟା ହୋଇଯିବାକୁ କ'ଣ ପ୍ରକୃତରେ ଏହି ଏକମାତ୍ର କାରଣଦ୍ୱାରା ବ୍ୟାଖ୍ୟା କରାଯାଇ ପାରିବ ? ଭିନ୍ନ ମୁନିମାନେ ଭିନ୍ନ ଭିନ୍ନ ମତ ଅବଶ୍ୟ ଦେବେ ।

ଆମେରିକାରେ ଯେ ଖାଇବା ଦୋକାନର ସଂଖ୍ୟା ଅନ୍ୟ ଦେକାନଗୁଡ଼ିକର ସଂଖ୍ୟାଠାରୁ ଅଧିକ, ସେହି କଥାଟି ସହଜରେ ଜାଣି ହୋଇଯାଏ । ଏତିକି ପ୍ରକାରର ଖାଦ୍ୟ ପୁଣି ପୃଥିବୀରେ ଥାଏ ? ଆମେରିକା ଦେଶକୁ ଯେତେ ଯେତେ ଦେଶରୁ ମଣିଷମାନେ ଆସିଛନ୍ତି, ସେମାନେ ନିଜର ଭୋଜନସଂସ୍କୃତିଟିକୁ ମଧ ସାଙ୍ଗରେ ଧରି ଆସିଛନ୍ତି । ତେଣୁ, ଏଠାରେ ପୃଥିବୀର ପ୍ରାୟ ସବୁ ପ୍ରକାରର ରନ୍ଧା ଖାଇବାକୁ ମିଳିବ । ଚୀନା, ଜାପାନୀ, ଫରାସୀ, ମେକ୍ସିକୀୟ, ଥାଇ, ଭିଏଟ୍‌ନାମ୍ ଓ ଆହୁରି କେତେ ଦେଶର ରେଷ୍ଟୋରାଁ ଆପଣଙ୍କୁ ପ୍ରାୟ ସବୁ ଜାଗାରେ ମିଳିଯିବ । ରାନ୍ଧିବାବାଲା ସେହିସବୁ ଦେଶର । ଏବେ, ଭାରତୀୟମାନେ ଆମର ଏଠୁ ଯାଇ ସେଠାରେ ବସବାସ କରି ରହିବାପରେ ଭାରତୀୟ ହୋଟେଲ୍‌ମାନେ ମଧ ଦେଶର ବହୁ କୋଣ ଏବଂ ବିକୋଣରେ କ୍ରମେ ସମୃଦ୍ଧ ହୋଇ ଆସୁଛନ୍ତି । ତା' ବ୍ୟତୀତ ତ ଇଉରୋପୀୟ ମହାଦେଶୀୟ ବିଶେଷ ଖାଦ୍ୟପ୍ରକରଣ ବି ରହିଛି । ଏବଂ, ଥାନରେ ଅଥାନରେ ଆପଣଙ୍କ ପାଇଁ ଖାଦ୍ୟର ସାନ ବଡ଼ ବିପଣି ମହଜୁଦ ହୋଇ ରହିଛି । ସିନେମା ଦେଖିବାକୁ ଯିବେ, ଦେଖିବେ ପ୍ରାୟ ସବୁ ଦେଖଣାହାରୀ ହାତରେ ଠୁଙ୍ଗାଏ ବା ଭୋଗେଇରେ କ'ଣ ସବୁ ଚର୍ବ୍ୟ ଓ ଉପଭୋଗ୍ୟ ପଦାର୍ଥ ସାଙ୍ଗରେ ନେଇ ସେଇ ଅନ୍ଧାରଘରେ ପଶିଛନ୍ତି । ଖେଳ ଖେଳିବା, ଖେଳ ଦେଖିବା ଜାଗାମାନଙ୍କରେ ମଧ କେତେ ସରାଗ ଏବଂ କେତେ ଜିହ୍ୱାକୁ ତୃପ୍ତି ଦେଇ ପାରିବାଭଳି ଖାଇବା ପିଇବା ଭର୍ତ୍ତି

ହୋଇ ରହିଛି । ଉଡ଼ାଜାହଜର ମୁସାଫିର ମାନଙ୍କ ନିମନ୍ତେ ଭୋଜନଶାଳାରେ ସଦାବର୍ତ୍ତ ଲାଗିରହିଛି । ପାଟି ନଚାଳିଲେ ସତେଅବା ଏହି ନଶ୍ୱର ସଂସାରରେ ଜୀବନଗାଡ଼ୀର ସବୁଯାକ ଚକା ଅଚଳ ହୋଇ ପଡ଼ିରହିବ, ଭଗବାନ ମଣିଷର ବୁଦ୍ଧି ଭିତରେ ସତେଅବା ନିଜ ଆଡୁ ପ୍ରସନ୍ନ ହୋଇ ତାହାର ପ୍ରତିକାର-ବିଧାନ କରିବାରେ ଅନ୍ତତଃ ଏହି ଗୋଟିଏ ଦେଶ ଆମେରିକାରେ ସେବିଷୟରେ ଆଦୌ କୌଣସି କାର୍ପଣ୍ୟ କରିନାହାନ୍ତି । ଆମେରିକାର ଭଗବାନ ପ୍ରକୃତରେ ଭାରି ଉଦାର ଜଣେ ଭଗବାନ । ଉଦାରୀକରଣ ହେଉଚି ଏଠାକାର ଜୀବନର ସର୍ବମୀମାଂସକ ଧର୍ମ ଓ ସର୍ବନିର୍ଦ୍ଦେଶକ ମୂଳବିଧି । ଶରୀରଟା ଉଦାର ହୋଇ ଭୋଜନ କଲେ ପ୍ରକୃତରେ କିପରି ଦେଖାଯିବ, ଆମେରିକା ଦେଶରେ ସେହି କଥାଟିର ହୁଏତ ଗୋଟିଏ ପ୍ରତ୍ୟକ୍ଷ ପରୀକ୍ଷା ଚାଲିଛି । ଖୁସୀରେ ଚାଲିଛି । ସମ୍ଭବତଃ ସମଗ୍ର ପୃଥିବୀକୁ ନଜରରେ ରଖି ଚାଲିଛି । ଆଗକୁ କେବଳ ମୋଟା ମଣିଷମାନେ ହିଁ ରହିବେ । ଭଲ ଖାଇବେ, ଖାଇବେ ଓ ଖାଉଥିବେ । ଚକି ମୋଟେ ବନ୍ଦ ହେବନାହିଁ । ଭଣ୍ଡାର କେବେହେଲେ ସରିବନାହିଁ । ମଣିଷ ପୃଥିବୀସାରା ଅଭାବରେ ଅଛି ବୋଲି ସିନା ମିତାଚାରିତା ଓ ଆନୁପାତିକତା ବିଷୟରେ ନୈତିକ ଏତେ ଏତେ ଚର୍ଚ୍ଚା କରୁଛି ! ମାତ୍ର, ସାରା ପୃଥିବୀ ଆମେରିକା ପରି ହୋଇଗଲେ ତାହାର ଆଉ କୌଣସି ପ୍ରୟୋଜନ ରହିବନାହିଁ ।

ମନୁଷ୍ୟଦେହ ବିଷୟରେ ବୈଜ୍ଞାନିକ ତଥ୍ୟମାନ ଠୁଳ କରୁଥିବା ବିଦ୍ୱାନ୍‌ମାନେ ଏବେ କହିଲେଣି ଯେ ଏହି ଆମେରିକା ଦେଶରେ ଲୋକମାନେ ବେଶୀ ବେଶୀ ଖାଉଥିବାରୁ ଏବଂ ତେଣୁ ସେମାନଙ୍କର ଦେହ ଅତିରିକ୍ତ ଚର୍ବିଯୁକ୍ତ ହୋଇ ଯାଉଥିବାରୁ ସେଠାରେ କର୍କଟରୋଗ ବୃଦ୍ଧି ପାଉଛି । ଅନେକ କ୍ଷେତ୍ରରେ ହୃଦ୍‌ଯନ୍ତ୍ରର ନାନାବିଧ ବେମାରି ମଧ ସେହି କାରଣରୁ ହେଉଛି । ଅବଶ୍ୟ ଏସବୁ ବେରାମ ଏବଂ ବେମାରି ହେବାର ଆଉ ଆଉ କାରଣ ମଧ ଅବଶ୍ୟ ଥିବ । ପୁନଶ୍ଚ, ଏସବୁ ବେମାରି ହେବାର ଅଧିକ ଆଶଙ୍କା ରହିଛି ବୋଲି ଯେ ମନୁଷ୍ୟମାନେ ଭାବି ଚିନ୍ତି ଖାଇବେ ଓ ଅତିରିକ୍ତ ମୋଟା ହେବେନାହିଁ, ମଣିଷନାମକ ସ୍ୱାଧୀନ ଜୀବ ଆମକୁ କଦାପି ସେପରି କୌଣସି ଗ୍ୟାରେଣ୍ଟି କେବେହେଲେ ଦେଇ ପାରିବନାହିଁ । ସେଦିନ କେଉଁଠାରେ ପଢୁଥିଲି ଯେ, ଚୀନ୍ ଦେଶରେ ମଧ ଲୋକମାନେ ଏଣିକି ଏଣିକି ଅଧିକ ମୋଟା ହେବାକୁ ଆରମ୍ଭ କରୁଛନ୍ତି । ୧୨୦ କୋଟି ମନୁଷ୍ୟଙ୍କର ଏକ ବିରାଟ ଜନସମୂହ ଚୀନ୍,- ଇତିହାସରେ ସେହି ଦେଶ ମୁଖ୍ୟତଃ ଦାରିଦ୍ର୍ୟ ଓ ଅନାଟନ ସହିତ ଯୁଝି ଯୁଝି ଆସିଛି । ଅଳପ ଲୋକ ଅତ୍ୟଧିକ ମାଡ଼ି ବସି ସେଠାରେ ଯୁଗ ଯୁଗ ଧରି ବହୁ ମନୁଷ୍ୟଙ୍କୁ ଜୀବନର ସର୍ବନିମ୍ନ ସାଧନ ତଥା ପ୍ରୟୋଜନ ଗୁଡ଼ିକରୁ ବଞ୍ଚିତ କରି ଆସିଥିଲେ । ପଚାଶ ବର୍ଷ ତଳେ ସେଠାରେ ପୁରୁଣା ଗାଡ଼ୀଟାକୁ ଏକ ବିପ୍ଳବ ଦ୍ୱାରା ଓଲଟାଇ ଦିଆଗଲା । ନୂଆ ଅନ୍ଦାଜ ଏବଂ ନୂଆ ଆଦର୍ଶରେ ଶାସନ ବସିଲା । ଲୋକମାନେ ମଧ ଅଧିକ ସମର୍ଥ ହେଲେ । ଶିକ୍ଷା ଲାଭ କଲେ । ନୂତନ ଆଲୋକରେ ବାଟ ଚାଲିଲେ ।

ତେଣୁ, ପେଟ ବି ପୂରିଲା, ପେଟ ପୂରି ଆହୁରି ପେଟେ ପାଇଁ ହୁଏତ କେତେଜଣଙ୍କର ଅବଶ୍ୟ ମନ ହୋଇଥିବ । ଏବେ କୁହାଗଲାଣି ଯେ, ଆମେରିକାଠାରୁ ମଧ ଚୀନ୍ ଦେଶରେ ମଧୁମେହ ବା ବହୁମୂତ୍ର ବେମାରି ଅଧିକ ପ୍ରକୋପ ଦେଖାଇଲାଣି ଏବଂ ବକ୍ଷ କର୍କଟ ବି ଅଧିକରୁ ଅଧିକ ମଣିଷଙ୍କୁ ଆକ୍ରମଣ କଲାଣି । ସେଠାରେ ମଧ ଏହିସବୁ ଅପଶକୁନର କାରଣ ରୂପେ ବିଶେଷଜ୍ଞମାନେ ସେହି ଗୋଟିଏ କଥା କହୁଛନ୍ତି । ସେମାନେ କହୁଛନ୍ତି ଚୀନା ଲୋକେ ଏବେ ଆଗ ଅପେକ୍ଷା ଅତିରିକ୍ତ ପରିମାଣରେ ଅଧିକ ଖାଉଛନ୍ତି । ସେମାନଙ୍କର ଖାଦ୍ୟରେ ଜୀବଜାତ ଚର୍ବିଅଂଶ ଅତ୍ୟଧିକ ରହିଯାଉଛି ଏବଂ ତାହା ସୁସ୍ଥ ଶରୀର ପାଇଁ ବାଧକ ହୋଇ କାର୍ଯ୍ୟ କରୁଛି । ବର୍ତ୍ତମାନ ଅନ୍ତତଃ କେତେକ ମଣିଷଙ୍କ ନିମନ୍ତେ ଯାହାକୁ ଯେତେ ଅଣ୍ଡା ମିଳୁଛି, ମାଂସ ଓ ଇହୁଣୀ ମିଳିପାରୁଛି ଏବଂ ସେମାନେ ପ୍ରତ୍ୟହ ଏହିସବୁ ପଦାର୍ଥକୁ ଯାହାକୁ ଯେତେ ଖାଇବାକୁ ପାଇ ପାରୁଛନ୍ତି ।

ପୃଥିବୀକୁ ଅଦୂର ଭବିଷ୍ୟତରେ ପ୍ରଳୟ ପରି ଗୋଟାଏ କିଛି ଘଟଣା ଘଟି ଏହି ସବୁକିଛିକୁ ସମ୍ପୂର୍ଣ୍ଣରୂପେ ଉଜାଡ଼ି ଦେବ ବୋଲି ବୁଦ୍ଧିମାନ ଲୋକମାନେ ନିଜର ଯନ୍ତ୍ରଗୁଡ଼ିକର ସାହାଯ୍ୟରେ ଭବିଷ୍ୟତ ମଧକୁ କାଠି ପକାଇ କହିବାକୁ ଆରମ୍ଭ କଲେଣି । ପୃଥିବୀର ଅନେକ ସଚେତନ ମନୁଷ୍ୟ ସେହି ଅଲକ୍ଷଣୀ ଭବିଷ୍ୟବାଣୀରେ ହୁଏତ ବିଶ୍ୱାସ ମଧ କଲେଣି । ଯଦି ତାହାହିଁ ପ୍ରକୃତରେ ଆସନ୍ତା ଏବଂ ଆଖର ପ୍ରଳୟଟିଏ ଆସି ଉପସ୍ଥିତ ହୁଅନ୍ତା ଓ ଯଦି ପରମଦୟାଳୁ ଭଗବାନ ଏହି ମର୍ତ୍ତ୍ୟମଣ୍ଡଳର ମଣିଷମାନଙ୍କୁ ଆଉ ମୋଟେ କାଳବିଳମ୍ବ ନକରି ଟାଉ ଟାଉ ହୋଇ ତାଙ୍କର ଅକ୍ଷୟ ନାବଟି ଉପରକୁ ଉଠିଯାଇ ପ୍ରାଣରକ୍ଷା କରିବା ନିମନ୍ତେ ପରାମର୍ଶ ଦିଅନ୍ତେ, ତେବେ ବଡ଼ ଆଶଙ୍କା ହେଉଛି ଯେ ପୃଥିବୀର ଏହି ମୋଟାମାନେ ଅର୍ଥାତ୍ ମୋଟା ଦେଶମାନେ ହିଁ ସମ୍ଭବତଃ ସବାଆଗ ଫଟ୍‌ଫାଟ୍ ହୋଇ ଡ଼େଇଁପଡ଼ି ନାଆଟି ଉପରେ ଯାଇ ପହଞ୍ଚି ଯାଆନ୍ତେ । ଏବଂ ଏହିପରି କରି ସେମାନେ ନିଜର ଭାରିରେ ଡ଼ଙ୍ଗାଟିକୁ ହୁଏତ ବୁଡ଼ାଇ ବି ଦିଅନ୍ତେ । ସେମାନେ ଧେଡ଼େଙ୍ଗା ଆଉ ଧଡ଼ିଆମାନଙ୍କୁ ମୋଟେ ବାଟ ଛାଡ଼ନ୍ତେନାହିଁ । ସମ୍ଭବତଃ ସତକଥାଟା ହେଉଛି ଯେ, ପୃଥିବୀ ଯଦି କେବେ ପ୍ରକୃତରେ ବୁଡ଼ିବ,ତେବେ ଏହି ମୋଟାମାନଙ୍କର ଭାରିରେ ହିଁ ବୁଡ଼ିଯିବ । ଏହି ଅତିକାୟ ଡ଼ାଇନୋସରମାନଙ୍କ ଦ୍ୱାରା ବୁଡ଼ିବ ; ଏହି ବେଶୀ ପଇସା, ବଡ଼ ପ୍ରାସାଦ ଏବଂ ଗରୁ ପେଟାମାନଙ୍କ ଦ୍ୱାରା ହିଁ ବୁଡ଼ିବ । ସେଇମାନଙ୍କ ଦ୍ୱାରା ବୁଡ଼ିବ ଯେଉଁମାନେ ପୂରା ଟାଇଟାନିକ୍ ମଗଜରେ ପୃଥିବୀଟାକୁ ନିଜ ଧିସାରେ ନଚାଇଦେ ଓ ନିଜ ହିସାବରେ ଚଳାଇବେ ବୋଲି ବାହାରିଛନ୍ତି । ସେହି ଲକ୍ଷଣସବୁ କିଅତ୍ ପରିମାଣରେ ଏବେ ମଧ ପ୍ରକାଶ ପାଇଲାଣି । କିନ୍ତୁ, ଭଗବାନ୍ କ'ଣ ପୃଥିବୀକୁ ପ୍ରକୃତରେ ଏତେ ଭାରି ହେବାଯାଏ ବାଟ ଛାଡ଼ିଦେବେ ? ଭିତରେ ଥିବା ବିବେକଟା କହୁଛି, ନାଇଁ, ନାଇଁ, ମୋଟେ ନୁହେଁ ; ତା' ପୂର୍ବରୁ ଗୋଟାଏ କିଛି ଘଟିବ, ହୁଏତ ବହୁତ କିଛି ଘଟିବ ଏବଂ ଏହି ଡ଼ଙ୍ଗାଟା କେବେହେଲେ ବୁଡ଼ିବନାହିଁ ।

ଥରେ ନିଉୟର୍କ ସହର ଭିତରେ ଯାଇ ପଶିଗଲା ବେଳକୁ ସେଠାରେ ଥିବା ଦୃଷ୍ଟି ଅବରୋଧକାରୀ ମୋଟା ମୋଟା ପ୍ରାସାଦଗୁଡ଼ାକ ସତେଅବା ଚାରିଆଡ଼ୁ ଘେରି ଆସିଲେ ଏବଂ ମୋ'ର ହାଲୁକ ଶୁଖାଇଦେଲେ । ଏହି ପ୍ରାସାଦଗୁଡ଼ିକର ଉଚ୍ଚତା ମଧ୍ୟ କିଛି କମ୍ ନୁହେଁ ; ତଥାପି ସେଗୁଡ଼ିକ କେଜାଣି କାହିଁକି ମୋତେ ମୋଟେ ଉଚ୍ଚା ଉଚ୍ଚା ଦିଶୁନଥାନ୍ତି, କେବଳ ମୋଟା ମୋଟା ଦିଶୁଥାଆନ୍ତି । ମୁଁ ଭାବୁଥାଏ, ଯଦି ମଣିଷମାନେ ଏଗୁଡ଼ିକୁ ତିଆରି କରିଛନ୍ତି, ତେବେ ସେମାନେ କାହିଁକି ଏମାନଙ୍କୁ ଏପରି ଅସୁର ଆକାର କରି ତିଆରି କଲେ ଯେଉଁମାନେ କି ଭୟଙ୍କର ଆଁ ସବୁ କରି ମଣିଷମାନଙ୍କୁ ସତେଅବା ଗିଳି ପକାଇବା ନିମନ୍ତେ ତା' ଆଡ଼କୁ ମାଡ଼ି ଆସୁଛନ୍ତି । ମଣିଷ କ'ଣ ପାଇଁ ଏହି ଉତ୍ତୁଙ୍ଗତାପୂର୍ଣ୍ଣ ଗୋଟିଏ ସଂସାରକୁ ଏଠି ତିଆରି କଲା, ଯାହାଭିତରେ କି ସିଏ ସ୍ୱୟଂ କୁଆଡ଼େ ପୋତିହୋଇ ପଡୁଛି, ଭାରି ଛୋଟ ହୋଇ ଦିଶୁଛି ଓ ଭାରି ଛୋଟିଆ ହୋଇ ରହିଛି ! କଥିତ ଅଛି ଯେ, ଏକଦା ବୈଜ୍ଞାନିକ ଆଲ୍‌ବର୍ଟ ଆଇନ୍‌ଷ୍ଟାଇନ୍ ଥରେ ଯେତେବେଳେ ନିଉୟର୍କ ସହରରେ ପ୍ରବେଶ କଲେ ଓ ଏହି ମୋଟା ଇଷ୍ଟାତିଆ କୋଠାମାନଙ୍କୁ ଦେଖିଲେ, ସେତେବେଳେ ଭାରି ଆତଙ୍କିତ ହୋଇ ଉଠିଥିଲେ ଏବଂ କହିଥିଲେ, ଏ ଦେଶଟାଯାକ ଖାଲି ମାତ୍ର ଦୁଇଟା dimension ରେ ତିଆରି ହୋଇଛି । ଅର୍ଥାତ୍, କେବଳ ଦୈର୍ଘ୍ୟ ଓ ପ୍ରସ୍ଥର ସମାହାରରେ ସବୁକିଛିର ଗୋଟାଏ ଉପରିଭାଗ ହିଁ ରହିଛି । ଗଭୀରତା (ବା ଉଚ୍ଚତା) ବୋଲି ଆଦୌ କିଛି ନାହିଁ ।

ଅଧିକତର ପରିମାଣରେ ନିଉୟର୍କ ସହରରେ ଏବଂ ତାହାରି ଅନୁକରଣରେ ଆମେରିକାର ପ୍ରାୟ ସବୁ ବଡ଼ ବଡ଼ ସହରରେ ଏମିତି ଦଆସିଲି ମାର୍କା ଅଟ୍ଟାଳିକାମାନ ରହିଛି । ଖୁବ୍‌ବେଶୀ ହେଲେ ରଙ୍ଗୀନ୍ ପାରାଭାଡ଼ି ପରି ଦେଖାଯାଉଛି । ଗଗନଚୁମ୍ବୀ ଏହିସବୁ ଅଟ୍ଟାଳିକାରେ ପିଞ୍ଜରଟା ସତେଅବା ଆଁ କରି ଅନାଇ ରହିଛି, କିନ୍ତୁ ପ୍ରାଣ ନାହିଁ । ଆମେ ଯେଉଁ World Trade Centre କୋଠାଟା ଉପରକୁ ଆରୋହଣ କରି ଏକ ସମଗ୍ର ନେତ୍ରପରିକ୍ରମା ଦ୍ୱାରା ଏକାବେଳେକେ ସେହି ବିରାଟ ନଗରୀକୁ ଅନ୍ଦାଜର ଦର୍ପଣ ଉପରେ ପକାଇ ମାପିବାକୁ ଚେଷ୍ଟା କରୁଥିଲୁ ସେଥିରେ ଶହେ ସାତ ମହଲା । କେତେ କେତେ ବ୍ୟବସାୟ-ଦପ୍ତରର ପେଣ୍ଠ ଜାଗା ସେହି ହର୍ମ୍ୟଟି । ସେଇ ଗୋଟିଏ ହର୍ମ୍ୟରେ କୁଆଡ଼େ ପଚାଶ ହଜାର ଲୋକ କାମ କରନ୍ତି । ସେମାନେ ସମସ୍ତେ ସେଇ କୋଠାଟା ଆଗରେ ରୁଣ୍ଡ ହେଲେ ହୁଏତ ମନ୍ଦାଏ ପିମ୍ପୁଡ଼ି ପରି ଦେଖାଯିବେ । ଏଡ଼େ ଉଚ୍ଚ ମହଲାଟାଏ, ତଥାପି ଉଚ୍ଚତା କହିଲେ ଜଣେ ମଣିଷର କଳ୍ପନା ଭିତରେ ଯେଉଁସବୁ ଚିତ୍ରକଳ୍ପର ଉନ୍ମେଷ ହୋଇ ଆସିବ, ଏଇଟାକୁ ଅନାଇଲେ ସେଗୁଡ଼ିକୁ ଆଦୌ ହାବୁଡ଼ିବାକୁ ପଡ଼ିବନାହିଁ । ଉଚ୍ଚତା ପ୍ରାୟ ସବୁଠାରେ ତାହାର ସମବାଚୀ ରୂପେ ଗଭୀରତାର ଅବବୋଧ ଦେଇଯାଏ ବୋଲି ଜୀବନକୁ ଅଧିଗମି ପାରିଥିବା ପ୍ରାୟ ସମସ୍ତେ ଘୋଷଣା କରି ଯାଇଛନ୍ତି । ମାତ୍ର, ନିଉୟର୍କର କୋଠାଗୁଡ଼ିକ ମାଳ ମାଳ ଏପରି ଢେଙ୍ଗାସଡ଼ସଡ଼ ହୋଇ ଖଞ୍ଜା ହୋଇ ରହିଛନ୍ତି ସିନା, ଗଭୀରତାର କୌଣସି ଆବେଦନକୁ ସମ୍ଭବ କରି ପାରୁନାହାନ୍ତି । ଖାଲି ମୋଟା ମୋଟା

ଦିଶୁଛନ୍ତି । ହଁ, ବେଳେବେଳେ ପ୍ରବଳ ଓ ଶକ୍ତିଶାଳୀ ଗୋଟାଏ ଗୋଟାଏ ଭୂତର ଧାରଣା ହୁଏତ ଆଉ କାହାକୁ କାହାକୁ ବି ଦେଇ ଯାଉଥିବେ । ତଥାପି ଖାଲି ବହଳ ହିଁ ଦେଖାଯାଉଛି ; ଜୀବନର ବସତି ଏବଂ ହୃଦୟର ଉପସ୍ଥିତି କହିଲେ ସବାଆଗ ଯେଉଁ ଗଭୀର ପ୍ରାଣସ୍ପର୍ଶଟି ସର୍ବତ୍ର ମିଳିଯିବା ଉଚିତ, ଏଠାରେ ସେଇଟି ଆଦୌ ନଥାଏ । ଯଦି ଚେତନାକୁ ହିଁ ଜୀବନକୁ ତା'ର ସ୍ୱାଭବିକ ଧର୍ମ ଓ ଉଷ୍ଣତା ଦେଇଯାଉ ଥିବାର ଉପାଦାନ ବୋଲି କୁହାଯିବ, ତେବେ ଏହି ବିଶାଳକାୟ ଓ ଆୟତାକାର ହର୍ମ୍ୟୋଦର ଗୁଡ଼ାକ ମଧରେ ସମ୍ଭବତଃ ସେହି ଅସଲ ସମ୍ପଦଟିର ଅଭାବ ରହିଛି ବୋଲି ଏକ ଆଶଙ୍କା କରାଯାଇ ପାରିବ । ଏବଂ, ଯଦି ଚେତନା ନାହିଁ, ତେବେ ଆଉ ପ୍ରକୃତରେ କ'ଣ ଅଛି ?

ମୋଟା ଅଟ୍ଟାଳିକା ଗୁଡ଼ିକର ଆଲୋଚନାରୁ ଆମେ ବର୍ତ୍ତମାନ ପୁନର୍ବାର ମୋଟା ମଣିଷଙ୍କ ପାଖକୁ ଲେଉଟି ଆସିବା । ମୋଟା ହେବାର କାରଣଗୁଡ଼ିକୁ ଜାଣିଲେ, ମୁଁ କାହିଁକି ଅସ୍ୱାଭାବିକ ଭାବରେ ଏପରି ମୋଟା ହୋଇ ଯାଉଛି, ଏଥିରୁ ଜନ୍ମଲାଭ କରୁଥିବା ମନସ୍ତାପଟା ତଥାପି ରହିବ । ମୋଟା ଶରୀରଟାକୁ ବହନ କରି ସଂସାରରେ ଜୀବନ ବଞ୍ଚିବା ଯେ ସଚରାଚର କେଡ଼େ ଅସ୍ୱସ୍ତିକର, କେବଳ ମୋଟା ମଣିଷମାନେ ହିଁ ସେହି ଦୁଃଖ କଥାଟିକୁ ଜାଣିଥିବେ । ପାତଳାମାନେ ଯେତିକି ବିକଳ ହୋଇ ମୋଟା ହେବାକୁ ଇଚ୍ଛା କରୁଥାନ୍ତି, ମୋଟାମାନେ ମଧ ପ୍ରାୟ ସେତିକି ବିକଳରେ ପାତଳା ହେବାକୁ ଇଚ୍ଛା କରନ୍ତି କି ? ତା' ନହେଲେ, ମୋଟା ହୋଇ ଯାଉଥିବା ମଣିଷମାନଙ୍କ ନିମନ୍ତେ ପୃଥବୀ ତମାମ ଏତେ ଏତେ ଔଷଧ ତଥା ଉପଚାରର ବ୍ୟବସ୍ଥାମାନ କାହିଁକି ରହିଥାଆନ୍ତା ? ଏବଂ, ମଣିଷମାନେ ଟିକିଏ ଭଲ ଖାଇ ଭଲରେ ରହି ଜୀବନଟାକୁ ଉପଭୋଗ କରିବେ ବୋଲି ମନ କରୁ କରୁ ସେମାନେ ଯେ କେତେବେଳେ ଅତ୍ୟଧିକ ପରିମାଣରେ ମୋଟା ହୋଇଯାଆନ୍ତି, ବିଚରା ସେମାନେ ସେହି କଥାଟିକୁ ହୁଏତ ନିଜେ ବି ଜାଣି ପାରନ୍ତିନାହିଁ । ଫୁଲୁ ଫୁଲୁ ଯେପରି ଅନେକ ମଣିଷ ବିପଜ୍ଜନକ ଭାବରେ ଫୁଲାଇ ହୁଅନ୍ତି ଏବଂ ନିଜପାଇଁ ନାନାବିଧ ବିପଦକୁ ଆମନ୍ତ୍ରଣ କରି ଆଣନ୍ତି,ଏଇଟି ହୁଏତ ପ୍ରାୟ ସେହିପରି କଥାଟିଏ ହୋଇଥିବ । ଅତିରିକ୍ତ ବା ଅତ୍ୟଧିକ ଖାଇଲେ ଯେ ଜଣେ ମଣିଷ ଆୟତ୍ତର ବାହାରକୁ ଚାଲିଗଲା ଭଳି ମୋଟା ହୋଇଯାଏ, ସେହି କଥାଟିକୁ ଏକ ସାଧାରଣ ନିୟମରେ ପକାଇ କୁହାଯାଇ ପାରିବନାହିଁ ସତ,ମାତ୍ର ଏହି କଥାଟିରେ ମଧ ଅବଶ୍ୟ ଅନେକ ମାତ୍ରାରେ ଏକ ସତ୍ୟ ରହିଛି ଯେ, ପୃଥିବୀରେ ଭଲ ଖାଇବା, ରସନାକୁ ଅଧିକରୁ ଅଧିକ ତୃପ୍ତି ଦେବାର ପ୍ରଲୋଭନରେ ପଡ଼ି ଖାଉ ଖାଉ କୋଉଠି କ'ଣ ଗାରଗୁଡ଼ାକୁ ଡେଇଁଯିବାର ସମ୍ଭାବନାଗୁଡ଼ିକ ପ୍ରଶସ୍ତ ହୋଇ ଯାଉଥିବା ସଙ୍ଗେ ସଙ୍ଗେ କ୍ରମେ ମୋଟା ମଣିଷଙ୍କର ସଂଖ୍ୟା ମଧ ବୃଦ୍ଧି ପାଉଛି । ଏବଂ, ପୃଥିବୀରେ ସବୁଠାରୁ ଅଧିକ ଖାଇବା ଅର୍ଥାତ୍ ରସନାତୃପ୍ତିର ସୁଖସମ୍ଭାବନା ଗୁଡ଼ିକ ଯେଉଁ ଖାସ୍ ଦେଶଟିରେ ସର୍ବାଧିକ ପରିମାଣରେ ମହଜୁଦ ହୋଇ ରହିଛି, ସେହି ଦେଶରେ ଯେ ମୋଟା ମନୁଷ୍ୟମାନେ ପ୍ରାୟ ହାଉଜାଉ ହୋଇ ରହିଥିବା ପରି ସର୍ବତ୍ର

ଦୃଷ୍ଟିଗୋଚର ହେବେ, ସେହି କଥାଟିକୁ ବେଶ୍ ବୁଝି ହେଉଛି । ଏବଂ, ପ୍ରଧାନତଃ ପାତଳା ଓ ଧେଡ଼େଙ୍ଗା ମଣିଷମାନେ ସାଲୁବାଲୁ ହୋଇ ରହିଥିବା ଏକ ଦେଶରୁ ସଦ୍ୟ ଆମେରିକା ଯାଇଥିବା ଆମ ସହଧର୍ମିଣୀଙ୍କର ଆଖି ସେହି ଦେଶର ମୋଟା ମନୁଷ୍ୟମାନଙ୍କ ଉପରେ ପଡ଼ିଯିବା ଓ ତାହାକୁ ସିଏ ଏକ ବିଚିତ୍ର ଘଟଣା ବୋଲି ବିଚାର କରିବା ଏକାନ୍ତ ସ୍ୱାଭାବିକ ।

ଯେଉଁ କାଲିଫର୍ଣ୍ଣିଆ ରାଜ୍ୟରେ ଥିବା ସାନ୍‌ଫାନ୍‌ସିସ୍କୋ ସହରର ଉପକଣ୍ଠରେ ଆମେ ଏଥର ଆମ ଆମେରିକା ପ୍ରବାସକାଳୀନ ଡ଼େରାଟି ପକାଇଥିଲୁ, ସେହି ରାଜ୍ୟର ସାଣ୍ଟା ମନିକା ନାମକ ଆଉ ଗୋଟିଏ ସ୍ଥାନରେ ସମଗ୍ର ଦେଶର ମୋଟା ମଣିଷମାନଙ୍କର ଏକ ସମ୍ମିଳନୀ ସେତେବେଳେ ବସିଥିଲା । ସେତେବେଳେ ଅର୍ଥାତ୍ ଆମେ ଆମେରିକା ଦେଶର ପ୍ରବ୍ରଜ୍ୟା କରୁଥିବା ସମୟରେ । ପ୍ରଶାନ୍ତ ମହାସାଗରର ଉପକୂଳ ଅଞ୍ଚଳରେ ସୁଦୃଶ୍ୟ ତାଳବନର ଘଞ୍ଚ ଗୋଟିଏ ସ୍ଥାନରେ ସାରା ଆମେରିକାର ମୋଟା ମନୁଷ୍ୟମାନେ ଏକତ୍ର ହୋଇଥିଲେ । ଖବରକାଗଜର କହିବା ଅନୁସାରେ ଏଇଟି ହେଉଛି ଏହି ଧରଣର ଦ୍ୱିତୀୟ ସମ୍ମିଳନୀ । ଆମେରିକାରେ ମୋଟା ମଣିଷମାନେ ଯେ ଆନୁଷ୍ଠାନିକ ଭାବରେ ବାର୍ଷିକ ସମ୍ମିଳନୀଟିଏ ଡ଼ାକିଲେଣି, ନିଜର ଗୋଟିଏ ସ୍ଥାୟୀ ସଂଗଠନ ଗଠନ କଲେଣି, ଏତିକି କଥାରୁ ହିଁ ବହୁତ କଥା ଅନୁମାନ କରାଯାଇ ପାରିବ । ମୋଟା ମଣିଷମାନଙ୍କୁ ଯେ କେହି ସହାନୁଭୂତି ସହିତ ଦେଖୁନାହାନ୍ତି, ସେମାନେ ଯେ ରାସ୍ତାରେ ଘାଟରେ ତଥା ସାମୂହିକ ଜୀବନର ଅବସର ମାନଙ୍କରେ ଅମୋଟାମାନଙ୍କ ଦ୍ୱାରା ଉପହାସିତ ହେଉଛନ୍ତି, ନିଜ ତରଫରୁ ସେହି ଅଭିଯୋଗଟିକୁ କିଞ୍ଚିତ୍ ସୋଚ୍ଚାର କରିବାର ଆଶାରେ ମୋଟା ଆମ୍ବଦରଦୀମାନେ ଆଖର ସଂଗଠନଟିଏ ଗଠନ କଲେ ଏବଂ ଏକାଠି ନିଜର ଅଙ୍ଗେ ନିଭାଉଥିବା ଅସୁବିଧାଗୁଡ଼ିକର ରୋମାନ୍ଥନ କରିବାର ଏକ ପ୍ରୟୋଜନ ଆସି ଉପସ୍ଥିତ ହୋଇଛି ବୋଲି ସେମାନେ ହୃଦୟଙ୍ଗମ କଲେ କି ? ସମ୍ବାଦ କହୁଛି, ଏହି ସମ୍ମିଳନୀରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀଲୋକମାନେ ହିଁ ସଂଖ୍ୟାରେ ଅଧିକ ଥିଲେ । ସେମାନେ ଆଗ ଗୀତ ଗାଇ ଗାଇ ଗୋଟିଏ ଶୋଭାଯାତ୍ରାରେ ବାହାରି କିଛି ଦୂର ପରିକ୍ରମା କରି ସମ୍ମିଳନୀ ଜାଗାକୁ ଆସିଥିଲେ । ବାଟରେ ଯାଉଥିବା ସମୟରେ ଅମୋଟା ଏବଂ ସାଧାରଣ ମୋଟାମାନେ ସେମାନଙ୍କର ଏହି ହର୍ଷଯାତ୍ରାକୁ ଅବଲୋକନ କରୁଥିଲେ, ଏବଂ ଉପଭୋଗ ବି କରୁଥିଲେ । ମନେହେଉଛି, ସେମାନଙ୍କୁ ସମସ୍ତେ ଦେଖନ୍ତୁ,- ଶୋଭାଯାତ୍ରାରେ ଯିବା ସମୟରେ ଚରାଚରବାସୀ ସେମାନଙ୍କୁ ଭଲ କରି ଦେଖନ୍ତୁ- ଏଇଟି ସେମାନଙ୍କର ସର୍ବପ୍ରଧାନ ଉଦ୍ଦେଶ୍ୟ ନଥିଲା ; ବରଂ, ନିଜେ ମୋଟା, ଏତେ ବେଶୀ ମୋଟା ବୋଲି ସେମାନଙ୍କ ନିଜ ଭିତରେ ଯେଉଁ ଗ୍ଲାନିଭାବଟି ରହିଛି ଓ ସେମାନଙ୍କୁ ନିରନ୍ତର ପୀଡ଼ା ଦେଉଛି ଏପରି ଏକ ଯୌଥ-ଅନୁଷ୍ଠାନ ଦ୍ୱାରା ସେମାନଙ୍କର ସେହି ଭାବଟା ଦୂରୀଭୂତ ହୋଇଯାଉ, ତାହାହିଁ ମୁଖ୍ୟତର ଉଦ୍ଦେଶ୍ୟ ହୋଇ ରହିଥିଲା । ଅନେକ ସମୟରେ ଏପରି ହୁଏ ଯେ, ଜଣେ ମଣିଷ ଏକା ଯାହା କରିବା ନିମନ୍ତେ କୁଣ୍ଠା ବା ଲଜ୍ଜା ଅନୁଭବ କରୁଥାଏ,

ଆଉ ଦଶଜଣଙ୍କ ସହିତ ମିଳିତ ଭାବରେ ସେହି କଥାଟିକୁ କରିବାରେ ତାକୁ ଆଉ ଲାଜ ଲାଗେନାହିଁ । ଏହାଫଳରେ ସିଏ ନିଜ ଭିତରେ ମଧ୍ୟ ସତେଅବା ଗୋଟିଏ ବଡ଼ ବାଧାକୁ ଅତିକ୍ରମ କରିଯାଏ । ଖୁସୀ ହୁଏ, ନିଜକୁ ଅଧିକ ସମର୍ଥ ବୋଲି ଅନୁଭବ କରୁଥାଏ ।

ଶୋଭାଯାତ୍ରାରେ ପ୍ରାୟ ଦୁଇଶହଟି ମୋଟା ଦେହ ସମବେତ ହୋଇଥିଲେ । ସେଇମାନେ ହିଁ ଶୋଭାଯାତ୍ରା ସାରି ସେମାନଙ୍କର ଏହି ଦ୍ୱିତୀୟ ସାମ୍ବତ୍ସରିକ ସମାବେଶଟିକୁ ଆରମ୍ଭ କରିଥିଲେ । ଓଜନଦାର ଲୋକମାନେ ବହୁ ଓଜନଦାର କଥାମାନ କହିଲେ । ସେମାନଙ୍କ ଭିତରୁ କାହାରି ଜଣକର ଓଜନ ମଧ୍ୟ ୨୫୦ ପାଉଣ୍ଡରୁ କମ୍ ନଥିଲା । କେତେ ତିନିଶହ ପାଉଣ୍ଡିଆ ଓ ଚାରିଶହ ପାଉଣ୍ଡିଆ ଓ ଏପରିକି ତା'ଠାରୁ ଆହୁରି ଅଧିକ ଓଜନର ଦେହଧାରୀମାନେ ମଧ୍ୟ ରହିଥିଲେ । ଏକାଠି ବସି ଗୀତ ଗାଇବା ସମୟରେ ତାହାରି ଉଲ୍ଲାସରେ ସେମାନଙ୍କର ଭାବନାଳୀ ଗୁଡ଼ିକରେ ବହୁଦିନରୁ ପ୍ରାୟ ବନ୍ଦ ହୋଇ ବସିଥିବା ସଙ୍କୋଚମାନେ ନିଃସନ୍ଦେହ ଭାବରେ ଅବଶ୍ୟ ପରିଷ୍କାର ହୋଇ ଯାଇଥିବେ ଏବଂ ଏତେ ମେଦକୁ ବୋହି କରି ଜୀବନର ଶଗଡ଼ଟିକୁ ଟାଣୁଥିବା ଜୀବନମାନେ ହୁଏତ ଖୁବ୍ ହାଲୁକା ହୋଇ ଯିବାପରି ଅନୁଭବ କରିଥିବେ । ମଣିଷର ଚର୍ବିଟା ହିଁ ତା' ପାଖକୁ ଅନ୍ୟମାନଙ୍କୁ ଆକର୍ଷିତ କରି ଆଣିବାର ଏକ ଅତ୍ୟନ୍ତ ଫଳଦାୟକ ଉପାଦାନ । ତେଣୁ, ଆମେ କଦାପି ଶୋଚନା କରିବାନାହିଁ ଏବଂ ସେହି ଚର୍ବି ଯେ ଆମ ଦେହରେ ଏପରି ସୁଲଭ ଓ ସ୍ୱାଭାବିକ ହୋଇ ରହିଛି, ଆମେ ସେଥିପାଇଁ ଭଗବାନଙ୍କ ପାଖରେ କୃତଜ୍ଞ ହୋଇ ରହିବା । ସେମାନେ ଗାଉଥିବା ଗୀତଟି 'Fat is sexy' - ଏହି ଶବ୍ଦଗୁଡ଼ିକ ଦ୍ୱାରା ଆରମ୍ଭ ହୋଇଥିଲା । ବକ୍ତାମାନେ ମଧ୍ୟ ସେଦିନ ଅତ୍ୟନ୍ତ ଭାବୋତ୍ତେଜକ ଭାବରେ ମେଦର ଗୁଣଗାନ କରି ବ୍ୟଞ୍ଜନାମୟୀ ବକ୍ତୃତାମାନ ପ୍ରଦାନ କରିଥିଲେ । ମୂଳ ଗୀତଟି ସେମାନଙ୍କୁ ପ୍ରକୃତରେ ବହୁତ ପ୍ରେରଣା ଆଣି ଯୋଗାଇ ଦେଇଥିବ । ସେମାନେ ମଧ୍ୟ ସମ୍ପୂର୍ଣ୍ଣମୁକ୍ତ ଭାବରେ କହିଥିଲେ ଯେ, ଆମର ଏହି ଅତିରକ୍ତ ମେଦ ସକାଶେ ଆମେ କଦାପି ନିଜପ୍ରତି କୌଣସି ଘୃଣାଭାବ ରଖିବାନାହିଁ । ନିଜକୁ ଘୃଣା କରି କରି ଆମେ ପ୍ରକୃତରେ କେତେ କ'ଣ ହରାଇ ସାରିଲୁଣି । ଏଣିକି ସେହି ରୀତିଟି ଭିତରୁ ବାହାରି ଆସିବା । ହଁ, ଏଣିକି ଖାଇବା ବିଷୟରେ ମଧ୍ୟ ସମ୍ପୂର୍ଣ୍ଣ ଚ୍ୟକ୍ତଲଜ୍ଜ ହେବା । କ'ଣ ସବୁ ଖାଇଲେ ଶରୀର ମେଦମୁକ୍ତ ହେବ, ସେସବୁ ବାଜେ କଥାକୁ ନେଇ ବ୍ୟସ୍ତ ରହିବାନାହିଁ । କାରଣ, ଆହୁରି ଉତ୍ସାହରେ ସେଠାରେ କେହି ହୁଏତ କହିଥାନ୍ତା,- ଭଗବାନ ସବୁ ମଣିଷଙ୍କୁ କଦାପି ମେଦଯୁକ୍ତ ଏବଂ ମୋଟା ହେବାର ସୌଭାଗ୍ୟ ପ୍ରଦାନ କରନ୍ତିନାହିଁ । ଏବଂ, ଆମକୁ ଯେ ସେହି ବିରଳ ଭାଗ୍ୟଟି ମିଳିଛି, ଆମେ ସେଥିଲାଗି ଭଗବାନଙ୍କ ପାଖରେ କୃତଜ୍ଞ ରହିବା । ଏହି ପୃଥିବୀକୁ ଜୀବନ ଧରି ଆମେ ପ୍ରକୃତରେ କେତେଟା ଦିନ ପାଇଁ ବା ଆସିଛୁ ? ତେଣୁ ଆଉ ନିଜକୁ ଘୃଣା କରିବା ନାହିଁ ।

ତେଣୁ, ଆଦୌ କୌଣସି ଖେଦ ନଥିଲା । ପୃଥୁଳ ଶରୀରର ଏହି ପ୍ରତିନିଧିବୃନ୍ଦ ଯଥାସମ୍ଭବ ଦେହରେ କମ୍ ପରିଚ୍ଛଦ ପରିଧାନ କରିଥିଲେ ଏବଂ ଦେହର ମୋଟା ମୋଟ

ବିଶେଷ ଅଂଶ ଓ ଅଞ୍ଚଳଗୁଡ଼ିକୁ ଯେପରି ଯଥାସମ୍ଭବ ଅଧିକ ଉତ୍ତମରୂପେ ପ୍ରଦର୍ଶିତ କରିହେବ, ସେଥିଲାଗି ପ୍ରୟାସ କରିଥିଲେ । ଅବଶ୍ୟ ଅଗଷ୍ଟ ମାସ, ଖରାଦିନ, ତେଣୁ ଶରୀରକୁ ଶୀତ ଲାଗିବାର କୌଣସି ପ୍ରଶ୍ନ ହିଁ ନଥିଲା । ରମ୍ଭାବୃକ୍ଷ ପରି ମୋଟ ମୋଟ ଜଂଘ, ବଡ଼ ବଡ଼ ବୋଇତାଳୁ ଭଳି ପ୍ରଭାବଶାଳୀ ହୋଇ ଦେଖା ଯାଉଥିବା ନିତମ୍ବ ଗୁଡ଼ିକ, ଏବଂ ଘୁମ ପରି ଗୋରା ଛନଛନ ଲାଉଧର୍ମୀ ପେଟଗୁଡ଼ିକ,- ସବୁକିଛି ଏକ ସମବେତ ଅପୂର୍ବ ସୌନ୍ଦର୍ଯ୍ୟରେ ପ୍ରକଟ ହୋଇ ପାରୁଥିଲା । ଏଥିଲାଗି ସମାଜ ପାଖରେ, ସମ୍ଭ୍ରମ ପାଖରେ କେହି କୌଣସି ଅପରାଧ କରି ପକାଉଛି ବୋଲି ଆଦୌ କୌଣସି ସଚେତନତା ନଥିଲା ; ଭୟର ଲେଶମାତ୍ର ନଥିଲା । କାହିଁକି ବା କାହାପାଖରେ ଭୟ କରା ଯାଇଥାନ୍ତା ? ଦେଶର ପୂର୍ବ ଉପକୂଳରୁ, ଫିଲାଡ଼େଲ୍‌ଫିଆ ସହରରୁ ଏହି ସମାବେଶକୁ ସ୍ଥାନୀୟ ଭାବରେ National Association to Advance Fat Acceptance ନାମକ ସଂଗଠନର ପ୍ରତିନିଧିତ୍ୱ କରି ଆସିଥିବା ମହିଳାଜଣକ କହିଲେ : ''ଆମେ ମନ କରିଥିଲେ ଏହି ସମ୍ମିଳନୀଟିକୁ ଏକ ଅଧିକ ନିରାପଦ ପରିବେଶରେ କିମ୍ବା ଘରୋଇ ଭାବରେ ଅବଶ୍ୟ କରି ପାରିଥାନ୍ତୁ । ମାତ୍ର, ଆମେ ଜାଣି ଜାଣି ଏପରି ଗୋଟିଏ ଖୋଲା ଜାଗାରେ ଏକତ୍ରିତ ହୋଇଛୁ । କାରଣ, ସାରା ପୃଥିବୀର ଆଖି ଆମଉପରେ ପଡୁ ବୋଲି ଆମେ ସମ୍ପୂର୍ଣ୍ଣ ପ୍ରସ୍ତୁତ ହୋଇଗଲୁଣି ।  ପାତଳା ଢେଙ୍ଗା କୃଶତନୁମାନଙ୍କ ପାଖରେ ଆଦୌ କୌଣସି ପ୍ରକାର ସଙ୍କୋଚ ନରଖି ଆମେ ପ୍ରକୃତରେ ଏଣିକି ସମ୍ପୂର୍ଣ୍ଣ ନିର୍ଭୟ ଭାବରେ ଛିଡ଼ାହୋଇ ପାରିବୁ ବୋଲି ନିଷ୍ପତ୍ତି ଗ୍ରହଣ କରି ସାରିଛୁ ।'' ପ୍ରକୃତରେ NAAFA ନାମକ ଉକ୍ତ ଜାତୀୟ ସଂଗଠନଟି ଏହି ସମ୍ମିଳନୀଟିର ଆୟୋଜନ କରିଥିଲା ଓ ଦେଶର ବିଭିନ୍ନ ଶାଖାଗୁଡ଼ିକରୁ ତାହାରି ପ୍ରତିନିଧିମାନେ ହିଁ ଏଥିରେ ଯୋଗ ଦେବାପାଇଁ ଆସିଥିଲେ । ସମ୍ମିଳନୀଟିରେ ପରିପୂର୍ଣ୍ଣ ଅଭୟ ରାଜତ୍ୱ କରୁଥିଲା ।

ସଂଗଠନଟିର ଘୋଷଣା ଅନୁସାରେ, ଯେଉଁ ବ୍ୟକ୍ତିମାନଙ୍କର ଶରୀରର ଓଜନ ମାନକରୂପେ ଗ୍ରହଣ କରା ଯାଇଥିବା ଓଜନଠାରୁ ଅଧିକ ରହିଛି, ସେମାନଙ୍କୁ ମୋଟା ବୋଲି ହିଁ କୁହାଯାଇ ପାରିବ । ମାତ୍ର ଦେହଟା ମୋଟା ହୋଇଗଲା ବୋଲି ବ୍ୟକ୍ତିଟି କାହିଁକି ଅମୋଟାମାନଙ୍କ ନିମନ୍ତେ ଉପହାସର ପାତ୍ର ହୋଇ ରହିବ ? କଳ୍ପନା କରା ଯାଇପାରେ, ଦୁଇଶହ ସରିକି ଅତିରିକ୍ତ ମୋଟା ମଣିଷ ଯେତେବେଳେ ପ୍ରାୟ ଏକ ଅସରନ୍ତି ଧାଡ଼ୀ ବାନ୍ଧି ରାସ୍ତାରେ ଶୋଭାଯାତ୍ରା କରି ଯାଇଥିବେ । ଝାଳ ବୋହି ସେମାନଙ୍କର ପରିଧାନଗୁଡ଼ିକ ଓଦା ସରସର ଦେଖା ଯାଉଥିବ, ସମ୍ମିଳିତ ଭାବରେ ଏକ କରୁଣ ସଅଁ ସଅଁ ଶବ୍ଦ ଶୁଭୁଥିବ ଏବଂ ବିଶାଳ କବନ୍ଧଗୁଡ଼ିକ ଉପରେ ସାନ ସାନ ମୁଣ୍ଡଗୁଡ଼ିକ କ୍ଳାନ୍ତି ହେତୁ ନଡ଼ନଡ଼ ହୋଇ ଏପାଖ ସେପାଖ ହେବାରେ ଲାଗିଥିବେ ! ଭାଷଣର ପରବର୍ତ୍ତୀ କାର୍ଯ୍ୟକ୍ରମରେ ବକ୍ତାପରେ ବକ୍ତା ପ୍ରାୟ ସମାନ ଉତ୍ସାହ ତଥା ଉତ୍ତେଜନାରେ ସେହି ଏକା କଥାଗୁଡ଼ିକୁ ଦୋହରାଇବାରେ

ଲାଗିଥାନ୍ତି : ଦେହର ଓଜନ ସ୍ଥାୟୀ ଭାବରେ କମି କମି ଯାଉଥିବ ଓ ଆଦୌ କେତେବେଳେ ହେଲେ ବଢ଼ିବନାହିଁ,- ଏକଥା ଆଦୌ ସମ୍ଭବ ନୁହେଁ । ବେଳେ ବେଳେ କମି ଯାଉଥିବ ଓ ପୁଣି ବେଳେବେଳେ ବୃଦ୍ଧି ମଧ ପାଇବ,- ଏବଂ ତାହାକୁ ମୋଟେ ଏକ ଅସ୍ୱାଭାବିକ ବ୍ୟାପାର ବୋଲି ଭାବିବା ଉଚିତ୍ ନୁହେଁ । ଅମୁକ ପଦାର୍ଥଗୁଡ଼ିକୁ ଖାଇଲେ ଯେ ଓଜନ ସ୍ୱାଭାବିକ ରହିବ ଏବଂ ଅମୁକ ଅନ୍ୟଗୁଡ଼ିକୁ ଖାଇଲେ ଯେ ଶରୀରର ଓଜନ ବଢ଼ିଯିବ, ସେକଥା କେହି ସମ୍ପୂର୍ଣ୍ଣ ନିର୍ଭରଯୋଗ୍ୟ ଭାବରେ କହି ପାରିବନାହିଁ । ହଁ, ଓଜନ ଠିକ୍ ରହିବା ଏବଂ ଅତ୍ୟଧିକ ହେବା ସହିତ ଆମେ ଖାଉଥିବା ଖାଦ୍ୟର ଅବଶ୍ୟ କିଛି ସମ୍ପର୍କ ରହିଛି ସତ, ମାତ୍ର ଏହି କଥାଟିକୁ ସବୁ ସମୟରେ କଦାପି ପୂରା ଅକାଟ୍ୟ ବୋଲି ଗ୍ରହଣ କରାଯାଇ ହେବନାହିଁ । ତେଣୁ, ଭୀତତ୍ରସ୍ତ ହୋଇପଡ଼ି ନିଜକୁ କେତେକ ଖାଦ୍ୟପଦାର୍ଥରୁ ବାଧ କରି ବଞ୍ଚିତ କରି ରଖିବାରେ ପ୍ରକୃତରେ କୌଣସି ବିବେକ ନାହିଁ ।

ସମ୍ମିଳନୀରେ ଆଲୋଚିତ ହୋଇଥିବା ଆଉଗୋଟିଏ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି ଯେ, ମଣିଷମାନେ କଦାପି ଜାଣିଶୁଣି ମୋଟା ହୋଇ ଯାଆନ୍ତିନାହିଁ । ସାଧାରଣ ହିତାହିତ ଧାରଣା ରହିଥିବା କୌଣସି ବ୍ୟକ୍ତି କଦାପି ଇଚ୍ଛା କରି ମୋଟା ହୁଏନାହିଁ । ନିଜର ଶରୀରଟିକୁ ସିଏ ସର୍ବଦା ସ୍ୱାଭାବିକ ଓଜନରେ ରଖିବାକୁ ଇଚ୍ଛା କରୁଥାଏ । ତଥାପି, କେତେବେଳେ ସମ୍ପୂର୍ଣ୍ଣ ସତର୍କ ରହୁଥିଲେ ମଧ ଦେହଟାରେ ଚର୍ବି ବଢ଼ିଯାଏ ଓ ପୁଣି କେତେବେଳେ ଆଦୌ କୌଣସି ନିଷେଧ ଭିତରେ ରହିନଥିଲେ ମଧ ଦେହର ଓଜନ ସ୍ୱାଭାବିକ ସୀମା ଭିତରେ ରହିଥାଏ । ଅର୍ଥାତ୍, ଜଣେ ମୋଟା ହୋଇଗଲା ବୋଲି ସେଥିପାଇଁ ତାହାରି ଉପରେ ସବୁ ଦୋଷ ଢ଼ାଳିଦେବା ଆଦୌ ସମୀଚୀନ ହେବନାହିଁ । ବ୍ୟକ୍ତିର ଆୟତ୍ତ ବାହାରେ ମଧ ହୁଏତ ଏକାଧିକ କାରଣ ଥାଏ, ଯାହାକି ତାକୁ ମୋଟା କରିଦିଏ । ସେହି ସମାବେଶଟିରେ ରୋଗ ଏବଂ ଭେଷଜର ବିଜ୍ଞାନ ବିଭିନ୍ନ ସମୟରେ ମୋଟା ହୋଇଯିବା ବିଷୟରେ ଯାହାସବୁ ମତାମତ ଦେଇ ଆସିଛି, ସେଗୁଡ଼ିକ ସମ୍ବନ୍ଧରେ ମଧ ପ୍ରତିନିଧିମାନେ ଗମ୍ଭୀର ଭାବରେ ଆଲୋଚନାମାନ କରିଥିଲେ । ବିଜ୍ଞାନ ପ୍ରକୃତରେ ଉଷୁନା ଅରୁଆ ଉଭୟ କଥା କହିଛି । ଏବଂ, ସେଗୁଡ଼ିକ ମଧରେ କେଉଁଟି ସର୍ବଦା ଠିକ୍ ଓ କେଉଁଟି ସର୍ବଦା ଆଦୌ ଠିକ୍ ନୁହେଁ, ସେବିଷୟରେ ସେହି ବିଜ୍ଞାନର ଗାରଗୁଡ଼ିକ ଭିତରେ ମଧ ସବୁଦିନେ ନାନା ବିବାଦ ରହିଆସିଛି । ତେଣୁ, ରାତିରେ ନିଜର ନିୟମିତ ଖାଦ୍ୟ ଖାଇ ସାରିବାପରେ ପୁନର୍ବାର ପାଟିକୁ ଟକଳା କରି ନିଜ ଘରେ ଥିବା ହିମବାକ୍ସ ଭିତରୁ ଆହୁରି ଖାଦ୍ୟ ନେଇ ଖାଉଥିଲେ ଯେ ଜଣେ ସେହି କାରଣରୁ ମୋଟା ହୋଇଯିବ, ସେପରି ମତ ଦେବା ଉଚିତ ହେବନାହିଁ ବୋଲି ମୋଟାମୋଟୀଙ୍କର ଉକ୍ତ ସମାବେଶରେ ସମବେତ ପ୍ରତିନିଧିବୃନ୍ଦ ପ୍ରାୟ ସମସ୍ୱରରେ ବ୍ୟକ୍ତ କରିଥିଲେ । ସେମାନେ ଅନୁମାନ କରୁଥିଲେ ଯେ, ଜଣେ ଜଣେ ମଣିଷଙ୍କର ଜୀନ୍ (Gene) ସମ୍ଭବତଃ ଆଗରୁ କୌଣସି କାରଣରୁ ଏକ ସ୍ୱତନ୍ତ୍ର ପ୍ରକାରେ ଗଠିତ ହୋଇ ରହିଥାଏ, ଯାହାଫଳରେ କି ସେମାନେ ମୋଟା ହୁଅନ୍ତି ଏବଂ ଅନ୍ୟମାନେ ମୋଟା

ହୁଅନ୍ତିନାହିଁ । ପ୍ରଥମ ଶ୍ରେଣୀର ମନୁଷ୍ୟମାନେ ଯାହା କିଛି ଖାଇଲେ ଅଥବା ନଖାଇଲେ ମଧ୍ୟ ମୋଟା ହୋଇଯାଆନ୍ତି ।

ଅଥବା, ଏପରି ବି ହୋଇପାରେ ଯେ, ଅନେକ ବ୍ୟକ୍ତି କିଛିଦିନ ପାଇଁ ନିଜକୁ ଖାଦ୍ୟ ବିଷୟରେ କିଛି କଟକଣା ଭିତରେ ରଖିଥାନ୍ତି, ମାତ୍ର କିଛିଦିନ ପରେ କୌଣସି କାରଣରୁ ସେହି କଟକଣାରୁ ବାହାରି ଯାଆନ୍ତି । କିମ୍ବା କିଛିଦିନ ସକାଶେ ସୁରାପାନର ଅଭ୍ୟାସ ଛାଡ଼ିଦିଅନ୍ତି ଏବଂ ପୁନର୍ବାର ସେହି ଅଭ୍ୟାସଟିରେ ଆସି ପଡ଼ିଯାଆନ୍ତି ଓ ଏହିସବୁ କାରଣରୁ ଦେହର ଚର୍ବିରେ ବୃଦ୍ଧି ଘଟିଥାଏ । ଏହିସବୁ ଆଲୋଚନାରେ ଅଂଶଗ୍ରହଣ କରୁଥିବା ବେଳେ ପ୍ରତିନିଧିମାନେ କହିଥିଲେ ଯେ ଏପରି ଏକ ଅବସରରେ ଯୋଗ ଦେଇ ସେମାନେ ଖୁବ୍ ଆଶ୍ୱସ୍ତ ଅନୁଭବ କରୁଛନ୍ତି । ବେଢାଏ ମୋଟା ହୋଇଯାଇ ସେମାନେ ଯେପରି ସମାଜ ବା ଆଉ କାହାରି ବିରୋଧରେ କୌଣସି ଅପରାଧ କରି ପକାଇଛନ୍ତି ଏବଂ ସମାଜ ସେମାନଙ୍କୁ ତାଚ୍ଛିଲ୍ୟର ଦୃଷ୍ଟିରେ ହିଁ ଦେଖୁଛି, ଅନେକ ସମୟରେ ସେମାନେ ସେହିପରି ଅନୁଭବ କରୁଥିଲେ ; ପ୍ରକୃତରେ ବଡ଼ ଉତ୍ପୀଡ଼ିତ ଅନୁଭବ କରୁଥିଲେ । ଏକ ସମାଜରେ ବାସ କରି ମଧ୍ୟ ସତେଅବା ସେହି ସମାଜରୁ ବାସନ୍ଦ ହୋଇ ରହିଥିବା ପରି ଅନେକ ସମୟରେ ଭାବୁଥିଲେ । ନିଜ ଭିତରର କଥାକୁ କାହା ଆଗରେ କହି ପାରୁନଥିଲେ । ସେମାନଙ୍କର ଏଡ଼େ ଏଡ଼େ ମୁହଁ ଓ ଏଡ଼େ ଏଡ଼େ ଦେହକୁ ଦେଖି ସମାଜରେ ଅନ୍ୟମାନେ ଯେପରି କିଛି ଅବାଞ୍ଛନୀୟ ବ୍ୟାପାରଟାଏ ଦେଖି ପକାଇଲେ ବୋଲି ଏପରି ଭାବପ୍ରକାଶ କରୁଥିଲେ, ଯାହାକି ଏହି ମୋଟା ବିଚରାମାନଙ୍କୁ ପ୍ରକୃତରେ ଭାରି ଦୁଃଖ ଦେଉଥିଲା ନିଜର ଚେହେରାଗୁଡ଼ିକୁ ସେମାନେ ଆଉ କୁଆଡ଼େ ଯାଇ ଲୁଚାଇ ରଖିଥାନ୍ତେ ! ତେଣୁ, ନିଜ ମନେ ମନେ ଭାରି କାଇଁଳି ହୋଇ ରହି ଯାଉଥିଲେ । ନିଜକୁ ଅକାରଣରେ ଭାରି ଦବାଇ ରଖୁଥିଲେ । ଖୁବ୍ କଷ୍ଟ ବି ପାଉଥିଲେ ।

ଏବଂ, ତା'ସହିତ ଆହୁରି ଅନ୍ୟ ଦୁଃଖସବୁ ମଧ୍ୟ ରହିଥିଲା । ଉପଯୁକ୍ତ ଯୋଗ୍ୟତା ରହିଥିଲେ ମଧ୍ୟ ବହୁତ ସମୟରେ ମୋଟା ଲୋକମାନଙ୍କୁ କାମଟିଏ ଦେବାରେ ନିଯୁକ୍ତି-କାରୀ ସଂସ୍ଥାମାନେ କୁଣ୍ଠା ପ୍ରକାଶ କରୁଥିଲେ । ଏଡ଼େ ମୋଟା କାୟଟାଏ ସାମନାରେ ଆସି ଛିଡ଼ା ହେଉ ହେଉ ସତେଅବା ଏକ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି ହୋଇ ଯାଉଥିଲା, ଯାହାଫଳରେ କି ମାଲିକମାନେ ମୋଟା ମଣିଷଟିକୁ ନିଯୁକ୍ତି ଦେବାରେ ଏକ ଅନିଚ୍ଛା ହିଁ ପ୍ରକାଶ କରୁଥିଲେ । ଠିକ୍ ସେହିପରି, ମୋଟାମାନଙ୍କୁ ବହୁତ ମଣିଷ ଘର ଭଡ଼ା ଦେବାକୁ ମଧ୍ୟ ଇଚ୍ଛା କରୁନଥିଲେ । ଏହିପରି ନାନା ବିଫଳତା ଭୋଗ କରି କରି ମୋଟା ମନୁଷ୍ୟମାନେ ନିଜକୁ ମଧ୍ୟ ଘୃଣା କରିବାକୁ ଆରମ୍ଭ କରୁଥିଲେ । ଏକ ଅମୋଟାମାନଙ୍କର ସମାଜରେ ମୋଟା ହେବାଟାକୁ ଅନେକତଃ ଏକ ଦୁର୍ଭାଗ୍ୟ ବୋଲି ମନେ କରୁଥିଲେ । ସତେଅବା ସେହି ଗୋଟିଏ କାରଣରୁ ହିଁ ସେମାନେ ସବୁ ଜାଗାରେ ହୀନସ୍ତା ହେବାରେ ଲାଗିଛନ୍ତି ଏବଂ ହାରି ହାରି ଯାଉଛନ୍ତି ବୋଲି ଏକ ଅତ୍ୟନ୍ତ ବିଷାଦପୂର୍ଣ୍ଣ ଭାବନା ସେମାନଙ୍କର ସମସ୍ତ

ପ୍ରହରକୁ ଆଚ୍ଛନ୍ନ କରି ରଖୁଥିଲା ଏବଂ ଦେହରେ ଏହି ଚର୍ବିଗୁଡ଼ାକ ରହିଥିବା ପର୍ଯ୍ୟନ୍ତ ଜୀବନରେ ଆଉ କିଛିହେଲେ ହାସଲ କରି ହେବନାହିଁ ବୋଲି ସେମାନଙ୍କର କ୍ରମେ ହୃଦ୍‌ବୋଧ ହୋଇ ଯାଉଥିଲା । ସ୍କୁଲରେ ମଧ୍ୟ ମୋଟା ଓ ମୋଟୀମାନଙ୍କୁ ସହପାଠୀମାନେ ସର୍ବଦା ପରିହାସ କରୁଥିଲେ ଓ ପରୋକ୍ଷ ଅଥବା ପ୍ରତ୍ୟକ୍ଷ ଭାବରେ ବହୁ ଗଞ୍ଜଣା ଦେଉଥିଲେ । ମୋଟାମାନଙ୍କର ସେଠାରେ ପ୍ରାୟ କେହି ସାଙ୍ଗ ନଥିଲେ । ଅର୍ଥାତ୍, ସାଙ୍ଗମାନଙ୍କ ଦ୍ୱାରା ଏହିପରି ନାନାଭାବେ ଏକ ପ୍ରତ୍ୟାଖ୍ୟାନର ବସ୍ତୁ ହୋଇ ରହିବା ଫଳରେ ସେମାନେ ନିଜେ ମଧ୍ୟ ନିଜ ପାଖରେ ଏକାଧିକ ଭାବରେ ପ୍ରତ୍ୟାଖ୍ୟାତ ହୋଇ ରହୁଥିଲେ । ସ୍କୁଲରେ ପାତଳାମାନଙ୍କ ମେଳରେ ବହୁ ପରିହାସର ପାତ୍ର ହୋଇ ମୋଟାମାନେ ବେଳେ ବେଳେ ଏତେ ନିଷ୍ଠୁର ଭାବରେ ନିଜକୁ ନିଃସଙ୍ଗ ବୋଲି ଅନୁଭବ କରୁଥିଲେ ଯେ, ସେହି ଉତ୍ତେଜନାରେ ଆତ୍ମହତ୍ୟା ବି କରି ପକାଉଥିଲେ । ଏଡ଼େବଡ଼ ଦେଶ ଆମେରିକାରେ ଏସବୁକୁ କିପରି ବା ଏକ ସୁଖର କାହାଣୀ ବୋଲି କୁହାଯାଇ ପାରିବ ?

ମୋଟା ମଣିଷମାନଙ୍କର ପ୍ରତିନିଧି ହୋଇ ଆମେରିକାର ଭିନ୍ନ ଭିନ୍ନ ଅଞ୍ଚଳରୁ ଆସିଥିବା ଦୁଃଖୀ ଏବଂ ଦୁଃଖିନୀମାନେ ଏହିସବୁ ଅଙ୍ଗେ ନିଭାଉଥିବା ପରିସ୍ଥିତି ବିଷୟରେ ମୁହଁ ଖୋଲି କେଉଁଠି କହି ପାରୁନଥିଲେ । ଏହି ସମ୍ମିଳନୀଟିରେ ହିଁ ଅନ୍ୟ ସମଦଶାପନ୍ନ ମାନଙ୍କର ମେଳରେ ବସି କହିଦେଲେ । ଏତିକି କ'ଣ କମ୍ କଥା ! କାହାଣୀ ଗୁଡ଼ିକ ଆଦୌ କାହାରି ଅଜଣା ନଥିଲା, ମାତ୍ର ସେଗୁଡ଼ିକୁ କହି ପକାଇବା ଲାଗି କୌଣସି ଅବସର ହିଁ ନଥିଲା । କିଏ ଦୃଷ୍ଟାନ୍ତଟିଏ ଦେଇ କହିଲେ ଯେ ଅମୁକ କମ୍ପାନୀ ଖାସ୍ ମୋଟା ହୋଇଥିବାରୁ ଜଣେ ଭଦ୍ରମହିଳାଙ୍କୁ ନିଯୁକ୍ତି ଦେବା ସକାଶେ ସମ୍ମତ ହେଉନଥିଲେ ; ଭଦ୍ରମହିଳା ଉପାୟନ୍ତର ନଦେଖି ନ୍ୟାୟ ପାଇବା ନିମନ୍ତେ କଚେରୀକୁ ଗଲେ ଏବଂ କଚେରୀରୁ ହିଁ ନ୍ୟାୟ ପାଇଲେ । ଜିତିଲେ ଏବଂ ଆପଣାର ଦାବୀଟିକୁ ସାବ୍ୟସ୍ତ କରିଥିଲେ ସିନା, ମାତ୍ର ସେଥିଲାଗି ଏଠିକୁ ସେଠିକୁ ଦଉଡ଼ି ତାଙ୍କୁ କ'ଣ କମ୍ ଉପହାସ ସହ୍ୟ କରିବାକୁ ପଡ଼ିଥିବ ? ଯେଉଁମାନେ ସହାନୁଭୂତିଶୀଳ ହୋଇ ତାଙ୍କୁ ସାହାଯ୍ୟ କରିଥିବେ, ନ୍ୟାୟାଳୟର ନ୍ୟାୟଧୀଶଙ୍କୁ ମଧ୍ୟ ସେମାନଙ୍କ ସହିତ ସାମିଲ କରାଯାଇ ପାରିବ, କିନ୍ତୁ ସେମାନେ ଉପରେ ଆଦୌ କିଛି ନକହିଲେ ମଧ୍ୟ ଏବଂ ନିଜର ସମୁଚିତ କର୍ତ୍ତବ୍ୟଗୁଡ଼ିକୁ ସମ୍ପନ୍ନ କରିଥିଲେ ମଧ୍ୟ ଜଣେ ମୋଟା ମଣିଷକୁ ଏପରି ବିପନ୍ନ ଅବସ୍ଥାରେ ପଡ଼ିଥିବାର ଦେଖି ହଠାତ୍ ସେମାନେ ମଧ୍ୟ ନିଜ ଭିତରେ କେତେ ହସି ପକାଇଥିବେ । ଆଉ ଜଣେ ନିଜର ଭୋଗିଥିବା ଥରକର ଦୁରବସ୍ଥାକୁ ଉଲ୍ଲେଖ କରି କହିଥିଲେ ଯେ ବସ୍‌ରେ ଯାଉଥିବା ସମୟରେ ବସ୍‌ର କଣ୍ଡକ୍ଟର ତାଙ୍କୁ ବସ୍‌ରୁ ଓହ୍ଲାଇଦେଲା ଏବଂ ନେବାପାଇଁ ଆଦୌ ରାଜୀ ହେଲାନାହିଁ । କାରଣ ତାଙ୍କ ଶରୀରର ପୃଥୁଳତା ଦୃଷ୍ଟିରୁ ଗୋଟିଏ ବସିବାଥାନ ତାଙ୍କପାଇଁ ଯଥେଷ୍ଟ ହୋଇ ପାରିନଥାନ୍ତା । ଚିନ୍ତା କରି କହନ୍ତୁ ତ. କିପରି ଏକ ମାନସିକ ବିରକ୍ତି ଏବଂ ବୈରାଗ୍ୟ ସହିତ ସେଦିନ ଭଦ୍ର ମହିଳାଙ୍କୁ ଏତେ ଏତେ ମନୁଷ୍ୟଙ୍କର ସାମନାରେ ବସ୍‌ରୁ ଓହ୍ଲାଇ ଆସିବାକୁ ପଡ଼ିନଥିବ ।

ଆମେରିକାର କୌଣସି ଉଡ଼ାଜାହାଜ କମ୍ପାନୀରେ କାମ କରୁଥିବା ପରିଚାରିକାମାନଙ୍କୁ ବାରମ୍ବାର ନିଜ ଶରୀର ଓଜନ ବିଷୟରେ କର୍ତ୍ତାମାନଙ୍କୁ କହିବାକୁ ପଡୁଥିଲା ବୋଲି ଆଉଜଣେ ପ୍ରତିନିଧି ଉଲ୍ଲେଖ କରିଥିଲେ । ଉଦ୍ଦେଶ୍ୟ ହେଉଛି, ଦେହର ଓଜନ ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ରହିଥିବା ପର୍ଯ୍ୟନ୍ତ ଜଣେ ଉଡ଼ାଜାହଜରେ ପରିଚାରିକା ହୋଇପାରିବ ଏବଂ ଓଜନ ସେହି ସୀମାରୁ ଅଧିକ ହୋଇଗଲେ ତୁମକୁ କାମଟିକୁ ହରାଇବାକୁ ପଡ଼ିବ ।

ଆମେରିକାର ପ୍ରସିଦ୍ଧ ହାଭାର୍ଡ୍ ବିଶ୍ୱବିଦ୍ୟାଳୟରେ କରା ଯାଇଥିବା ଗୋଟିଏ ଅଧ୍ୟୟନ ଅନୁସାରେ, ସେହି ଅଧ୍ୟୟନରେ ପାଞ୍ଚ ହଜାର ଭଦ୍ରମହିଳାଙ୍କୁ ପଚାରି ତଥ୍ୟ ଆହରଣ କରା ଯାଇଥିଲା,- ସେହି ଅଧ୍ୟୟନରୁ ଜଣାଗଲା ଯେ ମୋଟା ମହିଳାମାନେ ପାତଳା ମହିଳାମାନଙ୍କ ତୁଳନାରେ ବର୍ଷକୁ ସାତହଜାର ଡ଼ଲାର୍ କମ୍ ଉପାର୍ଜନ କରନ୍ତି ଏବଂ ଦାରିଦ୍ର୍ୟ ମଧ୍ୟରେ ବାସ କରିବାଲାଗି ସେମାନଙ୍କ କ୍ଷେତ୍ରରେ ଶତକଡ଼ା ଦଶଭାଗ ଅଧିକ ସମ୍ଭାବନା ମଧ୍ୟ ରହିଥାଏ । ମୋଟାମାନଙ୍କର ବିଭିନ୍ନ ସମସ୍ୟାର ଆଲୋଚନା କରି ପ୍ରକାଶ ପାଉଥିବା ଗୋଟିଏ ପତ୍ରିକାର ସମ୍ପାଦିକା ସମାବେଶରେ ସଂଖ୍ୟାସହିତ କେତେକ ହିସାବ ଯୋଗାଇଦେଇ କହିଲେ ଯେ, ମୋଟା ହୋଇଯିବା ଭୟରେ କେତେକ ଲୋକ କମ୍ ଖାଦ୍ୟ ଖାଉଥିବା ଫଳରେ ଆମେରିକାର ଖାଦ୍ୟଶିଳ୍ପରେ ରହିଥିବା କୋମ୍ପାନୀଗୁଡ଼ିକୁ ବର୍ଷକୁ ଚାରିହଜାର କୋଟି ଡ଼ଲାର କ୍ଷତି ସହ୍ୟ କରିବାକୁ ପଡୁଛି । କାରଣ, ସମାଜର ବିଦ୍ରୂପରୁ ରକ୍ଷା ପାଇବାର ଆଶାରେ ମହିଳାମାନେ ଏବେ କମ୍ ଖାଦ୍ୟ ଖାଉଛନ୍ତି । ପାତଳାମାନେ ମଧ୍ୟ କମ୍ ଖାଉଛନ୍ତି । କମ୍ ଖାଦ୍ୟ ଖାଇଲେ ସେମାନେ ପାତଳା ହୋଇ ରହିବେ ଏବଂ ସେମାନଙ୍କ ଦେହର ଓଜନରେ କୌଣସି ବୃଦ୍ଧି ହେବନାହିଁ ବୋଲି ସେମାନେ ଆଶା ରଖିଛନ୍ତି । ପାତଳା ହେବାର ଏହି ଯେଉଁ ବ୍ୟସ୍ତତା,- ଏଇଟା କ'ଣ ପ୍ରକୃତରେ ମଣିଷ ନିମନ୍ତେ ଏକ ସୁଖକାରୀ ଭାବନା ? ପ୍ରତିନିଧି ମତ ବ୍ୟକ୍ତ କରି କହିଲେ ଯେ, ଏହା ହେଉଛି ନିଜକୁ ପ୍ରକୃତରେ ଘୃଣାର ସହିତ ଦେଖୁଥିବାର ଏକ ପରିଣାମ । ଏବଂ, ଜଣେ ସୁସ୍ଥ ମନୁଷ୍ୟ କାହିଁକି ନିଜକୁ ଘୃଣା କରିବ ? ନିଜର ଦେହଟାକୁ ମଧ୍ୟ ସିଏ କାହିଁକି ତା' ଜୀବନର ସୁଖ ଏବଂ ସ୍ୱୀକୃତିର ପଥରେ ଏକ ପ୍ରତିବନ୍ଧକ ବୋଲି ବିଚାର କରିବ ? କେତେ ଦରଦର ସହିତ ଏହି କଥାଗୁଡ଼ିକ ସେଦିନ କୁହାହୋଇ ନଥିବ !

ତଥ୍ୟପରେ ତଥ୍ୟ ଏବଂ ଦୃଷ୍ଟାନ୍ତ ପରେ ଦୃଷ୍ଟାନ୍ତ ଯୋଗାଇ ଦେଇ ସମ୍ପାଦିକା ଅଭିଯୋଗର ମୁଦ୍ରାରେ କହୁଥାଆନ୍ତି ଯେ, ଯଦି ଆପଣ ମୋଟା ହୋଇ ଆମେରିକାରେ ଜନ୍ମ ହୋଇଥିବେ, ତେବେ ଆପଣଙ୍କୁ କାମଟିଏ ମିଳିବା କଷ୍ଟକର ହେବ ଓ କେହି ଆପଣଙ୍କୁ ସମ୍ମାନ ବି ଦେଖାଇବେ ନାହିଁ । ଦୋକାନମାନଙ୍କରେ ନିଜର ଦେହ ମୁତାବକ ଲୁଗାପଟା ପାଇବା କଷ୍ଟକର ହେବ ଏବଂ, ଯଦି ଆପଣ ମହିଳା ହୋଇଥିବେ, ତେବେ ନିଜ ସକାଶେ ପୁରୁଷବନ୍ଧୁଟିଏ ଖୋଜିପାଇବା ମଧ୍ୟ ଆଦୌ ସହଜ ହେବନାହିଁ । ତେଣୁ, ଏସବୁଥିରୁ ନିଷ୍କୃତି ପାଇବା ନିମନ୍ତେ ଆଉ କି ଉପାୟ ରହିଛି ? ସମାଧାନଟିଏ ବାହାର କରିଥିବା ପରି ବକ୍ତା

କହିଲେ : ''ଆପଣମାନେ ନିଜର ଶରୀରକୁ ଆଉ ମୋଟେ ଘୃଣା କରନ୍ତୁନାହିଁ । ସେହି ଶରୀର ଯେତେ ମୋଟା ହୋଇଥିଲେ ମଧ୍ୟ ମୋଟେ ଘୃଣା କରନ୍ତୁନାହିଁ । ନିଜର ଶରୀରକୁ ଶ୍ରଦ୍ଧାର ଦୃଷ୍ଟିରେ ଦେଖନ୍ତୁ । ବୈଚିତ୍ର୍ୟ ହିଁ ସୌନ୍ଦର୍ଯ୍ୟ ।'' ସିଏ ବୁଝାଇ କହିଦେବାକୁ ଇଚ୍ଛା କରୁଥିଲେ ଯେ ଅଧିକାଂଶ ମଣିଷ ପାତଳା ହୋଇଥିଲେ ମଧ୍ୟ ମୋଟା ହେବାଟା ଆଦୌ ଅସୁନ୍ଦରତା ହେବନାହିଁ । ସଂସାରରେ ପାତଳାମାନେ ରହିବେ, ମୋଟାମାନେ ରହିବେ । ଏବଂ, ପାତଳା ଏବଂ ମୋଟା, ଉଭୟଟିକୁ ସ୍ୱାଭାବିକତା ବୋଲି କୁହାଯିବ । ଆଉଜଣେ ମୋଟା ମହିଳା, ଯିଏକି ଆମେରିକାର ଦୂରଦର୍ଶନରେ ବହୁତ ଲୋକପ୍ରିୟତା ଅର୍ଜନ କରିଥିଲେ ଓ ସମସ୍ତଙ୍କର ପରିଚିତ ଥିଲେ, ସିଏ ହଠାତ୍ ମାଇକ୍ରୋଫୋନ୍ ପାଖକୁ ମାଡ଼ିଆସିଲେ ଏବଂ ହାତରେ ଉଚ୍ଚଭାଷକଟିକୁ ଦୃଢ଼ ଭାବରେ ଯାବୁଡ଼ି ଧରି ଏଡ଼େ ପାଟିରେ ''ମୁଁ ମୋଟା, ମୁଁ ମୋଟା ।'' ବୋଲି କହିଲେ । ତାଳିପରେ ତାଳି ବର୍ଷା ହେବାକୁ ଲାଗିଲା । ନିଜର ମୋଟା ହେବାଟାକୁ ସିଏ ଯେ ଆଦୌ କୌଣସି ଲଜ୍ଜାର ବ୍ୟାପାର ବୋଲି ବିଚାର କରୁନାହାନ୍ତି ଓ କୌଣସି ମୋଟା ବ୍ୟକ୍ତି ନିଜର ପୃଥୁଳ ଶରୀରଟା ପାଇଁ ଆଦୌ ସଙ୍କୋଚ ଅନୁଭବ କରିବା ଯେ ଉଚିତ୍ ନୁହେଁ, ସିଏ ସେହି କଥାଟି ହିଁ ଘୋଷଣା କରିବାକୁ ଇଚ୍ଛା କରୁଥିଲେ । ଆଉଜଣେ ମହିଳା ପାତଳା ହେବାଟାକୁ ନାପସନ୍ଦ କଲାପରି କହିଲେ ଯେ, ପାତଳୀ ସ୍ତ୍ରୀଲୋକମାନେ ପ୍ରକୃତରେ ମୋଟେ ସୁନ୍ଦର ନୁହନ୍ତି । ସେମାନେ ତ ସତେଅବା କୋଉ ଗୀର୍ଜାର ସରୁଆ ଗୋଜଟା ପରି ଦେଖା ଯାଉଥାଆନ୍ତି । ଏବଂ, ମୋଟାମାନେ ଏକ ସୁଆକୃତି ଡ଼ାକବଙ୍ଗଳା ପରି ହୋଇଥାନ୍ତି, ସୁନ୍ଦର ଦିଶନ୍ତି । ଆମ ଦେଶ ହୋଇଥିଲେ, ପୋଟଳ ନିଜର ଠୋଲା ହେବାର ଲଜ୍ଜାଟିକୁ ଭୁଲିବା ଲାଗି ସଜନା ଛୁଇଁକୁ ସମ୍ଭବତଃ ଏହିଭଳି ଝିଂଗାସ କରି ଉଝାଳି ଦେଇଥାନ୍ତା ।

ଏମାନେ ସମସ୍ତେ ଉପରକୁ ସିନା ଏତେ ତେଜ ଦେଖାଇ ଏତେ ଏତେ କଥା କହୁଥିଲେ ଏବଂ ପରସ୍ପରର ମେଳରେ ତଦ୍ୱାରା ଅନେକ ସାନ୍ତ୍ୱନା ଲାଭ କରୁଥିଲେ, ମାତ୍ର ଏଥିରେ ଆଦୌ କୌଣସି ସନ୍ଦେହ ନାହିଁ, ସେମାନଙ୍କର ମର୍ମସ୍ଥଳରେ ରହିଥିବା କୌଣସି ଏକ କ୍ଷତ ସେମାନଙ୍କୁ ସତେଅବା ଭାରି କାମୁଡ଼ି ଧରିଥିଲା । ଏକ ସମାଜରେ, ଯେଉଁଠାରେ ପାତଳା ଦେଖାଯିବାକୁ ଏକ ଗୁଣ ବୋଲି ଦେଖିବାର ଅଭ୍ୟାସଟି ସମ୍ପୃକ୍ତ ସମସ୍ତଙ୍କର ଗଭୀର ଅନ୍ତଃକରଣରେ ବଳବତ୍ତର ହୋଇ ରହିଥିଲା, ସେହି ସମାଜରେ ପାତଳା ନହୋଇ ଏତେ ଅତିରିକ୍ତ ମାତ୍ରାରେ ମେଦଯୁକ୍ତ ଏବଂ ମୋଟା ହୋଇ ରହିବାର ଦୁଃଖଟି ଜନିତ କ୍ଷତ । ସେମାନେ ପିଲାଦିନରୁ ମୋଟା ହୋଇଥିବା ହେତୁ କେତେ କେତେ ପ୍ରକାରର ବିଦ୍ରୂପର ଶିକାର ହୋଇ ଆସିଥିଲେ । ଜଣେ ମହିଳା ପାଠ ପଢ଼ିବା ବେଳର ଦୁଃଖଗୁଡ଼ିକର ରୋମନ୍ଥନ କରି କହିଲେ : ''ସ୍କୁଲରେ ମୋତେ ଶ୍ରେଣୀଗୃହରେ ଅନ୍ୟ ପିଲାମାନଙ୍କ ସହିତ ଏକାଠି ବସା ନଯାଇ ଦୁଆରମୁହଁକୁ ବସା ଯାଉଥିଲା । କାରଣ, ଶ୍ରେଣୀଯାକର ପିଲାଏ ମୋତେ ମଉକା ପାଇବା ମାତ୍ରକେ ହିଁ ଚିଡ଼ାଇବାରେ ଲାଗି ଯାଉଥିଲେ । ସତେଯେମିତି ମୁଁ

ଅନ୍ୟମାନଙ୍କ ସହିତ ଏକାଠି ବସିବାର ଓ ପଢ଼ିବାର ଯୋଗ୍ୟ ନୁହେଁ, ସତେ ଯେମିତି ମୁଁ ଆଉ କୁଆଡୁ ଆସି ଏଠାରେ ଭୁଲରେ ପହଞ୍ଚି ଯାଇଛି ! ଆମେରିକାରେ ସମ୍ପ୍ରତି ଅଧିକାଂଶ ମହିଳା ହେଉଛନ୍ତି ଆବଶ୍ୟକତାରୁ ଅଧିକ ମୋଟା । ସେମାନଙ୍କର ସଂଖ୍ୟାଗରିଷ୍ଠତା ସତ୍ତ୍ୱେ ସେମାନଙ୍କୁ ତଥାପି ସର୍ବଥା ଏକ ତାଚ୍ଛିଲ୍ୟପୂର୍ଣ୍ଣ ଦୃଷ୍ଟିରେ ସମ୍ପୃକ୍ତ ସମସ୍ତେ ଦେଖିବାରେ ଅଭ୍ୟସ୍ତ ହୋଇ ଯାଇଛନ୍ତି । କାରଣ, ପ୍ରଚଳିତ ରୁଚିରେ ହିଁ ପାତଳା ଶରୀରକୁ ସୁନ୍ଦର ଶରୀର ବୋଲି କୁହାଯାଉଛି । ମୋଟା ଦେହକୁ କିଭଳି ପାତଳା କରାଯାଇ ପାରିବ ଅର୍ଥାତ୍ ଦେହର ଓଜନକୁ କିପରି କମ୍ କରିହେବ, ସେଥିଲାଗି ଔଷଧ ସମେତ ଆହୁରି ଭଳି ଭଳି ପ୍ରତିକାର ଫାନ୍ଦି ବାହାନ୍ତି କରୁଥିବା ବ୍ୟବସାୟୀ ସଂସ୍ଥାମାନେ ବର୍ଷବର୍ଷର ବିଜ୍ଞାପନ ଦ୍ୱାରା ଏପରି ଗୋଟିଏ ରୁଚିକୁ ଲୋକମନରେ ପ୍ରାୟ ସର୍ବଜନଗୃହୀତ କରାଇ ନେଇଛନ୍ତି କି ?

ବିଷୟଟିର ଆଲୋଚନା କରି ଜଣେ ମହିଳା କହିଲେ : ଆମେରିକାରେ ଯେତେ ସ୍ତ୍ରୀଲୋକ ଅଛନ୍ତି, ସେମାନଙ୍କ ମଧ୍ୟରେ ଶତକଡ଼ା ୫୨ ଜଣ ହେଉଛନ୍ତି ମୋଟା । ତଥାପି ପାତଳା ମଣିଷଙ୍କର ଦେହକୁ ହିଁ ଆଦର୍ଶ ବୋଲି ଗ୍ରହଣ କରାଯାଉଛି । ସମାଜଟା ପ୍ରକୃତରେ କେଡ଼େ କ୍ରୂର, ମୋଟା ମନୁଷ୍ୟମାନଙ୍କର ମଧ୍ୟ ଯେ ଏହି ପୃଥିବୀରେ ରହିବାକୁ ସକଳ ଅଧିକାର ରହିଛି, ସମାଜ ସେହି କଥାଟିକୁ ସ୍ୱୀକାର କରିବାକୁ ରାଜୀ ହୋଇ ପାରୁନାହିଁ । ସମାବେଶର ଅଧିକସଂଖ୍ୟକ ବକ୍ତା ଦାରୁଣ ଖେଦ ପ୍ରକାଶ କରି ଓ ପ୍ରତିବାଦ କରି କହୁଥାନ୍ତି ଯେ, ସମସ୍ତେ କେବଳ ମୋଟାମାନଙ୍କୁ ହିଁ ଓଜନକୁ କମ୍ କରାଇବା ସକାଶେ ପଚାଶ ଉପଦେଶ ଦେଉଛନ୍ତି, କିନ୍ତୁ ସମାଜର ରୁଚିଟାକୁ ବଦଳାଇବା ନିମନ୍ତେ କେହି କୌଣସି ଚେଷ୍ଟା କରୁନାହାନ୍ତି । ଏହା ଯେ ଏକ ଘୋର ଅନ୍ୟାୟ ସରବ ତଥା ନୀରବ ଉଭୟ ପ୍ରତିନିଧିମାନଙ୍କର ବଦନମଣ୍ଡଳରୁ ସତେ ଯେପରି ସେହି ଭାବଟି ହିଁ ପ୍ରକଟ ହୋଇ ଆସୁଥିଲା । ଭାଷଣଗୁଡ଼ିକରେ ଡ଼ାକ୍ତରମାନଙ୍କ ଉପରେ ହିଁ ସର୍ବାଧିକ କ୍ରୋଧର ବର୍ଷଣ ହେବାରେ ଲାଗିଥାଏ । ଡ଼ାକ୍ତରମାନେ ତ ଅସଲ ସମସ୍ୟା ଓ ଅସଲ ଦୁଃଖଟିକୁ ବୁଝୁନାହାନ୍ତି । ସେମାନେ କେବଳ ଔଷଧ ବତାଇବାରେ ଲାଗିଛନ୍ତି,କସରତ କରିବାପାଇଁ ପରାମର୍ଶ ଦେଉଛନ୍ତି । ଅଭିଯୋଗ ହୋଇଥିଲା ଯେ, ମୋଟା ଲୋକଙ୍କର ରକ୍ତଚାପ ପ୍ରଭୃତି ମାପି ଦେଖିବାପାଇଁ ଡ଼ାକ୍ତରମାନଙ୍କ ପାଖରେ ଉପଯୁକ୍ତ ମାପଯନ୍ତ୍ର ଇତ୍ୟାଦିର ମଧ୍ୟ ଅଭାବ ରହିଛି । ଡ଼ାକ୍ତରମାନେ ଧରି ନେଇଛନ୍ତି ଯେ, ସବୁ ମଣିଷଙ୍କର ରକ୍ତଚାପ ଏତିକିରୁ ଏତିକି ଭିତରେ ଅବଶ୍ୟ ରହିବ । ଶରୀରର ଓଜନଟା ମଧ୍ୟ ଏତିକିରୁ ଏତିକି ପାଉଣ୍ଡ ଭିତରେ ରହିବା ଏପରି ଧରିନେବା ଘୋର ଅନ୍ୟାୟ । ମୋଟା ବ୍ୟକ୍ତିମାନଙ୍କର ହାତକୁ ପାଇବାଭଳି ରକ୍ତଚାପ ଦେଖୁଥିବା ସମୟରେ ବାହୁରେ ବନ୍ଧା ଯାଉଥିବା ପଟିଟି ମଧ୍ୟ ଯଥାର୍ଥ ବେଢ଼ର ହୋଇଥବା ଉଚିତ । ଏପରି ଯେ ହେଉନାହିଁ, ତଦ୍ୱାରା ଅଧିକ ମେଦଯୁକ୍ତ ଶରୀର ରହିଥିବା ବ୍ୟକ୍ତିମାନଙ୍କର ପ୍ରକୃତରେ ଅପମାନ କରାଯାଉଛି, ସେମାନଙ୍କୁ ଲଜ୍ଜା ଦିଆଯାଉଛି, ଜଣେ ତ ଅତ୍ୟନ୍ତ ଉତ୍ପୀଡ଼ିତ ଏବଂ ଉଦ୍‌କ୍ଷିପ୍ତ ହୋଇ ସଭାନେ କହି ପକାଇଲେ ଯେ ନାକ

ଶରୀରଟା ଏମିତି ବୃହଦାକାର ଏବଂ ମେଦଯୁକ୍ତ ହୋଇଛି ବୋଲି ସିଏ ମୋଟେ ଦୁଃଖ ପ୍ରକାଶ କରିବେନାହିଁ ଓ ଆଦୌ କାହାପାଖରେ କ୍ଷମା ପ୍ରାର୍ଥନା କରିବାକୁ ବି ଯିବେନାହିଁ ।

ଦେହର ମେଦ ଊଣା ହୋଇଯିବ ବୋଲି ଡାକ୍ତରମାନେ ସାଧାରଣତଃ ଯେଉଁସବୁ ଔଷଧ ଖାଇବାପାଇଁ ପରାମର୍ଶ ଦେଉଛନ୍ତି, ସେଗୁଡ଼ିକୁ ଚିକିତ୍ସାବିଜ୍ଞାନରେ ସ୍ୱାସ୍ଥ୍ୟ ପ୍ରତି ଅନେକ ଅନିଷ୍ଟକାରୀ ବୋଲି ଘୋଷଣା କରାଯାଇଛି । ସେଥିଲାଗି ମଧ୍ୟ ସମାବେଶଟିରେ ଅତୀବ କ୍ରୋଧ ପ୍ରକାଶ କରା ଯାଇଥିଲା । ସେହି ଔଷଧଗୁଡ଼ିକ ହୁଏତ ସାମୟିକ ଭାବରେ କିଛି ଉପକାର କଲାପରି ଲାଗୁଛି ଅର୍ଥାତ୍ ମେଦଅଂଶଟାକୁ କିଞ୍ଚିତ୍ ପରିମାଣରେ ହ୍ରାସ କରି ଆଣୁଛି, କିନ୍ତୁ ତଦ୍ୱାରା ଆନୁଷଙ୍ଗିକ ଅନେକ ଅପକାର ମଧ୍ୟ ହେଉଛି । ନାନା ରୋଗର ପ୍ରତିରୋଧ କରିବା ପାଇଁ ଏକ ସାଧାରଣ ମନୁଷ୍ୟଶରୀରରେ ଯେଉଁ ମୂଳଭୂତ ଶକ୍ତି ରହିଛି, ଏହିସବୁ ଔଷଧ ସେହି ଶକ୍ତିକୁ ଦୁର୍ବଳ କରି ପକାଉଛନ୍ତି । ଶରୀରର ମେଦକୁ ଊଣା କରିବାରେ ମିଛଟାରେ ଏତେ ବେଶୀ ଉଦ୍‌ବେଗ ସୃଷ୍ଟି କରାଯାଉଛି ଯେ, ତଦ୍ୱାରା ଯେକୌଣସି ପ୍ରକାରେ ମଧ୍ୟ ଟିକିଏ ପାତଳା ହୋଇ ପାରିବାରେ ସମୟ ଏବଂ ଶକ୍ତି ବରବାଦ ହେବା ହିଁ ସାର ହେଉଛି ଏବଂ ତେଣେ ଦେହର ସାଧାରଣ ସ୍ୱାସ୍ଥ୍ୟ ମଧ୍ୟ ନଷ୍ଟ ହୋଇ ଯାଉଛି । ଏହି ପ୍ରତିବାଦ-ସମାବେଶ ସମୟରେ କେତେକ ପ୍ରତିନିଧି ନିଜକୁ ଆଫ୍ରିକୀୟ-ଆମେରିକାନ୍ ଏବଂ ସମଲିଙ୍ଗୀ ବର୍ଗଟି ସହିତ ତୁଳନା ମଧ୍ୟ କରିଥିଲେ । ଦେହର ରଙ୍ଗଟା ସକାଶେ ଏବଂ କ୍ରୀତଦାସ କରି ସେମାନଙ୍କୁ ଅଣା ହୋଇଥିବା ସକାଶେ କଳାମାନଙ୍କୁ ଆମେରିକାରେ କେତେ କ'ଣ ସହ୍ୟ କରିବାକୁ ନହୋଇଛି । ସେମାନଙ୍କୁ ଶତାବ୍ଦୀ ଶତାବ୍ଦୀ ଧରି ମନୁଷ୍ୟଠାରୁ ହୀନ ଏବଂ ନ୍ୟୁନ ବୋଲି ଦେଖାଯାଇଛି, ସେମାନଙ୍କୁ ଯାବତୀୟ ମାନବିକ ଅଧିକାରରୁ ବଞ୍ଚିତ କରି ରଖାଯାଇଛି, ଠିକ୍ ସେହିପରି ସମଲିଙ୍ଗୀମାନଙ୍କୁ ମଧ୍ୟ ଏକାଧିକ ପ୍ରକାରେ ନିର୍ଯ୍ୟାତନା ଦିଆଯାଇଛି । ସମାଜରେ ଯାହାକୁ ଯୌନ-ନୈତିକତା ବୋଲି କୁହାଯାଇ ଆସିଛି ଏବଂ ଯାହାକୁ ଏକମାତ୍ର ଉଚିତ୍ ମାର୍ଗ ବୋଲି କୁହାଯାଇଛି, ନାନା କାରଣରୁ ସେଥିରୁ ପାର୍ଥକ୍ୟ ଥିବାର ପ୍ରମାଣ ଦେଉଥିବା ଅନ୍ୟମାନଙ୍କୁ ତୀବ୍ର ଘୃଣା ପ୍ରଦର୍ଶନ କରାଯାଇଛି । ମୋଟା ମନୁଷ୍ୟମାନେ ମଧ୍ୟ ନିଜକୁ ସେହିମାନଙ୍କ ଭଳି ସମଦଶାପନ୍ନ ଭାବୁଛନ୍ତି ଏବଂ ମୋଟା ହେବା ପଛରେ ସେମାନଙ୍କର ମୋଟେ କୌଣସି ଦୋଷ ନଥାଇ ମଧ୍ୟ ବହୁତ କଷଣ ସହ୍ୟ କରୁଛନ୍ତି । ନିଗ୍ରୋ ଏବଂ ସମଲିଙ୍ଗୀମାନଙ୍କ ପରି ଏହି ମୋଟାମାନଙ୍କୁ ମଧ୍ୟ ସମାଜରେ କ୍ଷୁଦ୍ରଦୃଷ୍ଟିରେ ଦେଖାଯାଉଛି ।

କେଡ଼େ ବେଦନାକାତର ଭାବରେ ସେମାନେ କହୁଥିଲେ ଯେ ଏଡ଼େ ବଡ଼ ଦେଶ ଆମେରିକା କ'ଣ ପାଇଁ ଏପରି କଠୋର ହେବ ଏବଂ ଦେଶରେ ବିଭିନ୍ନ ପ୍ରକାର ମନୁଷ୍ୟ ଅବଶ୍ୟ ରହିବେ ବୋଲି ସ୍ୱୀକାର କରିବନାହିଁ ? କୃଶମାନେ ଯେଉଁଭଳି ରହିଛନ୍ତି, ସେହିପରି ସ୍ଥୂଳମାନେ ମଧ୍ୟ ରହିବେ ; ଗଣତନ୍ତ୍ର ଦ୍ୱାରା ଶାସିତ ହେଉଥିବା ଏକ ଦେଶରେ ଏତିକି ବୈଚିତ୍ର୍ୟକୁ କାହିଁକି ବାଟ ଛାଡ଼ି ଦିଆ ନଯିବ ? ପାତଳା ବିଦ୍ରୂପକାରୀ ସଂସାରଟିକୁ ଉଦ୍ଦେଶ୍ୟ

କରି ଜଣେ ଶେଷରେ ମନ୍ତବ୍ୟ କରି କହିଲେ ଯେ, ପାତଳାମାନେ ମୋଟାମାନଙ୍କୁ ଯେତେ ଇଚ୍ଛା ସେତେ ଉପହାସ କରନ୍ତୁ ଓ ସେମାନଙ୍କୁ ଯେତେ ଗଞ୍ଜଣା ଦିଅନ୍ତୁ ପଛକେ, ଏକାବେଳେକେ ଏବର ଆମେରିକୀୟ ସରକାରୀ ପରିସଂଖ୍ୟାନ କହୁଛି ଯେ, ଏହି ଦେଶରେ ପ୍ରତି ଶହେଜଣରେ ପ୍ରାୟ ପଞ୍ଚାବନ ଜଣ ହେଉଛନ୍ତି ମୋଟା ମଣିଷ । ଅର୍ଥାତ୍, ସେମାନଙ୍କର ଶରୀରର ଓଜନ ନିର୍ଦ୍ଧାରିତ ମାନକଟି ଠାରୁ ଅଧିକ । ଏବଂ,ସିଏ ଉପସଂହାର କରି କହୁଥିଲେ : ''ଏହି ଦେଶରେ ଯଦି ଏତେ ଏତେ ମଣିଷଙ୍କର ଶରୀରରେ ଧାର୍ଯ୍ୟ ପରିମାଣଟି ଠାରୁ ଅଧିକ ଓଜନ ରହିଛି ଏବଂ ସେମାନଙ୍କୁ ମେଦଯୁକ୍ତ ଏବଂ ମୋଟା ବୋଲି ଅବଶ୍ୟ କୁହାଯିବ, ତେବେ ଏହି ସମାଜରେ ସମସ୍ତେ ମୋଟାମାନଙ୍କୁ ଘୃଣାର ଆଖିରେ କାହିଁକି ଦେଖିବେ ଏବଂ ସେହି ସମାଜକୁ ପ୍ରକୃତରେ କିଭଳି ପ୍ରକାରର ଏକ ସମାଜ ବୋଲି କୁହାଯିବ ?'' ଅର୍ଥାତ୍, ଭଦ୍ରମହିଳାଙ୍କର ସର୍ବଶେଷ ଉଦ୍‌ବୋଧନଟି ସମ୍ଭବତଃ ଏହିପରି ଥିଲା, ''ଆମେ ମୋଟାମାନେ ମଧ ଆଉ କ'ଣପାଇଁ ନିଜେ ନିଜକୁ ଘୃଣାଚକ୍ଷୁରେ ଦେଖିବା ?''

ଅସଲ କଥାଟି ହୁଏତ ପ୍ରକୃତରେ ସେହିଠାରେ ଯାଇ ରହିଥିଲା । ମଣିଷ ନିଜକୁ ଆଦୌ କ'ଣ ପାଇଁ ଘୃଣା କରିବ ? ସିଏ ତ ଯାହା ହେବାର କଥା, ତାହାହିଁ ହେବ, ମାତ୍ର ସେପରି ହୋଇ ନପାରିଲା ବୋଲି ନିଜକୁ କାହିଁକି ନ୍ୟୂନ ବୋଲି ମନେ କରିବ ? ଭଲ ହେଲା ଆମେରିକାର ଅଧିକ ମେଦଯୁକ୍ତ ମହିଳାମାନେ ଗୋଟିଏ ସମାବେଶରେ ଏକତ୍ର ହେଲେ ଏବଂ ସେହି ଏକତ୍ର ହେବାରୁ ଏତେ ହିମ୍ମତ ପାଇ ମନ ଭିତରେ ରହିଥିବା ଦୁଃଖଗୁଡ଼ିକୁ ସାଧାରଣରେ କହି ପକାଇଲେ ! ଦେଶର ପାତଳାମାନେ ସେମାନଙ୍କର ଏହି ବିଶେଷ ବ୍ୟାପାରଟିରେ ମଧ ଆଦୌ କମ୍ ହସି ନଥିବେ । ମୋଟାମାନଙ୍କର ଟିଭୋଦ୍‌ଗାର ଗୁଡ଼ିକୁ ସେମାନେ କମ୍ ଉପଭୋଗ କରିନଥିବେ । ପାତଳାମାନେ ମୋଟାମାନଙ୍କୁ ଦେଖି ହସନ୍ତୁ ବା ନହସନ୍ତୁ, ମୋଟାମାନେ ମଧ ନିଜର ମୋଟାପଣକୁ ସାବ୍ୟସ୍ତ କରିବା ସକାଶେ ସମାବେଶମାନଙ୍କରେ ସମ୍ମିଳିତ ହୁଅନ୍ତୁ ବା ନହୁଅନ୍ତୁ, ଅଥବା, ମୋଟାମାନେ ନିଜର ମୋଟା ହେବାଟାରେ ନିଜ ଭିତରେ ନିଜର ଅବଚେତନ ଗମ୍ଭୀରତା ଭିତରେ ଯେତେ ଯେତେ ଲଜ୍ଜା ଅନୁଭବ କରୁଥିଲେ ମଧ ବାହାରେ ମୋଟା ହେବାର ଯେତେ ଗୁଣଗାନ ମଧ କରନ୍ତୁ, ଏହା ସମ୍ପୂର୍ଣ୍ଣ ସତ୍ୟ ଯେ ସେହି ଦେଶରେ ମୋଟା ଲୋକଙ୍କ ସଂଖ୍ୟା ଦିନକୁ ଦିନ ଅଧିକ ହେବାରେ ଲାଗିଛି । ସେମାନେ କେବଳ ଆମେରିକାରେ ନୁହେଁ, ପୃଥିବୀରେ ଭଲ ଖାଉଥିବା, ଭଲରେ ରହୁଥିବା ଏବଂ ଜୀବନଟାକୁ ଅଧିକରୁ ଅଧିକ ଭୋଗ କରିବାରେ ହିଁ ମଣିଷର ପ୍ରାୟ ସବୁତକ ପାରିଲାପଣ ନିହିତ ହୋଇ ରହିଛି ବୋଲି ବିଶ୍ୱାସ କରୁଥିବା ଅନ୍ୟାନ୍ୟ ଦେଶ ତଥା ସମାଜମାନଙ୍କରେ ମେଦଯୁକ୍ତ ବ୍ୟକ୍ତିମାନଙ୍କର ସଂଖ୍ୟା ବୃଦ୍ଧି ପାଉଛି । ତଥାପି ସ୍ୱୀକାର କରିବାକୁ ହେବ ଯେ, ଦେହଟା ଅତିରିକ୍ତ ପରିମାଣରେ ମେଦଆକ୍ରାନ୍ତ ହେବାରେ ସତକୁ ସତ ବହୁତ ଅସୁବିଧା ରହିଛି । ଦେହ ଭାରି ହେଲେ ତାହାର ଯାବତୀୟ

ବାଧାପ୍ରାପ୍ତ ହେଉଛି, ଦେହରେ ସାବଲୀଳତାର ଅଭାବ ଆହୁରି ନାନା ଉପସର୍ଗରୂପେ ପ୍ରାଣ, ମନ ପ୍ରଭୃତି ଅନ୍ୟ ଭୂମି ଆଡ଼କୁ ମଧ୍ୟ ସଂକ୍ରାମିତ ହୋଇଯିବାର ଭୟ ରହିଛି । ଶରୀର ଆବଶ୍ୟକତାରୁ ଅଧିକ ମେଦଦ୍ୱାରା ଆବୃତ ହୋଇ ପଡ଼ିବା ପଛରେ ଅତିରିକ୍ତ ଆହାର କରିବା ବ୍ୟତୀତ ଅବଶ୍ୟ ଅନ୍ୟ ଅନେକ କାରଣ ମଧ୍ୟ ଥାଇପାରେ । ତଥାପି, ଶରୀରକୁ ଅସମର୍ଥ କରାଇ ମେଦଯୁକ୍ତ ହେବାରେ ପ୍ରକୃତରେ କେଉଁ କାରଣ କେଉଁଠି ରହିଛି, ସାଣ୍ଟା ମନିକାର ସମାବେଶଟିରେ ସେହି ବିଷୟରେ କୌଣସି ଚର୍ଚ୍ଚା ହୋଇନଥିଲା । ତେଣେ ମଧ୍ୟ କିଛି ଚର୍ଚ୍ଚା ହେବ ବୋଲି ହୁଏତ କାର୍ଯ୍ୟସୂଚୀରେ ମଧ୍ୟ ନଥିଲା ।

ଆମେରିକା ଭୂଖଣ୍ଡରେ କ୍ରମେ ଅଧିକରୁ ଅଧିକ ମଣିଷ ମୋଟା ହେଉଛନ୍ତି । ସେଠାରେ ଅଧିକରୁ ଅଧିକ ମନୁଷ୍ୟ ଭଲରୁ ଆହୁରି ଅଧିକ ଭଲ ଖାଦ୍ୟ ଖାଉଛନ୍ତି ଓ ଜୀବନକୁ ବହୁ ବିଚିତ୍ରତର ମାର୍ଗରେ ଉପଭୋଗ ମଧ୍ୟ କରୁଛନ୍ତି । ସମୁଦାୟ ପୃଥିବୀରେ ମଧ୍ୟ ଅଧିକରୁ ଅଧିକ ମଣିଷ କ୍ରମେ ଅଧିକ ଭଲ ଖାଇ ପାରିଲେଣି ଓ ବିଚିତ୍ରତର ପ୍ରକାରେ ଏହି ପୃଥିବୀସ୍ଥ ଜୀବନଟିକୁ ଉପଭୋଗ ବି କରି ପାରିଲେଣି । ତଥାପି, ଖାଇବା ଓ ଉପଭୋଗ କରିବା ଯେତିକି ବଢ଼ି ବଢ଼ି ଯାଉଛି, ପୃଥିବୀରେ କ'ଣସବୁ ଯେପରି ପ୍ରାୟ ସେହି ଅନୁପାତରେ ବିଗିଡ଼ି ବିଗିଡ଼ି ଯିବାରେ ଲାଗିଛି । ଏବଂ, ଭୁଞ୍ଜିବାର ଓ ଭୋଗ କରିବାର ଏହି ଆନନ୍ଦମୟ ଏବଂ ଚିନ୍ତାହୀନ ଦୌଡ଼ରେ ଆମେରିକା ସର୍ବଶୀର୍ଷରେ ଓ ସବାଆଗରେ ରହିଥିବାରୁ ସେଠାରେ ଏହି ବିଗିଡ଼ି ଯିବାଟା ମଧ୍ୟ ଅଧିକ ଅର୍ଥାତ୍ ସମ୍ଭବତଃ ସର୍ବାଧିକ ମାତ୍ରାରେ ପରିଲକ୍ଷିତ ହେଉଛି । ଉପରେ ଏହି ଭୋଗୀ ମଣିଷଟା ଭିତରେ ସତେଅବା ଆଉକିଛି ତାକୁ କୋରଡ଼ କରି ଖାଇଯିବାରେ ଲାଗିଛି । ସେହି ଦେଶର ରାଷ୍ଟ୍ରୀୟ ଉପମୁଖ୍ୟ ମଧ୍ୟ କହି ସାରିଲେଣି ଯେ ଆମେରିକାରେ ତଥା ସେମାନଙ୍କର ଦେଖାଦେଖି ଅନ୍ୟମାନେ ସତେଅବା ଖାଉ ଖାଉ ଏହି ପୃଥିବୀଟାକୁ ମଧ୍ୟ ଖାଇ ନିଃଶେଷ କରିଦେବେ । କଥାଟି ମୋତେ ଉତ୍ସାହଜନକ ମନେ ହେଉନାହିଁ । ମେଦାକ୍ରାନ୍ତା ମହିଳାମାନେ ସମାବେଶଟିଏ କରି ଯେତେ ଯାହା ଆତ୍ମପକ୍ଷକୀର୍ତ୍ତନ କଲେ ମଧ୍ୟ ତଥାପି ମନ ବୁଝୁନାହିଁ । ବିବେକଟା ବୁଝିବା ତ ଆହୁରି ଅଧିକ ଦୂରର କଥା ।

ଆମେରିକାରେ ଶିଳ୍ପର ସମୃଦ୍ଧି ହେଉ ହେଉ ଭୋଗ ଏବଂ ସୁଖର ସମ୍ଭାବନାଗୁଡ଼ିକ ମଧ୍ୟ ବହୁଗୁଣିତ ହେଲା ଏବଂ ସମସ୍ତଙ୍କର ସମାନ ଅଧିକାର ରହିଥିବା ଗଣତନ୍ତ୍ରଶାସିତ ଏକ ଦେଶରେ ଅଧିକରୁ ଅଧିକ ମନୁଷ୍ୟ ଜୀବ ଭୋଗ ଏବଂ ସୁଖର ପରିଧି ଭିତରକୁ ମଧ୍ୟ ଆସିଯାଇ ପାରିଲେ । ଏହିପରି ଭାବରେ ସେମାନେ ଭୋଗବସ୍ତୁ ଗୁଡ଼ିକର ଜାଲରେ ପଡ଼ିଗଲେ । କ୍ରମେ ବସ୍ତୁଗୁଡ଼ାକ ହିଁ ସେମାନଙ୍କୁ ଭୋଗ ଅର୍ଥାତ୍ ପରିଚାଳିତ କରିବାକୁ ଆରମ୍ଭ କଲା କି ? ମନୁଷ୍ୟମାନେ ବସ୍ତୁଗୁଡ଼ିକ ଉପରେ ଅଧିକରୁ ଅଧିକ ନିର୍ଭରଶୀଳ ହୋଇ ପଡ଼ିଲେ । ଆମେରିକାର ଶ୍ରୀଯୁକ୍ତ ଏମର୍ସନଙ୍କ ଭାଷାରେ : when things are on the saddle, and ride men,- ଏହିପରି ଅବସ୍ଥା ଆସି ପହଞ୍ଚିଲା । ମଣିଷମାନେ

ଘୋଡ଼ା ହୋଇଛନ୍ତି ଓ ଦ୍ରବ୍ୟମାନେ ଉପଭୋଗର ପଣ୍ୟମାନେ ସେମାନଙ୍କ ପିଠି ଉପରେ ବସି ସେମାନଙ୍କୁ ଯୁଆଡ଼େ ଇଚ୍ଛା ସିଆଡ଼େ ମୋହି ନେଇ ପାରୁଛନ୍ତି : ଆଧୁନିକ ଆମେରିକା ବିଷୟରେ ଆମେ ଅଧିକ ବୁଝିପାରିବା ନିମନ୍ତେ ସେହିପରି ଚିତ୍ରଟିଏ ଆମ ଆଗରେ ଥାପି ରଖିପାରିବା କି ? ହଁ, ଖାଲି ଖାଦ୍ୟ ଉପରେ ନୁହେଁ, ସୁରା ଓ ନିଶାଦ୍ରବ୍ୟ ଉପରେ ମଧ୍ୟ ନିର୍ଭରଶୀଳତା ବୃଦ୍ଧି ପାଉଛି । ଧୂମପାନ ବି କମ୍ ଆକର୍ଷିତ କରୁନାହିଁ । ତା'ସହିତ ଅଧିକ ସମ୍ମାନ, ଅଧିକ ଉପାର୍ଜନକ୍ଷମ ଜୀବିକାଟିଏ, ଅଧିକରୁ ଅଧିକ ସଫଳତା-ଏଗୁଡ଼ିକ ମଧ୍ୟ ସତେଅବା ଜୀବନର ବ୍ରତ ଓ ଧର୍ମରେ ପରିଣତ ହବାକୁ ବସିଲାଣି । ଆଉଟିକିଏ ଚଉଡ଼ା କରି ଚିନ୍ତା କଲେ, ଏକ ରାଷ୍ଟ୍ର ହିସାବରେ ସାରା ପୃଥିବୀ ଉପରେ ପ୍ରଭାବ ବିସ୍ତାର କରିବାର ନିଶାଟା ମଧ୍ୟ ଆମେରିକାକୁ କମ୍ ଘାରୁନାହିଁ । ପୃଥିବୀରେ ସବୁଠାରୁ ଅଧିକ ଧନ ଯେ ସେଇ ଆମେରିକାରେ ରହିଛି,ସେଇ କଥାଟି ଆମେରିକାକୁ ନିଜର ଇଚ୍ଛାକୁ ପୃଥିବୀ ଉପରେ ଲଦିବାକୁ ଏବଂ ନିଜ ଶକ୍ତିଶାଳିତା ବିଷୟରେ ଅବଶିଷ୍ଟ ବିଶ୍ୱକୁ ଚେତାଇଦେବାର ଅଭିପ୍ରାୟରେ ଅଧିକରୁ ଅଧିକ କୌଶଳଯୁକ୍ତ ମାରଣାସ୍ତ୍ରମାନ ତିଆରି କରିବାରେ ଆମେରିକାର ମଥାମାନେ ତତ୍ପର ହୋଇ ରହିଛନ୍ତି ; ଏହି ସବୁକିଛିକୁ ଆମେ ସେହି ମୋଟା ଦିଶିବାକୁ ହିଁ ଆମେରିକାର ରହିଥିବା ଅନ୍ତର୍ଗତ ଇଚ୍ଛାଟିର ନାନା ପରିପ୍ରକାଶ ବୋଲି କହି ପାରିବା କି ?

ଶିଳ୍ପୋଦ୍ୟୋଗର ଆଧୁନିକତମ ଅଗ୍ରଗତି ଦେଖାଇବାର ନିଶାରେ ଆମେରିକାରେ ହଜାର ହଜାର ମଣିଷ ବହୁପ୍ରକାର ବିଷାକ୍ତ ରାସାୟନିକ ପ୍ରଭାବ ଲାଗି ଅତ୍ୟନ୍ତ ଅସୁରକ୍ଷିତ ହୋଇ ରହିଛନ୍ତି । ସେହି ଦେଶରେ ଯେତେ ସ୍ଥାନରେ ଆଣବିକ ତେଜସ୍କ୍ରିୟତାକୁ ବହୁପ୍ରସାରିତ କରି ଦେଉଥିବା ଯନ୍ତ୍ରପାତିଗୁଡ଼ିକୁ ରଖାଯାଇଛି, ସେଠାରେ ପ୍ରାୟ ତିନିକୋଟି ପରିବାର ଅର୍ଥାତ୍ ସାଢ଼େ ନଅକୋଟି ନରନାରୀ ଅତ୍ୟନ୍ତ ସଙ୍କଟପୂର୍ଣ୍ଣ ସୀମାଗୁଡ଼ିକ ମଧ୍ୟରେ ବସବାସ କରି ରହିଛନ୍ତି । ସେହି ଦେଶର ଏକ ହିସାବ କହୁଛି ଯେ, ସାନ ଓ ବଡ଼ ୧୨୨ଟି ସହରରେ ବାସ କରୁଥିବା ସାଢ଼େ ତେରକୋଟି ମଣିଷ ସର୍ବଦା ନାନାଭାବେ ପ୍ରଦୂଷିତ ପବନକୁ ହିଁ ନିଃଶ୍ୱାସରେ ଗ୍ରହଣ କରିବାକୁ ବାଧ୍ୟ ହେଉଛନ୍ତି । ଏବଂ, ଶସ୍ୟ ଉତ୍ପାଦନକୁ ବଢ଼ାଇବା ନିମନ୍ତେ ଆମେରିକାରେ ଯେଉଁସବୁ ପୋକମରା ଔଷଧ ବ୍ୟବହାର କରାଯାଉଛି, ତାହାର ବିଷ ପ୍ରଭାବ ମଧ୍ୟରେ ସେହି ଦେଶର ପଚିଶକୋଟି ଯାକ ମଣିଷ ଜୀବନକୁ ବିପନ୍ନ କରି ବାସ କରୁଛନ୍ତି । ଭୋଗର ହିସାବ ସହିତ ଏହି କଥାଗୁଡ଼ିକୁ ଏକାଠି ବିଚାର କରିବାମାତ୍ରକେ ସତେଅବା କେଉଁଠି କିଛି ଅତ୍ୟନ୍ତ ନିଶ୍ଚିତ ଭାବରେ ବିଗିଡ଼ି ବିଗିଡ଼ି ଯାଉଛି ବୋଲି ସ୍ପଷ୍ଟ ହୋଇଯାଉଛି । ଡ଼ଲାର୍‌ରେ ହିସାବ କରି କହିଲେ, ୧୯୫୦ ମସିହା ପରେ ପୃଥିବୀର ମନୁଷ୍ୟମାନେ ଯେତିକି ସେବା ଓ ସାମଗ୍ରୀଦ୍ୱାରା ନିଜ ଜୀବନର ଭୋଗଅଙ୍ଗଟିକୁ ସମୃଦ୍ଧ କରିଛନ୍ତି, ଇତିହାସର ଆରମ୍ଭରୁ ସମଗ୍ର ମନୁଷ୍ୟଜାତି ୧୯୫୦ ମସିହା ପର୍ଯ୍ୟନ୍ତ ଭୋଗ କରିଥିବା ସୁଯୋଗ, ସେବା ଏବଂ ସରଞ୍ଜାମଗୁଡ଼ିକ ଠାରୁ ତାହା ଅନେକ ଅଧିକ ବୋଲି ପ୍ରମାଣିତ ହେଉଛି । ଏବଂ, ଏହି ଭୋଗର ସିଡ଼ିରେ ଆମେରିକା ହିଁ ସବାଉପରେ ଏବଂ ସବାଆଗରେ ରହିଛି ।

ବିଜ୍ଞାପନ ତ ଆମେରିକାରେ ଖେଳନା ପରି ହୋଇଗଲାଣି । ବ୍ୟବସାୟୀ ସଂସ୍ଥାମାନେ ଭଳି ଭଳି ବିଜ୍ଞାପନ ଦ୍ୱାରା ବିଚରା ମଣିଷମାନଙ୍କର ସର୍ବବିଧ ନିଷ୍ପତ୍ତିକୁ ନିଜ ବଶରେ ରଖିବେ ବୋଲି ଭଳି ଭଳି ବୁଦ୍ଧି ବାହାର କରି ପାରୁଛନ୍ତି । ମଣିଷର ଯେତିକି ଦ୍ରବ୍ୟ ଅଛି, ସିଏ ସେତିକିରେ ଯେପରି ମୋଟେ ସନ୍ତୁଷ୍ଟ ହୋଇ ରହିବନାହିଁ ଓ ଘରଣୀମାନେ ଯେପରି ନୂଆ ନୂଆ ସରଞ୍ଜାମକୁ ଆଣି ଘରେ ରଖିବାଲାଗି ନିରନ୍ତର ବଜାରକୁ ଦଉଡୁଥିବେ, ସେଥିଲାଗି ଉର୍ବର ମୁଣ୍ଡମାନେ ନିଷ୍ପାପର ଭାବରେ ତତ୍ପର ହୋଇ ରହିଛନ୍ତି । It is our job to make women unhappy with what they have,- ବ୍ୟବସାୟପୁରର ଇନ୍ଦ୍ରମାନଙ୍କ ପାଇଁ ତାହାହିଁ ସର୍ବପ୍ରଧାନ ନୀତି ହୋଇ ରହିଛି । ସେମାନେ କେତେ ପୁଙ୍ଖାନୁପୁଙ୍ଖ ଭାବରେ ଏସବୁ କ୍ଷେତ୍ରରେ ଗବେଷଣାମାନ କରୁଛନ୍ତି ଓ ନୂଆ ଆବଶ୍ୟକତାଗୁଡ଼ିକୁ ସୃଷ୍ଟି କରିବାରେ ଲାଗିଛନ୍ତି । ଯେଉଁ ପାତଳୀ ଧେଡ଼େଙ୍ଗୀ ମହିଳାମାନଙ୍କର ଆଖି ତଳପତାର ଚମ ଧୋଡ଼କା ଦିଶିଲାଣି ଓ ସେମାନେ ଅଧିକ ବୟସର ହୋଇଗଲେଣି ବୋଲି ଭ୍ରମ ସୃଷ୍ଟି କରୁଛି, ସେମାନଙ୍କ ପାଇଁ ମଧ ବିଜ୍ଞାପନ ଘରର ସର୍ଦ୍ଦାରମାନେ ନୂତନ ଆଶାର ବାର୍ତ୍ତା ବହନ କରି ଆଣି ପାରୁଛନ୍ତି । ଯେଉଁ ଅଙ୍ଗନାମାନଙ୍କର କେଶ ଅତିବେଶୀ ସିଧା କିମ୍ବା ଅତିବେଶୀ କୁଞ୍ଚୁ କୁଞ୍ଚୁ, ସେମାନେ ମଧ ନିରାଶ ହେବାର ଆଦୌ କୌଣସି କାରଣ ନାହିଁ । ସେମାନଙ୍କର ସୁଖ ଓ ମଙ୍ଗଳ ଚିନ୍ତା କରୁଥିବା ବିଶାରଦମାନେ ସେମାନଙ୍କର ସେହି ଦୁଃଖଟିକୁ ଆଦୌ ଭୁଲି ଯାଇନାହାନ୍ତି । ଆଧୁନିକ ଲଳନାମାନଙ୍କର ଆଉଏକ ଅତୀବ ଦୁଃଖଦାୟକ ସମସ୍ୟା ହେଉଛି ଅନାବଶ୍ୟକ ସ୍ଥାନମାନଙ୍କରେ କେଶ ରହିବା । ଚିକଣ ଦେହ ପାଇଁ ଥାନରେ ଅଥାନରେ ରହିଥିବା ଏହି ଖଳମତି କେଶମାନେ ପ୍ରକୃତରେ ଏକ ବୃହତ୍ ପ୍ରତିବନ୍ଧକ ହୋଇ କାର୍ଯ୍ୟ କରନ୍ତି । ତେଣୁ ସେମାନଙ୍କୁ ନିର୍ମୂଳ କରିଦେବାର ଗୁରୁଦାୟିତ୍ୱଟିକୁ ମଧ ଆଧୁନିକ ପ୍ରସାଧନଶିଳ୍ପ ଗ୍ରହଣ କରିନେଇଛି । ଭଳି ଭଳି କେଶନାଶକ ବାହାରୁଛି ଏବଂ ବେଳେ ବେଳେ ତୁହାକୁ ତୁହା କାନ ଅତଡ଼ା ପକାଇ ଦୂରଦର୍ଶନରେ ସେଗୁଡ଼ିକର ପ୍ରସାର କରାଯାଉଛି । ମନେ ହେଉଛି, ଅନାବଶ୍ୟକ କେଶଗୁଡ଼ିକ ଦ୍ୱାରା ସନ୍ତପ୍ତ ହୋଇ ରହିଥିବା ଥୋକେ ମଣିଷଙ୍କର ଶ୍ରୀଅଙ୍ଗରୁ ଅତ୍ୟାଧୁନିକ ଔଷଧ ସାହାଯ୍ୟରେ ସେଗୁଡ଼ିକୁ ଦୂର କରିଦେଲେ ଯାଇ ସତେଯେପରି ପୃଥିବୀ ଶାନ୍ତ ହେବ ! କେତେ କୋମଳାଙ୍ଗୀଙ୍କର ଦେହର ରଙ୍ଗଟା ଅତ୍ୟଧିକ ଗୋରା ହୋଇଛି ; ସେମାନେ ଗୋରା ହିଁ ଦିଶିବାକୁ ଇଚ୍ଛା କରୁଛନ୍ତି ଯେ, ତଥାପି ତାହା ଟିକିଏ ଅତିରିକ୍ତ ହୋଇଯାଉଛି । ଆଉ କେତେଜଣଙ୍କର ଦେହର ଚମଟା ଅତିରିକ୍ତ ମାତ୍ରାରେ କଳା ହୋଇଛି ; ଦେହର କଳା ରଙ୍ଗଟା ସେମାନଙ୍କୁ ଠିକ୍ ଲାଗୁଛି ଯେ, ତଥାପି କଳାଅଂଶଟା ଟିକିଏ କମ୍ ହୋଇଥିଲେ ସତେ କେଡ଼େ ଉତ୍ତମ ନହୋଇଥାନ୍ତା ! ଆମେରିକାରେ ବିଜ୍ଞାନ ସାହାଯ୍ୟରେ ବ୍ୟବସାୟୀମାନେ ଏହି ଉଭୟଙ୍କ ସକାଶେ ଅମୋଘ ପ୍ରତିକାରମାନେ ବାହାର କରି ସାରିଲାଣି । ଦେହର ଓଜନ ବେଳକୁ ମଧ ସେଇଆ ।

ପ୍ରତ୍ୟେକ ବର୍ଷର ନିର୍ଦ୍ଧାରଣ ଅନୁସାରେ ଏକ ସୁନ୍ଦର ନାରୀଦେହର ଓଜନ କେତେ ରହିବ, ଫେଶନହାଟର କର୍ତ୍ତା ଓ ଅଭିଜ୍ଞମାନେ ତାହା ସ୍ଥିର କରି ଦେଉଛନ୍ତି ଏବଂ ତା'ପରେ ଦେହ-ଅନୁରାଗିଣୀ ନାରୀମାନେ ସେଇ ଗାରପାଖରେ ରହିବେ ବୋଲି ସାଧନା ଆରମ୍ଭ କରି ଦେଉଛନ୍ତି । ସେମାନଙ୍କର ସାଧନାପାଇଁ ବ୍ୟବସାୟୀମାନେ ବାଟ ବତାଇ ଦେଉଛନ୍ତି ।

ଗବେଷଣା କହୁଛି, ୧୯୪୮ ମସିହାଠାରୁ ଆମେରିକାର ଜଣେ ଶ୍ରମିକର ଉତ୍ପାଦନସାମର୍ଥ୍ୟ ଅର୍ଥାତ୍ ଉପାର୍ଜନସାମର୍ଥ୍ୟ ଦୁଇଗୁଣରୁ ଅଧିକ ବୃଦ୍ଧି ପାଇଛି । ଅର୍ଥାତ୍, ୧୯୪୮ ମସିହାଠାରୁ ଆମେରିକାରେ ଲୋକେ ବଞ୍ଚୁଥିବା ଜୀବନର ମାନକୁ ତାହାର କେବଳ ଅଧେ ସମୟ କାମ କରି ସମ୍ଭବ କରାଯାଇ ପାରିବ । ଉତ୍ପାଦନର ସାମର୍ଥ୍ୟ ବୃଦ୍ଧି ପାଉଥିବା ସଙ୍ଗେ ସଙ୍ଗେ ଉତ୍ପାଦକ ମନୁଷ୍ୟ ଅର୍ଥାତ୍ ଶ୍ରମିକଟି ହାତରେ ଅଧିକ ଖାଲି ସମୟ ମିଳିଯାଇ ପାରୁଛି । ଅଧିକ ଅର୍ଥଉପାର୍ଜନର ଏକ ସମ୍ଭାବନା ଉପଲବ୍ଧ ହୋଇପାରୁଛି । ଭାରସାମ୍ୟ ରକ୍ଷା କରିବା ନିମନ୍ତେ ଏହି କ୍ଷେତ୍ରରେ ଚାରିଘଣ୍ଟିଆ ଶ୍ରମଦିନର ପ୍ରବର୍ତ୍ତନ କରାଯାଇ ପାରନ୍ତା ଅଥବା ବର୍ଷକୁ ମୋଟେ ଛଅମାସ କାମ କଲେ ମଧ ହୁଅନ୍ତା । ଅଥବା, ଆମେରିକାର ପ୍ରତ୍ୟେକ ଶ୍ରମିକ ଗୋଟିଏ ବର୍ଷ କାମ କରି ପରବର୍ତ୍ତୀ ବର୍ଷଟି ସବେତନ ଛୁଟୀ ମଧ ନେଇପାରନ୍ତା । ମାତ୍ର, ଆମେରିକାର ଶ୍ରମିକ ତଥାପି ସେତିକି ସମୟ କାର୍ଯ୍ୟ କରୁଛି ଏବଂ ଦୁଇଗୁଣ ଅର୍ଥ ଉପାର୍ଜନ କରୁଛି । ଶ୍ରମ ଅଧିକ କରୁଛି, ଅଧିକ ରୋଜଗାର କରୁଛି ଏବଂ ଅଧିକରୁ ଅଧିକ ଭୋଗସାମଗ୍ରୀର ଅଧିକାରୀ ହୋଇପାରୁଛି । ତଥାପି ପିପାସା ମେଣ୍ଟୁନାହିଁ । ଅଧିକରୁ ଅଧିକ ଆମେରିକାବାସୀ ଅତି ବ୍ୟାକୁଳ ହୋଇ ଭାବୁଛନ୍ତି ଯେ, ଯଦି ସେମାନଙ୍କ ପାଖରେ ସେମାନଙ୍କର ବର୍ତ୍ତମାନ ସମ୍ପତ୍ତିର ଦୁଇଗୁଣ ରହିଥାଆନ୍ତା, ତେବେ ସେମାନେ କଳ୍ପିତ ଚରମ ସୁଖର ଅଧିକାରୀ ହୋଇପାରନ୍ତେ । ଯିଏ ବର୍ଷକୁ ୧୫୦୦୦ ଡ଼ଲାର ରୋଜଗାର କରୁଛି, ସିଏ ସେହି ରୋଜଗାରକୁ ୩୦ ହଜାରଯାଏ ନେଇପାରିଲେ ନିଶ୍ଚୟ ଅଧିକ ସୁଖ ପାଆନ୍ତା ବୋଲି ସ୍ୱପ୍ନ ଦେଖୁଛି । ଦଶଲକ୍ଷ କମାଉଥିବା ମନୁଷ୍ୟଟି ନିଜକୁ ଦୁଃଖୀ ବୋଲି ଭାବୁଛି ଏବଂ କୋଡ଼ିଏ ଲକ୍ଷର ସ୍ୱପ୍ନ ଦେଖୁଛି ।

ଇଏ ପ୍ରକୃତରେ ଏକ ବିଚିତ୍ର ସ୍ୱପ୍ନ : ଗୋଟାଏ ଆଡ଼େ ଯେତିକି ବଢ଼ି ବଢ଼ି ଓ ମାଡ଼ି ମାଡ଼ି ଯାଉଥିବ, ଆଉ ଗୋଟାଏ ଆଡ଼େ ସେହିପରି କିଛି ଚିଗିଡ଼ି ଚିଗିଡ଼ି ଯାଉଥିବ । ସମ୍ପତ୍ତିରେ, ଶରୀରରେ, ସମରକ୍ଷମତାରେ ଏବଂ ସାମୂହିକ ଭ୍ରମବିଶ୍ୱାସ ଗୁଡ଼ିକରେ ମେଦବୃଦ୍ଧି ହେବାରେ ଲାଗିଥିବ, ପୃଥିବୀଯାକରେ ଆମେରିକା ସବାଆଗରେ ରହିଛି ବୋଲି ତୁମେ ଗର୍ବରେ ଓ ଗାରିମାରେ ପ୍ରାୟ ଫାଟି ପଡୁଥିବ, ତଥାପି ଭିତରେ ତୁମକୁ କ'ଣ ସବୁ ଛାଡ଼ି ଚାଲି ଯାଉଥିବ, ଯାହାର ପୂରଣ କରି ପାରିବାପାଇଁ ତୁମ ପାଖରେ ବୁଦ୍ଧି ନଥିବ । The American Dream ଓ The American Way of Life କୁ ଯଥାସମ୍ଭବ ସମଗ୍ର ଭାବରେ ଦେଖିବାକୁ ଚେଷ୍ଟା କରୁଥିବା ସମୟରେ ଗୋଟାଏ ପାଖରେ ଯେତିକି ଖୁସୀ ଲାଗେ, ଆଉଗୋଟିଏ ପାଖରେ ଏକ ପ୍ରକାରର ବିଷାଦ ସତେଅବା ଆଚ୍ଛନ୍ନ କରି ଆଣିଲା

ପରି ମନେ ହୋଇଥାଏ । ଆମେରିକା ଆଗେ ଆଗେ ବାଟ ଦେଖାଉଛି ଏବଂ ସମଗ୍ର ପୃଥିବୀ ସେଇଆଡ଼େ ଯାଉଛି ବୋଲି ଗୋଟିଏ ପାଖରେ ମନେହୁଏ ଓ ସେଥିପାଇଁ ଖୁସୀ ବି ଲାଗେ । ମାତ୍ର, ଅନ୍ୟ ପାଖଟିରେ, ଯେତେବେଳେ ବିଷାଦଟା ମଧ ଆଚ୍ଛନ୍ନ କରି ଆଣୁଥିବା ପରି ମନେହୁଏ, ଆମେ ପୃଥିବୀଯାକ ସମସ୍ତେ ମଧ ତାହାରି ଭିତରେ ଆମେରିକା ସହିତ ଏକାଠି ଘାଣ୍ଟି ହେବାକୁ ଯାଉଛୁ କି ? ବୋଲି ନିଜକୁ ପଚାରିବାକୁ ଇଚ୍ଛା ହୁଏ ।

୧୯୯୨ ମସିହାରେ ବ୍ରାଜିଲ୍‌ର ରିଓ ଡ଼ି ଜେନେଇରୋ ସହରରେ ଯେଉଁ ବିଶ୍ୱ ପରିବେଶ ସମ୍ମିଳନୀ ବସିଥିଲା, ସେଥିରେ ଦିନେ ତୃତୀୟ ବିଶ୍ୱର ପ୍ରତିନିଧିମାନେ ଆମେରିକାର ତତ୍କାଳୀନ ରାଷ୍ଟ୍ରପତି ଜର୍ଜ ବୁଶ୍‌ଙ୍କୁ ଭେଟିବାକୁ ଯାଇଥିଲେ । ଶ୍ରୀଯୁକ୍ତ ବୁଶ୍‌ଙ୍କୁ ସେମାନେ ଆମେରିକାବାସୀ କ୍ରମେ ସେମାନଙ୍କର ସାମଗ୍ରୀଭୋଗର ପରିମାଣକୁ କମ୍ କରି ଆଣନ୍ତୁ ବୋଲି ପ୍ରସ୍ତାବ ଦେଇଥିଲେ । ସେମାନେ ଯୁକ୍ତି ଦେଖାଇ କହିଥିଲେ ଯେ ଆମେରିକାର ଲୋକେ ଯେପରି ଅତିରିକ୍ତ ଓ ଆହୁରି ଅତିରିକ୍ତ ସାମଗ୍ରୀଭୋଗର ମାର୍ଗରେ ଯାଉଛନ୍ତି, ତଦ୍ୱାରା ସମଗ୍ର ବିଶ୍ୱର ପରିବେଶ ସଙ୍କଟପୂର୍ଣ୍ଣ ଭାବରେ ନଷ୍ଟ ହୋଇଯାଉଛି । ଅନ୍ୟ ବଡ଼ ବଡ଼ ଶିଳ୍ପୋନ୍ନତ ଦେଶ ମଧ ସେହି ମାର୍ଗରେ ରହିଛନ୍ତି । ପୃଥିବୀର ପରିବେଶ-ସୁରକ୍ଷା ନିମନ୍ତେ ବିକାଶଶୀଳ ଦେଶଗୁଡ଼ିକୁ ସେମାନଙ୍କର ସତ୍ୱର ଆର୍ଥିକ ବିକାଶର କ୍ଷେତ୍ରରେ ସଂଯମ ଅବଲମ୍ବନ କରିବାପାଇଁ କୁହାଯାଉଚି ଅଥଚ ଶିଳ୍ପୋନ୍ନତ ଧନୀ ଦେଶମାନଙ୍କ ଠାରୁ ସେହି ତୁଳନାରେ ଯଥେଷ୍ଟ କିଛି ଦାବୀ କରା ଯାଉନାହିଁ ବୋଲି ସେମାନେ ଅଭିଯୋଗ କରିଥିଲେ । ଶ୍ରୀଯୁକ୍ତ ଜର୍ଜ୍ ବୁଶ୍ ଧ୍ୟାନର ସହିତ ଯୁକ୍ତିଗୁଡ଼ିକୁ ଶୁଣିଲେ ଏବଂ ସଂକ୍ଷିପ୍ତ ଅଥଚ କର୍କଶ ଭାବରେ ଉତ୍ତର ଦେଇ କହିଥିଲେ ଯେ, ଆମେରିକାବାସୀଙ୍କର ଜୀବନପ୍ରଣାଳୀରେ ଆଦୌ କୌଣସି ହସ୍ତକ୍ଷେପ କରାଯାଇ ପାରିବନାହିଁ । ସିଏ କହିଥିବା ଶବ୍ଦଗୁଡ଼ିକ ହେଲା : The American way of life is not up for negotiation,- ସେବିଷୟରେ କୌଣସି କଥାବାର୍ତ୍ତା କରାଯିବ ନାହିଁ କାରଣ ସେହି ବିଷୟରେ ଆଦୌ କୌଣସି ସାଲିଶ୍ ହୋଇ ପାରିବନାହିଁ । ଏହା ପ୍ରକୃତରେ ଏକ ମାରାତ୍ମକ କଥା । ସ୍ୱୟଂ ଆମେରିକା ପାଇଁ ମଧ ଏକ ମାରାତ୍ମକ କଥା । ଆମେରିକା ସମ୍ଭବତଃ ଭାବୁଛି ଯେ, ଆମେରିକା ବହୁତ ଆଗକୁ ଓ ବହୁତ ଉପରକୁ ଚାଲିଗଲାଣି । ସମସ୍ତ ଅବଶିଷ୍ଟ ପୃଥିବୀ ତାହାର ବହୁତ ପଛରେ ପଡ଼ି ରହିଛି । ଆମେରିକା ସେମାନଙ୍କ ନିମନ୍ତେ ଆଉ ମୋଟେ ଅପେକ୍ଷା କରି ପାରିବନାହିଁ । ସିଏ ତା'ର ନିଜ ବାଟେ ବାଟେ ଯିବ । ଏବଂ, ଆମେରିକାର ଏହି ସ୍ୱକୀୟ ରୀତିଧାରାଟିକୁ ଯେମିତି ସେମିତି ସୁରକ୍ଷିତ କରି ରଖିବା ସକାଶେ ଅବଶିଷ୍ଟ ପୃଥିବୀକୁ ହିଁ ଆପଣାକୁ ଅନୁକୂଳିତ କରିନେବାକୁ ପଡ଼ିବ । ମାତ୍ର, ନିରଙ୍କୁଶ ଭାବରେ ନିଜର ମେଦବୃଦ୍ଧି କରିବାରେ ଲାଗିଥିଲେ ମଧ ଆମେରିକାକୁ ଆଉ କେହି କିଛି କହିବେନାହିଁ, ଏକଥା ପୁଣି କିପରି ହେବ ? ଆମ ପୃଥିବୀଟା ବି କାଳକ୍ରମେ ଏପରି ହୋଇଗଲାଣି ଯେ କୌଣସି ଗୋଟିଏ ଦେଶ କଦାପି ଅନ୍ୟମାନଙ୍କର ମେଳକୁ ଛାଡ଼ି ଏକୁଟିଆ ପଳାଇଯାଇ ପାରିବନାହିଁ । ପଳାଇବାକୁ ମନ କଲେ ନିଜ ମେଦରେ ହୁଏତ ପୋତିହୋଇ ପଡ଼ିବାହିଁ ସାର ହେବ ।

ପୃଥିବୀର ଏହି ଖଣ୍ଡଟି ପ୍ରକୃତରେ କେଡ଼େ ସୁନ୍ଦର ! ଅନ୍ୟ ଖଣ୍ଡଗୁଡ଼ିକ ଯେ ସୁନ୍ଦର ନୁହେଁ, ସେକଥା ଆଦୌ ସତ ନୁହେଁ । ସୌନ୍ଦର୍ଯ୍ୟବୋଧ ବହୁ ପ୍ରକାରର । କାନ୍ତ ସୌନ୍ଦର୍ଯ୍ୟ, ରୁଦ୍ର ସୌନ୍ଦର୍ଯ୍ୟ, ରୂକ୍ଷ ସୌନ୍ଦର୍ଯ୍ୟ ଏବଂ ଉଗ୍ର ସୌନ୍ଦର୍ଯ୍ୟ । ପ୍ରାକୃତିକ ସୌନ୍ଦର୍ଯ୍ୟ ଓ କୃତ୍ରିମ ସୌନ୍ଦର୍ଯ୍ୟ । ପୃଥିବୀର ନାନା ଜାଗାରେ ପ୍ରକୃତି ଏପରି ବହୁ ବିଚିତ୍ର ପରିପାଟୀରେ ନିଜକୁ ଉଦ୍‌ଘାଟିତ ଓ ପ୍ରସାରିତ କରି ରଖିଛି ଯେ, ସେଠାରେ ପହଞ୍ଚିବା ମାତ୍ରକେ ଚିତ୍ତ ସ୍ତବ୍ଧ ହୋଇଯାଉଛି, ବିମୁଗ୍ଧ ହୋଇ ରହିଯାଉଛି । ଭିତରେ ଓ ବାହରେ ସତେଅବା ଏକାବେଳେକେ କିଏଯେପରି ନୀରବ ହୋଇଯାଉଛି, ମୁଖର ବି ହୋଇ ଉଠୁଛି । ସତେଅବା କାହାର ସ୍ପର୍ଶ ମିଳିଯାଉଛି । ପୃଥିବୀଯାକର କବିମାନେ ସେହି ପ୍ରକୃତିକୁ କେତେ କେତେ ବର୍ଣ୍ଣନାରେ ଆମ ଆଗରେ ଆଣି ଥୋଇଦେଇ କେଡ଼େ ଖୁସୀ ହୋଇ ଯାଉଛନ୍ତି । ଏହି ପ୍ରକୃତି ଆବହମାନ କାଳରୁ ପୃଥିବୀରେ ବିସ୍ତାରିତ ହୋଇ ରହିଛି । ପୃଥିବୀରେ ମନୁଷ୍ୟର ଆବିର୍ଭାବ ଘଟିବା ପୂର୍ବରୁ ମଧ୍ୟ ପ୍ରକୃତି ବିସ୍ତାରିତ ହୋଇ ରହିଛି । ମାତ୍ର, ମଣିଷ ଆସିବାରୁ ସିନା ଏଗୁଡ଼ିକୁ ସୁନ୍ଦର ବୋଲି ଚିହ୍ନିଲା, ସୁନ୍ଦର ବୋଲି ଅନୁଭବ କଲା, ସେଗୁଡ଼ିକ ସହିତ ନାନାଭାବେ ଯୋଡ଼ି ହୋଇଗଲା ଏବଂ ସେହି ଯୋଡ଼ି ହୋଇଯିବା ଦ୍ୱାରା ମଧ୍ୟ ନିଜକୁ ବି ଭଳି ଭଳି ପରିଚୟରେ ଜାଣିବାକୁ, ଅନୁଭବ କରିବାକୁ ଆରମ୍ଭ କଲା !

ମଣିଷ ପ୍ରକୃତିକୁ ଆହୁରି ଅଧିକ ସୁନ୍ଦର କରିବାକୁ ମଧ ବୋଧହୁଏ ସେହି ଆବହମାନ କାଳରୁ ହିଁ ଆରମ୍ଭ କରି ଦେଇଥିଲା । ପ୍ରକୃତିର ଛନ୍ଦ ସହିତ ନିଜ ଅନୁମାନ ଏବଂ ଅନ୍ଦାଜଗୁଡ଼ିକର ଛନ୍ଦକୁ ମିଶାଇ ଶିଖିଲା । ଅରଣ୍ୟକୁ ଉପବନରେ ପରିଣତ କଲା ଓ ଗୁମ୍ଫା ଛାଡ଼ି ଘରକୁ ଆସିଲା । ଉପବନର ସୌନ୍ଦର୍ଯ୍ୟ ଅରଣ୍ୟର ସୌନ୍ଦର୍ଯ୍ୟ ସହିତ ଆଦୌ ବାଦ କଲାନାହିଁ । ଗୁମ୍ଫାରୁ ନିଜପାଇଁ ବାସଟିଏ ନିର୍ମାଣ କରିବାର ବହୁବିଧ ପ୍ରୟୋଗରେ ସୁନ୍ଦର ଘରଟିଯାଏ ଆସିବାର ଯେଉଁ ଆସ୍ପୃହା, ତାହାକୁ ଆମେ ଏକାଧିକ ନ୍ୟାୟରେ ମଣିଷର ସଭ୍ୟତା ବୋଲି କହିପାରିବା । ଆଦିମ ଯୁଗର ମଣିଷ ସୁନ୍ଦର ଥିଲା, ଆଧୁନିକ ନଗରବାସୀ ମଣିଷ ମଧ ନିଜର ଜୀବନକୁ କେଡ଼େ ସୌନ୍ଦର୍ଯ୍ୟମଣ୍ଡିତ କରି ତିଆରି କରି ନଆସିଛି । ଆଦିମ ଆବହମାନ କାଳର ପ୍ରାକୃତିକ ସୌନ୍ଦର୍ଯ୍ୟଗୁଡ଼ିକୁ ଆଧୁନିକ ମନୁଷ୍ୟ କାରିଗରର କେତେ ଅନୁରାଗ ଦେଇ ଯେପରି ସୁନ୍ଦର କରି ଗଢ଼ିଛି, ଆମେରିକାକୁ ଆସିଲେ ସତେଅବା ତାହାର ଚାକ୍ଷୁଷ ପ୍ରମାଣଗୁଡ଼ିକ ଉପଲବ୍‌ଧ ହୋଇ ଯାଇଥାଏ । ମଣିଷ ପ୍ରକୃତିର ସେହି ଆଦିମ ସୌନ୍ଦର୍ଯ୍ୟକୁ ନାନା କୃତ୍ରିମତା ଦ୍ୱାରା ନାରଖାର କରିଦେଇଛି ବୋଲି କେତେ ଅପବାଦକଥା କୁହାଯାଇ ଆସିଛି । ତଥାପି, ଆମେରିକାକୁ ଆସିଲେ ଯାଇ ହୃଦ୍‌ବୋଧ ହୋଇଥାଏ ଯେ, ଆପଣାର ନୂଆ ନୂଆ ପାଞ୍ଚନା ଏବଂ ପାରଙ୍ଗମତାଦ୍ୱାରା ମଣିଷ ପୁରୁଣାକୁ ପ୍ରକୃତରେ ଅଧିକ ସୁନ୍ଦର ତଥା ଶୋଭାଯୁକ୍ତ କରି ଦେଖାଇବାର ଚେଷ୍ଟା କରି ଆସିଛି ।

ନୂଆକୁ ମନ କରୁଥିବା ମଣିଷ କାହିଁକି ଯେ ପୁରଣାକୁ ଶ୍ରୀହୀନ କରିବାକୁ ଆଗ୍ରହୀ ହେବ, ତାହାର ଆଦୌ କୌଣସି କାରଣ ନାହିଁ । ଆପଣାର ରୁଚିରେ ନୂଆ ନୂଆ ପ୍ରସ୍ଥ ଆଣି ଯୋଡୁଥିବା ଆଧୁନିକ ମନୁଷ୍ୟ କଦାପି ପୁରୁଣାର ହତାଦର କରିବନାହିଁ । ପୁରୁଣାକୁ ସେ ବରଂ ନୂଆର ପରିପୂରକ ବୋଲି ସ୍ୱୀକାର କରିନେବ, ପୁରୁଣାର ମଞ୍ଜଟା ଦେହରେ ସିଏ ନାନା ନୂଆ ବ୍ୟଞ୍ଜନା ଆଣି ଯୋଡ଼ିଦେବ । ପୃଥିବୀରେ ଯେଉଁସବୁ ଦେଶ ବା ସମାଜ ନୂଆକୁ ସୁସ୍ଥ ଭାବରେ ଯେତେ ସ୍ୱୀକାର କରିଛନ୍ତି, ସେମାନେ ସେହି ସ୍ୱୀକୃତିର ଏକ ଅଙ୍ଗରୂପେ ପୁରୁଣାକୁ ମଧ୍ୟ ଲୋଡ଼ିବାକୁ ମନ କରିଛନ୍ତି ।

ପ୍ରଶାନ୍ତ ମହାସାଗରରୁ ଚେନାଏ କେନାକେନା ହୋଇ ସ୍ଥଳଭାଗ ଭିତରକୁ ପଶି ଆସିଛି । ସମୁଦ୍ରର କୂଳେ କୂଳେ ଉଚ୍ଚ ଧାଡ଼ୀଏ ପର୍ବତ । ପର୍ବତରେ ଘଞ୍ଚ ଅରଣ୍ୟ । ଅରଣ୍ୟଯାକ ତିନିଶହ ଚାରିଶହ ବର୍ଷର ସୁଉଚ୍ଚ ବିଶାଳଦେହ ବୃକ୍ଷମାନ ଘଞ୍ଚ ହୋଇ ରହିଛି । ପର୍ବତର ବାଡ଼ଟାକୁ ପାରିହୋଇ ଚାଲିଗଲେ ସେପାଖରେ ସରିଏ ତଟଭୂମି । ଏବଂ, ମଣିଷର ହାତ ବାଜି ସବୁ ସୁନ୍ଦର ହୋଇ ରହିଛି । ଉତ୍ତରକୁ କେତେ ମାଇଲ୍ ଆସିଲେ ସାନ୍‌ଫ୍ରାନ୍‌ସିସ୍କୋ ସହର । ଉଚ୍ଚ ଉଚ୍ଚ ହର୍ମ୍ୟମାଳାରେ କେଡ଼ ଜୀବନ୍ତ ଏବଂ ଚଞ୍ଚଳ ଦେଖାଯାଉଛି । ପ୍ରାୟ ତିନୋଟି ସେତୁ ଦ୍ୱାରା ମଝିରେ ଅବସ୍ଥିତ ଉପସାଗରଟିକୁ ପାରି ହୋଇ ସେପାଖକୁ ଯାଇହେଉଛି । ଗୋଟିଏ ସେତୁର ନାମ ସ୍ୱର୍ଣ୍ଣ ସେତୁ,- Golden Bridge- ସମୁଦାୟ ସ୍ଥାନଟିକୁ କେଡ଼େ ରମଣୀୟ ଏବଂ ଆନନ୍ଦମୁଖର କରି ରଖାଯାଇଛି । ଏବଂ, ଦକ୍ଷିଣକୁ ଶହେରୁ ଅଧିକ ମାଇଲ ଯାଏ ବିଭିନ୍ନ ସ୍ଥାନର ବିଭିନ୍ନ ପ୍ରକାରେ ନାମକରଣ ହୋଇଛି । ନାମକରଣ ପଛରେ ମଧ କବିତ୍ୱର ସ୍ପଷ୍ଟ କଳ୍ପନାମାନ ରହିଛି । ଅର୍ଥାତ୍ ଈଷତ୍ ବଙ୍କା ହୋଇ ସ୍ଥଳଭାଗ ଭିତରକୁ ସତେଅବା କୌଣସି ବୃତ୍ତର ଚାପ ପରି ପଶି ଯାଇଥିବା ଅଂଶଟିର ନାମ ହେଉଛି Halfmoon Bay, ସମୁଦ୍ରର ପାଣିତଟ ହୁଏତ କେତେ ହଜାର ବର୍ଷ ତଳେ ଯେଉଁପରି ଥିଲା, ପ୍ରାୟ ସେହିପରି ରହିଛି । କିନ୍ତୁ, କଣ୍ଡିଆ ଉପରକୁ ଉଠିଗଲେ ମନୁଷ୍ୟର ହାତ ବାଜି ସୁନ୍ଦର ଉପବନଟିଏ ଉକୁଟି ଉଠୁଛି । ଆହୁରି ଦକ୍ଷିଣକୁ ଗଲେ ମନ୍ତେରେ ଉପସାଗର । ସେଠାରେ ଏକ ବିରାଟ ଆକୁଆରିଅମ୍ ରହିଛି, ଯେଉଁଠାରେ କି ତିମିମାଛଠାରୁ ଜେଲିଫିଶ୍ ପର୍ଯ୍ୟନ୍ତ ସାମୁଦ୍ରିକ ଜୀବନମାନଙ୍କୁ ପ୍ରଶସ୍ତ ନିବାସମାନଙ୍କରେ ଏକ ସଂଗ୍ରହାଳୟ ପରି ଖଞ୍ଜି ରଖାଯାଇଛି । ସେଠାରେ ଦେଖଣାହାରୀଙ୍କର ପ୍ରବଳ ଭିଡ଼ ; ଏବଂ ସେମାନଙ୍କର ସାମୟିକ ଚାହିଦାଗୁଡ଼ିକର ପୂରଣ ନିମନ୍ତେ ଆବଶ୍ୟକ ବିପଣିଗୁଡ଼ିକର ବିପଞ୍ଜି । କେଉଁଠି ପ୍ରାକୃତିକ ସରିଛି ଓ ମଣିଷହାତର କରାମତି ଆରମ୍ଭ ହୋଇଛି, ଜାଣିବାକୁ ଜୁ ନାହିଁ । ଏହିସବୁ ଅଞ୍ଚଳ ଯଦି କେତେ ହଜାର ବର୍ଷ ପୂର୍ବେ ଯେଉଁପରି ଥିଲା, ଏବେ ମଧ ସେହିପରି ହୋଇ ରହିଥାଆନ୍ତା, ତେବେ ତାହା କଦାପି ଆଜିକା ଭଳି ଏତେ ଶୋଭାବନ ଓ ସମ୍ପୂର୍ଣ୍ଣ ଦେଖା ଯାଉନଥାନ୍ତା । ସେହି କେତେ ହଜାର ବର୍ଷ ପୂର୍ବେ ଏଠାରେ ଯେଉଁ ମନୁଷ୍ୟ-ପ୍ରାଣୀ ବାସ କରୁଥିବେ, ସେମାନେ ଜୀବନପାଟଣାର ସଂଘର୍ଷରେ ଏତେ ବେଶୀ ବାଧ୍ୟ ଓ ବ୍ୟସ୍ତ

ହୋଇ ରହୁଥିବେ ଯେ, ଏଠାରେ ସୌନ୍ଦର୍ଯ୍ୟ ବୋଲି ଗୋଟାଏ ଅଲଗା dimension ରହିଛି ବୋଲି ଧାରଣା କରିବାକୁ ସେମାନଙ୍କର ସମ୍ଭବତଃ ମୋଟେ ଅକଳ ପାଉନଥାନ୍ତା । କେଡ଼େ ଭଲ ହେଲା ଯେ ମଣିଷ ପ୍ରକୃତି ଭିତରେ ଆଦୌ ଖପି ରହି ଗଲାନାହିଁ । ସିଏ ସଭ୍ୟ ହେଲ, ନିଜର କଳ୍ପନାମୟ ହାତଗୁଡ଼ିକୁ ଖଟାଇ ମନ୍‌ଲାଖି ବାସଟିଏ ତିଆରି କଲା ଓ ପ୍ରକୃତିକୁ ସୁନ୍ଦର ବୋଲି କହିପାରିଲା !

ଆମେରିକା ଦେଶକୁ ସେଠାକାର ମଣିଷ ପ୍ରକୃତରେ କେଡ଼େ ସୁନ୍ଦର କରି ଗଢ଼ିଛି ! ଏହି ପୃଥିବୀଟିକୁ ସୁନ୍ଦର କରିବାକୁ ହେଲେ ସବାଆଗ ଏଠାରେ ବାସ କରୁଥିବା ମଣିଷମାନଙ୍କର ଜୀବନରେ ହିଁ ଏକ ସର୍ବନିମ୍ନ ସୁଖବାସନା ସମ୍ଭବ କରିବାକୁ ପଡ଼ିବ । ଗୋଟିଏ ଦେଶ ହିସାବରେ ଆମେରିକାରେ ଅଧିକରୁ ଅଧିକ ମଣିଷଙ୍କ ଭିତରେ ସେହି ବାସନାଟିର ମୂଳଦୁଆ ପଡ଼ିପାରିଛି । ଏକ ଆଧୁନିକ ଜୀବନ କହିଲେ ଆମେ ସାଧାରଣତଃ ଯେଉଁସବୁ ସ୍ୱାଚ୍ଛନ୍ଦ୍ୟ ଏବଂ ସାମର୍ଥ୍ୟକୁ ମନେ ପକାଇଥାଉ, ସେଗୁଡ଼ିକ ଅଧିକାଂଶ ମଣିଷଙ୍କ ପାଇଁ ସମ୍ଭବ କରିବାର ଏକ ସାଧୁ ପ୍ରଚେଷ୍ଟା ସେହି ଦେଶରେ ପ୍ରାୟ ଚାକ୍ଷୁଷ ହୋଇ ପାରିଛି । ଆମେ ଘରୁ ନା ବାହାରୁ, ଆମର ବର୍ଣ୍ଣନାଟିକୁ କେଉଁଠାରୁ ଆରମ୍ଭ କରିବା ? ବାହାରେ ଆଖି ବୁଲାଇ ଆଣିଲେ ମନେହେଉଛି, ଏଠିକାର ମଣିଷ କେଉଁଠି ହେଲେ ମୁଠୁଣିଏ ଜାଗାକୁ ମଧ ଅପଚରା ବା ଅଳୋଡ଼ା କରି ଛାଡ଼ି ଦେଇନାହିଁ । ଘରଗୁଡ଼ିକ ଆଗରେ ପଟିଏ ପଟିଏ ବଗିଚା । ସେଥିରେ ଗୃହସ୍ଥ ତା' ମନଲାଖି ଫୁଲଗଛମାନ ଲଗାଇଛି, ଘାସର ଗାଲିଚାଟିଏ କରିଛି । ଜାଗା ବେଶୀ ରହିଥିଲେ ବଡ଼ ବଡ଼ ଗଛ ମଧ ଲଗାଇଛି । ଆମେ ସେଠାରେ ଯାଇ ପହଞ୍ଚିଲା ବେଳକୁ ରାସ୍ତାର ଦୁଇପାଖରେ ଥିବା ମାଗ୍ନୋଲିଆ ଗଛମାନ ଧଳା ଧଳା ଫୁଲରେ ଭର୍ତ୍ତି ହୋଇ ରହିଥିଲେ । ଏତେ ଜାଗାରେ ଏତେ ଫୁଲ ଦେଖିଲି, ମାତ୍ର ଫୁଲଚୋରମାନଙ୍କୁ ମୁଁ କୋଉଠି ହେଲେ ଦେଖି ପାରିଲିନାହିଁ । ରାସ୍ତା କଡ଼ଯାକ ଋତୁ ଅନୁସାରେ ଫୁଲରେ ଭର୍ତ୍ତି ହୋଇଛି, ବାଟୋଇର ଆଖିପାଇଁ କେଡ଼େ ସୁଖଦାୟୀ ହୋଇଛି, ତାହାରି ଭିତରେ ଯନ୍ତ୍ରମାନ ଖଞ୍ଜା ହୋଇଛି, ଯାହାଫଳରେ କି ସମୟ ଜାଣି ଗଛଗୁଡ଼ିକ ଉପରେ ପାଣିବର୍ଷା ହୋଇଯାଉଛି । ଏହିସବୁ ଯେତେ ଯାହା ସୌନ୍ଦର୍ଯ୍ୟର ସନ୍ତକ, ଏସବୁକୁ ଏକ ଅନୁରୂପ ଶିକ୍ଷାଦ୍ୱାରା ସମସ୍ତେ ସମସ୍ତଙ୍କର ସମ୍ପତ୍ତି ବୋଲି ଅନୁଭବ କରୁଛନ୍ତି । ଯାହା ନିର୍ଦ୍ଦିଷ୍ଟ ଭାବରେ କାହାରି ନୁହେଁ, ତାହା ପ୍ରକୃତରେ ସମସ୍ତଙ୍କର ସମ୍ପତ୍ତି । ତେଣୁ କେହି ମଉକା ପାଇ ସେଗୁଡ଼ିକୁ ଦୁହିଁ ନେଇ ଘରକୁ ଦଉଡ଼ି ମୋଟେ ପଳାଉନାହିଁ । ଆମେରିକାରେ ପୋଲିସ୍ ରହିଛନ୍ତି, ମାତ୍ର ସତେ ଯେପରି ସମସ୍ତଙ୍କର ରାଜୀରେ ହିଁ ସାମୂହିକ ଜୀବନର ଯାବତୀୟ ବ୍ୟାପାର ଚଳୁଛି । ପଛେ ପଛେ ପୋଲିସ୍ ଲାଗି ରହିବାର କୌଣସି ପ୍ରୟୋଜନ ନାହିଁ ।

ଗାଡ଼ୀ ରଖିବାର ନିର୍ଦ୍ଦିଷ୍ଟ ସ୍ଥାନଗୁଡ଼ିକ ରହିଛି । ଠିକ୍ ସେହିପରି ଗାଡ଼ୀ ଚଳାଇବାର ମଧ ନିର୍ଦ୍ଦିଷ୍ଟ ନିୟମସବୁ ରହିଛି । ଏବଂ, ସେହିସବୁ ସର୍ବସମ୍ମତ ନିୟମଗୁଡ଼ିକୁ ମାନି ଚଳୁଥିବା

ପର୍ଯ୍ୟନ୍ତ ତୁମେ ନିଃଶଙ୍କ ଭାବରେ ପରିପୂର୍ଣ୍ଣ ମର୍ଜିରେ ନିଜ ମୋଟର ଗାଡ଼ୀଟିକୁ ଚଳାଇ ପାରିବ । ରାସ୍ତାରେ ଆବଶ୍ୟକ ଯାବତୀୟ ସଙ୍କେତକୁ ସୂଚିତ କରିଦିଆ ଯାଉଛି, ତେଣୁ ବାଟ ଭୁଲିବାର ଅଥବା ଭୁଲ୍ କରି ବସିବାର କୌଣସି ଆଶଙ୍କା ନାହିଁ । ରାସ୍ତାଧାରରେ ନିରୂପିତ ସାନ ବଡ଼ ସ୍ଥାନମାନ ରହିଛି, ଯେଉଁଠାରେ ତୁମେ ଗାଡ଼ୀ ରଖିପାରିବ, ଭୋକ କରୁଥିଲେ ସେଠାରେ ଥିବା ଭୋଜନସ୍ଥାନର ସଦ୍‌ବ୍ୟବହାର କରିପାରିବ ଏବଂ ଝାଡ଼ା ପରିସ୍ରା ମଧ୍ୟ ଯାଇପାରିବ । ଅର୍ଥାତ୍, ତୁମେ ଯେକୌଣସି ଜାଗାରେ ଗାଡ଼ୀକୁ ଅଟକାଇ ପାରିବନାହିଁ । ତୁମେ ଯେଉଁ ଇନ୍ଦ୍ରଙ୍କର ଭାଇ କିମ୍ବା ଭିଣୋଇ ହୋଇଥିଲେ ମଧ୍ୟ ସେକଥା କରି ପାରିବନାହିଁ । ରାସ୍ତାରେ ଏପଟୁ ଗାଡ଼ୀମାନେ ଯାଉଥିବେ ଓ ସେପଟେ ଗାଡ଼ୀମାନେ ଆସୁଥିବେ । ହୁଏତ ଯିବାପଟିରେ ଦୁଇ ବା ତିନି ଦାଣ୍ଡି ରାସ୍ତା ରହିଥିବ ଓ ଆସିବାପଟେ ମଧ୍ୟ ସେହିପରି ଦୁଇ ବା ତିନିଦାଣ୍ଡି ରାସ୍ତା ରହିଥିବ । ଯଦି ତୁମେ ତୁମ ଆଗରେ ଯାଉଥିବା ଗାଡ଼ୀଟିକୁ ଟପି ଆଗକୁ ଯିବାକୁ ଇଚ୍ଛା କରିବ,ତେବେ ପଅଁ ପଅଁ ଶବ୍ଦ କରି ଆଦୌ ଗତି ବଢ଼ାଇ ଆଗକୁ ମାଡ଼ିଯାଇ ପାରିବନାହିଁ । ସେପରି କଲେ ଅବଶ୍ୟ ଅପରାଧୀ ହେବ । ପ୍ରକୃତରେ ଏପରି ହୁଏ ଯେ, ଏପାଖରୁ ମାଳ ମାଳ ଗାଡ଼ୀ ଯାଉଥାନ୍ତି ଓ ସେପାଖରୁ ମାଳ ମାଳ ଗାଡ଼ି ଆସୁଥାନ୍ତି । ତଥାପି ପଅଁ ପଅଁ କରିବାଟା କେବେହେଲେ ଶ୍ରୁତିଗୋଚର ହୁଏନାହିଁ । ହଁ, ଯଦି ଆଗକୁ ଟପିବାକୁ ଇଚ୍ଛା କରୁଥିବ, ତେବେ ତୁମ ଆଗରେ ରହିଥିବା ଗାଡ଼ୀଟିକୁ ପ୍ରଥମେ ସଙ୍କେତ ଦେବ । ସିଏ ସେଇଟିକୁ ଜାଣି ସୁବିଧା ଅନୁସାରେ ପ୍ରତିସଙ୍କେତ ଦେବ ଏବଂ ତା'ଠାରୁ ସମ୍ମତି ପାଇଲେ ଯାଇ ତୁମେ ଆଗକୁ ଯିବ ।

ଛକ ଏବଂ ମୋଡ଼ ଜାଗାମାନଙ୍କରେ ଅନୁକ୍ଷଣ ନାଲି ଆଉ ସବୁଜ ଆଲୁଅର ଖେଳ ଚାଲିଥିବ ଏବଂ ସେହି ଖେଳର ନିୟମକୁ ମାନି ହିଁ ତୁମେ ଛକଟିକୁ ପାରି ହୋଇ ପାରିବ ଅଥବା ବାଟ ଭାଙ୍ଗି ଡ଼ାହାଣ କିମ୍ବା ବାଆଁକୁ ଯାଇପାରିବ । ଆମେରିକାର ରାସ୍ତାକୁ ଗାଡ଼ୀ ନେଇ ବାହାରିବା ସହିତ ସେଠା ଲୋକମାନେ ଏହପରି ଭାବରେ ନାଗରିକର କର୍ତ୍ତବ୍ୟ ବିଷୟରେ ଆବଶ୍ୟକ ପ୍ରଶିକ୍ଷଣଗୁଡ଼ିକୁ ଅବଶ୍ୟ ପାଇ ଯାଉଥିବେ । ଯେଉଁଠାରେ ଗୋଟିଏ ଦେଶ ପ୍ରକୃତରେ ସବୁ ମଣିଷଙ୍କ ପାଇଁ ଚଳେ, ସେଠାରେ ସେହି ପ୍ରଶିକ୍ଷଣଟିକୁ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି କୁହାଯିବ । ଏହି ପୃଥିବୀରେ ମୁଇଁ ଏକା ନାହିଁ ଅର୍ଥାତ୍ ପୃଥିବୀଟା କେବଳ ମୋ'ରି ପାଇଁ ଚାଲିନାହିଁ, ପୃଥିବୀ ଆମ ସମସ୍ତଙ୍କୁ ନେଇ ସମସ୍ତଙ୍କର ସହଯୋଗରେ ହିଁ ଚାଲିଛି, ଏଇଟା ଯେଉଁଠାରେ ସମ୍ପୃକ୍ତ ବ୍ୟକ୍ତିମାନଙ୍କର ପ୍ରାୟ ଏକ ସ୍ୱାଭବିକ ରୀତିରେ ପରିଣତ ହୋଇ ଯାଇଥାଏ, ସେଠାରେ ହିଁ ସବୁ ମଣିଷ ସର୍ବାଧିକ ସ୍ୱଚ୍ଛଳତା ମଧରେ ହିଁ ଜୀବନଯାପନ କରିପାରନ୍ତି । ଏହି ଶିକ୍ଷାଟି ପୃଥିବୀ ଏବେ ମାତ୍ର ପାଇଲା । ଆଗେ ତ ସମାଜରେ ସମସ୍ତେ ନିଜନିଜର ବଡ଼ ଅଥବା ସାନ ଭାଗ୍ୟକୁ ନେଇ ଜନ୍ମ ହେଉଥିଲେ ଏବଂ ସେହି ଅନୁସାରେ ସ୍ୱେଚ୍ଛାଚାରୀ ଅଥବା ଘୁଷୁରିର ଜୀବନଟିଏ ଯାପନ କରିବାକୁ ବାଧ ହେଉଥିଲେ । ମଣିଷ ସଂସ୍କୃତିର ସୁନିର୍ବାଚିତ ପଥଟିରେ ଯିବାକୁ ମନ କଲା ପରେ ଯାଇ

ରୀତିଟି କ୍ରମଶଃ ବଦଳିଲା ଏବଂ ସବୁ ମଣିଷ ମଣିଷର ସ୍ୱୀକୃତି ଅବଶ୍ୟ ପାଆନ୍ତୁ ବୋଲି ପୃଥିବୀରେ ନୂଆ ବିତର୍କଟିଏ ଆରମ୍ଭ ହେଲା । ବହୁତ ପ୍ରତିରୋଧ ହେଲା, ରାଷ୍ଟ୍ର ବିପ୍ଳବ ହେଲା ଏବଂ ସତେଅବା ଏକ ନୂତନ କାଳର ଆବଶ୍ୟକତାକୁ ମାନି ଯାହା କାମ୍ୟ, ତାହାହିଁ ଜୟଲାଭ କଲା । ପୃଥିବୀରେ ଚାରିଆଡ଼କୁ ଦୃଷ୍ଟିପାତ କଲେ ଯାହା ମନେହେଉଛି, ଆମେ ସମସ୍ତେ କ୍ରମଶଃ ସେଇଆଡ଼କୁ ହିଁ ମଣ ହୋଇ ଆଗକୁ ଯାଉଛୁ । ଏବଂ, ଏହି କ୍ଷେତ୍ରରେ ଆମେରିକା ହିଁ ସମ୍ଭବତଃ ସବାଆଗରେ ରହିଛି । ଏଥିପାଇଁ ଆମେରିକାରେ ହୁଏତ ପରିସ୍ଥିତିଗତ ଅନୁକୂଳତା ରହିଛି, ଯାହାକି ପୃଥିବୀର ଅନ୍ୟାନ୍ୟ ବହୁଦେଶରେ ନାହିଁ । ପୃଥିବୀଟା ଭାରି ନିଅଣ୍ଟିଆ ହୋଇ ରହିଛି । ତେଣୁ, ସମସ୍ତଙ୍କୁ ସବୁଥିରେ ଭାଗ ଦେଲେ କାଳେ ସର୍ବସ୍ୱାନ୍ତ ହୋଇଯିବାକୁ ପଡ଼ିବ, ସେହି ଭୟରେ ଅଧିକର ଅଧିକାରୀ ହୋଇ ବହୁ ପୁରୁଷରୁ ରହି ଆସିଥିବା ଶିଷ୍ଟ ଓ ବରିଷ୍ଠମାନେ ବାଟ ଛାଡ଼ିବାକୁ ରାଜୀ ହେଉନାହାନ୍ତି । ତଥାପି ଯାହା ଲାଗୁଛି, ସେମାନେ ଦିନେ ଅବଶ୍ୟ ରାଜୀ ହେବେ । ଯେଉଁ ମୁହୂର୍ତ୍ତଟି ଆସୁଛି, ସେଇଟି ଅବଶ୍ୟ ପୃଥିବୀକୁ ଆସିବ ।

ଚାଲନ୍ତୁ ଏଥର ଘର ଭିତରକୁ ଯିବା । ସାମାନ୍ୟ ଚଢ଼େଇଟାଏ ବି ତା' ଘରକୁ କେଡ଼େ ବାଗରେ ସଜାଇ ପାରୁଛି । ପୃଥିବୀରେ ମନୁଷ୍ୟମାନେ ଯାହାଙ୍କୁ ହିଂସ୍ରଜନ୍ତୁ ବୋଲି କହୁଛନ୍ତି, ସେମାନଙ୍କର ଜୀବନରେ ବି ଘରକରଣା ବୋଲି କେତେ କ'ଣ ରହୁଛି । ମଣିଷ ମଧ୍ୟ ଆବହମାନ କାଳରୁ ନିଜର ଏହି ରହିବା ଘରଟି ବିଷୟରେ ଅତ୍ୟନ୍ତ ସର୍ଜନାତ୍ମକ ଭାବରେ କେତେ କ'ଣ ଚିନ୍ତା କରି ଆସିଛି, ଏବେ ମଧ୍ୟ କମ୍ କରୁନାହିଁ । ପୁନଶ୍ଚ, ନିଜର ସଭ୍ୟତା ବିଷୟରେ ସଚେତନ ହେବା ସଙ୍ଗେ ସଙ୍ଗେ ଅର୍ଥାତ୍ ଟିକିଏ ଅନ୍ୟ ଭାଷାରେ କହିଲେ ନିଜପାଇଁ, ପରିବାର ଅର୍ଥାତ୍ ନିଜ ସଂସାରଟି ପାଇଁ ଘରଟିଏ ତିଆରି କରିବାକୁ ଅନେକ ବ୍ୟକ୍ତି ମନୁଷ୍ୟସଂସ୍କୃତିର ଏକ କୌତୂହଳପୂର୍ଣ୍ଣ ଅଙ୍ଗ ବୋଲି ବିଚାର କରି ଆସିଛନ୍ତି । ମଣିଷ କ'ଣ ଖାଲି ମୁଣ୍ଡ ଗୁଞ୍ଜି ରହିବାପାଇଁ ଘରଟାଏ ତିଆରି କରେ ? ତା'ହେଲେ ତ କେତେ ଅଳପରେ କାମ ଛିଣ୍ଡି ଯାଉଥାନ୍ତା ଏବଂ, ଘରକୁ କେନ୍ଦ୍ର କରି ମଣିଷର ସାଂସ୍କୃତିକ କାହାଣୀରେ ପରିମଳ ବୋଲି ଯେଉଁ ଉପାଦାନଟି ବହୁ ବିଚିତ୍ର ପ୍ରକାରେ ବିକଶିତ ହୋଇ ଆସିଛି, ପୃଥିବୀରେ ସେଇଟା ନିମନ୍ତେ ସମ୍ଭବତଃ ଆଉ ଖୁବ୍‌ବେଶୀ ଅବକାଶ ମଧ୍ୟ ନଥାନ୍ତା । ମଣିଷ ସୌନ୍ଦର୍ଯ୍ୟ ଖୋଜି ଖୋଜି ତା' ନିଜପାଇଁ ଘରଟିଏ ସମ୍ଭବ କରିବାର ଆଳରେ ଆମର ଏହି ବିଂଶ ଶତାବ୍ଦୀ ଯାଏ ଆସି ପହଞ୍ଚିଛି କି ? ମନୁଷ୍ୟର ଜୀବନଟା ଏପରି ଅତିରିକ୍ତ ପ୍ରକାରେ ସତେଅବା ସିଆଡୁ ହିଡ଼ଛଡ଼ା ହୋଇ ବରାଦ ହୋଇ ଆସିଛି ଯେ, ତା' ଅନ୍ଦାଜର ମାନଚିତ୍ରଟା ଉପରେ ପ୍ରକୃତରେ କେଉଁଠାରେ ପ୍ରୟୋଜନଟା ଅଟକି ରହିଯାଏ ଏବଂ ସୌନ୍ଦର୍ଯ୍ୟର ସେହି ତଥାକଥିତ ପ୍ରୟୋଜନାତୀତ ଆଗ୍ରହଟା ଆରମ୍ଭ ହୋଇଯାଏ, ସେହି କଥାଟିକୁ କେହି କଦାପି ଜରୀବ ପକାଇ ମୋଟେ କହି ପାରିବନାହିଁ । କହିବାକୁ ଚେଷ୍ଟା କଲେ ହୁଏତ ବେକୁବ୍ ହେବାକୁ ପଡ଼ିବ । ଏହି ପ୍ରୟୋଜନବୋଧ ଏବଂ ସୌନ୍ଦର୍ଯ୍ୟବୋଧ

ଭିତରେ କଳ୍ପିତ ଗାରଗୁଡ଼ିକ କ୍ରମେ ଉଠି ଉଠି ଯିବା ସଙ୍ଗେ ସଙ୍ଗେ ମଣିଷ ସତେଅବା ତା'ର ଏହି ପୃଥିବୀର ଜୀବନରେ ପାଦେ ପାଦେ ଅଗ୍ରସର ହୋଇ ବାହାରି ଆସିଛି । ଏହିପରି ଆସି ଆସି ଯେଉଁଠି କେତେକ ମଣିଷ ଅନ୍ୟ ମଣିଷମାନଙ୍କ ତୁଳନାରେ ସବାଆଗରେ ଆସି ପହଞ୍ଚି ପାରିଛନ୍ତି, ସେହି ଭୂମିଖଣ୍ଡଟିକୁ ଆମେ ବହୁ କାରଣରୁ ଆମେରିକା ବୋଲି କହିପାରିବା କି ?

ଯେଉଁଠାରେ ପ୍ରୟୋଜନବୋଧ ଏବଂ ସୌନ୍ଦର୍ଯ୍ୟବୋଧ ଆଦୌ ଦୁଇଟା ଅଲଗା ମାହାଲ ହୋଇ ରହି ପାରନ୍ତିନାହିଁ, ଯେଉଁଠି ସୌନ୍ଦର୍ଯ୍ୟ ମଧ୍ୟ ଜୀବନରୂପୀ ସମଗ୍ରଟି ଭିତରେ ଏକ ପ୍ରୟୋଜନବଦ୍ଧ ପ୍ରତୀତ ହୁଏ ଏବଂ ପ୍ରୟୋଜନ ସହିତ ସୌନ୍ଦର୍ଯ୍ୟ ମଧ୍ୟ ସତେଅବା କା' ପରି ହୋଇ ରହିଥାଏ, ସେଇ ଥଳଟିକୁ ମନୁଷ୍ୟ ସୁଖ ବୋଲି ବୁଝି ଆସିଛି ଏବଂ ସେହି ସୁଖର ଅନ୍ୱେଷଣରେ ନିଜକୁ ତତ୍ପର କରି ରଖିଛି । ଆମେରିକାରେ ମଣିଷମାନେ ରହୁଥିବା ଘରଗୁଡ଼ିକ ନୂଆ ନୂଆ ଆବଶ୍ୟକତାକୁ ମେଣ୍ଟାଇବା ଲାଗି ତିଆରି ହୋଇଛି ଏବଂ ତେଣେ ଅଧିକ ଅଧିକ ସୁନ୍ଦର ଦିଶିବାଲାଗି ମଧ୍ୟ ପ୍ରୟାସ କରି ଆସିଛି । ପ୍ରୟୋଜନ ବଢ଼ି ବଢ଼ି ଚାଲିଛି, ତେଣେ ସୌନ୍ଦର୍ଯ୍ୟର ବାସନା ମଧ୍ୟ ଅଧିକରୁ ଅଧିକ ଅପରିହାର୍ଯ୍ୟ ଭାବରେ ଏକ ପ୍ରୟୋଜନ ପରି ଅନୁଭୂତ ହୋଇ ଆସିଛି । ଘରମାନଙ୍କ ଭିତରେ ଏକାବେଳେକେ ଅକ୍ଷୌହିଣୀ କିସମର ପଦାର୍ଥ, ତଥାପି ନାକ ନଟେକି ଯଦି ଆପଣ ଥିର ହୋଇ ସେଗୁଡ଼ିକର ମାଧ୍ୟମରେ ସମଗ୍ର ଘରଟିକୁ ଏକ ମନୁଷ୍ୟଆଗ୍ରହ ପ୍ରସୂତ ମଣ୍ଡଳରୂପେ ଦେଖିବାକୁ ଚେଷ୍ଟା କରିବେ, ତେବେ ପ୍ରତ୍ୟେକଟି ପଦାର୍ଥ ତା'ର ଉଚିତ ଜାଗାରେ ରହିଛି ଓ ଘରରୂପୀ ସଂସାରଟିକୁ ଏକ ସମ୍ପୂର୍ଣ୍ଣ ମଣ୍ଡନ ଦେଇ ରଖିଛି ବୋଲି ଆପଣ ଅନୁଭବ କରିବାକୁ ଆରମ୍ଭ କରିବେ । ଆପଣଙ୍କର ମନେ ହେବେ, ଘରର ମଣିଷମାନେ ଏକ ସମ୍ପୂର୍ଣ୍ଣ ଜୀବନ ଯାପନ କରୁଛନ୍ତି ବୋଲି ଘରଟିଏ ଏଡ଼େ ସମ୍ପୂର୍ଣ୍ଣ ଦିଶୁଛି । ଜିନିଷ ପଛକୁ ଜିନିଷ ଗଦା ହୋଇ ଧାଡ଼ୀ ବାନ୍ଧି ରହିଛନ୍ତି, ମାତ୍ର କୋଉଠି ଚାଖଣ୍ଡେ ମଧ୍ୟ ଜାଗା ଆବୁରୁଜାବୁରୁ ଦେଖା ଯାଉନାହିଁ । ପୃଥିବୀରେ ଯେଉଁ ମଣିଷମାନେ ଜିନିଷଗୁଡ଼ିକୁ ଘୃଣା କରନ୍ତି, ସେମାନେ ସମ୍ଭବତଃ ମଣିଷମାନଙ୍କୁ ମଧ୍ୟ ଘୃଣା କରୁଥାନ୍ତି । ମଣିଷମାନଙ୍କୁ ସହି ପାରନ୍ତିନାହିଁ, ଏବଂ ତେଣୁ ଜିନିଷମାନଙ୍କୁ ବି ସହି ପାରନ୍ତିନାହିଁ । ସେମାନେ ଜିନିଷଗୁଡ଼ାକୁ ମାୟା ବୋଲି କହନ୍ତି, କାରଣ ମଣିଷମାନଙ୍କୁ ମଧ୍ୟ ମାୟା ବୋଲି କହି ସେମାନଙ୍କଠାରୁ ଦୂରଛଡ଼ା ହୋଇ ରହିଥାନ୍ତି । ପରୀକ୍ଷା କରି ଦେଖାଗଲେ ହୁଏତ ପ୍ରମାଣ ମିଳିଯିବ ଯେ, ମଣିଷମାନଙ୍କୁ ଭଲ ଲାଗିଲେ ଆପଣଙ୍କୁ ମଣିଷର ଘର ବି ଭଲ ଲାଗିବ । ଜିନିଷମାନେ ବି ମନୁଷ୍ୟ ସହିତ ନାନା ସହୃଦୟତାର ବାନ୍ଧିହୋଇ ରହିଥିବା ପରି ଅନୁଭବ ହେବ । ହଁ, ଦିନେ ଯୁଗଟାଏ ଥିଲା, ଯେତେବେଳେ କି ସୁଖରେ ସମସ୍ତଙ୍କୁ ଭାଗ ଦିଆ ଯାଉନଥିଲା ବୋଲି ସମ୍ଭବତଃ ମଣିଷମାନଙ୍କୁ ଜିନିଷଗୁଡ଼ାକର ବନ୍ଧନରୁ ମୁକ୍ତ ରହିବାପାଇଁ ପରାମର୍ଶ ଦିଆ ଯାଉଥିଲା ।

ଯହୁଁ ଯହୁଁ ପୃଥିବୀର ଆଖି ଫିଟିଗଲା, ମଣିଷମାନେ ଅଧିକ ସଚେତନ ହେଲେ ଏବଂ ଏହି ସଂସାରଟିକୁ ସେମାନେ ଅଧିକ ସମ୍ପନ୍ନ କରି ଗଢ଼ିପାରିବେ ବୋଲି ନିଜ ଭିତରେ ଏକ ବିଶ୍ୱାସ ମଧ ଅର୍ଜନ କଲେ, ସେତେବେଳେ ବାବାଜୀମାନଙ୍କ କଥାର ଆଉ ସେତେ ମୂଲ୍ୟ ମଧ ରହିଲାନାହିଁ । ଗୋଟାଏ ଯୁଗରେ ଇଉରୋପରେ ମଧ ବାବାଜୀମାନେ ରହିଥିଲେ, ରାଜାମାନଙ୍କ ଉପରେ ମଧ ସେମାନଙ୍କର ବହୁତ ହାତ ଥିଲା ଓ ସେମାନେ ଏହି ପୃଥିବୀଟା ବିଷୟରେ ଅଧିକରୁ ଅଧିକ ଉଦାସୀନ ରହି ମୃତ୍ୟୁଅନ୍ତେ ସ୍ୱର୍ଗ ବା ନରକ କେଉଁଠାକୁ ଯିବେ, ସେବିଷୟରେ ଅଧିକ ଚିନ୍ତା କରିବାଲାଗି ପ୍ରଜାମାନଙ୍କୁ ଉପଦେଶ ପ୍ରଦାନ କରୁଥିଲେ । ବିଜ୍ଞାନ ଆସିଲା, ସାମାଜିକ ବିପ୍ଳବମାନେ ବି ଘଟିଲେ, ଏବଂ ସେହି ପୁରୁଣା ଦର୍ଶନପରାମର୍ଶ ଗୁଡ଼ିକର ମଧ କ୍ରମେ ଅବମୂଲ୍ୟନ ଘଟିଲା । ଭଗବାନ ତଳକୁ ଓହ୍ଲାଇ ଆସିଲେ । ମଣିଷମାନେ ସତକୁ ସତ ଭୂମି ହୋଇପାରିଲେ ଭଗବାନ ତଳକୁ ଓହ୍ଲାଇ ଆସିବା ବିଷୟରେ ଆଦୌ ଆପତ୍ତି କରନ୍ତିନାହିଁ । ପୃଥିବୀରେ ଅଧିକରୁ ଅଧିକ ମଣିଷ ନିଜେ ହିଁ ମନୀଷୀମାନେ ଦେଖି ଆସିଥିବା ସ୍ୱପ୍ନ ତଥା କଳ୍ପନା କରି ଆସିଥିବା ସତ୍ୟଗୁଡ଼ିକ ପାଇଁ ସତକୁ ସତ ଉତ୍ତରଦାୟୀ ବୋଲି ଭାବିଲେ । ଆମ ପୃଥିବୀର ଆଧୁନିକ ଯୁଗଟି ଏକାଧିକ ଅର୍ଥରେ ସେହିଠାରୁ ଆରମ୍ଭ ହେଲା । ସ୍ଥାନୀୟ ଭୂମିବୋଧମାନ ଏକ ପୃଥିବୀବୋଧ ମଧକୁ ପ୍ରସାରିତ ହୋଇଗଲା । ପୁରୁଣା ମଳିଗୁଡ଼ାକୁ ଛାଡ଼ି ନପାରିଥିବା ହେତୁ କେତେକ ମଣିଷ ତଥାପି ନିଜକୁ ପୃଥିବୀଯାକର ସମ୍ରାଟ ବୋଲି ଭାବିଲେ । ନୂଆ ନୂଆ ଅସ୍ତ୍ର ବାହାର କରି ଯୁଦ୍ଧ ଲଢ଼ିଲେ । ଯୁଦ୍ଧଦ୍ୱାରା ସେହି ପୁରୁଣା ଅହଂ ଓ ଦମ୍ଭଗୁଡିକର ଅନେକ ଦୁର୍ଗ ଭୁଷୁଡ଼ି ପଡ଼ିଲା । ମନୁଷ୍ୟଜାତି ସତେଅବା ସମ୍ପୂର୍ଣ୍ଣ ଏକ ନୂଆ ବିବେକରେ ଘରଟିଏ ଗଢ଼ିବା ନିମନ୍ତେ ପ୍ରୟାସୀ ହେଲା । ରାଷ୍ଟ୍ରମାନେ, ସରକାରମାନେ ଏବଂ ଦୃଷ୍ଟମାନେ ତଥାପି ବାଧା ଦେଉଛନ୍ତି, ତଥାପି ପ୍ରୟାସଟି ଚାଲିଛି । ଆମେରିକାରେ ଜଣେ ସାଧାରଣ ନାଗରିକର ଘର ଭିତରକୁ ପଶିଗଲେ ଚତୁର୍ଦ୍ଦିଗକୁ ଅନ୍ତର ପ୍ରସାରିଦେଇ ଅନାଉ ଅନାଉ ବାରମ୍ବାର ଏହି ଭାବନାଗୁଡ଼ିକ ହୃଦୟକୁ ବେଢ଼ି କାହିଁକି କୋଳାହଳ କରନ୍ତି କେଜାଣି ? ଲୋଭ ନୁହେଁ, ଦ୍ୱେଷେ ନୁହେଁ, କ୍ଷମତା ନୁହେଁ, କିମ୍ବା ନିଜେ କ୍ଷତ୍ରିୟ ନୁହଁ ବୋଲି ପୃଥିବୀଟାକୁ ନକ୍ଷତ୍ର କରିବା ନିମନ୍ତେ କୌଣସି ଦୁଷ୍ଟ ଦାମ୍ଭିକତା ନୁହେଁ, - ପୃଥିବୀର ଅଧିକାଂଶ ମଣିଷ ହୁଏତ ପ୍ରକୃତରେ ଏହିପରି ଗୋଟିଏ ଗୋଟିଏ ସୁନ୍ଦର ଘରର ହିଁ କାମନା କରୁଛନ୍ତି । ସେଥିଲାଗି ଖଟୁଛନ୍ତି, ଖୁସୀ ହୋଇ ଖଟୁଛନ୍ତି । ଏମିତି ଏକ ଘର, ଯିଏକି ତୁମର ସମସ୍ତ ପ୍ରୟୋଜନ ମେଣ୍ଟାଇ ପାରୁଥିବ ଏବଂ ଜଗଜ୍ଜନଙ୍କର ଆଖିକୁ ସୁନ୍ଦର ଓ ଆହୁରି ସୁନ୍ଦର ଦେଖା ଯାଉଥିବ ।

ଘରର ଅଧିକ ଭାଗ କାଠରେ ତିଆରି । ଶୋଇବାଘର ଗୁଡ଼ିକ ସାଧାରଣତଃ ଉପର ମାହାଲାରେ । ଦିନଯାକ ତ ଶୋଇବାର ପ୍ରଶ୍ନ ଉଠୁନାହିଁ, ତେଣୁ ତୁମେ ଯେପରି ଦିନଯାକ ତଳ ମାହାଲାରେ ରହିପାରିବ, ଆଦୌ ଉପରକୁ ଯିବାକୁ ପଡ଼ିବନାହିଁ, ସେହି ହିସାବରେ ଏପରି ଯୋଜନା କରାଯାଇଛି । ଅବଶ୍ୟ, ପିଲାମାନଙ୍କ ବେଳକୁ ଆଦୌ

କୌଣସି ବାରଣ ନାହିଁ । ସେମାନେ ଦିନମାନର ଯେତେବେଳେ ମନ କରିବେ, ସେତେବେଳେ ନିଜର କୋଠରୀଟିକୁ ଯାଇ ପାରିବେ । ସେମାନଙ୍କର କୋଠରୀଟି କେବଳ ସେମାନଙ୍କର ଶୋଇବାଘର ନୁହେଁ । ବଡ଼ମାନେ, ଅର୍ଥାତ୍ ବାପା ମାଆ ଯେଉଁ ଘରେ ଶୁଅନ୍ତି, ସେମାନେ ସେହି କୋଠରୀରେ ଶୁଅନ୍ତିନାହିଁ । ଏହି ଧାରାଟି ପାଶ୍ଚାତ୍ୟ ଜଗତରେ ବହୁ ବର୍ଷ ହେଲା ଚଳିଆସୁଛି । ଘରେ ଯଦି ଏକାଧିକ ପିଲା ଥିବେ,ତେବେ ସେମାନଙ୍କର ରହିବା ଘରେ ସେମାନଙ୍କ ଲାଗି ଭାଡ଼ି ଭଳି ଥାକ ଥାକ କରି ବିଛଣା କରା ଯାଇଥିବ । ଅବଶ୍ୟ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଓ ବାପା ମାଆଙ୍କର ସମ୍ବଳ ଥିଲେ ସେମାନଙ୍କ ପାଇଁ ଅଲଗା ବଖରା ଛାଡ଼ି ଦିଆଯିବ । ସେମାନେ ନିଜର ରୁଚି ଅନୁସାରେ ନିଜ କୋଠରୀଟିକୁ ସଜାଇ ପାରିବେ, ଖେଳ ଖେଳି ନିଜର ଇଚ୍ଛାମତେ ଅଡୁଆ ମଧ କରିପାରିବେ । ନିଜର ପସନ୍ଦ ମୁତାବକ ଚିତ୍ର ଓ ଛବିସବୁ ଆଣି ଘର ଭିତରେ ମାରିପାରିବେ ଏବଂ, ବୟସ ହୋଇଗଲେ ନିଜର ଚିତ୍ର ବହି ଓ ଭଳି ଭଳି ଅନ୍ୟାନ୍ୟ ବହି ମଧ ନିଜର ସେହି ବଖରାଟିରେ ଗଚ୍ଛାଇ ରଖି ପାରିବେ । ଘରେ ଖେଳନା ଭର୍ତ୍ତି ହୋଇଥିବ । ଏବେ ତ ଖେଳନାମାନେ ଖାଲି ଖେଳିବା ସକାଶେ ତିଆରି ହେଉନାହାନ୍ତି । ଖେଳନାର ମାଧ୍ୟମରେ ପିଲାମାନଙ୍କୁ କେତେ ରକମର ଯାନ୍ତ୍ରିକ ଏବଂ ଗାଣିତିକ ଜ୍ଞାନ ମଧ ଦେଇ ହେଉଛି । ଆମେ ଆମେରିକାରେ ଥିଲାବେଳେ ପିଲାମାନଙ୍କର ସ୍କୁଲ ଛୁଟୀ ଥିଲା । ତେଣୁ ସେମାନଙ୍କୁ ଘର ବା ଆଖପାଖରେ ଖୁବ୍ ଦେଖିବାକୁ ମିଳୁଥିଲା । ମାତ୍ର, ପିଲାଙ୍କର ସଂସାର ସବୁବେଳେ କେବଳ ପିଲାମାନଙ୍କୁ ନେଇ । ବଡ଼ମାନଙ୍କର ବି ତ ନିଜର ଭଳି ଭଳି ସଂସାରଖେଳ ରହିଛି । ଛୁଟୀଦିନ ମାନଙ୍କରେ ପ୍ରକୃତରେ ଅଧିକ କାମ । ତେଣୁ, ପିଲାମାନେ ସେମାନଙ୍କର ସାଙ୍ଗ ମେଳଟିକୁ ନିଜେ ଯୋଗାଡ଼ କରି ଖେଳୁଥାନ୍ତି । ପାଖରେ ପୋଖରୀଟିଏ ରହିଥିଲେ ସେଠାରେ ଘଣ୍ଟା ଘଣ୍ଟା ଧରି ବତକ ଓ ହଂସମାନଙ୍କ ସହିତ ଖୁରି ଖାଉଥାନ୍ତି । ସଉକ ଥିଲେ ନିଜେ ମଧ ଚଢ଼େଇ ବା ଆଉ କ'ଣସବୁ ପୋଷିଥାଆନ୍ତି । ସେମାନଙ୍କର ପରିଚର୍ଯ୍ୟାରେ ବି କେତେ ସମୟ ଚାଲିଯାଏ ।

ଘରଯାକ ପଶମ ବିଛାଯାଇଛି । ଖାଲି ଘରମାନଙ୍କ ଭିତରେ ନୁହେଁ, ତଳ ମାହାଲରୁ ଉପର ମାହାଲାକୁ ଯିବାର ପାବଚ୍ଛଶ୍ରେଣୀରେ ପଶମ ବିଛାଯାଇଛି । ଚଟାଣଟା ସାରା କୋଟ୍ ପିନ୍ଧିଥିବା ଭଳି ମନେହେଉଛି । ଖାଲି ରୋଷେଇଘରେ ଏବଂ ସ୍ନାନଘରେ ପଶମ ନାହିଁ । ରନ୍ଧାଘରେ ନିଆଁ ଭୟରେ ଓ ସ୍ନାନଘରେ ପାଣି ପଡ଼ି ପଶମର ଶଯ୍ୟାଟି ଓଦା ଓ ସନ୍ତସନ୍ତିଆ ହୋଇଯିବା ଭୟରେ । ଆମେ ସେହି ସ୍ନାନଗୃହରୁ ହିଁ ଆମର ଅଳଙ୍କାରବୋଲି ଆରମ୍ଭ କରିପାରିବା । ଏଥିରେ ଗାଧୋଇବାର କୁଣ୍ଡ ରହିଛି । ସେଥିରେ ଆବଶ୍ୟକ ଯନ୍ତ୍ରପାତି ଖଞ୍ଜା ହୋଇ ଦେହର ସହିବା ମୁତାବକ ଗରମ ଓ ଥଣ୍ଡା ପାଣି ଆସିପାରୁଛି । ଉପରେ ବେଣ୍ଟ ଲାଗିଛି ଯାହାଦ୍ୱାରା କି କବ୍‌ଜା ଖୋଲିଦେଲେ ବର୍ଷା ପରି ଗରମ ବା ଥଣ୍ଡା ପାଣି ତୁମର ଦେହ ଉପରେ ଆସି ଅଜାଡ଼ି ହୋଇ ପଡ଼ିବ ଓ ତୁମକୁ ପ୍ରୀତ କରିଦେଇ ପାରିବ ।

ଅଥବା, ତୁମେ ଗାଧୁଆ ନୌକାଟିକୁ ଆବଶ୍ୟକ ପରିମାଣରେ ଦହଡ଼/ଶୀତଳ ଜଳରେ ଭର୍ତ୍ତି କରିନେଇ ପାରିବ ଏବଂ ମାଛ ପରି ସେଥିରେ ଖୁଆଗୁଡ଼ିକୁ ଫଡ଼ ଫଡ଼ କରି ସ୍ନାନ କରିପାରିବ । ନିଜର ଘର ଭିତରେ ମିଛିମିଛିକା ସନ୍ତରଣର ଆନନ୍ଦ ଲାଭ କରିପାରିବ । ଠିକଣା ଜାଗାରେ ମୁହଁ ଧୋଇବା ନିମନ୍ତେ ବେସିନ୍ ରହିଛି । ସେଠାରେ ମଧ୍ୟ ଆପଣ ନିଜର ତୃପ୍ତିବିଧାନର ଅନୁପାତରେ ଗରମ ଓ ଥଣ୍ଡା ପାଣି ପାଇବେ । ସେଇଟି ହେଉଛି ଆପଣଙ୍କର ଯାବତୀୟ ଅଙ୍ଗପ୍ରସାଧନର ସ୍ଥାନ । କାନ୍ଥର ପ୍ରାୟ ଅଧେ ଥାନ ଭର୍ତ୍ତି କରି ଆଇନା ବସାହୋଇଛି । ଆପଣ ବହୁପ୍ରକାରେ ତାହାର ସଦ୍‌ବ୍ୟବହାର କରିପାରିବେ । ସେଠାରେ ଦାନ୍ତଘଷା ସାମଗ୍ରୀ ସହିତ ଧାଡ଼ୀ ଧାଡ଼ୀ ପ୍ରସାଧନ-ସାମଗ୍ରୀ ସଜ୍ଜିତ ହୋଇ ରହିଛି । ଅନାଇ ଦେବାବେଳକୁ ଯେକୌଣସି ଅନଭ୍ୟସ୍ତ ଦେଖଣାହାରିକୁ ହଠାତ୍ ଗୋଟାଏ ପାଟରାଦୋକାନ ପରି ଯଦି ଦିଶିଯାଏ, ତେବେ ବିସ୍ମିତ ହେବାର ପ୍ରକୃତରେ କୌଣସି କାରଣ ରହିବା ଉଚିତ୍ ନୁହେଁ । ଅଥବା, ସମଗ୍ର ପ୍ରଦର୍ଶନୀଟି କେଉଁ ରସବିଦ୍ୟାର ପ୍ରୟୋଗଶାଳା ପରି ବି ମନେ ହୋଇପାରେ । ଏ ଯୁଗରେ ଛାର ବୋତଲଗୁଡ଼ାକୁ ମଧ୍ୟ ଏତେପ୍ରକାର ଆକାର ଏବଂ ଭଙ୍ଗୀ ଦେଇ ଯେ ତିଆରି କରା ଯାଇପାରେ, ସେକଥା ଭାବି ଆପଣ ହୁଏତ ଆଚମ୍ବିତ ହୋଇଯାଇ ପାରନ୍ତି । ମଣିଷର ମୁହଁ ଓ ଦେହଟାକୁ ସୁଖଚିତ ଏବଂ ସୁରଞ୍ଜିତ କରି ରଖିବା ନିମନ୍ତେ ଏହି ମଣିଷ ଯେ କ୍ରମେ କେତେ ଉଦ୍‌ଭାବନକ୍ଷମ ହୋଇ ପାରିଲାଣି, ସେକଥା ଭାବି ଆପଣ ଖୁସୀ ହୋଇଯିବେ ।

ରାତିରେ ଆପଣ ଯେପରି ସେହି ଶୌଚାଗାର ଭିତରେ ପୂର୍ଣ୍ଣ ସୌଷ୍ଠବର ସହିତ ନିଜକୁ ଦେଖିପାରିବେ ଏବଂ ମନ କଲେ ନିଜ ପ୍ରେମରେ ନିଜେ ପଡ଼ିଯିବେ, ସେଥିଲାଗି ସମ୍ମୁଖସ୍ଥ ଦର୍ପଣ ଉପରେ ଆଲୋକମାଳା ଖଞ୍ଜି ଦିଆଯାଇଛି । ଆପଣଙ୍କର ଚାହିଦା ଅନୁସାରେ ସେହି ଆଲୋକର ସଂଖ୍ୟା ହୁଏତ ନଅ ଦଶ ଯାଏ ମଧ୍ୟ ଯାଇପାରେ । ଦର୍ପଣ ଭିତରକୁ ଅନାଇଲେ ଆଲୋକ ଉପରେ ଆଲୋକ ପ୍ରତିଫଳିତ ହୋଇ ସତେଅବା କୋଉ ମଝିଘରିଆଣୀର ଦଶଟା ଦାଣ୍ଡି ପରି ଦାଉ ଦାଉ ଦେଖାଯାଉଛି । ବେସିନ୍‌ର ଗୋଟାଏ ପାର୍ଶ୍ୱକୁ ମୁଖଶ୍ରୀକୁ ରଙ୍ଗ କରିବାର ଖଡ଼ୀମାନେ ଭୋଗେଇରେ ଭର୍ତ୍ତି ହୋଇ ଥୁଆ ହୋଇଛନ୍ତି । ନାନା ରଙ୍ଗ ଓ ନାନା ବେରଙ୍ଗର ଭିଆଣରେ ଆଧୁନିକ ସୌନ୍ଦର୍ଯ୍ୟଜ୍ଞମାନେ ସେଗୁଡ଼ିକୁ ତିଆରି କରିଛନ୍ତି ଓ ସେଗୁଡ଼ିକର ଉପାଦେୟତାମାନ ବଖାଣି ଅନୁରୂପ ବିଜ୍ଞାପନ ହୋଇପାରିଛି ବୋଲି ସେଗୁଡ଼ିକ ବଜାରକୁ ଆସି ତା'ପରେ ଏଠା ସ୍ନାନଘରଗୁଡ଼ିକୁ ଆସିପାରିଛି ! ସ୍ନାନଘରର ଗୋଟିଏ କଣକୁ ମଳବିସର୍ଜନ ନିମନ୍ତେ କମୋଡ଼୍ ଖଞ୍ଜା ଯାଇଛି । ପୂରା ଅଦ୍ୟତମ ବିଜ୍ଞାନ ଅନୁସାରେ ସତେଅବା ଏକ କଳାତ୍ମକ ବସ୍ତୁର ଅନ୍ଦାଜରେ ସେଇଟି ତିଆରି ହୋଇଛି । ମଳତ୍ୟାଗ କରିବା ଯେ କୌଣସି ଅଶୁଦ୍ଧ ଏବଂ ହେୟ କାର୍ଯ୍ୟ, କମୋଡ଼୍ ଉପରେ ଦୃଷ୍ଟି ପକାଇବା ମାତ୍ରକେ ଯେକୌଣସି ବ୍ୟକ୍ତିର ସେହି ଭ୍ରାନ୍ତିଟି ଅବଶ୍ୟ ଦୂର ହୋଇଯିବା ଉଚିତ । ଜାଡ଼ ସମୟରେ ସେଇଟି ଉପରେ ବସିଲେ କାଳେ ଆପଣଙ୍କର

ଜଂଘ ଓ ଦୁଇପାଦର ତଳକୁ କାଲୁଆ ଲାଗିବ, ସେଥିପାଇଁ ଉଚିତ୍ ଥାନମାନଙ୍କରେ ପଶମ ଛାଉଣି କରିଦିଆ ଯାଇଛି । ମନୁଷ୍ୟର ଦୈନନ୍ଦିନ ଜୀବନରେ ରହିଥିବା ଏହି ପ୍ରକ୍ରିୟାଟିକୁ ଯେପରିକି ଶତକଡ଼ା ଶହେ ଭାଗ ଖେଦରହିତ କରାଯାଇ ପାରିବ, ସେଥିପାଇଁ ସମ୍ପୃକ୍ତ ଶୌଚବିଜ୍ଞାନୀମାନେ ଲଗାତାର ଗବେଷଣାରେ ଲାଗି ରହିଛନ୍ତି ଓ ନୂଆ ଉପଚାରଟିଏ ମୁଣ୍ଡକୁ ଜୁଟିଗଲା ମାତ୍ରକେ ଏହି କ୍ଷେତ୍ରରେ ବହୁ ସଂସ୍କାର ହେବାରେ ଲାଗିଛି । ସେଠାରେ ଦିନେ ଜଣେ ବନ୍ଧୁ କହୁଥିଲେ ଯେ ଆଗାମୀ ଶତାବ୍ଦୀ ପାଇଁ ଏହି କମୋଡ୍ ବିଷୟରେ ବୈଜ୍ଞାନିକମାନେ ଏକ ନୂଆ କଳ୍ପନା କରି ରଖି ସାରିଲେଣି । ଯେତେ ଯାହା ଉପଚାର କରା ଯାଉଥିଲେ ମଧ ତଥାପି ତ କାର୍ଯ୍ୟସମାପନ ପରେ ପାତଳା କାଗଜରେ ନିଜ ହାତରେ ହିଁ ମଳଦ୍ୱାରକୁ ସଫା କରିବାକୁ ପଡୁଛି । ଆଗାମୀ ଶତାବ୍ଦୀକୁ ମଣିଷକୁ ଆଉ ସେହି ହରକତ କରିବାକୁ ପଡ଼ିବନାହିଁ । ସେଇ କମୋଡ଼ ଭିତରେ ହିଁ ଲୁଗାବୁଣା ତନ୍ତରେ ଲାଗୁଥିବା କଣ୍ଟାପରି କ'ଣ କଅଁଳ ପଦାର୍ଥଟିଏ ଖଞ୍ଜା ହୋଇ ରହିଥିବ, କୋଉଠି କଅଣ ପେଚଟିଏ ଦବାଇଦେବା ମାତ୍ରକେ ସେଇଟି ମଳଦ୍ୱାର ମୁହଁକୁ ଆସି ନିକ କରି ସବୁ ପୋଛିଦେବ ଓ ସୁବାସିତ ପଦାର୍ଥଟିଏ ଶେଷକୁ ସିଞ୍ଚିଦେବ, ଯାହାକି ସମସ୍ତ ମଳଗନ୍ଧକୁ ହରଣ କରିନେବ । ତା'ପରେ ଆପଣ ସ୍ୱାଭାବିକ ଭାବରେ କମୋଡ୍ ଉପରୁ ଉଠି ଆସିବେ ଓ ପ୍ରକୃତରେ ସେସବୁ କୌଣସି କର୍ମ କରିଥିଲେ ବୋଲି ଆପଣଙ୍କର ମନେ ବି ରହିବନାହିଁ ।

ଚାଲନ୍ତୁ ଏଥର ଶୋଇବା ଘରକୁ ଯିବା । ଆଣ୍ଠୁଏ ବହଳର ଶେଯରେ ଖଟ ଉପରେ ବିଛଣା ତିଆରି ହୋଇଛି । ମୋଟା ମୋଟା ନରମ ତକିଆ । ମୁଣ୍ଡ ଦେଲେ ଫୁଲ ପରି ଲାଗିବ । ଆଗକାଳର କାବ୍ୟକାରମାନେ କଳ୍ପନାର ସୂକ୍ଷ୍ମ ପ୍ରୟୋଗ ଦ୍ୱାରା ବାସରଘର ଗୁଡ଼ିକର ଯେଉଁ ବର୍ଣ୍ଣନା ଦେବାକୁ ଚେଷ୍ଟା କରୁଥିଲେ, ଆମେରିକାରେ କୌଣସି ଗୋଟିଏ ଥିଲା ପରିବାରର ଶୋଇବା ଘରକୁ ପଶିଗଲେ ଆପଣଙ୍କୁ ସେହି କଥାଟିର ଅବିକଳ ପରିଚୟ ମିଳିଯିବ । ଶୃଙ୍ଗାର କ'ଣ ଏକ ରସ, ଏହା କ'ଣ ଏକ ଅନୁଭୂତି ? ଏହି କଥାଟିରେ ଆପଣଙ୍କର ହୁଏତ ସନ୍ଦେହ ହେବାକୁ ଆରମ୍ଭ କରିବ । ଶୟନକକ୍ଷର ଚେହେରାଟାକୁ ଆପଣ ହୁଏତ ଏଡ଼େ ବିଳାସପୂର୍ଣ୍ଣ ଭାବେ ତିଆରି କରିପାରିବେ ଯେ, ସେହି କକ୍ଷ ମଧ୍ୟରେ ଯାଇ ପ୍ରବେଶ କଲେ ଆପଣଙ୍କୁ ପ୍ରାୟ ଯାନ୍ତ୍ରିକ ଓ ନିପାତନସିଦ୍ଧ ଭାବରେ ଯେଉଁ ଅନୁଭବଟି ହେବ, ତାହାକୁ ଆପଣ ଦୃଢ଼ତାର ସହିତ ଶୃଙ୍ଗାର ବୋଲି ହିଁ କହିପାରିବେ । ଯେଉଁ ଶଯ୍ୟା ଉପରେ ଗାତ୍ର ପ୍ରସାରିତ କରିବା ମାତ୍ରକେ ଆପଣ ଏକ ଅଭାବନୀୟ କୋମଳତାର ଅନୁଭବରେ ପ୍ରାୟ ଫୁଟେଯାଏ ପୋତି ହୋଇ ପଡ଼ିବେ ଏବଂ ଦିନମାନ ଆପଣଙ୍କର ଜୀବନରେ ଯେଉଁଠି ଯାହା ଘଟିଥାଉ ପଛକେ, ସେହି ଶଯ୍ୟାଟି ଉପରେ ଗାତ୍ର ଲାଗୁ ଲାଗୁ ଆପଣ ନିଜକୁ ସତେଅବା କୌଣସି ସୁସଜ୍ଜିତ ରାଜ୍ୟର ଯୁବରାଜ କିମ୍ବା ଯୁବରାଣୀ ପରି ଭାବୁଥିବେ, ସେହି ଶଯ୍ୟାକୁ ବ୍ୟବସାୟୀମାନେ ଆଦୌ ନୁହନ୍ତି, କେବଳ ଶୃଙ୍ଗାରୀମାନେ ହିଁ ତିଆରି କରିଥିବେ । ସେହି ଶଯ୍ୟା ଉପରେ ଦେହ ଲାଗୁ ଲାଗୁ ଆପଣଙ୍କୁ କାହିଁକି ଯେ

ବୟସରେ ପନ୍ଦର କି ପଚିଶି ବର୍ଷ ତରୁଣ ହୋଇଗଲା ପରି ନଲାଗିବ,ତାହାର ପ୍ରକୃତରେ କୌଣସି କାରଣ ରହିବା ଉଚିତ୍ ନୁହେଁ । ତଥାପି, ବିଧାତାର ଏକ ବିଡ଼ମ୍ବନା ବୋଲି କହିବାକୁ ହେବ ଯେ, ଏତେ ଆୟୋଜନ ଭିତରେ ଯଦି ଆପଣଙ୍କୁ ତଥାପି ନିଦ ନହେବ,ସେଥିଲାଗି ଦେହସାଧନାର ବୈଜ୍ଞାନିକମାନେ ଆପଣଙ୍କ ପାଇଁ ନିଦ୍ରାପ୍ରୋତ୍ସାହନକାରୀ କେତେଭଳି ଔଷଧ ମଧ୍ୟ ତିଆରି କରି ରଖିଛନ୍ତି । ନିଦମାଉସୀ ଘରର ହାଣ୍ଡିଭଙ୍ଗା ମୁଢ଼ୀ ବା ହୁଡ଼ୁମ୍ବ ପରି ଆପଣ ଏଥିରୁ ଆବଶ୍ୟକ ହେଲେ ଶୋଇବାକୁ ଯିବା ସମୟରେ ତିନିଟା ପୁଞ୍ଜାଏ ଯଦି ଗିଳିଦେଇ ପାରିବେ, ତେବେ ଆଖିକୁ ଆପେ ଆପେ ନିଦ ପଶି ଆସିବ, ଆପଣଙ୍କର ଅଜାଣତରେ ଆପଣ ସୁନାପୁଅ ପରି ଶୋଇପଡ଼ିବେ ।

ବସିବା ଘରଟାରେ ପୃଥିବୀଯାକର ଜିନିଷ ଭର୍ତ୍ତି ହୋଇ ରହିଥିବ । ନାନା ଫେଶନର ସୋଫା ପଡ଼ିଥିବ, ଚଉକୀ ପଡ଼ିଥିବ । ପିଠିକୁ ନରମ ଠେସ ଦେଇ ରଖିବା ନିମନ୍ତେ ବହୁଭାବେ ଚିତ୍ରିତ ଓ ନିର୍ମିତ ମୁତୁଲାମାନ ରହିଥିବ । ଘରଯାକ ମୋଟା ଗାଲିଚା ବିଛା ହୋଇଥିବ । ସେହି ଗୋଟିଏ ବଖରାରେ ବିଭିନ୍ନ କୋଣ ଏବଂ ଉପକୋଣମାନଙ୍କୁ ମଣ୍ଡନ କରି ଦଶ ବାରଟା ପର୍ଯ୍ୟନ୍ତ ଆଲୁଅ ଅଲବତ ଜଳୁଥିବ । କିଛି ବହିପତ୍ର ଓ ପତ୍ରିକା ରହିଥିବ । ଆପଣଙ୍କର ପିଲାମାନେ ଯଦି ବଡ଼ ହୋଇ ସେମାନଙ୍କର ସଂସାର କରିବାପାଇଁ ଆପଣଙ୍କଠାରୁ ଅଲଗା ହୋଇ ଯାଇଥିବେ,ତେବେ ସେମାନଙ୍କ ଛୋଟ ବେଳର କେତେଟା ଫଟୋ ମଧ୍ୟ ସେଇଠି କୋଉଠି ରହିଥିବ । ଏବଂ, ହୁଏତ ଆଉଗୋଟାଏ ଜାଗାରେ ବହୁ ବହୁ ଫଟୋ ରହିଥିବା ଗଦାଏ ଆଲ୍‌ବୁମ୍ ମଧ୍ୟ ରହିଥିବା, ଯେଉଁଥିରେ କି ତିରିଶି ଚାଳିଶି ବର୍ଷ ତଳର ଆପଣଙ୍କ ବିବାହକାଳୀନ ସ୍ୱତନ୍ତ୍ର ଫଟୋଚିତ୍ର ମାନ ଥିବ । ଅତିଥିମାନେ ଚାହିଁବା ମାତ୍ରକେ ଦେଖିପାରିବେ । ସେମାନେ ଦେଖୁଥିବେ ଓ ଆପଣ ସେମାନଙ୍କୁ ସେଗୁଡ଼ିକୁ ଦେଖାଇ ଖୁସୀ ହେଉଥିବେ । ଯଦି ଜୀବନକାଳରେ ଆପଣ ପୃଥିବୀର, ପାଖର ବା ଦୂରର,କୌଣସି ଦେଶକୁ କେବେ ବୁଲି ଯାଇଥିବେ, ତେବେ ସଂଗୃହୀତ ହୋଇ ଆସିଥିବା ଦ୍ରବ୍ୟଗୁଡ଼ିକ ମଧ୍ୟ ଆପଣଙ୍କର ଏହି ବଖରାଟିକୁ ମଣ୍ଡନ କରୁଥିବ । ସେଠାରେ ମେକ୍‌ସିକୋ ଥିବ,ଇଣ୍ଡୋନେସିଆ ଥିବ,ଚୀନ୍ ଏବଂ ଭାରତବର୍ଷ ଥିବ । ସମଗ୍ର ପୃଥିବୀର ଏହି ସନ୍ତକଗୁଡ଼ିକୁ ସାଉଁଟି ଆଣି ଏଇଠି ଗୋଟିଏ ବଖରାରେ ଠୁଳ କରି ରଖିବା, ଏହି କଥାଟା କଦାପି ସମସ୍ତଙ୍କର ଭାଗ୍ୟରେ ଜୁଟିବ ନାହିଁ । ଆଗେ ଦୂର ଦୂର ଦେଶକୁ ଧର୍ମପ୍ରଚାର କରି ଯାଇଥିବା ପାଦ୍ରୀମାନଙ୍କ ଘରେ ଯାହାସବୁ ନମୁନାରୂପେ ଦେଖିବାକୁ ମିଳୁଥିଲା, ବର୍ତ୍ତମାନ ସାଧାରଣ ଘରମାନଙ୍କରେ ମଧ୍ୟ ତାହା ସୁଲଭ ହୋଇଗଲାଣି । ସାରା ପୃଥିବୀର ସବୁଠାରୁ ଅଧିକ ଧନବାନ୍ ମଣିଷଙ୍କର ଦେଶ ହୋଇଥିବାରୁ ଆମେରିକାର ଅଧିବାସୀ ପର୍ଯ୍ୟଟକ ହିସାବରେ ପୃଥିବୀର ଚେନାଏ ଚେନାଏ ବୁଲିଆସି ସତେଅବା ଆପଣାର ଏକ ଧର୍ମପାଳନ କରୁଥିବା ପରି ଅନୁଭବ କରୁଛି । ଆମେରିକାର ଅଧିବାସୀ ଆଉଥରେ ଆଉ ଗୋଟିଏ ଅବସ୍ଥା

ଗର୍ବ ଅନୁଭବ କରୁଛି, ତଥାପି ନିଜକୁ ସ୍ଥାନୀୟ ବୋଲି କହିବାରେ ତାକୁ ହୁଏତ ସଙ୍କୋଚ ବି ଲାଗୁଛି ।

ଶୋଇବାଘରେ ବା ବାଟଘରେ ସେଇଠି କେଉଁଠି ପୋଷାକଘରଟା ମଧ୍ୟ ରହିଥିବ । ପ୍ରତ୍ୟେକ ମଣିଷର ଗୋଟିଏ ବୋଲି ଦେହ,ମାତ୍ର ଅୟସ ଅନୁସାରେ ସତର ପ୍ରକାରର ପୋଷାକ । ଶୀତଋତୁର ପୋଷାକ, ପୁଣି ଗ୍ରୀଷ୍ମଋତୁର ପୋଷାକ । ଘରେ କାମ କଲାବେଳର ପୋଷାକ, ଏବଂ ଖୁସୀରେ ବାହାରକୁ ଟହଲ ମାରି ଯିବାପାଇଁ ମଧ୍ୟ ଅଲଗା ପୋଷାକ । ସବୁ ଧାଡ଼ୀ ହୋଇ ଝୁଲୁଛନ୍ତି, ଆପଣ ପୋଷାକମହଲଟାର ଦୁଆରଟିକୁ ଖୋଲିଦେଲେ ଆପଣଙ୍କର ପରିଚ୍ଛଦପୂର୍ଣ୍ଣ ପୃଥିବୀଟି ଉଦ୍‌ଘାଟିତ ହୋଇଯିବ ଏବଂ ଆପଣ ନିଜର ଠିକ୍ ସେହି ସମୟଟିର ସଉକ ଅନୁସାରେ ସେଥିରୁ ଗୋଟିଏ ବାଛିନେବେ ଓ ପିନ୍ଧିବେ । ନିଜ ସଉକଟିକୁ ଏଡ଼େ ଅନବଦମିତ ଭାବରେ ବଞ୍ଚି ପାରୁଛନ୍ତି ବୋଲି ହୁଏତ ଏକ ତୃପ୍ତି ଅନୁଭବ ବି କରୁଥିବେ । ପୋଷାକଗୁଡ଼ାକ ପ୍ରତି ଆମେରିକାବାସୀଙ୍କର ସେପରି କୌଣସି ଲୋଭ ରହିଥିବା ପରି ଆଦୌ ମନେ ହୁଏନାହିଁ । କାହାକୁ ଦେଖାଇ ହେବାପାଇଁ ସେମାନେ ସମ୍ଭବତଃ ଏହି ପୋଷାକଗୁଡ଼ିକୁ ନିଜ ଘରେ ସମ୍ପତ୍ତି କରି ରଖିନଥାନ୍ତି । ତଥାପି, ନିଜର ସଉକ ଅନୁସାରେ ଯେ ସେମାନେ ଏତେ ଏତେଟା ଭିତରୁ ଗୋଟାଏ ବାଛି ପିନ୍ଧି ପାରୁଛନ୍ତି, ସେଥିରେ ସେମାନେ ଅବଶ୍ୟ ଏକ ବିଶେଷ ତୃପ୍ତି ଲାଭ କରୁଥିବେ । ଯଦି ମାତ୍ର ଅଳପଙ୍କର ହିଁ ସମ୍ବଳ ଥାଆନ୍ତା, ତେବେ ନିଜଟାକୁ ଅନ୍ୟମାନଙ୍କ ଆଗରେ ଦେଖାଇ ହେବାକୁ ମନ ହୁଅନ୍ତା । ଦରିଦ୍ର ଦେଶମାନଙ୍କରେ ଅଧିକସମ୍ବଳମାନେ ଅଳ୍ପସମ୍ବଳମାନଙ୍କ ଆଗରେ ଏହି କ୍ଷେତ୍ରରେ କେତେ ମନ୍ତେ ଫୁଲାଇ ହୁଅନ୍ତି । ପୋଷାକ ପିନ୍ଧି ବାହାରକୁ ବାହାରିଲେ ଆମେରିକାରେ କେହି କାହାରିକୁ ଅନାଉଥିବାର ମୁଁ କୋଉଠି ଦେଖିଥିଲା ପରି ମୋ'ର ମନେ ପଡୁନାହିଁ । ତଥାପି ବହୁସମ୍ବଳ ହେବାରେ ସେଠି ମଧ୍ୟ ଆନନ୍ଦ ରହିଛି । ନିଜପାଖରେ ନିଜ ସମ୍ପନ୍ନତାର ପ୍ରମାଣ ପାଇବାକୁ ହୁଏତ ଗୋଟିଏ ଗୋଟିଏ ସମାଜରେ ମନୁଷ୍ୟମାନେ ବେଶ୍ ଆଗ୍ରହ ପ୍ରକାଶ କରିଥାନ୍ତି ଏବଂ ତେଣୁ ସମ୍ବଳଗୁଡ଼ିକ ପାଖରେ, ଦ୍ରବ୍ୟଗୁଡ଼ିକ ପାଖରେ କିଙ୍କରପ୍ରାୟ ହୋଇ ରହିଥାନ୍ତି ।

ସୁଖ ପାଇଁ, ସମ୍ପନ୍ନତା ପାଇଁ ସରାଗ ଯେତିକି, ଏହି ସୁଖ ଓ ସମ୍ପନ୍ନତାକୁ ଯଦି ଆଉକିଏ ଆସି ଲୁଟି ନେଇଯିବ, ସେଥିପାଇଁ ଭୟ ମଧ୍ୟ ସେତିକି । ମଣିଷର ସୁଖସାମଗ୍ରୀଗୁଡ଼ିକରେ ଅଧିକରୁ ଅଧିକ ବୃଦ୍ଧିସାଧନ କରିବାରେ ବିଜ୍ଞାନ ମଣିଷକୁ ଯେତେ କୌଶଳବୁଦ୍ଧି ପ୍ରଦାନ କରିଛି, ମଣିଷକୁ ଅନ୍ୟ ମଣିଷମାନଙ୍କ ବିଷୟରେ କ'ଣ ପାଇଁ ସେତିକି ଭୟାଳୁ ବି କରି ରଖିଛି । ନିଜର ଅସଲ ସୁଖ ଓ ସମ୍ପନ୍ନତାଗୁଡ଼ିକ ମଣିଷ ମନରେ ଅଧିକରୁ ଅଧିକ ବିଶ୍ୱାସ ଆଣି ଦେଇଯାଉଥିବା ପରି ଅନ୍ୟ ମଣିଷମାନଙ୍କ ବିଷୟରେ ମଧ୍ୟ ତା'ର ବିଶ୍ୱାସଟିକୁ ସେତିକି ବଢ଼ାଇ ପାରୁଥିବା ଉଚିତ୍ । ଆମ ପୃଥିବୀଟାରେ ଏପରି ହୋଇ ପାରେନାହିଁ

କାହିଁକି କେଜାଣି ? ହଁ, ନିଅଣ୍ଟିଆ ସମାଜମାନଙ୍କରେ, ଯେଉଁଠାରେ ମଣିଷମାନଙ୍କ ପାଖରେ ଅଳ୍ପ ଧନ ରହିଥାଏ, ଅର୍ଥାତ୍, ଅଧିକ ନିର୍ଭୁଲ ଭାବରେ କହିଲେ, ଖୁବ୍ ଅଳପଙ୍କ ପାଖରେ ଅତିବେଶୀ ରହିଥାଏ ବୋଲି ଅଧିକଙ୍କ ପାଖରେ ପ୍ରାୟ କିଛି ନଥାଏ, ସେସବୁ ଦେଶରେ ସମ୍ପତ୍ତିଗୁଡ଼ାକ ଲୁଟି ହୋଇ ଚାଲିଯିବ ବୋଲି ଆଶଙ୍କାଟିଏ ରହିବା କିଞ୍ଚିତ୍ ସ୍ୱାଭାବିକ ହୋଇପାରେ । ବେଶୀ ଥିଲାମାନେ କାଳେ ଚୋରମାନେ ଘରେ ପଶି ଏହି ସବୁକିଛିକୁ ଲୁଟି ନେଇଯିବେ ବୋଲି ବିକଳିଆ ହୋଇ ରହିପାରନ୍ତି ଏବଂ କିଛି ନଥିଲାମାନେ ଥିଲାମାନଙ୍କର ଧନର ଗଦା ଓ ସୁଖର ବ୍ୟୂହଗୁଡ଼ିକୁ ଦେଖି ନିଜ ଭିତରେ ସମ୍ଭବତଃ କେମିତି ବିକଳିଆ ଅନୁଭବ ବି କରିପାରନ୍ତି । ମାତ୍ର, ଯେଉଁଠାରେ ପ୍ରାୟ ସମସ୍ତେ କୁବେର ହେବାର ସ୍ୱପ୍ନ ଦେଖୁଛନ୍ତି ଓ କୁବେର ପରି ଯୋଜନା କରି ନିଜ ଜୀବନର ନକ୍ସା ଗୁଡ଼ିକୁ ମୋଟା ମୋଟା ଆଶା ଦେଇ ତିଆରି କରି ପାରୁଛନ୍ତି, ସେଠାରେ ମଣିଷମାନଙ୍କର ମନଟା କାହିଁକି କାଳେ ସବୁକିଛି ଲୁଟି ହୋଇଯିବ ବୋଲି ଏତେ ଭୟ ରହିଥାଏ କେଜାଣି ? ଆମେରିକାର ବିପଦଭୀତ ସମ୍ପନ୍ନମାନଙ୍କୁ ଏହି କ୍ଷେତ୍ରରେ ମଧ ବିଜ୍ଞାନ କମ୍ ସାହାଯ୍ୟ କରିନାହିଁ । ସର୍ବପ୍ରଥମ କଥା ହେଉଛି ଯେ, ଘରେ ବା ନିଜ ପାଖରେ ଏତେ ନଗଦ ପଇସା ରଖିବାର ଆଦୌ କୌଣସି ପ୍ରୟୋଜନ ନାହିଁ । ତୁମର ପଇସାସବୁ କେତେ ବାଗରେ ବ୍ୟାଙ୍କରେ ଜମା ହୋଇ ରହିଯାଉଛି । ତୁମ ପାଖରେ ନାନାଭଳି କ୍ରେଡ଼ିଟ୍‌କାର୍ଡ଼ ରହିଛି, ଯାହାକୁ ଦେଖାଇ ଦେବା ମାତ୍ରକେ ତୁମକୁ ବିପଣି ମାନଙ୍କରୁ ଦ୍ରବ୍ୟାଦି ମିଳିଯାଇ ପାରୁଛି । ଘରର ସ୍ଥାବର ସମ୍ପଦଗୁଡ଼ିକୁ ମଧ ନାନାପ୍ରକାରର ବୀମା ମାଧମରେ ସୁରକ୍ଷିତ କରି ରଖା ଯାଇ ପାରୁଛି । ଏଡ଼େ ଏଡ଼େ ସ୍ତରର ବ୍ୟବସ୍ଥାମାନ ହୋଇଛି ଯେ, ତୁମେ ଗାଡ଼ୀ ଭାଙ୍ଗିଗଲେ ପଇସା ପାଇବ, ଗାଡ଼ୀ ଚୋରି ହୋଇଗଲେ ପଇସା ପାଇବ, ଘରେ ନିଆଁ ଲାଗି ଆସବାବପତ୍ର ଭସ୍ମ ହୋଇଗଲେ ମଧ ପଇସା ପାଇବ ।

ଘରେ ଥିବା ବେଶୀ ମୂଲ୍ୟର ପ୍ରତ୍ୟେକ ପଦାର୍ଥ ବୀମାର ନିର୍ଭରଯୋଗ୍ୟ ରଜ୍ଜୁମାନଙ୍କ ଦ୍ୱାରା ବନ୍ଧା ହୋଇ ରହିଛି । ପୁରୁଣାମାନେ ଚୋରିଗଲେ ଅଥବା ଉଡୁଡ଼ିଗଲେ ନୂଆ ଆସି ପହଞ୍ଚିଯିବ । ତଥାପି ଭୟଟା ଏପରି ଗୋଟିଏ ବ୍ୟାପାର, ଯାହାକି ଅଧିକ ସୁରକ୍ଷା ଦ୍ୱାରା ତଥାପି ଯାଏନାହିଁ । ଭୀତମାନଙ୍କର ପ୍ରୀତ୍ୟର୍ଥେ ଏବେ ବିଜ୍ଞାନର ହେମତରେ କେତେ ନୂଆ ନୂଆ ସତର୍କତା ଗ୍ରହଣ କରାଗଲାଣି । ସେଥିପାଇଁ ଏକାଧିକ ପ୍ରକାରର ଟେଲିଫୋନ ବାହାରିଲାଣି । ଏବଂ, ଦୁଆରଗୁଡ଼ିକରେ ଏପରି ଛାନିଆ ଯନ୍ତ୍ରମାନ ଖଞ୍ଜାଯାଇଛି ଯେ, ଘର ଭିତରକୁ କୌଣସି ଅବାଞ୍ଛିତ ମନୁଷ୍ୟ ପ୍ରବେଶ କଲେ ସେହି ଦୁଆର ଚିତ୍କାର କରି ଉଠିବ ଏବଂ ତୁମେ ପହଡ଼ଘରେ ଯେତେ ଦୂରରେ ଯେଉଁଠି ଶୋଇଥାଅ ପଛକେ, ସେହି ଚିତ୍କାର ତୁମ ପାଖରେ ଯାଇ ବି ପହଞ୍ଚିଯିବ । ଜଣେ ବାହାର ମଣିଷ ଗଲତ ମତଲବରେ ଘର ଭିତରକୁ ଆସିବ ବୋଲି କବାଟଟାକୁ ହାତରେ ଧରି ଠେଲିବା ମାତ୍ରକେ ବିଶ୍ୱସ୍ତ କବାଟଟି ଯେ ମାଲିକକୁ ତତ୍‌କ୍ଷଣାତ୍ ସେକଥା ଜଣାଇଦେଇ ପାରୁଛି, ତାହାକୁ ବିଜ୍ଞାନର

ଏକ ବଡ଼ କରାମତି ବୋଲି ସ୍ୱୀକାର କରିବାକୁ ପଡ଼ିବ । ଧନ୍‌ବାନ୍ ଓ ଭାଗ୍ୟବାନ୍‌ମାନଙ୍କ ପ୍ରତି ପ୍ରକୃତରେ କେତେ ବେଶୀ ସହାନୁଭୂତିଶୀଳ ହୋଇପାରିଲେ ଯେ ବିଜ୍ଞାନ ଏସବୁ ପରିଚର୍ଯ୍ୟା ନିମନ୍ତେ ରାଜୀ ହୋଇ ଯାଉଥିବ, ଆମେରିକାରେ ମୁଁ ବେଳ ବେଳେ ସେକଥା ଖୁବ୍ ଭାବୁଥିଲି । ସେହି ଦେଶର ଗୋଟିଏ ହିସାବ କହୁଛି ଯେ, ଗୃହସ୍ୱାମୀମାନେ ଆମେରିକାରେ ନିଜେ ନିଜ ଘରର ଓ ନିଜ ସଂସାରର ସୁରକ୍ଷା ବ୍ୟବସ୍ଥାରେ ଯେତେ ପଇସା ଖରଚ କରନ୍ତି, ରାଷ୍ଟ୍ରର ସାଧାରଣ ସୁରକ୍ଷା ରକ୍ଷାକାରୀ ପୋଲିସ୍ ବିଭାଗକୁ ହୁଏତ ଟିକସ୍ ହିସାବରେ ସେତେ ପଇସା ଦିଅନ୍ତିନାହିଁ । ସରକାରୀ ଆନୁଷ୍ଠାନିକ ବ୍ୟବସ୍ଥା ଉପରେ ହୁଏତ ସେହିମାନେ ବିଶ୍ୱାସ କରୁଥିବେ, ଯେଉଁମାନଙ୍କର କି ନିଜର ବ୍ୟକ୍ତିଗତ ବ୍ୟବସ୍ଥାଗୁଡ଼ିକୁ କରିବା ଲାଗି ପାଖରେ ଯଥେଷ୍ଟ ପଇସା ନଥିବ ।

ଏହି ବ୍ୟକ୍ତିଗତ ସୁରକ୍ଷାର ଭାବନା ହିଁ ସମ୍ଭବତଃ ପୃଥିବୀରେ ମଣିଷମାନଙ୍କୁ କୁକୁର ପାଖରେ ନେଇ ହାବୁଡ଼ାଇ ଦେଇଥିବ । କୁକୁରମାନେ ପ୍ରଥମେ ଜଙ୍ଗଲରେ ଥିଲେ, ଭାରି ଭୟଙ୍କର ଥିଲେ ; ମଣିଷ ସେମାନଙ୍କୁ ଜଙ୍ଗଲରୁ ଘରକୁ ଆଣିଲା, ବଶ୍ୟ ଓ ବିଶ୍ୱସ୍ତ କରି ରଖିଲା । କୁକୁର ପରି ପ୍ରଭୁଭକ୍ତ ଆଉ କେହି ନାହିଁ ବୋଲି ଚାଟୁବାଣୀ ଲେଖିଲା । ଆଧୁନିକ ପୃଥିବୀରେ ସେହି କୁକୁର ଯେ ମନୁଷ୍ୟ ନିମନ୍ତେ ଏତେ ସରାଗ ଏବଂ ସେବାଯତ୍ନର ଏକ ପାତ୍ର ହୋଇ ରହିବ, ସେହି ଆଦ୍ୟ ପ୍ରୟୋଜନର କାଳରେ ସେକଥା କେହି କଳ୍ପନା ମଧ୍ୟ କରିନଥିବେ । ନିଜ ଘରର ପୂର୍ଣ୍ଣପ୍ରସାଧନର ବସ୍ତୁଗୁଡ଼ିକ ଭିତରେ କୁକୁର ଏକ ଅନ୍ୟତମ ପ୍ରଧାନ ଭୂଷଣ ହୋଇ ରହିଛି । ମଣିଷଜୀବନର କେତେ ଅଲୋଡ଼ା ତଥା ବଳକା ସ୍ନେହ ନିମନ୍ତେ କୁକୁର ହିଁ କ୍ଷେତ୍ର ଏବଂ ଖୋରାକ ଯୋଗାଇ ଦେଉଛି । ମଣିଷମାନେ ପରସ୍ପରକୁ ଭେଟି ଅଥବା ପରସ୍ପରର ମେଳରେ ବସି ଯେଉଁସବୁ ଅସ୍ୱସ୍ତି ଭୋଗ କରୁଥାଆନ୍ତେ, କୁକୁରଟିଏ ରହିଛି ବୋଲି ସେହି ସମସ୍ୟା ସମେତ ଆହୁରି କେତେ କେତେ ଅଡୁଆର ଏପରି ସୁଖସମାଧାନ ବି ହୋଇଯାଇ ପାରୁଛି । ଅପରିହାର୍ଯ୍ୟ ମନୁଷ୍ୟବନ୍ଧୁ ଏହି କୁକୁରର ମହତ୍ତ୍ୱ ଏବଂ ମର୍ଯ୍ୟାଦାକୁ ଉତ୍ତମରୂପେ ବୁଝିଥିବା ପରି ଆମେରିକାରେ ପ୍ରାୟ ଏକ କୌତୁକପୂର୍ଣ୍ଣ ବ୍ୟବସାୟ ଗଢ଼ି ଉଠି ପାରିଛି । ଟେନିସି ରାଜ୍ୟର ଗୋଟିଏ ସ୍ଥାନରେ କୁକୁର-ପରିପାଳନ ସଂକ୍ରାନ୍ତୀୟ ଯାବତୀୟ ବିପଣିର ଧନ୍ଦାଟିଏ ଖୋଲି ରଖିଥିବା ଗୋଟିଏ ଦୋକାନକୁ ଯାଇ ମୁଁ ପ୍ରକୃତରେ ଦିନେ ବଡ଼ ଅବାକ୍ ହୋଇ ଯାଇଥିଲି । କୁକୁର ବିଷୟରେ ମଣିଷମାନେ ଯେତେ ଧୈର୍ଯ୍ୟ ଏବଂ ଅଧ୍ୟବସାୟ ସହିତ ଏତେ ଏତେ କଥା ଚିନ୍ତା କରୁଛନ୍ତି ଏବଂ ଉଦ୍‌ଭାବନରେ ଲାଗି ରହିଛନ୍ତି ବୋଲି ସେମାନଙ୍କୁ ମଣିଷମାନଙ୍କ ବିଷୟରେ ଭାବିବାଲାଗି ଆଉ ଯଥେଷ୍ଟ ସମୟ ମିଳୁନାହିଁ କି? ସେହି ବିଶାଳକାୟ ଦୋକାନରେ କୁକୁର ବିକା ହେଉଛନ୍ତି, କୁକୁରଙ୍କ ପାଇଁ ଭଳି ଭଳି ଖାଦ୍ୟ ବିକା ହେଉଛି, କୁକୁରଙ୍କର ଭଳି ଭଳି ରୋଗ ପାଇଁ ଭଳି ଭଳି ଔଷଧ ବିକା ହେଉଛି । କୁକୁରଙ୍କ ପାଇଁ, କଡ଼ା କୁକୁରଙ୍କ ପାଇଁ ଜଞ୍ଜିର, କୁକୁର ରହୁଥିବା ଯନ୍ତା,- ଏହିପରି କେତେ କ'ଣ ସାମଗ୍ରୀ ସେହି

ଲକ୍ଷ୍ମୀଭଣ୍ଡାରଟିକୁ ଭରି ରଖିଛି । କୁକୁରଙ୍କର ବାଳ କାଟିବା ନିମନ୍ତେ ମଧ୍ୟ ଆଧୁନିକତମ ବ୍ୟବସ୍ଥା ରହିଛି । ପଇସା ଥିଲେ ସବୁ ପ୍ରାପ୍ତ ହୋଇଯିବ ।

ଏହି କୁକୁର ସହିତ ମଣିଷ ପାଖରେ ବିଲେଇ କେଉଁଦିନୁଁ ଆସି ଜୁଟିଲା କେଜାଣି ? କୁକୁର ତ ମଣିଷର କେତେ କାମରେ ଲାଗୁଛି, କେତେ ଉପକାର କରୁଛି । ମାତ୍ର ବିଲେଇ କ'ଣ କରୁଛି ? ମୂଷାମାନଙ୍କର ତାଡ଼ନାରୁ ରକ୍ଷା ପାଇପାରିଲା ବୋଲି କ'ଣ ମଣିଷ ପ୍ରଥମରେ ବିଲେଇକୁ ନିଜ ଘର ଭିତରକୁ ସଂଖୋଳି ଆଣିବାକୁ ମନ କଲା କି ? ଆଧୁନିକ ଆମେରିକାରେ କୁକୁର ପାଇଁ ଯେତିକି ସଉକ, ବିଲେଇମାନଙ୍କ ପାଇଁ ମଧ୍ୟ ସେତିକି ସଉକ । ଯେତେଦୂର ମନେ ହେଉଛି, କୁକୁରଠାରୁ ଉପକାର ପାଉ ପାଉ ମଣିଷ କୁକୁରକୁ ଆଦରି ଶିଖିଲା । କୁକୁର ଶିକାରରେ କାମରେ ଲାଗୁଥିଲା । ଏବେ ମଧ୍ୟ ହିମାଳୟର ତୀଖ ବନଭୂମି ମାନଙ୍କରେ ଭୋଟିଆ କୁକୁରମାନେ ମେଷପାଳକ ମାନଙ୍କର କେତେ କାମରେ ଆସନ୍ତି, ସେମାନଙ୍କର ଯାଯାବର ଜୀବନର ନିତ୍ୟସାଥୀ ହୋଇ ରହିଥାନ୍ତି । କିନ୍ତୁ, ବିଲେଇକୁ ମଣିଷମାନେ ବୋଧହୁଏ ବିନା କାରଣରେ ଭଲ ପାଇ ଶିଖିଛନ୍ତି । ପୃଥିବୀଯାକର ଲୋକଗୀତରେ କୁକୁର ଏବଂ ବିଲେଇଙ୍କର ପ୍ରାୟ ସମାନ ସ୍ଥାନ ରହିଛି । ଜଣେ ଜଣେ ମଣିଷ ଅଛନ୍ତି, ଯେଉଁମାନେ କୁକୁରକୁ ଯେତିକି ଭଲ ପାଆନ୍ତି, ବିଲେଇମାନଙ୍କୁ ହୁଏତ ସେତିକି ନାକ ଟେକନ୍ତି । ଆମ ଦେଶରେ ଅନେକ ମଣିଷ ଅଛନ୍ତି, ଯେଉଁମାନେ ଅନୁକୂଳ କରି ବାହାରିବା ସମୟରେ ବିଲେଇର ମୁଖ ଦର୍ଶନକୁ ଅମଙ୍ଗଳ ବୋଲି ବିଚାର କରନ୍ତି । ସେମାନେ କୁକୁର ପ୍ରତି ହୁଏତ ମୋଟେ ସେତେ ଅଶ୍ରଦ୍ଧା ପ୍ରକଟ କରନ୍ତିନାହିଁ । ଅନ୍ୟ ଦେଶରେ, ଆମେରିକା ସମେତ ବି, ସେଭଳି ମଣିଷ ଅବଶ୍ୟ ରହିଥିବେ । ଅପର ପକ୍ଷରେ, କେତେକ ଏଭଳି ମନୁଷ୍ୟ ଥାଆନ୍ତି, ଯେଉଁମାନେ କି କୁକୁରକୁ ଏକ ଉପକାରୀ ପ୍ରାଣୀ ବୋଲି ଅବଶ୍ୟ ମାନନ୍ତି ଓ ନିଜ ଘରେ ସେଇଥିପାଇଁ କୁକୁର ରଖିଥାନ୍ତି ; କିନ୍ତୁ ବିଲେଇକୁ କୋଡ଼ରେ ଧରି ନଶୋଇଲେ ସେମାନଙ୍କୁ ବିଛଣା ଆଦୌ ସୁଖ ଦେଇ ପାରେନାହିଁ । ସେମାନେ କୁକୁର ସକାଶେ ଯାବତୀୟ ଆବଶ୍ୟକ ଖିଦମତ ଅବଶ୍ୟ କରନ୍ତି, ତଥାପି କୁକୁରଟିର ଚଳପ୍ରଚଳ ସୀମାଟିକୁ ଅତ୍ୟନ୍ତ କଠୋର ଭାବରେ ନିର୍ଣ୍ଣିତ କରି ଦେଇଥାନ୍ତି । କୁକୁର ଯେତେ ଯାହା ହେଲେ ମଧ୍ୟ ସେହି କୁକୁର ତ, - ସେମାନଙ୍କ ଭିତରେ ଏହିପରି ଏକ କର୍କଶ କର୍ତ୍ତୃଭାବ ଭାରି ଟାଣ ହୋଇ ରହିଥାଏ । କୁକୁର ଅତି ସୋହାଗରେ ପଡ଼ିଗଲେ ମୁନିବ ଅଥବା ମୁନିବ-ପିଲାଙ୍କର ବିଛଣା ଭିତରକୁ ଛଟକ କରି ପଶିଯାଏ ସିନା, ମାତ୍ର ମୁନିବ ସଚେତନ ହେବା ମାତ୍ରକେ ତାହାକୁ ତାହାର ସେହି ଅନଧିକାରର କ୍ଷେତ୍ରରୁ ତଡ଼ି ବାହାର କରିଦିଏ ।

ଏହି ବିଲେଇ ବିଷୟରେ ଆମେରିକାରେ ଅଙ୍ଗେ ନିଭାଇଥିବା କଥାଟିଏ ଏଠି ଭାରି ମନେ ପଡ଼ିଯାଉଛି । ବିଚରା କାହାର ପୋଷା ବିଲେଇଟି ହଜି ଯାଇଥିଲା । ତେଣୁ, ସେହି ବିଷୟରେ ସ୍ଥାନୀୟ ଖବରକାଗଜରେ ବିଜ୍ଞାପନ ବାହାରିଥିଲା । ରାସ୍ତାରେ

ଖୁଣ୍ଟମାନଙ୍କରେ, ଗାଡ଼ୀର ଗ୍ୟାରେଜମାନଙ୍କରେ ଏବଂ ବାସଗୃହ ଫ୍ଲାଟ୍‌ମାନଙ୍କରେ ମଧ୍ୟ ସେହି ସମ୍ପର୍କରେ ବିଜ୍ଞାପନ ବାହାରିଥିଲା । ବିଲେଇଟିର ବୟସ ଓ ଅଙ୍ଗବର୍ଣ୍ଣନା ଯଥାରୀତି ପ୍ରଦାନ କରାଯାଇ ତାହାର ପୂର୍ଣ୍ଣାବୟବ ଛବିଟିଏ ମଧ୍ୟ ବିଜ୍ଞାପନରେ ପ୍ରକାଶ ପାଇଥିଲା । ବିଲେଇଟି ଆଖର ମିଳିଲା କି ନାହିଁ କେଜାଣି ? ବିଲେଇଟିକୁ ଯିଏ ଖୋଜିଆଣି ଦେଇପାରିବ, ସିଏ ପୁରସ୍କାର ସ୍ୱରୂପ ଦୁଇଶହ ପଚାଶ ଡ଼ଲାର ପାଇବ ବୋଲି ଘୋଷଣା ମଧ୍ୟ କରା ଯାଇଥିଲା । ଜଣେ ଭାରତୀୟ ପାଇଁ ଦୁଇଶହ ପଚାଶ ଡ଼ଲାର ଦଶ ହଜାର ଟଙ୍କାରୁ ଅଧିକ ହେବ । ତେଣୁ, ମାତ୍ର ବିଲେଇଟାକୁ ଖୋଜି ଆଣି ଦେଲେ ଯିଏ କୃତଜ୍ଞତାର ନଗଦମୂଲ୍ୟ ରୂପେ ଏତେଗୁଡ଼ାଏ ଟଙ୍କା ଦେବାକୁ ରାଜୀ ହୋଇପାରୁଛି, ସିଏ ନିଶ୍ଚୟ ଅତ୍ୟନ୍ତ ଉଦାର ହୋଇଥିବ । ପୃଥିବୀର ଯେଉଁସବୁ ଥାନରେ ମନୁଷ୍ୟମାନେ ମୁଠା ଭର୍ତ୍ତି କରି ରୋଜଗାର କରି ପାରୁଛନ୍ତି, ସେଠାରେ ଅଧିକରୁ ଅଧିକ ସଂଖ୍ୟକ ଲୋକ ସମ୍ଭବତଃ ମୁଠା ଖୋଲା କରି ଉଦାର ବି ହୋଇ ପାରୁଛନ୍ତି । ସେଠି ଆଉଥରେ ଖବର କାଗଜରେ ଆଉଗୋଟିଏ ବିଜ୍ଞାପନ ମଧ୍ୟ ଦେଖିଥିଲି ସେହି ବିଲେଇମାନଙ୍କ ବିଷୟରେ । ସବୁ ବିଲେଇଙ୍କର ଯେ ମାଲିକ ନାହାନ୍ତି, କେବଳ ସେତିକି ନୁହେଁ, ସବୁ ବିଲେଇଙ୍କର ବାପାମାଆ ମଧ୍ୟ ନଥିବେ । ଏହି ଛେଉଣ୍ଡ ବିଲେଇମାନେ ପ୍ରକୃତରେ କେତେ କ'ଣ କଷ୍ଟ ଭୋଗୁନଥିବେ । ସେମାନଙ୍କୁ ପାଳିବାକୁ, ସାନରୁ ବଡ଼ କରିବାକୁ, ସ୍ନେହଭରା ଆହ୍ଲାଦର ସହିତ ସେମାନଙ୍କର ଦେହକୁ ଚାଟିବାକୁ ଏବଂ, ସେମାନେ ଯେପରି ବୃହତ୍ତର ପୃଥିବୀରେ ପୂର୍ଣ୍ଣବୁଦ୍ଧି ବିଲେଇ ହୋଇ ବଞ୍ଚି ପାରିବେ, ସେଥିଲାଗି ସେମାନଙ୍କୁ ଆବଶ୍ୟକ ତାଲୀମ ଦେବାକୁ ପାଖରେ ନିଜର ମାଆଟିଏ ନଥିବ ! ବିଚରା ଏହି ଭାଗ୍ୟହୀନମାନେ ପ୍ରକୃତରେ କିପରି କ'ଣ କରିବେ ? ଖବରକାଗଜରେ ନିବେଦନ କରା ଯାଇଥିଲା ଯେ ସହୃଦୟ ବ୍ୟକ୍ତିମାନେ କଦାପି ଛେଉଣ୍ଡ ବିଲେଇମାନଙ୍କୁ ଏପରି ରାସ୍ତାରେ ଅରକ୍ଷିତ ହୋଇ ବୁଲିବାକୁ ଛାଡ଼ି ଦେବେନାହିଁ । ଅର୍ଥାତ୍, ରାସ୍ତାରେ ଅର୍କ୍ଷିତ ବିଲେଇଛୁଆଟିଏ ହେପାଜତହୀନ ହୋଇ ମ୍ୟାଉଁ ମ୍ୟାଉଁ ଶବ୍ଦ କରି ବାଟ ଭୁଲି ଯାଇଥିବା ପରି ବୁଲୁଥିବାର ଦେଖିଲେ ସେମାନେ ଦୟାପରବଶ ହୋଇ ତାକୁ ସେଠାରୁ ଉଠାଇ ନିଜ ଘରକୁ ନେଇଯିବେ ଏବଂ ଆବଶ୍ୟକ ଶୁଶ୍ରୁଷାମାନ କରିବେ । ପୃଥିବୀଯାକର ମନୁଷ୍ୟମାନେ ଆହୁରି କେତେ ବିତ୍ତବାନ୍ ଏବଂ ବିବେକବାନ୍ ହେଲେ ବିଲେଇମାନଙ୍କ ଉପରେ ମଧ୍ୟ ନିଘା ରଖିବେ ଏବଂ ସେମାନଙ୍କୁ କଦାପି ଅରକ୍ଷିତ ଅବସ୍ଥାରେ ନରଖର ହେବାକୁ ଛାଡ଼ି ଦେବେନାହିଁ, ବିଜ୍ଞାପନଟି ଉପରେ ଆଖି ପକାଉ ପକାଉ ମୁଁ ସେଦିନ ସେହିକଥା ଭାବୁଥିଲି ।

ଆମ ପୁରାଣ କହୁଛି, ଋଷି ବିଶ୍ୱାମିତ୍ର ନିଜ ଜିଦ୍‌ରେ ସ୍ୱର୍ଗ ଆଉ ପୃଥିବୀ ମଝିରେ ଗୋଟିଏ ସ୍ୱର୍ଗ ନିର୍ମାଣ କରି ଥୋଇ ଦେଇଥିଲେ । ସିଏ ସେତିକି ବଡ଼ ତପସ୍ୱୀ ଥିଲେ ବୋଲି ସିନା ତାହା କରିପାରିଲେ ! ଏହି ପୃଥିବୀ ମଧ୍ୟ ଯେ ସ୍ୱର୍ଗ ପରି ହୋଇପାରିବ, ବା ଅନ୍ତତଃ ସ୍ୱର୍ଗ ପରି ଦିଶିପାରିବ, ବିଶ୍ୱର ମିତ୍ରମାନେ ଆମ ଏଯୁଗରେ ଯାଇ ତାହାର ଏକ

ଧାରଣା କରିପାରିଲେ । ସମ୍ଭବତଃ ସେହି ଧାରଣାଟି ହିଁ ଏକ ଅନୁରୂପ ସାଧନାକୁ ମଧ୍ୟ ଜନ୍ମ ଦେଇ ପାରିଲା । ସେହି ସାଧନା ଏବେ ମଧ୍ୟ ଚାଲିଛି । ଆମେରିକାକୁ ଆସି ମୁଁ ସତେଅବା ମନୁଷ୍ୟର ସେହି ସାଧନାଟିକୁ ଅଧିକ ଚାକ୍ଷୁଷ କରି ଦେଖିବାକୁ ପାଇଲା ପରି ବୋଧ ହେଲା । ସେଠାରୁ ଥାଇ ଅବଶିଷ୍ଟ ପୃଥିବୀ ଉପରେ ଦୃଷ୍ଟିପାତ କରୁଥିବା ସମୟରେ ଅଧିକରୁ ଅଧିକ ପ୍ରତ୍ୟୟ ସହିତ ମୋ'ର ଅନୁଭବ ହେଉଥିଲା ଯେ, ଏହି ପୃଥିବୀ କଦାପି ଚିରଦିନ ନିମନ୍ତେ ଏପରି ହୋଇ ରହିବ ନାହିଁ । ଅବଶ୍ୟ ବଦଳିଯିବ । ଉଦ୍ୟମଦ୍ୱାରା ବଦଳିବ, ଜ୍ଞାନାଲୋକ ଦ୍ୱାରା ବଦଳିବ, ପ୍ରତିବାଦର ବଳ ଦ୍ୱାରା ବଦଳିବ ଏବଂ ବିପ୍ଳବ ଦ୍ୱାରା ବଦଳିବ । ମଣିଷର ସଂସାରଟାକୁ ଆକ୍ରାନ୍ତ କରି ରଖିଥିବା ଖଣ୍ଡିଆଗୁଡ଼ାକୁ ଏହି ମଣିଷମାନେ ହିଁ କ୍ରମେ ବଦଳାଇବେ । ସେମାନେ ଆଉ କେଉଁଠିହେଲେ ଭାଗ୍ୟକୁ ଆଦରି ବସିଯିବେ ନାହିଁ । ଚାଲାଖ ଅଳପ ମଣିଷଙ୍କର କଥା ସେମାନଙ୍କୁ ଆଉ ମୋଟେ ଭଳାଇ, ଭୁଲାଇ ଶୀତଳ କରି ରଖି ପାରିବନାହିଁ । ସେମାନେ ନିଜର ଭିତରୁ ହିଁ ଜଣେ ଉଦ୍ୟମୀ ଈଶ୍ୱରଙ୍କର ବାରତାକୁ ଶୁଣିପାରିବେ ।

ସେକାଳ ଏବଂ ଏକାଳ ମଧ୍ୟରେ ସମ୍ଭବତଃ ଏଇଟା ହେଉଛି ସବୁଠାରୁ ଅସଲ ପାର୍ଥକ୍ୟ । ମର୍ତ୍ତ୍ୟରେ ମଣିଷ କେବେ ଏପରି ଅୟସ ଏବଂ ସୁଖାତିଶଯ୍ୟ ସହିତ ରହିପାରିବ ବୋଲି ସେକାଳେ ଇନ୍ଦ୍ର ମଧ୍ୟ କେବେହେଲେ କଳ୍ପନା କରି ପାରିନଥିବେ । ଏବଂ, ମାତ୍ର ଗୋଟିଏ ଦେଶ ଆମେରିକାରେ ଏତେ ଏତେ ଇନ୍ଦ୍ରଙ୍କୁ ଦେଖି ଏବେ ତାଙ୍କର ଭାରି ଈର୍ଷା ମଧ୍ୟ ହେଉଥିବ । ତଥାପି, ସମ୍ଭବତଃ ଗୋଟାଏ କଥା ତାଙ୍କୁ କିଞ୍ଚିତ୍ ସାନ୍ତ୍ୱନା ମଧ୍ୟ ଦେଇ ପାରୁଥିବ । ମାତ୍ର ଥୋକେ ସିନା ଏହିପରି ଇନ୍ଦ୍ରଙ୍କ ଭଳି ରହିପାରିବ । ମାତ୍ର, ସବୁ ମଣିଷଙ୍କର ଜୀବନରେ ଏହି ଭାଗ୍ୟଟି କେବେହେଲେ ସମ୍ଭବ ହେବନାହିଁ । ଗୁଡ଼ାଏ ମଣିଷ ଅବଶ୍ୟ କାଳେ କାଳେ ଘୁଷୁରି ପରି ଘାଣ୍ଟି ହେଉଥିବେ । ଗ୍ରୀସ୍ ଦେଶର ପୁରାଣରେ ଏକାଧିକ ଉପାଖ୍ୟାନରେ ସୂଚିତ କରି ଦିଆଯାଇଛି ଯେ, ମଣିଷମାନେ ଦେବତାମାନଙ୍କ ପରି ହୁଅନ୍ତୁ, ସେକଥା ଦେବତାମାନେ ଆଦୌ ସହ୍ୟ କରି ପାରୁନଥିଲେ । ଥରେ ଜଣେ ଦୁଃସାହସୀ ମଣିଷ ସ୍ୱର୍ଗରୁ କ'ଣ ମର୍ତ୍ତ୍ୟରେ ଅପ୍ରାପ୍ତ ଦ୍ରବ୍ୟଟିଏ ଚୋରି କରି ନେଇ ଆସିଥିଲା ଯେ, ସେଥିଲାଗି ଦେବତାମାନେ ତାକୁ ଗୋଟାଏ ପର୍ବତ ଉପରେ ହାତଗୋଡ଼ ବାନ୍ଧି ପକାଇ ଦେଇଥିଲେ ଓ ତା' ଉପରେ ପଥର ମାଡ଼ି ଦେଇଥିଲେ । ଭାରତବର୍ଷର ପୁରାଣରେ ମଧ୍ୟ ସେହି ମର୍ମରେ ବହୁତ କାହାଣୀ ରହିଛି । ମର୍ତ୍ତ୍ୟଭୁବନରେ କୌଣସି ନର ମର୍ତ୍ତ୍ୟରେ ଅପ୍ରାପ୍ତ କୌଣସି କିଛି ଲାଗି ତପସ୍ୟା କଲେ ସ୍ୱର୍ଗରେ ଚହଳ ପଡ଼ି ଯାଉଥିଲା । ତପୋବଳରେ ଏତେ ପୁଣ୍ୟର ଅଧିକାରୀ ହୋଇଗଲେ କାଳେ ସିଏ ତାଙ୍କ ଇନ୍ଦ୍ରପଣକୁ ଛଡ଼ାଇନେବ ବୋଲି ସ୍ୱର୍ଗର ଇନ୍ଦ୍ର ବ୍ୟସ୍ତ ହୋଇ ପଡୁଥିଲେ । ସେହି ମଣିଷଟାର ତପୋଭଙ୍ଗ ପାଇଁ ସ୍ୱର୍ଗ ତରଫରୁ ଅଭିସନ୍ଧିମୂଳକ କେତେ କ'ଣ କରା ଯାଉଥିଲା । ଛୋଟ ପିଲାଟାଏ ଉତ୍ତାନପାଦ ପୁତ୍ର ଧ୍ରୁବ ନିଜେ ବାପାଙ୍କ ଅନ୍ତେ ରାଜା ହେବ ବୋଲି ଅରଣ୍ୟକୁ ଯାଇ କ'ଣ ଘୋର ତପସ୍ୟା କଲା

ବୋଲି ଦେବତାମାନେ ତାକୁ ଆଦୌ ସହି ପାରିଲେନାହିଁ ଏବଂ ତା'ର ସେହି ତପସ୍ୟାକୁ ଭାଙ୍ଗି ଦେବାପାଇଁ ଲାଗି ପଡ଼ିଲେ । ଋଷିମାନଙ୍କର ତପସ୍ୟାକୁ ଟଳାଇ ଦେବାପାଇଁ ସ୍ୱର୍ଗରୁ ଖଚ କରି ଅପ୍‌ସରାମାନଙ୍କୁ ମର୍ତ୍ତ୍ୟକୁ ପ୍ରେରିତ କରା ଯାଉଥିଲା । ଏପରିକି, ଆମର ଏହି କଳିଯୁଗଟାରେ ମଧ୍ୟ ସାକ୍ୟସିଂହ ଗୌତମ ବୋଧିବୃକ୍ଷ ତଳେ ବସି ତପସ୍ୟା କରୁଥିବା ସମୟରେ ତାହାକୁ ବିଗାଡ଼ି ଦେବାର ଅଭିପ୍ରାୟରେ ସ୍ୱର୍ଗରୁ ରାକ୍ଷସ ଏବଂ ଅନ୍ୟ ଖଳ ଉପାଦାନମାନଙ୍କୁ ପୃଥିବୀକୁ ପଠା ଯାଇଥିଲା ବୋଲି ବୌଦ୍ଧଶାସ୍ତ୍ର ମାନଙ୍କରେ କେଡ଼େ କାବ୍ୟପୂର୍ଣ୍ଣ ବିହ୍ୱଳ ଭାବରେ ଉଲ୍ଲେଖ ରହିଛି ।

ଆଉ ଦିନକର କଥା । ସନ୍ଧ୍ୟା ବୁଡ଼ିବାକୁ ଆଉ କେତେ ଘଡ଼ି ବାକୀ ଥାଏ । ସୂର୍ଯ୍ୟାସ୍ତର ଅନ୍ତିମ ରେଖାଗୁଡ଼ିକ ଦ୍ୱାରା ଦଶଦିଶ ଭାସ୍ୱର ହୋଇ ରହିଥିଲା । ନଦୀମଝିରେ ଗୋଟିଏ ଟାପୁ ଉପରେ ରହିଥିବା Statue of Liberty ମୂର୍ତ୍ତିକୁ ସାମନାପଟୁ ଦେଖିବୁ ବୋଲି ଆମେ ଏପାଖ ତଟରେ ଯାଇ ପହଞ୍ଚିଲୁ । ମୋଟେ ଭିଡ଼ ନଥାଏ । ମଝିରେ ନଦୀଟି ଓ ସେପାଖରେ ନିଉୟର୍କର ମାନ୍‌ହାଟାନ୍ ଅଞ୍ଚଳଟି, ନଭଶ୍ଚୁମ୍ବୀ ଅଟ୍ଟାଳିକାର ଏକ ନୟନାଭିରାମ ସମାବେଶ । କ୍ରମେ ଦିବାଲୋକ ବିଦା ହୋଇ ଯାଉଥାଏ । ନଦୀଦେହରେ ଜଳରାଶି ଘନନୀଳ ଏବଂ କ୍ରମନିଷ୍ପନ୍ଦ ହୋଇ ଆସୁଥାଏ । ହଁ, ଏଠି ମଧ୍ୟ ଆପଣ ମନ କଲେ ଧ୍ୟାନସ୍ଥ ହୋଇ ପାରିବେ । ମନ କଲେ ଆପଣଙ୍କର ଭିତରଟି ଏକାନ୍ତ ନୀରବରେ ପୃଥିବୀ ଆଡ଼କୁ ଖୋଲିଯିବ ଏବଂ ସବୁଟି ସହିତ ଡ଼ୋର ଲାଗିଯିବ । ଆପଣ ଆଉଗୋଟାଏ ଦେଶରେ ରମ୍ୟ ସ୍ଥାନମାନ ଦେଖିବା ଲାଗି ନିଜ ଦେଶ ଛାଡ଼ି ବୁଲିବାକୁ ଯାଇଛନ୍ତି ବୋଲି କୁଆଡ଼େ ପାସୋର ହୋଇଯିବ । ଆମେରିକା ଥିବ, ତଥାପି ନଥିବ । ଆମେରିକା ଭିତରେ ଆପଣଙ୍କର ନିଜ ଦେଶଟି ସମେତ ପୂରା ପୃଥିବୀ ଝଳମଳ ଦେଖା ଯାଉଥିବ । ଆପଣ ବଳେ ବଳେ ଶାନ୍ତ ହୋଇ ଆସିବେ । ବର୍ତ୍ତମାନଟା ସତେଅବା ଜନନୀଟିଏ ହୋଇ ଏକ ଅନ୍ୟ ଭବିଷ୍ୟତକୁ ଜନ୍ମ ଦେଉଛି ବୋଲି ଅନୁଭବ ହେବ । ଆପଣ ହୁଏତ ନିଜକୁ ମଧ୍ୟ ଜନନୀଟିଏ ପରି ଅନୁଭବ କରିବେ । ବସ୍ତୁତଃ ଆମେ ପ୍ରତ୍ୟେକେ ସେହି ଜନନୀ, ବର୍ତ୍ତମାନର ସନ୍ତକରୂପିଣୀ ଜନନୀ, ଯିଏକି ଭବିଷ୍ୟତଟିଏ ଗର୍ଭରେ ଧରି ରାଜୀ ହୋଇ ଏହି ପୃଥବୀକୁ ଆସିଛି । ଆପଣ ଦଶଦିଗରେ ହୋଇଯିବେ, ପୃଥିବୀରେ ସବୁ ମଣିଷଙ୍କ ପାଇଁ ଯେଉଁ ଭବିଷ୍ୟ ଅପେକ୍ଷା କରିଛି, ତାହାରି ହୋଇଯିବେ । ନିଜ ଭିତରୁ କେତେ ବଳ ପାଇଗଲା ପରି ଲାଗିବ । ଆପଣ ଆମେରିକାଠାରୁ ମଧ୍ୟ କେତେ ବଳ ପାଇବେ । ଆମେରିକା ପାଖରେ କୃତଜ୍ଞ ହୋଇ ରହିଯିବେ ।

ସଞ୍ଜ ବୁଡ଼ିଗଲା । ନଦୀର ବିସ୍ତାରଟା ଅଧିକରୁ ଅଧିକ କାଳିମ ହୋଇ ଆସୁଥିବା ଅନ୍ଧାରଟାକୁ କୋଳରେ ଧରି ଝୁଲାଉଥିବା ପରି ମନେ ହେଉଥାଏ । ଠିକ୍ ଏତିକିବେଳେ ନଦୀ ସେପାରିରେ ଆଲୋକ ଜଳି ଉଠିଲା । ଆକାଶଚୁମ୍ବୀ ଅଟ୍ଟାଳିକାମାନେ ସତେଅବା

ସହସ୍ରନେତ୍ର ହୋଇ ଜଳି ଉଠିଲେ । ଉଜ୍ଜ୍ୱଳତା କଥା କହି ଉଠିଲା । ମତେ ଲାଗିଲା, ନଈ ସେପାରିରେ ବିଜ୍ଞାନବୁଢ଼ୀ ଟୋଳି ରଖିଥିବା ବାଲୁଙ୍କାମାନ ଆଲୋକମୟ ହୋଇ ଉଠିଲା । ଅନ୍ଧାର ଭିତରେ ଥାଇ ସେହି ମାଳ ମାଳ କାଚ ପରି ଜଳୁଥିବା ଆଲୋକଗୁଡ଼ିକୁ ଦେଖିବା,- ପ୍ରକୃତରେ ହୃଦୟ ପୂରାଇ ଦେଖିଲାଭଳି ଦୃଶ୍ୟଟିଏ । ଯଦି ଗୋଟାଏ ଦେଶରେ ମଣିଷ ନିଜର ଶ୍ରଦ୍ଧାବୁଦ୍ଧି ଦେଇ ଏହି କିମିଆଟିକୁ ଗଢ଼ିଦେଇ ପାରିଛି, ତେବେ କାଲି ସମଗ୍ର ପୃଥିବୀ ମଧ୍ୟକୁ ତାହାର ସେହି କରାମତିଟା କାହିଁକି ସଂକ୍ରମିତ ହୋଇ ନଯିବ ? ସମଗ୍ର ମନୁଷ୍ୟସଭ୍ୟତାର ଇତିହାସ ହେଉଛି ଏହି ସଂକ୍ରମିତ ହୋଇଯିବାର ଇତିହାସ । ସମଗ୍ର ମନୁଷ୍ୟସଂସ୍କୃତିର ଇତିହାସ ମଧ୍ୟ ସେହିପରି ଏକ ଅପ୍ରମିତ ଗ୍ରହଣଶୀଳତାର ଇତିହାସ । ଗୋଟାଏ ଦେଶରେ ସୁଖକର ବୋଲି ଯାହାକିଛି ସମ୍ଭବ ହୋଇଛି ବା ହୋଉଛି, ତାହା ସମଗ୍ର ପୃଥିବୀମଧ୍ୟକୁ ସଂକ୍ରମିତ ହୋଇଯିବ ବୋଲି ହିଁ ସମ୍ଭବ ହୋଇଛି । ମନେ ହେଉଛି, ପୃଥିବୀ ଏପରି ଏକ ବିଜ୍ଞାନଦ୍ୱାରା ପ୍ରେରିତ ମିଳନବିନ୍ଦୁରେ ଆସି ପହଞ୍ଚିଲାଣି ଯେ ଆଉ କୌଣସି ଜ୍ଞାନ, କୌଣସି କାରିଗରୀ ଅଥବା କୌଣସି ସତ୍ୟସମ୍ପଦକୁ ଗୋଟିଏ ଦେଶରେ ଆବଦ୍ଧ କରି ରଖାଯାଇ ପାରିବନାହିଁ । ଯେଉଁଠି ସାମୂହିକ ବିବେକଟି ଯେତେ ଅଧିକ ନିର୍ମଳ ଏବଂ ବାଧାରହିତ ଭାବରେ ଗ୍ରହଣଶୀଳ ହୋଇ ପାରିବ, ସିଏ ସେତେ ଅଧିକ ହେବ, ଶିଖିବ ଓ ଆହରଣ କରିପାରିବ । ନାଏଗ୍ରା ଜଳପ୍ରପାତରେ ଆମକୁ ଯେତେବେଳେ ଏଇଟା ଯୁକ୍ତରାଜ୍ୟ ପାଖ ଓ ସେଇଟା କାନାଡ଼ା ପାଖ ବୋଲି କୁହାଗଲା, ସେତେବେଳେ ବୁଦ୍ଧିଆ ଆମେ ସବୁ ସିନା ଠୋ' ଠୋ' ହୋଇ ବୁଝିଗଲୁ, କିନ୍ତୁ ସ୍ୱୟଂ ନାଏଗ୍ରା ତାହାର କ'ଣ ବୁଝିଥିବ କେଜାଣି ? ନାଏଗ୍ରା ହେଉଛି ଏପରି ଏକ ଜଳପ୍ରବାହର ପ୍ରତୀକ, ଯାହାକି ସତେଅବା ସମଗ୍ର ପୃଥିବୀଟାର ବିସ୍ତାର ଅନୁପାତରେ ଦେଖଣାହାରି ମନୁଷ୍ୟମାନଙ୍କୁ ଉଦ୍‌ବୁଦ୍ଧ କରିବ ବୋଲି ଆପଣାକୁ କେଡ଼େ ପ୍ରଶସ୍ତ କରି ବିଛାଇ ଦେଇଛି । ଅସଲ ଆଖିକୁ ଗୋଟାଏ ହୋଇ ଦେଖାଯାଉଛି । ପୃଥିବୀର ବର୍ତ୍ତମାନଟା ସିନା କାହାର କୌଣସି ପ୍ରାରବ୍ଧ ହେତୁ ଏପରି ବାରଖଣ୍ଡ ବା ବାରଶହ ଖଣ୍ଡ ହୋଇ ରହିଛି, ମାତ୍ର ଏହାର ଗର୍ଭ ଭିତରୁ ଜନ୍ମଲାଭ କରୁଥିବା ଭବିଷ୍ୟଟି ପ୍ରକୃତରେ ଗୋଟିଏ ହୋଇ ହିଁ ଆମ ପୃଥିବୀକୁ ଆସିବ,- ଆମେରିକାରେ ମତେ ବାର ବାର କିଏ ସତେଅବା ବନ୍ଧୁ ପରି ସୂଚାଇ ଦେବାରେ ଲାଗିଥିଲା ।

ଏଠୁ ଯାଇ ଅଚାନକ ଆମେରିକାରେ ପହଞ୍ଚିଗଲେ ଆପଣଙ୍କୁ ହଠାତ୍ କେମିତି କେମିତି ଲାଗିବ । ସେଠାରେ ପୃଥିବୀଟା ପୂରାପୂରି ଓଲଟା ଚାଲୁଛି ବୋଲି ମନେହେବ । ଏପରି ମନେ ହେବା ଏକାନ୍ତ ସ୍ୱାଭାବିକ । ଅଧିକାଂଶ ମଣିଷ ବଞ୍ଚିତ ହୋଇ ରହିଥିବା ଗୋଟିଏ ସଂସ୍କାରରୁ ଅଧିକାଂଶ ମଣିଷଙ୍କ ପାଇଁ ଅନ୍ତତଃ ଏକ ସର୍ବନିମ୍ନ ଜୀବନଭୋଗର ସରଞ୍ଜାମଗୁଡ଼ିକୁ ଖଞ୍ଜି ଦିଆ ଯାଇଥିବା ଆଉଗୋଟିଏ ସଂସ୍କାର ପାଖରେ ଆସି ହାବୁଡ଼ିଗଲେ ଆପଣଙ୍କୁ ଅବଶ୍ୟ ସେହିପରି ହିଁ ମନେହୁଅନ୍ତା । ଏହି ଦେଶଟାରେ ମଣିଷମାନଙ୍କର ମୁଣ୍ଡ

ହୁଏତ ଖରାପ ହୋଇଯାଇଛି ବୋଲି ଗବେଷଣା କରିବାକୁ ବି ଆପଣଙ୍କର ମନ ହୁଅନ୍ତା । ଏକାବେଳେକେ ବୟସ୍କଗୁଡ଼ାକ ନିତାନ୍ତ ପିଲାଙ୍କ ପରି କାହିଁକି ଆଚରଣ କରୁଛନ୍ତି ବୋଲି ଆପଣ କେତେପ୍ରକାର ସନ୍ଦେହ କରିବାକୁ ଆରମ୍ଭ କରିଦିଅନ୍ତେ । ଏମାନଙ୍କର ଜୀବନରୁ କ'ଣ ଲାଜ ବା ସରମ ଭଳି ଜିନିଷମାନେ କୁଆଡ଼େ ଅନ୍ତର୍ହିତ ହୋଇଗଲେ ବୋଲି ଆପଣ ନିଜକୁ ପଚାରି ହୁଅନ୍ତେ । ଆମେରିକାରୁ ମଣିଷମାନେ ଆମର ଏଠାକୁ ଆସି ଆମର ହାଲହାଲତ ଦେଖି କ'ଣସବୁ ଭାବୁଥିବେ ବୋଲି ନିଜକୁ ପଚାରିବା ନିମନ୍ତେ ଆପଣଙ୍କର ମୋଟେ ଇଚ୍ଛା ହୁଅନ୍ତାନାହିଁ । ଏହି ଦେହଟା ନଶ୍ୱର, ଦେହ କ୍ଷଣଭଙ୍ଗୁର, ଦେହର ଶୋଭା ଇନ୍ଦ୍ରଧନୁର ଶୋଭା ପରି ନିତାନ୍ତ କ୍ଷଣିକ ବୋଲି ପିଲାଦିନରୁ ଘୋଷି ଘୋଷି ନିଜ ଭିତରେ କର୍କଶ ଏବଂ ସ୍ପର୍ଶକାତର ହୋଇ ବସିଥିବା ମଣିଷମାନେ ସେଠାରେ ଅଞ୍ଚାନମାନେ ଦେହଟା ଉପରେ କାହିଁକି ଏତେ ବେଶୀ ଯତ୍ନ, ସମୟ ଏବଂ ନିଷ୍ଠା ଖଟାଉଛନ୍ତି ବୋଲି ଗୁଣି ହୋଇ ଆପଣଙ୍କୁ ହୁଏତ ବାହାରେ ବିରକ୍ତ ଲାଗନ୍ତା ଓ ତେଣେ ନିଜର ଅବଚେତନ ଭିତର ମାହାଲରେ କିଛିତ୍ ସଲସଲ ବି ଅନୁଭବ ହେଉଥାନ୍ତା । ଆପଣ ସମ୍ଭବତଃ ଯେତିକି ଭର୍ତ୍ସନାଭାବ ସହିତ, ତେଣୁ ଆଖିଟାକୁ ଏଣେ ନେଇ ଆସିବାକୁ ଚାହୁଥାନ୍ତେ,ତେଣେ ସତେଅବା କେଉଁଠି ଭାରି ଲୋସଡ଼ି ପଡ଼ିଥିବା ପରି ତଥାପି ସେଗୁଡ଼ିକୁ ଗାରଡ଼େଇ ଦେଖିବା ନିମନ୍ତେ ମନ ବି କରନ୍ତେ । ଦେହକୁ ସୁନ୍ଦର କରିବାରେ ଆମେରିକାବାସୀଙ୍କର ଏତେ ସରାଗ ହୋଇଥାଏ କାହିଁକି କେଜାଣି ? ସେହି ସରାଗଟିର ପରିପୂର୍ଣ୍ଣ ତର୍ପଣ ନିମନ୍ତେ ସେଠି ଭଳି ଭଳି ପରିଚ୍ଛଦ ବାହାରୁଛି, ପ୍ରସାଧନ ଏବଂ ପ୍ରଲେପର ସୁମାରି ବି କରି ହେଉନାହିଁ । ଆଦିମ ମନୁଷ୍ୟମାନଙ୍କ ଠାରୁ ଆରମ୍ଭ କରି ଆମ ଏବର ଆଧୁନିକମାନଙ୍କ ପର୍ଯ୍ୟନ୍ତ ଦେହକୁ ଆପଣାର ମନେ କରିବାର, ଆପଣାର ମନେ କରି ଦେହକୁ ସଜାଇବାର ଯେଉଁସବୁ ଉପଚାର ଯୁଗ ଯୁଗ ଧରି ଅନବଚ୍ଛିନ୍ନ ଧାରାରେ ପୃଥିବୀର ସବୁ ସଂସ୍କୃତିରେ ଲାଗିରହିଛି, ବୈରାଗ୍ୟଶତକରେ ସେଇଟା ଉପରେ କାବ୍ୟିକ ଅନାଗ୍ରହ ସହିତ କ୍ରୋଧ ବର୍ଷଣ କରାଯାଇଛି ବୋଲି ଏହି ଦେହଟା କ'ଣ କେବଳ ମିଛର ହିଁ ପ୍ରତୀକ ? ଆମେରିକାକୁ ଆସିଲେ ଏହି ପ୍ରଶ୍ନଟା ବାରମ୍ବାର ମନଭିତରେ ଆସି ଜାଗ୍ରତ ହେଉଥାଏ । ଦେହଟାକୁ ଦେଖିବେନାହିଁ ବୋଲି ଋଷିମାନେ ନିଜର ଆଖିକୁ ବୁଜିଦେବା ନିମନ୍ତେ ତୁମ ଆମପରି ଲୋକଙ୍କୁ ପରାମର୍ଶ ଦେଇଛନ୍ତି । ସେହି ହିତୋପଦେଶଟି ମୁତାବକ ତିନି ମାଙ୍କଡ଼ଙ୍କ ମଧ୍ୟରୁ ଗୋଟିକୁ ଆଖି ବନ୍ଦ କରାଇ ବସାଇ ଦିଆଯାଇଛି । ମାତ୍ର, ଆଖି ବନ୍ଦ କରିଦେଲେ ଯେ ମଣିଷର ଦେଖିବା ତଥାପି ବନ୍ଦ ହୁଏନାହିଁ, କେବଳ ସତ୍ୟବାଦୀମାନେ ହିଁ ସାହସ କରି ସେକଥା କହିଦେଇ ପାରନ୍ତେ ।

ଦିନରେ ବି, ରାତିରେ ବି,- ଆପଣଙ୍କୁ ଦେଖିବାକୁ ମିଳିବ, କୋଉଠି ରସିକ ଓ ରସିକା ପରସ୍ପରକୁ କୁଣ୍ଢାଇ ଧରି ଠିଆ ହୋଇଛନ୍ତି,କେଡ଼େ ଭାବମୟ ଅନ୍ତର୍ନିବେଦିତ ଭାବରେ ଦେହକୁ ଦେହ ଲଗାଇ ଆଣୁଛନ୍ତି । ଅନ୍ୟମାନେ ବାଟରେ ଚାଲି ଯାଉଛନ୍ତି, ମାତ୍ର

ସେଆଡ଼କୁ ଅନାଇ ଦାନ୍ତ ନିକୁଟି ଦେବାର କୌଣସି ପ୍ରଶ୍ନ ହିଁ ନାହିଁ । ସେଦିନ ଗୋଟିଏ ପତ୍ରିକାର ଅଗ୍ରପ୍ରଚ୍ଛଦରେ ଦେଖିଲି, କେବଳ ଖଣ୍ଡେ ଖଣ୍ଡେ କଉପୁନୀ ପିନ୍ଧି ରାଷ୍ଟ୍ରପତି କ୍ଲିଣ୍ଟନ୍ ଓ ତାଙ୍କର ପତ୍ନୀ ଖୁଆକୁ ଖୁଆ ଧରାଧରି ହୋଇ ସମୁଦ୍ରବେଳାରେ ବାଲି ଉପରେ ନାଚୁଛନ୍ତି ; ସତେଅବା ଠିଆପୁଉଁଚି ଖେଳୁଥିବା ପରି ଦେଖା ଯାଉଛନ୍ତି । ଗ୍ରୀଷ୍ମ ଦିନର ଆକର୍ଷଣରେ ଆମେରିକାରେ ଶହ ଶହ ମଣିଷ ଦିନମାନ ସମୁଦ୍ର ତଟର ବାଲି ଉପରେ ଓଧଙ୍କ ପରି ଗଡୁଥାଆନ୍ତି । ସୁନ୍ଦର ପାଗଟାରେ ସୁନ୍ଦର ପ୍ରକୃତି ସମେତ ଏହି ସୁନ୍ଦର ଧରଣୀକୁ ଭୋଗ କରିବାକୁ ଆସି ସେମାନେ ନିଜର ସାଂସାରିକ ପରିଚୟଟାକୁ ଗୋଟାପଣେ ଭୁଲି ଯାଆନ୍ତି । କିଏ କୋଉ ପଦରେ ଥାଇ କେତେ ହଜାର ଉପାର୍ଜନ କରୁଛି, ସେକଥା କାହାରି ମନେ ନଥାଏ । ଏବଂ, ଏଡ଼େ ବଡ଼ ଦେଶଟାର ରାଷ୍ଟ୍ରପତି ମଧ ନିଜର ସେହି ଆନୁଷ୍ଠାନିକ ସନ୍ତକଟାକୁ ପାସୋରି ଦେଇ ଅନ୍ୟ ସମସ୍ତଙ୍କ ଭିତରେ ତୁଚ୍ଛା ଆନନ୍ଦର ଏକ ମନଖୋଲା ମହୋତ୍ସବ ଭିତରେ କୁଆଡ଼େ ମିଶି ଯାଇଥାନ୍ତି । ତାଙ୍କୁ ପହରା ଦେବାକୁ ସେଠାରେ ସରକାରୀ ପରିପାଟୀ ବା ପ୍ରହସନ ଏତେଟିକିଏ ବି ନଥାଏ । ଯେଉଁ ଦେଶରେ ଜଣେ ରାଷ୍ଟ୍ରପତି ମନ କଲା ମାତ୍ରକେ ସାଧାରଣ ମଣିଷଟିଏ ହୋଇପାରୁଛି, ସେହି ଦେଶକୁ ଚଳାଉଥିବା ଭଗବାନଙ୍କୁ ଆମେ ପ୍ରକୃତରେ ଧନ୍ୟ ବୋଲି କହିବା । ଆମ ଏଠା ଧର୍ମରେ ସିନା ଶିବ ଏବଂ ପାର୍ବତୀ ଏକାଠି ବେଳେ ବେଳେ ନୃତ୍ୟ କରୁଥିଲେ ବୋଲି ଉଲ୍ଲେଖ ରହିଛି । ମାତ୍ର, ମୁଁ ଭାବୁଥିଲି ଆମର ଜଣେ ମନ୍ତ୍ରୀ କିମ୍ବା ଜଣେ ସେହି ପାହିଆର ମଣିଷ ଯଦି କେବେ ଖିଆଲଟାଏ କରି ପୁରୀ ସମୁଦ୍ରବାଲିରେ ନାଚିବାକୁ ଆରମ୍ଭ କରିବେ, ତେବେ କ'ଣ ଗୋଟାଏ ଅସମ୍ଭାଳ କଥା ଘଟିଲା ବୋଲି ସେମାନଙ୍କୁ ଦେଖିବାଲାଗି ସାହୀ ମାନଙ୍କରୁ ଆବାଳବୃଦ୍ଧବନିତା ଆସି ସେଠାରେ ରୁଣ୍ଡ ହୋଇଯିବେ । ସହଧର୍ମିଣୀଙ୍କ ସହିତ ହୁଏତ ପଛେ ନାଚିବେ, ଆଗ ଜଣେ ମନ୍ତ୍ରୀ ଆଉଜଣେ ମନ୍ତ୍ରୀଙ୍କ ସହିତ ନାଚିବାକୁ ଥରେ ମନ କରନ୍ତୁ ନା ! ମନ୍ତ୍ରୀମାନଙ୍କର ମୁଣ୍ଡ ଖରାପ ହୋଇଗଲା ବୋଲି ଖବରକାଗଜରେ ଡ଼କା ପଡ଼ିଯିବ ।

କୌଣସି ସମାଜରେ ସମସ୍ତଙ୍କର ପେଟ ପୂରିବାଭଳି ଭରସାଯୋଗ୍ୟ ସର୍ବନିମ୍ନ ବ୍ୟବସ୍ଥାଟିଏ ହୋଇଯାଇ ପାରିଲେ, ସବୁପିଲା ଇସ୍କୁଲକୁ ଆସି ଏକାଠି ଖୁସୀ ହୋଇ ବସିପାରିଲେ, ମୋ' ନିଜର ରାଷ୍ଟ୍ରୀୟ ତଥା ରାଜନୀତିକ ଭୂମିଟି ମୋତେ ଅବଶ୍ୟ ଏକ ନିର୍ଭରଯୋଗ୍ୟ ସଂସ୍ଥାନ ଯୋଗାଇଦେବ ବୋଲି ମନୁଷ୍ୟମାନଙ୍କର ବିଶ୍ୱାସ ଜାତ ହେଲେ ପାରସ୍ପରିକ ଜୀବନଟି ସମ୍ଭବତଃ ଠିକ୍ ଏହିପରି ଭାବରେ ସରଳ ଏବଂ ନିଷ୍ପାପ ହୋଇ ଆସିବାକୁ ଉତ୍ସାହ ପାଏ । ମଣିଷମାନେ ଅନ୍ୟ ମଣିଷମାନଙ୍କୁ କମ୍ ଈର୍ଷା କରି ଶିଖନ୍ତି । ପ୍ରତ୍ୟେକେ ଖୁସୀ ହୋଇ ବାଟଟିଏ ଚାଲି ପାରିବାର ପ୍ରଶସ୍ତ ଭିତ୍ତିଟି ସ୍ଥାପିତ ହୋଇଗଲେ ଦେହ, ମନ ଓ ହୃଦୟ ହୁଏତ ପରସ୍ପରର ଖୁବ୍ ନିକଟବର୍ତ୍ତୀ ହୋଇ ଆସନ୍ତି । ଦେହ ହୃଦୟର ତାରାଟି ସହିତ ପରିଚିତ ହୋଇଯାଏ ଏବଂ ତାହାରି ନିର୍ଦ୍ଦେଶନାରେ ଚାଲିବାକୁ ଆପେ

ଆପେ ରାଜୀ ହୋଇଯାଏ । ପ୍ରହାର କରି ବାଟକୁ ମଙ୍ଗାଇ ଆଣିବାର ଆଦୌ କୌଣସି ପ୍ରୟୋଜନ ନଥାଏ । ଏବଂ, ଏହାପରେ ହୃଦୟ ମଧ୍ୟ ଦେହକୁ କାହିଁକି ଶୂଦ୍ରଟାଏ ପରି ଦେଖିବ ? ଅର୍ଥାତ୍, କ'ଣ ଗୋଟିଏ ଘଟେ, ଯାହାଫଳରେ ସବୁ ସହଜ ହୋଇଯାଏ, ପାପବୋଧ ଓ ଅପରାଧବୋଧର ତାଡ଼ନାରୁ ମୁକ୍ତି ମିଳେ ଏବଂ ତେଣୁ ପାପ ଓ ଅପରାଧ ଆଡ଼କୁ ମନ ବି କମ୍ ଯାଏ । ପୃଥିବୀରେ ପ୍ରାଚୁର୍ଯ୍ୟମାନେ ବୃଦ୍ଧି ପାଉଥିବା ସଙ୍ଗେ ସଙ୍ଗେ ପୃଥିବୀ ଉପରକୁ ଏହିପରି ଏକ ସହଜତା ଅବତୀର୍ଣ୍ଣ ହୋଇ ଆସୁଛି କି ? ଜୀବନରେ ନାନାଭଳି ଦାରିଦ୍ର୍ୟ ଭୋଗ କରୁଥିବା ପର୍ଯ୍ୟନ୍ତ ସମ୍ଭବତଃ ମଣିଷମାନେ ସହଜ ହୋଇ ପାରନ୍ତିନାହିଁ, ଏକ ସ୍ୱଚ୍ଛନ୍ଦ ଜୀବନ ଯାପନ କରିବାର ମାର୍ଗରେ ନିଜ ଭିତରେ ତଥା ବାହାରେ ଅନେକ ବାଧା ଅନୁଭବ କରୁଥାନ୍ତି ଓ ତେଣୁ ସତେଅବା କୋଉ କ୍ରୂର ଅତିଅହଂଟା ପାଖରେ ଭାରି ଦୟନୀୟ ହୋଇ ପଡ଼ିଥାନ୍ତି । ଭିତରର ତଥା ବାହାରର ଗୋଡ଼ ଗୁଡ଼ାକରେ ଢ଼ିଙ୍କିଆ ପଡ଼ିଥାଏ । ମିଛ ଗଉଁମାନେ ଜୀବନର ସ୍ୱାଭବିକ ଶ୍ରଦ୍ଧାଗୁଡ଼ିକ ଉପରେ ଚଢ଼ୋଉ କରିବାରେ ଲାଗିଥାନ୍ତି । ଆମେରିକାର ଲୋକଜୀବନ ଏବଂ ତାହାର ଖୁସୀ ଭିତରେ ଚଳପ୍ରଚଳ ହେଲାବେଳେ ମୋତେ ଏହିସବୁ କଥା ଭାରି ଭାବମଗ୍ନ କରି ରଖିଥିଲା । ଆମେରିକାରେ ଏହିପରି କ'ଣଗୋଟିଏ ଅଛି, ଯାହାକି କ୍ରମେ ବିଶ୍ୱଯାକର ମଣିଷମାନଙ୍କର ମନକୁ ତା' ଆଡ଼କୁ ଟାଣି ଆଣୁଛି; ନିଜେ ସେଇଠି ଧରା ଦେଇଥିବା ପରି ମୁଁ ବହୁସମୟରେ ସେକଥା ଚିନ୍ତା କରୁଥିଲି ।

ଗାଡ଼ୀରେ ତେଲ ପକାଇବାର ବିଶେଷ ଜାଗାମାନ ଆମ ଦେଶରେ ଅଛି, ଆମେରିକାରେ ମଧ୍ୟ ରହିଛି । ସେଠାରେ ଅଧିକାଂଶ ଚାଳକ ନିଜେ ହିଁ ଗାଡ଼ୀରେ ତେଲ ପକାଇବାର କାର୍ଯ୍ୟଟିକୁ କରନ୍ତି । ବିକାଳିଙ୍କ ତରଫରୁ ତେଲ ପକାଇଦେବା ସକାଶେ ଲୋକ ଅବଶ୍ୟ ନିଯୁକ୍ତ ହୋଇ ରହିଛନ୍ତି ଏବଂ ଆପଣ ଇଚ୍ଛା କଲେ ସେମାନେ ଆପଣଙ୍କ କାର୍ଯ୍ୟଟିକୁ ଅବଶ୍ୟ କରିଦେବେ । ମାତ୍ର, ସେଥିଲାଗି ଆପଣଙ୍କୁ ଅଧିକ ପଇସା ଦେବାକୁ ପଡ଼ିବ । ଗାଡ଼ୀରେ ତେଲ ଭରାଇ ଯନ୍ତ୍ର ଅଙ୍କ କଷି କହି ଦେଉଥିବା ମୂଲ୍ୟଟିକୁ ଆପଣ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ପକାଇଦେବେ ଓ ଗାଡ଼ୀ ଚଳାଇ ବାହାରକୁ ବାହାରିଯିବେ । ଗୋଟାଏ ମିନିଟ ବିଳମ୍ବ କରିବାକୁ ମୋଟେ ବେଳ ନାହିଁ । କାରଣ, ଆପଣଙ୍କ ପଛକୁ ତେଲ ଆଶାରେ ହୁଏତ ଆହୁରି କେତେ ଗାଡ଼ୀ ପ୍ରତୀକ୍ଷା କରି ଛିଡ଼ା ହୋଇଥିବେ । ହଁ, ଆପଣ ଇଚ୍ଛା କଲେ ଗାଡ଼ୀଟିକୁ ଧୁଆଇ ମଧ୍ୟ ପାରିବେ । ସେଥିଲାଗି ସେଇଠି ଆପଣଙ୍କୁ ଆଉଗୋଟିଏ ପାଖକୁ ଆସିବାକୁ ହେବ ଏବଂ ସେଠାରେ ଧାଡ଼ୀ ଭିତରେ ଭର୍ତ୍ତି ହେବାକୁ ପଡ଼ିବ । ତେଣୁ, ହାତରେ କିଛି ସମୟ ଥିବା ଆବଶ୍ୟକ । ଧାଡ଼ୀରେ ଥିବା ଗାଡ଼ୀମାନେ ଗୋଟି ଗୋଟି କରି ସଫା ହୋଇ ଚାଲି ଯାଉଥିବେ ଓ ଆପଣ ମଧ୍ୟ ପଛରୁ ଲାଗି ଲାଗି ଆଗକୁ ଯାଉଥିବେ । ଧୋଇବା ସକାଶେ ମଣିଷ ବୋଲି କେହି ନଥିବେ, ତତ୍ତ୍ୱାବଧାନ କରିବାକୁ ମଧ୍ୟ କେହି ନଥିବେ । ଖୋଦ ମାଲିକ ଆପଣଙ୍କୁ ମଧ୍ୟ ଗାଡ଼ୀରୁ ଆଦୌ ବାହାରିବାକୁ

ପଡ଼ିବନାହିଁ । ଓଲଟି, ଅର୍ଗଳିଟି ଭିତରେ ଯାଇ ପ୍ରବେଶ କରିବା ପରେ ଆପଣଙ୍କୁ ତୁନି ହୋଇ ନିଜ ଗାଡ଼ୀଟି ଭିତରେ ବସି ରହିବାକୁ ପଡ଼ିବ । ହଁ, ମନେ କରି ନିଜ ଗାଡ଼ୀର କାଚଗୁଡ଼ିକୁ ଆଣ୍ଠି ଦେଇ ପୂରା ନିବୁଜ ହୋଇ ବସିଥିବେ ଟି ! ତା'ପରେ ଯନ୍ତ୍ରମାନେ କାର୍ଯ୍ୟ କରିବାକୁ ଆରମ୍ଭ କରିଦେବେ । ଆଗ ଗାଡ଼ୀର ଆଗ, ପଛ, ଦୁଇ କଡ଼, ଚକ ସବୁଟି ଉପରେ ଦୁଇ କଡ଼ରୁ ବହଳ ସାବୁନପାଣି ଛିଞ୍ଚି ହୋଇଯିବ । ତା'ପରେ ଆଉକିଛି ପାଣି ପକାଇ ସେହି ସାବୁନମଣ୍ଡ ଧାରା ହୋଇ ବୋହିବାକୁ ଆରମ୍ଭ କରିବ ଏବଂ ଭିତରୁ ଆପଣଙ୍କୁ ସବୁ ଖାଲି ଧଳା ଫରଫର ଦିଶିବ । ତା'ପରେ ଦୁଇ ପାଖରୁ ଦୁଇଟା ଯନ୍ତ୍ରରାକ୍ଷାସୁଣୀ ମାଡ଼ି ଆସିବେ ଓ ପିଛ ଧରି ଗାଡ଼ୀ ସଫା କରିବାରେ ଲାଗିବେ । ଆବଶ୍ୟକତା ଅନୁସାରେ ଆଗକୁ ଉହୁଙ୍କି ଯାଉଥିବେ ଓ ପୁଣି ପଛକୁ ଚିହିଙ୍କି ଆସୁଥିବେ । ଏହିପରି ପ୍ରାୟ ଦୁଇ ମିନିଟ ପିଛମାନେ କାମ କରିବେ । ଏଗୁଡ଼ିକୁ ପିଛ ବୋଲି କହିବେ ନା ଅସୁରୁଣୀର ବାଳ ବୋଲି କହିବେ ! ବାଇ ଲାଗିଥିଲା ପରି ହଳଦିଆ ଓ କଳା ରଙ୍ଗର ଖଦଡ଼ା ପ୍ଲାଷ୍ଟିକ୍ ଝୋଟରେ ତିଆରି ହୋଇଥିବା ଏଗୁଡ଼ିକ ବିଶାଳ ଚଅଁର ଦୁଇଟା ପରି ଆପଣଙ୍କର ଗାଡ଼ୀର ବାହାରପଟେ ଥରକୁ ଥର ଘଷି ହୋଇ ଯାଉଥିବେ । ଧୂଳି, ମାଟି, ଅସନା, ଦାଗ, ଗାର କାହାକୁ ମାନିବେନାହିଁ, ନିକ କାଢ଼ି ପୋଛି ନେଇଯିବେ । ଏବଂ, ତା'ପରେ ତୁଚ୍ଛା ପାଣିର ବନ୍ୟା ଆପଣଙ୍କର ଗାଡ଼ୀ ଉପରକୁ ମାଡ଼ି ଆସିବ ଏବଂ ମଇଳା ସମେତ ସାବୁନର ଫେଣଗୁଡ଼ିକୁ ଧୋଇ ସଫା କରି ନେବ । ଗାଡ଼ୀର କାଚ ଉପରେ ସତେଅବା ତରା ଫୁଟି ଯାଉଥିବ ।

ଲାଗିବ, ଆପଣଙ୍କର ଗାଡ଼ୀ କନିଅାଁଟିଏ ହୋଇ ସତେଅବା ବାତୁଅପାଣି ଗାଧୋଉଛି ! ତା'ପରେ ପିଛମାନେ ମୋଡ଼ି ମୋଡ଼ି ହୋଇ ଉପରକୁ ନିଜନିଜର ଯଥାସ୍ଥାନକୁ ଉଠିଯିବେ । ସୁନିଶ୍ଚିତ ଭାବରେ ସେମାନେ ପରବର୍ତ୍ତୀ ଗାଡ଼ୀଟି ପାଇଁ ଅପେକ୍ଷା କରି ରହିବେ । ହଠାତ୍ ଯନ୍ତ୍ରଟିର ବରାଦ୍ ଅନୁସାରେ ଦୁଇଟା କୋରଡ଼ ପରି ଏଡ଼େ ଏଡ଼େ ଆଖି ଆପଣଙ୍କ ଗାଡ଼ୀ ଆଡ଼କୁ ମୁହାଁଇ ଆସିବେ ଏବଂ ସେଥିରୁ ଭୁଷ୍ ଭୁଷ୍ ହୋଇ ପବନ ବାହାରିବ । ଏବଂ, ସେହି ପବନ ଦ୍ୱାରା ହିଁ ଆପଣଙ୍କ ଗାଡ଼ୀର ସମ୍ପୂର୍ଣ୍ଣ ଅବୟବଟି ନିମେଷ ମାତ୍ରକେ ଶୁଖିଲା ଚକ୍‌ଚକ୍ ହୋଇଯିବ । କ୍ଷଣକ ଆଗରୁ ତାହା ସାବୁନ ଓ ପାଣିର ବନ୍ୟାରେ ଭାସୁଥିଲା ବୋଲି କୌଣସି ସାଙ୍କେତିକ ଇଙ୍ଗିତ ମଧ୍ୟ ରହିବନାହିଁ । ଆଗରେ ଏକ ନିର୍ଦ୍ଦେଶ ଫଳକରେ ଧନ୍ୟବାଦ ବୋଲି ଲେଖା ହୋଇଯିବ ଏବଂ ଯାଆନ୍ତୁ ବୋଲି ନିର୍ଦ୍ଦେଶ ମଧ୍ୟ ମିଳିବ । ଆପଣ ଅର୍ଗଳି ଭିତରୁ ବାହାରି ଆସିବେ ଓ ଆପଣାର ଗନ୍ତବ୍ୟ ପଥ ଗ୍ରହଣ କରିବେ । ଏହି ସବୁକିଛି ପ୍ରକ୍ରିୟା କେଡ଼େ ଶୀଘ୍ର ଯେ ହୋଇଯିବ, ନଦେଖିଲେ ଆପଣଙ୍କର ବିଶ୍ୱାସ ହେବନାହିଁ । ପ୍ରଥମେ ପ୍ରଥମେ ଦେଖୁଥିବା ଜଣେ ମଣିଷକୁ ତ ସାକ୍ଷାତ କିମିଆ ପରି ମନେ ହେବ । ଆମେରିକାରେ ଯନ୍ତ୍ରମାନେ ଯେ ମଣିଷର କେତେ କେତେ କଥା ମାନୁଛନ୍ତି, ଏକଥା ଭାବିଲେ ଆପଣଙ୍କୁ ଭରି ଅଭାବନୀୟ ମନେ ହେଉଥିବ ।

ସମ୍ପୂର୍ଣ୍ଣ ସତକଥା ଯେ, ଯନ୍ତ୍ର ମଣିଷର କେତେ କେତେ କଥା ମାନୁଛି । ଆମେରିକାରେ ମାନୁଛି, କାଲି ନିଶ୍ଚୟ ପୃଥିବୀଯାକ ମାନିବ । ଏବଂ, ସ୍ୱୟଂ ମଣିଷ ହିଁ ଏହିସବୁ ଯାବତୀୟ ଯନ୍ତ୍ରକୁ ପାନ୍ଦିଛି ଏବଂ ସମ୍ଭବ କରିପାରିଛି । ମାତ୍ର ଯନ୍ତ୍ର ସିନା ମଣିଷର ଏତେ କଥା ମାନୁଛି । ମଣିଷ ପ୍ରକୃତରେ କାହା କଥା ମାନୁଛି ? ଏହି ପ୍ରଶ୍ନଟି ଉପରେ ଏବେ ସମ୍ଭବତଃ ପୃଥିବୀଯାକ ଭାଳେଣି ପଡ଼ିଛି । ଆଗକୁ ଆଗକୁ ନିଶ୍ଚିତ ଭାବରେ ଆହୁରି ଅଧିକ ଭାଳେଣି ପଡ଼ିବ । ଏକଥା ମଧ ନିରାଟ ସତ୍ୟ ଯେ ମଣିଷ ପ୍ରକୃତିର କଥା ମାନିବାକୁ ରାଜୀ ହେଲା ବୋଲି କ୍ରମଶଃ ଏହି ଯନ୍ତ୍ରଗୁଡ଼ିକୁ ବାହାର କରି ପାରିଲା । ମାନିଲା ବୋଲି ବୁଝି ପାରିଲା । ବୁଝି ପାରିଲା ବୋଲି ନିଜର ସଂସାରଟିକୁ ନିଜଲାଖି କରି ତିଆରି କରି ପାରିଲା । ବାହାରର ପ୍ରକୃତି ତାକୁ ଅନ୍ତରର ପ୍ରକୃତି ଆଡ଼କୁ ଆକୃଷ୍ଟ କରି ନେଇଗଲା ଏବଂ ଅନ୍ତରର ପ୍ରକୃତି ସହିତ ଅଧିକରୁ ଅଧିକ ଅନ୍ତରଙ୍ଗ ଭାବରେ ପରିଚିତ ହୋଇ ସିଏ ବାହାରଟି ସହିତ ତଥା ପରସ୍ପର ସହିତ ମଧ ଅଧିକ ସମର୍ଥ ଭାବରେ ଡ଼ୋର ଲଗାଇ ଜାଣିଲା । ଏହି ସବୁଯାକ କଥାକୁ ଭାବି ବସିଲେ ସତକୁ ସତ ଗୋଟିଏ ଉପନ୍ୟାସ ପରି ହିଁ ମନେ ହୋଇଥାଏ । ଏହି ଉପନ୍ୟାସରେ ସ୍ୱୟଂ ମଣିଷ ହେଉଛି ହିରୋ । ଅସଲ ହିରୋ ଖାଲି ଯେ ତା'ଦ୍ୱାରା ତିଆରି ଯନ୍ତ୍ର ଗୁଡ଼ାକୁ ବୋଲ ମନାଇ ଆଣିଥାଏ, ସେକଥା ଆଦୌ ନୁହେଁ । ଅସଲ ହିରୋ ନିଜେବି କଥାମାନଙ୍କୁ ମାନେ । ପ୍ରକୃତରେ ସିଏ କାହା କଥା ମାନିବ,ସେହି କଥାଟିକୁ ସେ ଖୁବ୍ ଭଲ ଭାବରେ ଜାଣିଥାଏ । ଆମେରିକାରେ ଯନ୍ତ୍ରକୁ ବୋଲ ମନାଇ ହିରୋପରି ଜୀବନକୁ ବଞ୍ଚୁଥିବା ମଣିଷ ନିଜେ କାହା କଥା ମାନୁଛି ? ଆମେରିକାକୁ ନିରେଖି ଚାହିଁଲା ମାତ୍ରକେ ତାକୁ ତୁନି କରି ଏହି ପ୍ରଶ୍ନଟି ପଚାରିବାକୁ ଖୁବ୍ ଇଚ୍ଛା ହୁଏ । ଏହି ପ୍ରଶ୍ନଟିର ଉତ୍ତର ଦେବା ଜଣେ ବ୍ୟକ୍ତି ପକ୍ଷରେ ମୋଟେ ସହଜ ହେବନାହିଁ । ଏବଂ, ଏକ ସମୂହ କିମ୍ବା ଦେଶ ପାଇଁ ତ ଆହୁରି ଅଧିକ କଷ୍ଟସାଧ ହୋଇ ପଡ଼ିବ । ବିବେକ କହୁଛି, ପାରସ୍ପରିକତାର ପଥଯାତ୍ରାରେ ପୃଥିବୀର ମନୁଷ୍ୟମାନେ ଆଗକୁ ଆଗକୁ ଅଧିକରୁ ଅଧିକ ଅନ୍ତରଙ୍ଗ ଭାବରେ ଅର୍ଥାତ୍ ଅଧିକରୁ ଅଧିକ ସମ୍ପୃକ୍ତ ଭାବରେ ଏକ ଆରେକୁ ଠିକ୍ ଏହି ପ୍ରଶ୍ନଟିକୁ ହିଁ ପଚାରିବେ । ଅନ୍ୟଠାରୁ ଉତ୍ତରଟି ପାଇ ସେମାନେ ନିଜର ଉତ୍ତରଟିର କଷଟି ଉପରେ ପରୀକ୍ଷା କରି ଦେଖିବେ, ନିଜର ଉତ୍ତରଟିକୁ ମଧ ଅନ୍ୟମାନଙ୍କର ଉତ୍ତରର କଷଟି ଉପରେ ପରୀକ୍ଷା କରି ଦେଖିବେ । ପୃଥିବୀଯାକ ମଣିଷ ପରସ୍ପରର ପ୍ରତିବେଶୀ ରୂପେ ଏକ ଆରେକର ଅଧିକ ଅଧିକ ପାଖକୁ ଆସି ପାରୁଥିବା ସଙ୍ଗେ ସଙ୍ଗେ ସେମାନେ ଅଧିକରୁ ଅଧିକ ସାଧୁତା ଓ ଆତ୍ମୀୟତାର ସହିତ ସେହି ପ୍ରଶ୍ନଟିକୁ ପଚାରି ପାରୁଥିବେ ଏବଂ ଲବ୍ଧ ଉତ୍ତରଟି ଦ୍ୱାରା ଅଧିକରୁ ଅଧିକ ଉପକୃତ ହେଉଥିବେ ।



ଭାରି ଭଲକଥା ହୋଇଛି ଯେ, ଆମେରିକାର ଇତିହାସ ବୋଲି ପ୍ରାୟ କିଛି ନାହିଁ । ଇତିହାସର ମହାସ୍ରୋତରେ ପାଞ୍ଚଶହ ବର୍ଷ ତ ଚଳୁଏ ପାଣିର ବି ସମାନ ହେବନାହିଁ । ହଁ, ତା' ପୂର୍ବରୁ ମଧ ସେହି ଭୂଖଣ୍ଡରେ ମନୁଷ୍ୟ ଥିଲେ,ମାତ୍ର ସେହି ପୂର୍ବକାଳଟା ବର୍ତ୍ତମାନ ଆମେରିକାର ପ୍ରାୟ କୌଣସି କାହାଣୀରେ ଯେ ଗଣା ହେଉନାହିଁ । ତାହାର ଅବଶ୍ୟ କିଛି କାରଣ ରହିଛି । ଆମେରିକାର ସ୍କୁଲପିଲାଏ ପୂର୍ବକାଳଟା ବିଷୟରେ ନିଜ ପାଠ୍ୟପୁସ୍ତକରେ ପୃଷ୍ଠାଏ କି ଦେଢ଼ ପୃଷ୍ଠା ପଢ଼ିବା ନିମନ୍ତେ ହୁଏତ ବାଧ ହେଉଥିବେ ସତ, ମାତ୍ର ସେଗୁଡ଼ାକ ସେମାନଙ୍କର ମୋଟେ ମନେ ରହୁନଥିବ,- କାରଣ ପରୀକ୍ଷାରେ ସେହି ଅଂଶଟି ଭିତରୁ ମୋଟେ କିଛି ପଚରା ହେଉନଥିବ । ହଁ, ଆମେରିକାରେ ଏବେ ମଧ କଲମ୍ବସ୍‌ଙ୍କ ନାମରେ ଦିନଟିଏ ପାଳନ କରାଯାଏ ଓ ସେଦିନ ସ୍କୁଲ ଓ ଅଫିସ୍‌ମାନ ବନ୍ଦ ରହେ ସତ, ମାତ୍ର ତାହାକୁ ସମ୍ଭବ ସମସ୍ତେ ଗୋଟିଏ ଛୁଟୀଦିନ ରୂପେ ଉପଭୋଗ କରୁଥିଲେ ମଧ ସେଇଟିର ତାତ୍ପର୍ଯ୍ୟ ବିଷୟରେ ସମ୍ଭବତଃ କେହି ସେପରି ଭାବନ୍ତିନାହିଁ । କଲମ୍ବସ୍‌ଙ୍କ କଥା ପଡ଼ିଲେ ପ୍ରାୟ ଏକ ସାଂସ୍କୃତିକ ଅଭ୍ୟାସର ବଶବର୍ତ୍ତୀ ହୋଇ ତାହାକୁ ସଭ୍ୟ ଗୋରାମାନଙ୍କର ଅସଭ୍ୟ ଲୋହିତମାନଙ୍କର ଏହି ଭୂମିଖଣ୍ଡଟିର ଉପକୂଳରେ ଆସି ପହଞ୍ଚିଥିବାର ଏବଂ କ୍ରମେ ଆତ୍ମସାତ୍ କରିଥିବାର ଏକ ପ୍ରଥମ କାହାଣୀରୂପେ ସମସ୍ତେ ସ୍ମରଣ କରୁଥିବେ ସିନା, ମାତ୍ର ସେହି ଘଟଣାଟି ପ୍ରାୟ ଏକ କରାଳ ଅଭିଯାନର ରୂପ ଗ୍ରହଣ କରି ଲୋହିତ ଭାରତୀୟମାନଙ୍କୁ ଯେ ପୂରା ଚାଟି ନେଇଗଲା, ସେହି କଥାଟି ବି କାହିଁକି ଗୋରାଙ୍କର ମନେ ପଡୁଥିବ ? ତେଣୁ, ସେ ଆମେରିକାକୁ ଆମେ କଦାପି ଏ ଆମେରିକାର ପୂର୍ବ ଶରୀର ବୋଲି ବିଚାର କରି ପାରିବାନାହିଁ । ସେହି ଆମେରିକାକୁ ଉଦରସ୍ଥ କରି ଯେ ଏହି ଆମେରିକା ଆପଣାକୁ କ୍ରମପ୍ରତିଷ୍ଠିତ କରି ଆସିଛି କେତେକ ଯୁକ୍ତି ସହିତ ବରଂ ଏହି କଥାଟି କୁହାଯାଇ ପାରିବ ।

ହଠାତ୍ ଆମ ଏପଟର ପାକିସ୍ତାନ କଥା ମନେ ପଡ଼ିଯାଉଛି । ପାକିସ୍ତାନ ଜନ୍ମଗ୍ରହଣ କରିବା ପରେ ସେଠାରେ ସୁଧୀମାନେ ମହା ଉତ୍ସାହରେ ନିଜ ନୂଆ ଭୂଇଁଟିର ଯେଉଁ ଇତିହାସ ଲେଖିଛନ୍ତି, ତାହାକୁ ସେମାନେ କ'ଣ ସବୁ ବିଚାର କରି ହରପ୍ପା ଓ ମହେଞ୍ଜୋଦରୋ ଠାରୁ ଆରମ୍ଭ କରିଛନ୍ତି । ପଢ଼ିବା ବେଳକୁ ଭାରି ଅସମଞ୍ଜସ ଲାଗୁଛି । ତେଣୁ, ଆମେରିକାର ଯେ ଇତିହାସ ନାହିଁ, ତଦ୍ୱାରା ଭାରି ଭଲ ହୋଇଛି । କେତେକ ଦୃଷ୍ଟିରୁ ହୁଏତ ଏପରି ମଧ କୁହାଯାଇ ପାରିବ ଯେ, ଆମେରିକା ସବାଆଗ ଭବିଷ୍ୟତଟାକୁ ନିଜର ଧମନୀ ଭିତରେ ଅନୁଭବ କରୁଛି ଓ ସେହି ଅନୁସାରେ ବର୍ତ୍ତମାନଟାକୁ ବାଗେଇ ନେବାରେ ଲାଗିଛି । ଇଏ ପ୍ରକୃତରେ ଏକ ବିଚିତ୍ର ପ୍ରକ୍ରିୟା । ପୃଥିବୀରେ ତ ଆଉ ଗୋଟାଏ ଗୋଟାଏ ଦେଶ ଏଭଳି ରହିଛନ୍ତି, ଯେଉଁଠାରେ ମଣିଷମାନେ ଓ ନେତୃତ୍ୱମାନେ

ବର୍ତ୍ତମାନଟାକୁ ମୋଟେ ଦେଖିବେନାହିଁ ବୋଲି ନିଜର ଭାବପ୍ରଚକ୍ଷୁରେ କେବଳ ଅତୀତଟାକୁ ହିଁ ଦେଖୁଛନ୍ତି । ଅତୀତଟାକୁ ହୀରା, ନୀଳା, ମୋତି ଓ ମାଣିକ୍ୟ ଦେଇ ସଜାଇବାରେ ଲାଗିଛନ୍ତି ଓ ସେଥିରୁ ପୁଲକ ଅନୁଭବ ମଧ କରୁଛନ୍ତି । ବର୍ତ୍ତମାନଟାକୁ ଅନୁଭବ କରି ପାରୁନାହାନ୍ତି ଏବଂ ତେଣୁ ଯାବତୀୟ ଭବିଷ୍ୟତକୁ ବିଧାତା ଉପରେ ଛାଡ଼ି ଦେଇଛନ୍ତି । ଇଏ ବି ଗୋଟାଏ ପ୍ରକାର । ମାତ୍ର ଆମେରିକା ହେଉଛି ଆଉଗୋଟିଏ ପ୍ରକାର । ହୁଏତ, ସେଇଟି ମଧ ଏକ ଅନ୍ୟତମ କାରଣ ହୋଇପାରେ, ଯେଉଁଥି ସକାଶେ ସାରା ପୃଥିବୀ ବିଷୟରେ ଚିତ୍ରଟିଏ ଆଙ୍କି ବସିବା ବେଳକୁ ଆମେ ଚାହିଲେ କିମ୍ବା ନଚାହିଲେ ମଧ ସବା ଆଗରେ ଆମେରିକା ହିଁ ଦିଶିଯାଉଛି । ଏବଂ ସମ୍ଭବତଃ, ସେହି କାରଣରୁ, ଆମ ବର୍ତ୍ତମାନର ଏହି ପୃଥିବୀରେ ବହୁତ ଦେଶ ବା ରାଷ୍ଟ୍ର ଆମେରିକାକୁ ହିଁ ସତେଅବା Big Brother ବୋଲି ମାନି ନେଇଛନ୍ତି ଓ ଆଉ କେତେ ସେକଥାଟି କରିପାରୁ ନାହାନ୍ତି ବୋଲି ଆମେରିକାକୁ ଈର୍ଷା କରୁଛନ୍ତି । ପୃଥିବୀରେ ଏମିତି ବି ହୁଏ ଯେ, ବାହାରେ ପ୍ରୟୋଜନରେ ପଡ଼ି ଚରାଚରବାସୀ ଯାହାର ମତକୁ ସତ ଅନୁକରଣ କରୁଥାନ୍ତି, ଏଣେ ମନ ଭିତରେ ତାହାକୁ ଈର୍ଷା ମଧ କରୁଥାନ୍ତି ।

ପ୍ରାୟ ସାଢ଼େ ତିନିକୋଟି ବର୍ଗମାଇଲ୍ ଆକ୍ରାନ୍ତର ଯୁକ୍ତରାଜ୍ୟ ଆମେରିକା ନାମକ ଏହି ଦେଶଟିରେ ୧୯୯୮ର ଜନସୁମାରି ଅନୁସାରେ ପ୍ରାୟ ସତେଇଶି କୋଟି ଲୋକ ବାସ କରୁଛନ୍ତି । ଏମାନଙ୍କ ମଧ୍ୟରୁ ଗୋରା ହେଉଛନ୍ତି ଶତକଡ଼ା ଅଶୀ ଭାଗ, କଳା ବାର ଭାଗ, ଲୋହିତ ଭାରତୀୟ ତଥା ସେହି ବର୍ଗର ଅନ୍ୟ ସମସ୍ତେ ମିଶି ଏକ ଭାଗରୁ କିଛି କମ୍, ଏସୀୟ ଓ ପ୍ରଶାନ୍ତ ମହାସାଗରୀୟ ମଣିଷ ତିନି ଭାଗ ଏବଂ ଅନ୍ୟମାନେ ହେଉଛନ୍ତି ପ୍ରାୟ ଚାରିଭାଗ । ଶହେରେ ସତାନବେ ଜଣ ମଣିଷ ସାକ୍ଷର ଏବଂ ମୁଣ୍ଡପିଛା ହାରାହାରି ବାର୍ଷିକ ଆୟ ହେଉଛି ପ୍ରାୟ ସାଢ଼େ ଅଠେଇଶି ହଜାର ଡ଼ଲାର । ଭାରତବର୍ଷରେ ଆମ ଟଙ୍କାର ମୂଲ୍ୟ ଯେତିକି କମି କମି ଯାଉଥିବ, ଡ଼ଲାର୍‌ଟା ଆମ ପାଇଁ ସେତିକି ଅଧିକ ମୋଟା ହୋଇ ଦେଖା ଯାଉଥିବ । ସେହି ଦେଶରେ ଦରିଦ୍ର ବୋଲି ଗଣା ହେଉଥିବା ଲୋକମାନେ ଏଠୁ ଅନାଇଲେ ଆମକୁ ହୁଏତ ଇନ୍ଦ୍ର ପରି ମନେ ହେଉଥିବେ । ପୃଥିବୀର ସମୁଦାୟ ସ୍ଥଳଭାଗରୁ ଶତକଡ଼ା ଛଅ ଭାଗରୁ କିଞ୍ଚିତ୍ ଅଧିକ ଅଧିକାର କରି ରହିଥିବା ଆମେରିକା ଦେଶରେ ମୋଟ୍ ଲୋକସଂଖ୍ୟାର ପୁରୁଷମାନଙ୍କର ସଂଖ୍ୟା ଅପେକ୍ଷା ସ୍ତ୍ରୀମାନଙ୍କର ସଂଖ୍ୟା ଅଳ୍ପକିଛି ଅଧିକ । ଏତେ ଏତେ ସମ୍ପଦ ଏବଂ ସମ୍ଭାବନା ଭର୍ତ୍ତି ହୋଇଥିବା ଏହି ଦେଶରେ ଶତକଡ଼ା ସାଢ଼େ ପାଞ୍ଚଜଣ ମନୁଷ୍ୟ ବେକାର ହୋଇ ବସିଛନ୍ତି । ଏମାନଙ୍କୁ ସରକାରଙ୍କ ତରଫରୁ ଦିଆ ଯାଉଥିବା ଭତ୍ତା ଉପରେ ନିର୍ଭର କରି ରହିବାକୁ ପଡୁଛି । ଶତକଡ଼ା ପ୍ରାୟ ନଅଜଣ ଗୋରା ଦରିଦ୍ର ରହିଥିବା ବେଳେ ପ୍ରାୟ ପଚିଶିଜଣ କଳା ଲୋକ ବେକାର ରହିଛନ୍ତି । ଲମ୍ବା ଚଉଡ଼ା ଏଡ଼େ ବଡ଼ ଗୋଟିଏ ଦେଶ, ଏତେ ସମ୍ପଦରେ ଭରି ରହିଛି ଏବଂ ଅଠେଇଶି କୋଟି ମଣିଷଙ୍କର ନିଜ ଘରରେ ପରିଣତ ହୋଇଛି । ଏହି ପୃଥିବୀ

ମଣିଷର ଭୋଗ ପାଇଁ ତିଆରି ହୋଇଛି ବୋଲି ପୃଥିବୀରେ ଯେଉଁ କଥାଟି ବହୁତ ଦିନରୁ ଚଳି ଆସିଛି, ସେହି କଥାଟିର ନିକିତି ଉପରେ ପକାଇ ଦେଖୁଥିବା ସମୟରେ ଏହି ଆମେରିକା ହିଁ ସମସ୍ତଙ୍କର ଆଗେ ଆଗେ ରହିଛି ବୋଲି ଅତ୍ୟନ୍ତ ସ୍ପଷ୍ଟ ଭାବରେ ଜଣା ପଡ଼ି ଯାଉଛି । ସମ୍ପଦରେ ଅଧିକ, ତେଣୁ ସୁଖରେ ମଧ୍ୟ ଅଧିକ । ଅଧିକ ଭୋଗ, ଅଧିକ ସୁଖକୁ ଯେଉଁଠି ମଣିଷମାନେ ଜୀବନର ସବାବଡ଼ କାମ୍ୟ ବୋଲି ଧରି ନେଇଛନ୍ତି, ସେଠି ମଣିଷର ଆଖି, କାନ, ରସନାଦିର ବିଳାସ ନିମନ୍ତେ ଅକ୍ଷୌହିଣୀ ପ୍ରମାଣେ ପଦାର୍ଥ ଖଞ୍ଜି ଦିଆଯାଇଛି । ନୂଆ ନୂଆ ପଦାର୍ଥ ଅର୍ଥାତ୍ ନୂଆ ନୂଆ ସୁଖର କଳ୍ପନା ହେବାରେ ଲାଗିଛି ଏବଂ ମଣିଷମାନେ ପୂର୍ଣ୍ଣ ଯୌବନର ମଦ ନେଇ ସେହିସବୁ ସୁଖ ଲାଗି ଆପଣାକୁ ମଣ କରି ରଖିଛନ୍ତି । ଚାହିଦା ଅନୁସାରେ ଯଦି ମହତ୍ତ୍ୱଦଟା ବେଶୀ ହୋଇ ରହିଛି, ତେବେ ପୁରାତନ ପୃଥିବୀର ନୈତିକତାଟା ପ୍ରଚଳିତ ଗଣିତ ବହିଟା ସହିତ ମୋଟେ ଖାପ ଖାଇ ପାରୁନାହିଁ । ପୃଥିବୀଟା ଯଦି ସେହି ବହିଟା ଅନୁସାରେ ଚଳୁଛି ଚଳୁଥାଉ, ଆମେ କାହିଁକି ସେଥିଲାଗି ଅପେକ୍ଷା କରି ରହିବା,- ପୃଥିବୀ ଯଦି ଆମରି ପରି ବଞ୍ଚିବାକୁ ଇଚ୍ଛା କରୁଛି, ତେବେ ଆମ ସହିତ ଆସୁ, ଆମ ବୋଲ ମାନୁ ଓ ଆମକୁ ସର୍ବକାଳ ନିମନ୍ତେ ପଥପ୍ରଦର୍ଶନକାରୀ ବୋଲି ସ୍ୱୀକାର କରୁ,- ତେବେ ଯାଇ ସାରା ପୃଥିବୀ ଖାଲି ସୁଖରେ ନୁହଁ, ଶାନ୍ତିରେ ମଧ୍ୟ ବାସ କରିବ ବୋଲି ଏକ ମତଲବ ଆମେରିକା ଦେଶରୁ ପ୍ରାୟ ଏକ ବାର୍ତ୍ତାର ରୂପ ଗ୍ରହଣ କରି ସାରା ପୃଥିବୀରେ ପ୍ରଚାରିତ ହେଉଥିବା ପରି ଭାରି ମନେ ହୋଇଥାଏ ।

ଆମେରିକା ସମ୍ପଦରେ ଅଧିକ,ତେଣୁ ଆଧୁନିକ ଅସ୍ତ୍ରରେ ମଧ୍ୟ ଅଧିକ ଓ ଏହି ପୃଥିବୀରେ ସବୁବେଳେ ସମସ୍ତଙ୍କର ଆଗରେ । ଯଦି ପ୍ରତିରକ୍ଷା ହିଁ ଗୋଟିଏ ଦେଶ ବା ରାଷ୍ଟ୍ରର ସର୍ବପ୍ରଧାନ ଲକ୍ଷ୍ୟ ବୋଲି କୁହାଯାଏ, ତେବେ ପୃଥିବୀର ଅନ୍ୟାନ୍ୟ ପ୍ରାୟ ସବୁ ଦେଶର ତୁଳନାରେ ଆମେରିକାର ହିଁ ସେହି ପ୍ରତିରକ୍ଷାର ପ୍ରୟୋଜନ ସବୁଠାରୁ କମ୍ ବୋଲି ଜଣେ ମଣିଷ ବଳଦିଆ ହିସାବଟାଏ ମଧ୍ୟ କରି କହିଦେଇ ପାରିବ । ପ୍ରତିରକ୍ଷାର ମହାକାଶରେ ଆମେରିକା ସତେଅବା ଏକାବେଳେକେ ଏକ ଅନ୍ୟ ସୌରମଣ୍ଡଳରେ ଯାଇ ରହିଛି । ତଥାପି ପୃଥିବୀର ସାମ୍ପ୍ରତିକ ଇତିହାସ କହୁଛି ଯେ, ଏତେ ଦୂରରେ ଥାଇ ମଧ୍ୟ ସେହି ଦେଶଟି ହିଁ ଏକ ରାଷ୍ଟ୍ରରୂପେ ପୃଥିବୀକୁ ପ୍ରତିରକ୍ଷା-ସଚେତନ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଆସିଛି । ଏବେ ମଧ୍ୟ ସିଏ ସେହି ଭୂମିକାରେ ନିଜର ସ୍ଥାନଟିକୁ ଅକ୍ଷୁର୍ଣ୍ଣ ହିଁ ରଖିଛି । ଉଦାର ଭାବରେ ଅସ୍ତ୍ରସାହାଯ୍ୟ ଦେଇଛି, ଅସ୍ତ୍ରଋଣରେ ସାହୁକାର ଭଳି ପୃଥିବୀର ଦେଶମାନଙ୍କୁ ନିଜର ଋଣଖାତାଟା ଅନୁସାରେ ନଚାଇବାରେ ଲାଗିଛି । କେତେ କେତେ ଦେଶର ସରକାରମାନଙ୍କୁ ଅନୁରୂପ ପ୍ରରୋଚନା ଦେଇ ନିଜର ସୈନ୍ୟଛାଉଣି ନେଇ ରଖିଛି, ମେଣ୍ଟ ନାମକ ଏକ ପ୍ରଭାବଶାଳୀ ଚତୁର ବୁଦ୍ଧିରେ ପୃଥିବୀଟାକୁ ଅତ୍ୟନ୍ତ ଦୟନୀୟ ଭାବରେ ଅନୁବନ୍ଧ କରି ରଖିଛି । ଶୀତଳ ଯୁଦ୍ଧ ଲାଗିଥିବା ସମୟରେ ଏଗୁଡ଼ାକ ଯେତେ ହେଉଥିଲା, ଏବେ ଶୀତଳଯୁଦ୍ଧ ନଥିବା ସମୟରେ ସେଥିରେ ଯେ କୌଣସି ହ୍ରାସ ଘଟିଛି,

ସେକଥା ଆଦୌ ନୁହେଁ । ଶୀତଳ ଯୁଦ୍ଧ ଥାଉ କି ନଥାଉ, ଅସ୍ତ୍ରଶସ୍ତ୍ରର ଉତ୍ପାଦନକୁ କଦାପି କମାଇଦେଇ ହେବନାହିଁ । କମାଇ ଦେଲେ ପୂରା ଘରଟା ଭାରସାମ୍ୟ ହରାଇ ବସିବ ଏବଂ ଏପରିକି ଦେଶର ରାଜନୀତିଟା ମଧ୍ୟ କାବୁ ବାହାରକୁ ଚାଲିଯିବ । ତେଣୁ, ଯେକୌଣସି ପ୍ରକାରେ ବିଭିନ୍ନ ଦେଶର ଶାସନକର୍ତ୍ତା ମାନଙ୍କୁ ଅଧିକରୁ ଅଧିକ ପ୍ରତିରକ୍ଷା-ସଚେତନ କରି ରଖିବାକୁ ପଡ଼ିବ । ସଂପ୍ରତି ଆମ ପୃଥିବୀରେ ରାଷ୍ଟ୍ରମାନଙ୍କର ଅସ୍ତ୍ରପ୍ରୀତି ଯେ ବଢ଼ିବାରେ ଲାଗିଛି ଏବଂ ପୃଥିବୀର ସର୍ବାଧିକ ଅର୍ଥ ଯେ ସାମରିକ ମାହାଲଗୁଡ଼ିକୁ ପଦାଇ ରଖିବାରେ ଖର୍ଚ୍ଚ କରାଯାଉଛି, ଆମେରିକା ଭଳି ଧନୀ ଦେଶଟିଏ ପୃଥିବୀରେ ଯେ ରହିଛି, ତାହାକୁ ମଧ୍ୟ ଏକ ଅନ୍ୟତମ କାରଣ ବୋଲି ବେଶ୍ କୁହାଯାଇ ପାରିବ ।

ପୃଥିବୀରେ ଯିଏ ଯେତିକି ଗୋଦଡ଼ା, ତା' ଘରେ କୋଡ଼ା ଯେତିକି, ମଡ଼ା ବି ସେତିକି । ସମଗ୍ର ପୃଥିବୀରେ ପରିବେଶର ସୁରକ୍ଷା ନିମନ୍ତେ ଯେତିକି ହରକତ ଏବେ ଲାଗିବାକୁ ଆରମ୍ଭ କଲାଣି, ପରିବେଶର ପ୍ରଦୂଷଣ ପାଇଁ ମଧ୍ୟ ପ୍ରାୟ ସେତିକି ଅବସର ଯୋଗାଇ ଦିଆଯାଉଛି । ପାଶ୍ଚାତ୍ୟ ଜଗତ ହିଁ ସମଗ୍ର ପୃଥିବୀକୁ ପ୍ରଦୂଷଣକୁ ରୋକିବା ବିଷୟରେ ପ୍ରାୟ ଆନୁଷ୍ଠାନିକ ଭାବରେ ଅଧିକ ସଚେତନ କରିବାରେ ଲାଗିଛି ଏବଂ ସେହି ପ୍ରଦୂଷଣରେ ଯାବତୀୟ ଅର୍ଥରେ ତାହାରି ହିଁ ସବୁଠାରୁ ଅଧିକ ଭାଗ ରହିଛି । ଏବଂ,ଆମେରିକା ଆମ ସମସ୍ତଙ୍କ ନିମନ୍ତେ ପାଶ୍ଚାତ୍ୟ ଜଗତର ଯାବତୀୟ ଶୋଭାଯାତ୍ରାରେ ସବାଆଗରେ ରହିଛି । ଭୋଗମତ୍ତ ନାନାବିଧ ଜୀବନକୁ ପୂର୍ଣ୍ଣାସକ୍ତ ହୋଇ ବହୁ ବହୁ ଯଦି ତୁମର ଖୋସଣିଟା ଫିଟିଗଲେ ଯାଇ ତୁମେ ସେବିଷୟରେ ପୃଥିବୀଟାକୁ ସଚେତନ କରିବାକୁ ବାହାରି ପଡ଼ିବ ଅଥଚ ପୁଣି ଖୋସଣିଟାକୁ ମାରିଦେଇ ପୂର୍ବବତ୍ ଭୋଗ କରିବାରେ ଲାଗିଥିବ,ତେବେ ତୁମକୁ ଦେଖି ଭଗବାନଙ୍କ ସହିତ ମଣିଷମାନେ ହିଁ ତାଳି ମାରି ହସିବାକୁ ମନ କରିବେ । ପୃଥିବୀର ପ୍ରଦୂଷଣ ଭୋଗୀମାନଙ୍କ ସକାଶେ ହିଁ ହୋଇଛି । ବିଶେଷ କରି, ପୃଥିବୀର ଅଧେ ମଣିଷ ଅତ୍ୟାବଶ୍ୟକତା ଗୁଡ଼ିକର ସର୍ବସମ୍ମତ ଗାରଗୁଡ଼ିକୁ ସ୍ପର୍ଶ ନକରିଥିବା ସମୟରେ ଯେଉଁମାନେ ବା ଯେଉଁ ସମୂହମାନେ ସତେଅବା ପୃଥିବୀ ବାହାରୁ ଆଉକେଉଁଠାରୁ ଆସି ପହଞ୍ଚିଥିବା ବିଟଙ୍କ ପରି ଆଖି ବୁଜି ଖାଲି ଭୋଗ କରିବାରେ, ମୋଟା ହେବାରେ ଏବଂ ଗଉଁ ଦେଖାଇବାରେ ଲାଗିଛନ୍ତି, ଆମ ପୃଥିବୀକୁ ଦୂଷିତ କରିବାରେ ସେହିମାନଙ୍କର ସବୁଠାରୁ ଅଧିକ ଭାଗ ରହିଛି । ଏଭଳି ମନୁଷ୍ୟମାନେ ପୃଥିବୀର ସବୁଦେଶରେ ରହିଛନ୍ତି ଏବଂ ଆମେରିକାରେ ସର୍ବାଧିକ ଅନୁପାତରେ ରହିଛନ୍ତି । ନିଜେ ସ୍ଥୂଳ ଏବଂ ପୃଥୁଳ ହୋଇ ରହିବାକୁ ମନ କରି ସେମାନେ ପୃଥିବୀର ମହିମାଗୁଡ଼ିକୁ ଦିନୁଁ ଦିନ କୃଶ ଓ କ୍ଷୀଣ କରିବାରେ ଲାଗିଛନ୍ତି ।

ଆମେ ଏଠାରେ ହୁଏତ ଗୋଟିଏ ଦୃଷ୍ଟାନ୍ତ ଦେଇପାରିବା । ପୃଥିବୀ ଦିନକୁ ଦିନ ଉତପ୍ତ ହେବାରେ ଲାଗିଛି । ମହାନ୍ ବୈଜ୍ଞାନିକମାନେ ତାହାର ଏକାଧିକ କାରଣ ଦର୍ଶାଇ

ଆମକୁ ବିଚଳିତ କରିଦେବାରେ ଲାଗିଛନ୍ତି । ସେମାନେ କହୁଛନ୍ତି ଯେ, ଏହି ଉତ୍ତପ୍ତ ହେବାର ପ୍ରକ୍ରିୟାଟି ଏହିପରି ଭାବରେ ଲାଗି ରହିଲେ ତାହା ଫଳରେ ମନୁଷ୍ୟ ଶତାବ୍ଦୀ ଶତାବ୍ଦୀ ଧରି ନିଜର ବୁଦ୍ଧି ଓ ହୃଦୟ ଦେଇ ଗଢ଼ି ଆଣିଥିବା ସୁନ୍ଦର ସଂସାରଟି ତିଷ୍ଠି ରହିବା ଆଉ ମୋଟେ ସମ୍ଭବ ହେବନାହିଁ । ଏପରି ଯେ ହେଲା, ତାହା କୌଣସି ଭଗବାନଙ୍କର କୋପ ସକାଶେ ଆଦୌ ହେଲାନାହିଁ । ଅତିଭୋଗୀ ମଣିଷମାନଙ୍କର କୋପନ ସକାଶେ ହିଁ ହେଲା । ଏବଂ, ଆମେରିକାର ବୈଜ୍ଞାନିକମାନେ ହିସାବ କରି କହିଦେଲେଣି ଯେ, ଆମେରିକାର ମାତ୍ର ଗୋଟିଏ ସହର ଲସ୍ ଏଞ୍ଜେଲସ୍କୁ ହିଁ ଏହି ପୃଥ୍ୱୀ-ଉତ୍ତାପବୃଦ୍ଧିର ଶତକଡ଼ା ଏକଭାଗ ପାଇଁ ଦାୟୀ କରାଯାଇ ପାରିବ । ଆମେରିକା ଦେଶର ବଡ଼ ବଡ଼ ସହରମାନ ଏମୁଣ୍ଡରୁ ସେମୁଣ୍ଡ ଯାଏ ଲମ୍ବିଛି । ସମସ୍ତେ ସହରବାସୀ ହେବାଲାଗି ଦିନରାତି ଭଗବାନଙ୍କୁ ହୁଏତ ପ୍ରାର୍ଥନା ମଧ୍ୟ କରୁଥିବେ । ଶହେରେ ମୋଟେ ଦୁଇ କିମ୍ବା ତିନିଭାଗ ମଣିଷ କୃଷିକାର୍ଯ୍ୟ କରି ଜୀବିକା ଅର୍ଜନ କରୁଛନ୍ତି । କୃଷିକାର୍ଯ୍ୟଟା ମଧ୍ୟ ଅଧିକରୁ ଅଧିକ ପରିମାଣରେ ଏକ ଯନ୍ତ୍ରୋଦ୍ୟୋଗରେ ପରିଣତ ହେଲାଣି । ତେଣୁ, ବିଶେଷ ରୁଚି ଅଥବା ସଉକ ରହିଥିବା ମୁଷ୍ଟିମେୟ ଲୋକମାନେ ହୁଏତ ଗ୍ରାମାଞ୍ଚଳରେ ବାସ କରୁଛନ୍ତି । ଚାରିଆଡ଼େ ଦୁଆର ଝରକା କଷା ହୋଇ ଭିତରର ପରିବେଶଟିକୁ ବି ଶୀତତାପନିୟନ୍ତ୍ରିତ କରି ରଖାଯାଇଛି । ତେଣୁ, ଭିତରେ ବସିଥିବା ପର୍ଯ୍ୟନ୍ତ ବାହାରେ କ'ଣ କେମିତି ଅଛି, ସେକଥା ବିଷୟରେ ଆଦୌ କିଛି ଜାଣିବାର ହିଁ ନାହିଁ । ଭଗବାନଙ୍କର ସୃଷ୍ଟି ଓ ମନୁଷ୍ୟର ସୃଷ୍ଟି ସତେଅବା ସମାନ୍ତର ଭାବରେ ଚାଲୁଛି । ଦୂରଛଡ଼ା ହୋଇ ଚାଲୁଛି । ତେଣୁ, ପୃଥ୍ୱୀ ଉତ୍ତପ୍ତ ହେଉଥିବାର ପ୍ରମାଦଟା ଆଦୌ ଜଣା ପଡୁନାହିଁ । ହଁ, ଭଗବାନ ଥାଆନ୍ତୁ, ପ୍ରକୃତି ଥାଉ, ପବନ ଓ ଆଲୁଅ ସମସ୍ତେ ଥାଆନ୍ତୁ,- ସେଠାକୁ ଆମେ ବେଳେ ବେଳେ ପିକ୍‌ନିକ୍ କରିବାକୁ ଯିବା, ଦଣ୍ଡେ ଆନନ୍ଦ କରି ପୁନର୍ବାର ନିଜର ନିକେତନଟି ମଧ୍ୟକୁ ଫେରିଆସିବା, ନିବୁଜ ହୋଇ ରହିବା । ଆମେରିକାରେ ସବୁ ମଣିଷ ସଂସ୍କାରରୁ ଶିକ୍ଷା କରି ସତେଅବା ଏହି ନିବୁଜ ହୋଇ ରହିବାକୁ କାହିଁକି ବେଶୀ ମନ କରୁଛନ୍ତି କେଜାଣି ? ପୃଥିବୀ, ପ୍ରକୃତି ମୁକୁଳା ହୋଇ ପଡ଼ିଥିଲେ ମଧ୍ୟ ମଣିଷର ମନଟା କାହିଁକି ତେଣେ ଯିବାକୁ ମୋଟେ ଇଚ୍ଛା କରୁନାହିଁ । ସମ୍ଭବତଃ ସେଇଠୁ ଶିଖି ସେମାନେ ପରସ୍ପର ପାଖରେ ମଧ୍ୟ ଆଉ ସେତେ ବେଶୀ ମୁକୁଳା ହୋଇ ପାରୁନାହାନ୍ତି । ସତେଅବା ସମସ୍ତେ ଦିବ୍ୟ ସଜବାଜ ହୋଇ ନିଜ ନିଜର ଅଲଗା ଗଛଟିମାନଙ୍କ ଉପରେ ବସି ରହିଛନ୍ତି, ନିଜର ଭବ୍ୟତାରେ ନିଜେ ମୁଗ୍‌ଧ ହୋଇ ରହିଛନ୍ତି ଏବଂ ପରସ୍ପରକୁ ଦେଖି ପାରୁନାହାନ୍ତି । ମଣିଷ ନିଜକୁ ଲୋଡ଼ିଲେ ଯେ ଅନ୍ୟ ମଣିଷଙ୍କଠାରୁ ଖିଅ ଛିଣ୍ଡାଇ ରହିବାକୁ ବାଧ୍ୟ ହୁଏ, ସେହି ଭ୍ରମକଥାଟା ଏମାନେ କାହିଁକି କେଉଁଠାରୁ ଶିକ୍ଷା କଲେ କେଜାଣି ? ଅସଲ ଡ଼ୋରଟି ଯଦି ଅନ୍ତର ଭିତରେ ଲାଗିଛି, ତେବେ ନିଜ ଅଳିନ୍ଦଟିକୁ ଫେରିଯାଇ ମୋତେ ତ ସେଠାରେ ଏକ ଆରେକୁ ଅବଶ୍ୟ ଚିହ୍ନି ନେଇଥାନ୍ତେ । ମାତ୍ର, କେଉଁଠାରେ କ'ଣ ଭୁଲ ରହିଗଲା କି ?

ବାହାରର ଅତିପ୍ରାଚୁର୍ଯ୍ୟମାନ କ୍ରମେ ଭିତରକୁ ବାଧିଲାଣି ପରା ଏବଂ ଭିତରର ନିଃସଙ୍ଗବୋଧ କ୍ରମେ ବାହାର ପ୍ରତି ଏକ ବିରକ୍ତିକୁ ମଧ ଜନ୍ମ ଦେବାରେ ଲାଗିଛି କି ? ବାହାରେ ଅଧିକରୁ ଅଧିକ ଯୋଗାଡ଼ କରି ପାରିବା ସକାଶେ ପ୍ରାୟ ଅଣନିଃଶ୍ୱାସୀ ହୋଇ ସଂଗ୍ରାମ ଚାଲିଛି ; ଯେଉଁ ପାହାଡ଼ଟା ଉପରେ ଜୀବନରେ ଆହୁରି ଦଶଗୁଣ ଅଧିକ ସମର୍ଥତା ଓ ସମ୍ପଦ ଆଣି ଦେବାର ସାଧନ ଏବଂ ସମ୍ଭାବନାମାନ ଜମା ହୋଇ ରହିଥିବା ପରି ଦେଖାଯାଉଛି, ସମସ୍ତେ କେଡ଼େ ଅଧୀର ଭାବରେ ସେହି ପାହାଡ଼ଟିର ଉପରେ ଯାଇ ପହଞ୍ଚିବାର ସାଧନା କରିବାରେ ଲାଗିଛନ୍ତି । ଚାରିପାଖକୁ ଚାହିଁ ଦେଖିବା ନିମନ୍ତେ ଫୁରସତ୍ ହିଁ ମିଳୁନାହିଁ । ବର୍ତ୍ତମାନ ଜଣେ ସମ୍ପନ୍ନ ଆମେରିକାବାସୀ ବିଂଶ ଶତାବ୍ଦୀର ଆରମ୍ଭ ସମୟରେ ସେହି ଆମେରିକାରେ ଜୀବନଟିଏ ଗଢ଼ିଥିବା ଓ ଜୀବନଟିଏ ବଞ୍ଚିଥିବା ତା'ର ଅଣଅଜା କି ପଣଅଜା ତୁଳନାରେ ହୁଏତ ସାଢ଼େ ଚାରିଗୁଣ ଅଧିକ ଧନାଢ୍ୟତା ଭିତରେ ରହିଛି, ମାତ୍ର ସିଏ ପ୍ରକୃତରେ ସାଢ଼େ ଚାରିଗୁଣ ଅଧିକ ସୁଖରେ ମଧ ରହିଛି କି ? ଚିକାଗୋ ବିଶ୍ୱବିଦ୍ୟାଳୟର ଜାତୀୟ ଜନମତ ଅନୁସନ୍ଧାନ କରୁଥିବା ଗୋଟିଏ କେନ୍ଦ୍ର ନିୟମିତ ଭାବରେ ଏକାଧିକ ଅଧ୍ୟୟନ ଦ୍ୱାରା ଜାଣିବାକୁ ପାଇଛି ଯେ ଆମେରିକାରେ କେହି ଆଉ ଖୁବ୍ ସୁଖୀ ଅଛନ୍ତି ବୋଲି ଅନୁଭବ କରୁନାହାନ୍ତି । ଏହି ଶତାବ୍ଦୀ ଅଧା ଅର୍ଥାତ୍ ପଞ୍ଚମ ଦଶକରେ ଦେଶରେ ଯେତେ ଧନ ଥିଲା ଏବଂ ଲୋକମାନେ ବ୍ୟକ୍ତିଗତ ଭୋଗାଦିରେ ଯେତେ ପଇସା ଖର୍ଚ୍ଚ କରୁଥିଲେ, ଆମେରିକାରେ ବର୍ତ୍ତମାନ ତାହାର ଡ଼ବଲ ଧନ ମହଜୁଦ ରହିଛି ଏବଂ ଲୋକମାନେ ମଧ ଦ୍ରବ୍ୟାଦି ଭୋଗରେ ତାହାର ଡ଼ବଲ ଖରଚ କରୁଛନ୍ତି, ମାତ୍ର ସେହି ତୁଳନାରେ ନିଜକୁ ଖୁବ୍ ସୁଖୀ ବୋଲି ଅନୁଭବ କରୁଥିବା ମନୁଷ୍ୟମାନଙ୍କର ସଂଖ୍ୟା ପ୍ରାୟ ଏକ ତୃତୀୟାଂଶ କମ୍ ହୋଇଯାଇଛି । ସମସ୍ତେ କହୁଛନ୍ତି, ପ୍ରତିବେଶ ସହିତ ଆଉ ସେତେ ପରିଚୟ ରହି ପାରୁନାହିଁ,- କୋଉଠି କେତେ କେତେ ଡ଼ୋର କ୍ରମେ ଛିଣ୍ଡି ଯାଉଥିବା ପରି ଲାଗୁଛି । ଆଗେ ଅଭାବ ରହିଥିଲା, ନିଅଣ୍ଟ ରହିଥିଲା ଏବଂ ଲୋକେ ପରସ୍ପରକୁ ଲୋଡୁଥିଲେ, ଉପକୃତ ହେଉଥିଲେ ଏବଂ ତଦ୍ୱାରା ନିଜ ଭିତରେ କୋଉଠି କେତେ ଗୋଡ଼ ଖୁବ୍ ଗଭୀରକୁ ପୋତା ହୋଇ ରହିଥିବା ପରି ଅନୁଭବ କରୁଥିଲେ । ଏବେ ତ ସମସ୍ତଙ୍କର ସବୁ ଅଛି, ସମ୍ଭବତଃ ସେହି କାରଣରୁ କାହାରି କେହି ନୁହନ୍ତି ବୋଲି ଏକ ଅନିଷ୍ଟକାରୀ ଅନୁଭବ ମଣିଷମାନଙ୍କୁ ଗ୍ରାସ କରି ପକାଉଛି । ଏକ ଭାଗ୍ୟଶାଳୀ ଏବଂ ଧନଶାଳୀ ଦେଶ ପକ୍ଷରେ ହୁଏତ ତାହାହିଁ କ୍ରମେ ଏକ ବୃହତ୍ ଦାରିଦ୍ର୍ୟର କାରଣ ହେବାରେ ଲାଗିଛି ।

ଅଧିକରୁ ଅଧିକ ଏକୁଟିଆ ଓ ଅଧିକରୁ ଅଧିକ ଦୁଃଖୀ ହେବାର ଅଭିପ୍ରାୟ ରଖି ଯେ ମଣିଷ ଅଧିକରୁ ଅଧିକ ପ୍ରୟାସ କରି ଅଧିକରୁ ଅଧିକ ରୋଜଗାର କରୁଛି, ସେକଥା କଦାପି ନୁହେଁ । ତଥାପି କ'ଣପାଇଁ ଅବସାଦ ଆସି ତା'ର ସୁଖ, ଶାନ୍ତି, ଖୁସୀ ଏବଂ ପରିପୂର୍ଣ୍ଣତା ଲାଭ କରିବାର ମୂଳଦୁଆଟିକୁ ଦୋହଲାଇ ଦେବାରେ ଲାଗିଛି ? ଆମେରିକାକୁ ଆସିଲେ ଯାଇ ଏହି ପ୍ରଶ୍ନଟି ବାରବାର ପଚାରିବାକୁ ଇଚ୍ଛା ହୁଏ । କେବଳ ଆମେରିକାକୁ

ନୁହେଁ, ସମଗ୍ର ପୃଥିବୀକୁ ମଧ ପଚାରିବାକୁ ଇଚ୍ଛା ହୁଏ । ଯେଉଁସବୁ ଦେଶ ଓ ସମାଜରେ ମଣିଷମାନେ ଏତେ ଖଟୁଥିଲେ ମଧ ତଥାପି ଜୀବନର ସର୍ବନିମ୍ନ ସୁଖ ତଥା ଆରାମର ଅଧିକାରୀ ହୋଇ ପାରୁନାହାନ୍ତି, ସେଠି ମଣିଷମାନେ ଯେ ଅଧିକ ଦ୍ରବ୍ୟ ପାଇଁ କେଁ କଟର ହେବାରେ ଲାଗିଥାଆନ୍ତି ଓ ଏ ଦ୍ରବ୍ୟଟା କିମ୍ବା ସେ ଦ୍ରବ୍ୟଟା ପାଇବେ ବୋଲି ଭଗବାନଙ୍କ ପାଖରେ ମଧ ଗୁହାରି କରୁଥାନ୍ତି, ସେଠାରେ ଆମେରିକାର ଏହି ପ୍ରଶ୍ନଟିକୁ ହୁଏତ ହୃଦୟଙ୍ଗମ କରି ହେବନାହିଁ । ତଥାପି, ଜଳଜଳ ହୋଇ ଦେଖାଯାଉଛି ଯେ, ଆମେରିକାର ମନୁଷ୍ୟମାନେ ଆଜି ଯେଉଁ ମୂଳଗ୍ର ପ୍ରଶ୍ନଟିର ସମ୍ମୁଖୀନ ହେଉଛନ୍ତି, କାଲି ବିଶ୍ବବାସୀ ସମସ୍ତେ ସେହି ପ୍ରଶ୍ନଟିର ସମ୍ମୁଖୀନ ଅବଶ୍ୟ ହେବେ । ତେଣୁ, ଆଜି ଆମେରିକା ମଧ ଯେପରି ଭାବରେ ପ୍ରଶ୍ନର ସମାଧାନ କରିବ, କାଲି ସମଗ୍ର ବିଶ୍ବକୁ ମଧ ଏହି ପ୍ରଶ୍ନଟିର ସମାଧାନ କରିବାରେ ତାହା ପ୍ରଭୂତ ଭାବରେ ସହାୟତା ଅବଶ୍ୟ କରିବ । ପୁନଶ୍ଚ, ଯେଉଁ ପୃଥିବୀଟି ଆସୁଛି, ସେଥିରେ ଯେ ଗୋଟିଏ ଗୋଟିଏ ଦେଶ ଅଲଗା ଅଲଗା ଖାତା ପକାଇ ନିଜ ନିଜ ପ୍ରଶ୍ନଗୁଡ଼ିକର ସମାଧାନ କରିବାରେ ଆଦୌ କୌଣସି ସଫଳତା ଲାଭ କରି ପାରିବେନାହିଁ, ପୃଥିବୀର ଯେଉଁ ଦେଶରେ ରହିଥିଲେ ମଧ ଜଣେ ଆଖି ଥିବା ମଣିଷ ସେକଥା ଠୋ' କରି କହିଦେଇ ପାରିବ । ତେଣୁ, ଆମେରିକାକୁ ଅନେକ ଧନ୍ୟବାଦ ଯେ ସିଏ ସର୍ବପ୍ରଥମ ହୋଇ ଆମ ସମସ୍ତଙ୍କ ଲାଗି ପ୍ରଶ୍ନଟିର ସମ୍ମୁଖୀନ ହେଉଛି, ସମାଧାନଟିଏ ଖୋଜୁଛି ଏବଂ ସମାଧାନମାନ ପାଉଛି । ସମଗ୍ର ପୃଥିବୀ ନିମନ୍ତେ ଆମେରିକା ଏକ ଅଗ୍ରଗାମୀର କାର୍ଯ୍ୟ କରୁଛି ।

ସମ୍ପଦସୃଜନ ଏବଂ ସମ୍ପଦସଂଗ୍ରହର କ୍ଷେତ୍ରରେ ଆମେରିକା ପୃଥିବୀର ପ୍ରାୟ ସବୁ ଦେଶର ପୁରୋଗାମୀ ହୋଇ ରହିଛି । ଆମେରିକାର ବିରୋଧ କରୁଥିବା ରାଷ୍ଟ୍ରମାନେ ମଧ ଯେତେ ବାଆଁରେଇ ହେଉଥିଲେ ସୁଦ୍ଧା ଆମେରିକା ପରି ହେବାକୁ ଇଚ୍ଛା କରୁଛନ୍ତି । ଏହା ମଧ ଏକାଧିକ ଦୃଷ୍ଟିରୁ ଗୋଟିଏ ଶୁଭ ଲକ୍ଷଣ । ପୂର୍ବର କୌଣସି ଶତାବ୍ଦୀ ପରି ଆମେରିକା ଏକୁଟିଆ ଅଲଗା ହୋଇ ରହିବାକୁ ଯେତେ ମନ କଲେ ମଧ ଆଉ କଦାପି ତାହା ସମ୍ଭବ ହେବନାହିଁ । ନିଜର ଅଲଗା ଭାଡ଼ି କରି ଫଳାଉଥିବା କାକୁଡ଼ିଗୁଡ଼ିକୁ ଏକା ଖାଇବ ବୋଲି ଯେତେ ପାଞ୍ଚିଲେ ମଧ ଏବର ପୃଥିବୀରେ ତାହା କଦାପି ସମ୍ଭବ ହେବନାହିଁ । ତେଣୁ, ଆମେରିକା ମଧ ଅଳବତ ସାଙ୍ଗରେ ରହିବ । ସେହି ଆମେରିକାରେ ତ କିଏ କିଏ କହି ସାରିଲେଣି ଯେ, ପୃଥିବୀର ଭବିଷ୍ୟତଟି ଛାରଖାର ହୋଇ ନଯାଉ ବୋଲି ଆମେ ଯଦି ପ୍ରକୃତରେ ଇଚ୍ଛା କରୁଥିବା, ତେବେ ପୃଥିବୀରେ ଯେଉଁ ଏକ ପଞ୍ଚମାଂଶ ମଣିଷଙ୍କ ପାଖରେ ବର୍ତ୍ତମାନ ସବୁଠାରୁ ଅଧିକ ଧନ ରହିଛି, ସେମାନେ ଆହୁରି, ଆହୁରି ଓ ଆହୁରି ପଛରେ ବାଇ ନହୋଇ ପାରିଲେ ଯାଇ ତାହା ସମ୍ଭବ ହେବ । ଅବଶ୍ୟ ଏହାଦ୍ୱାରା ସେମାନଙ୍କୁ ବାବାଜୀ ହୋଇ ସଂସାରକୁ ଛାଡ଼ିଦେବା ଲାଗି କେହି ପରାମର୍ଶ ଦେଉନାହିଁ । ସେମାନେ ନିଜର ଯାବତୀୟ ଆବଶ୍ୟକତାକୁ ଅବଶ୍ୟ ପୂରଣ କରିବେ ଏବଂ ତା'ପରେ, ଏକ ନିର୍ଦ୍ଦିଷ୍ଟ

ଗାର ପାଖରେ ପହଞ୍ଚି ଆଉ ସେହି ଦ୍ରବ୍ୟଗୁଡ଼ିକର ଅଭିବୃଦ୍ଧିକୁ ଆଦୌ ଜୀବନର ଲକ୍ଷ୍ୟରୂପେ ଗ୍ରହଣ କରିବେନାହିଁ । ସେମାନେ ନିଜ ଆସକ୍ତି ଗୁଡ଼ିକରେ ଏକ ସ୍ତର ପରିବର୍ତ୍ତନ କରିବେ, ଅନ୍ୟ ମୂଲ୍ୟଗୁଡ଼ିକୁ ଲୋଡିବେ । ସେମାନେ ଖାଲି ଜମା କରିବେନାହିଁ, କିଛି ହେବେ । କିଛି ସତକୁ ସତ ବା ଆମେ ତାହାକୁ ଅଧ୍ୟାତ୍ମସ୍ତରରେ ଏକ ଅନୁରାଗ ବୋଲି କହିପାରିବା କି ? ଏବଂ, ଅସଲ ସତ୍ୟଟି ହେଉଛି ଯେ, ଜଣେ ମଣିଷ ଅଧ୍ୟାତ୍ମର ଗାର ଭିତରକୁ ଆସିବା ମାତ୍ରକେ ତାକୁ ଅନ୍ୟ ମଣିଷମାନେ ସବାଆଗ ଦିଶିବେ । ସେମାନେ ସମସ୍ତେ ତା'ସହିତ ଅଙ୍ଗାଙ୍ଗୀ ଭାବରେ ବନ୍ଧା ହୋଇଥିବାର ପ୍ରତ୍ୟକ୍ଷ ହେବ । ତା'ପରେ ଆଉ ସିଏ ସେମାନଙ୍କୁ ଛାଡ଼ି ନିଜ ସୁଖ, ନିଜ ମୁକ୍ତି ଓ ନିଜ ସ୍ୱର୍ଗଲାଭର ମଧ ଚିନ୍ତା କରି ପାରିବେନାହିଁ । ସିଏ ନିଜକୁ ଏକ ନୂଆ ଗୋଷ୍ଠୀ ଭିତରେ ଆବିଷ୍କାର କରିବ, ଆପେ ଆପେ ଏକ ନୂତନ ବନ୍ଧନରେ ବାନ୍ଧିହେବା ଦ୍ୱାରା ହିଁ ସିଏ ମୁକ୍ତିଲାଭ କରିବ । ଏହି ନୂତନ ଅଧ୍ୟାତ୍ମର ବାଣୀଟି କେବଳ ଆମେରିକାକୁ ନୁହେଁ, ପୃଥିବୀରେ ଥିବା ସମସ୍ତଙ୍କୁ ଉଦ୍‌ବୋଧନ ଦେବା ଲାଗି ଦୁଆର ପାଖରେ ଆସି ପହଞ୍ଚିଲାଣି । ଗୋଟିଏ ନୂଆ ରଜ୍ଜୁ ମଣିଷମାନଙ୍କୁ ବାନ୍ଧିବାକୁ ଆରମ୍ଭ କରୁଛି । ସେହି ଅନୁସାରେ ପୃଥିବୀରେ ରାଜନୀତି ବଦଳୁଛି । ରାଷ୍ଟ୍ରମାନେ ବାଟ ଛାଡ଼ି ଦେବେନାହିଁ ବୋଲି କହୁଛନ୍ତି, ତଥାପି ବାଟ ଫିଟିଯାଉଛି । ଆମେରିକାରେ ମଧ ଫିଟିଯାଉଛି । ସତେଅବା ଏକ ନୂତନ ପରିପୂର୍ଣ୍ଣତାର ଯୁଗ ଆସି ପହଞ୍ଚି ଯାଉଛି । ଏକଥା ଆଗରୁ କେବେହେଲେ ଘଟି ନଥିଲା । ବହିରେ ଲେଖା ହୋଇଥିଲା ସିନା । ମାତ୍ର ଘଟିନଥିଲା । ଏବେ ଘଟିବ ।

ଦେଶର ସବୁ ପିଲା ପାଠ ପଢ଼ିବେ, ଆମେରିକାରେ ଏହି କଥାଟି କୋଉ କାଳରୁ ଆଇନ୍ ହୋଇ ସାରିଛି । କେବଳ ସମ୍ବିଧାନ ନାମକ ଏକ ବହିରେ ଲେଖାହୋଇ ରହିନାହିଁ, ସତକୁ ସତ ସବୁ ପିଲା ସ୍କୁଲକୁ ଯାଉଛନ୍ତି । ସେଠି ପାଠ କିପରି ଭାବରେ ପଢ଼ାଯିବ, ପାଠ ସହିତ ଶାଠକୁ ମଧ କିପରି ସଂଯୋଜିତ ଏବଂ ସମ୍ପୃକ୍ତ କରି ରଖାଯିବ, ସେବିଷୟରେ ହୃଦୟ ଏବଂ ମସ୍ତିଷ୍କ ଉଭୟଙ୍କୁ ଲଗାଇ ନାନା ଚିନ୍ତା କରାଯାଇ ଆସିଛି, ବର୍ତ୍ତମାନ ମଧ କରାଯାଉଛି । ତତ୍ପରତା ଲାଗି ରହିଛି । ସବୁକିଛି ଠିକ୍ ଠିକ୍ ଚାଲିଛି ବୋଲି କହି କେହି ଜିଜ୍ଞାସାଗୁଡ଼ିକୁ ଶୀତଳ କରି ଦେବାପାଇଁ ମୋଟେ ଉଦ୍ୟମ କରୁନାହିଁ । ସରକାର ସହଯୋଗ କରୁଛି । ପ୍ରୟୋଗର ବହୁତ ସୁଯୋଗ ରହିଛି । ସରକାରୀ ଧାରାଗୁଡ଼ିକର ବାହାରେ ମଧ ଅସୁମାରି ଏପରି ପ୍ରୟୋଗସବୁ ଚାଲିଛି, ଯାହାକି କେବଳ ଆମେରିକାରେ ନୁହେଁ, ସମଗ୍ର ପୃଥିବୀରେ ମଧ ଅନୁସନ୍ଧିତ୍ସୁମାନଙ୍କୁ ପ୍ରେରଣା ଦେଉଛି ଓ ନୂଆ ମାର୍ଗ ଦେଖାଉଛି । ଶିକ୍ଷାରେ ଆମେ ସର୍ବୋତ୍କୃଷ୍ଟ ହେଲୁଣି ଓ ଆଉ ଅଧିକ କିଛି କରିବାର ନାହିଁ, ଏକଥା ତ ବୁଢ଼ାମାନେ କହନ୍ତି, ବୁଢ଼ା ସ୍ୱାର୍ଥମାନେ କହନ୍ତି । ନିଜକୁ, ସମଗ୍ର ବ୍ୟବସ୍ଥାଟିକୁ ଓ ବାସ୍ତବ କ୍ଷେତ୍ରରେ ତଥାକଥିତ ସଫଳତା ଏବଂ ବିଫଳତାଗୁଡ଼ିକୁ ଅନୁକ୍ଷଣ ପରଖି ଦେଖିବାକୁ ଏବଂ ଅଜ୍ଞାତ ମଧକୁ ପଦକ୍ଷେପଟିଏ ନେବାକୁ ଜଣେ ଶିକ୍ଷକର ଯେତିକି ବିଶ୍ୱାସ, ସାହସ ଓ ସ୍ୱାଧୀନତା ରହିବା ଆବଶ୍ୟକ, ତାହା ଅବଶ୍ୟ ରହିଛି । ତଥାପି, ବହୁତ କିଛି ବିଗିଡ଼ି ବି ଯାଉଛି ଏବଂ

ଚିନ୍ତାର କାରଣ ହେଉଛି । ଆମେରିକା ନାମକ ମନୁଷ୍ୟବସତିଟି କ୍ରମେ ଏପରି ଗୋଟିଏ ଅବସ୍ଥାରେ ଯାଇ ପଶିଗଲାଣି,ଯେଉଁଠାରେ କି ବହୁତ କିଛି ଅଣଆୟତ୍ତ ହୋଇଯାଉଛି ! ଶିକ୍ଷକ ପାଇଁ ତଥା ଶିକ୍ଷା ପାଇଁ ଅଣଆୟତ୍ତ ହୋଇଯାଉଛି । କୌଣସି ଦେଶର ଶିକ୍ଷାଳୟଗୁଡ଼ିକୁ ଯଦି ଗୋଟିଏ ଗୋଟିଏ ଦ୍ୱୀପ ପରି କରିହୁଅନ୍ତା, ତେବେ ତାହା ଅବଶ୍ୟ ଅନ୍ୟକଥା ହୁଅନ୍ତା । ବୃହତ୍ତର ସମାଜର ନାନାବିଧ ଛାଇ ସ୍କୁଲମାନଙ୍କରେ ଅବଶ୍ୟ ଆସି ପଡ଼ିବ । ଏବଂ, ବିଦ୍ୟାଳୟଗୁଡ଼ିକୁ ଏପରି ଭାବରେ ତିଆରି କରିବାର ସମ୍ଭାବନା ଥିବ, ଯଦ୍ଦ୍ୱାରା କି ସେଗୁଡ଼ିକ ଯାବତୀୟ ବାଧାର ଉଜାଣି ସୁଅରେ ତଥାପି ନିଜ ସତ୍ୟଗୁଡ଼ିକୁ ମାନି ଉପରକୁ ଉପରକୁ ଉଠି ଯାଉଥିବେ ଏବଂ ପ୍ରଚଳିତ ସମାଜକୁ ବଦଳାଇ ଦେଇପାରିବେ, ସେହି କଥାଟି କଦାପି ଶିକ୍ଷାନାମରେ ବସିଥିବା ସବୁ ବିପଣି କିମ୍ବା ଶିକ୍ଷକର ଭୂମିକା ଗ୍ରହଣ କରିଥିବା ପ୍ରତ୍ୟେକ ବ୍ୟକ୍ତି ଦ୍ୱାରା ସମ୍ଭବ ହେବନାହିଁ ।

ପାଠ ପଢୁଥିବା ପିଲାଙ୍କ ବିଷୟରେ ସେଠି ସବୁଠାରୁ ଅଧିକ ଲୋକପ୍ରିୟ ଅଭିଯୋଗଟି ହେଉଛି ଯେ, ସେମାନେ ଆଉ ବଡ଼ମାନଙ୍କର କଥା ମାନୁନାହାନ୍ତି । ଘରେ ବାପାମାଆଙ୍କର କଥା ତ ମୋଟେ ମାନୁନାହାନ୍ତି । ସବୁକଥା ମାନିବା ଏବଂ ସବୁକଥା ଅମାନ୍ୟ କରିବା,- ସାନମାନଙ୍କ ସମେତ ଏଇଟା ଆଦୌ କୌଣସି ମନୁଷ୍ୟ ପକ୍ଷରେ ଏକ ସୁସ୍ଥ ରୀତି ନୁହେଁ । ବଡ଼ମାନେ ବି ଏବେ ମାନିବା ଭଳି କେଉଁ କଥା ବା କାହା କଥା ମାନୁଛନ୍ତି ଯେ ସେମାନେ ନିଜ ପିଲାମାନଙ୍କ ଠାରୁ ସେହି କଥାଟିର ପ୍ରତ୍ୟାଶା କରିପାରିବେ ? ଏବଂ, ସବୁଠାରୁ ଅଧିକ ଗମ୍ଭୀର କଥାଟି ହେଉଛି, ସର୍ବସାଧନସମ୍ପନ୍ନ ଆମେରିକା ନାମକ ରାଷ୍ଟ୍ରଟି ମଧ୍ୟ ପୃଥିବୀରେ ଅନ୍ୟ ରାଷ୍ଟ୍ରଙ୍କର ମେଳରେ ରହିଥିଲେ ମଧ୍ୟ ପ୍ରକୃତରେ ଆବଶ୍ୟକ କେଉଁ ସତ୍ୟଟାକୁ ମାନୁଛି ? ମନୋବିଜ୍ଞାନୀମାନେ କହିଲେଣି ଯେ, ସେଠାରେ ପିଲାମାନଙ୍କ ଉପରେ ବାପାମାଆଙ୍କର କୌଣସି ପ୍ରଭାବ ପଡୁନାହିଁ । ବରଂ, ଏପରି ବି କହିହେବ ଯେ ବାପାମାଆ ବଡ଼ ଦିଶିବେ ଓ ତାତ୍ପର୍ଯ୍ୟପୂର୍ଣ୍ଣ ଦିଶିବେ ବୋଲି ଯେଉଁପରି ଭାବରେ କୃଚ୍ଛ୍ର ଖଟି ନିଜର ଘରଟିକୁ ଗଠନ ଓ ମଣ୍ଡନ କରି ରଖିଛନ୍ତି,ସେହି ଘରଟିର ପ୍ରଭାବ ପିଲାମାନଙ୍କ ଉପରେ ଅଧିକ ପଡୁଛି । ସେହି ମଣ୍ଡନଗୁଡ଼ିକର ପୃଥୁଳତା ଭିତରେ ବାପାମାଆ ପିଲାମାନଙ୍କର ଆଖିରେ ସତକୁ ସତ ଆଦୌ ମହତ୍ତ୍ୱପୂର୍ଣ୍ଣ କୌଣସି ଚିଜ ପରି ଦେଖା ଯାଉଥିବେ କି ନାହିଁ କେଜାଣି ? ଘରେ ଦୂରଦର୍ଶନ ରହିଛି, ସତେଅବା ଯାବତୀୟ ନିକଟଦର୍ଶନକୁ ପୂରା ନିକାଲି ଦେଇଛି । ଯଦି ବାପାମଆ ଫୁରସତ୍ ମିଳିଲେ ସେଇଠି ବସି ଶ୍ରମଝାଳ ମାରୁଛନ୍ତି, ପିଲାଏ ମଧ୍ୟ ସେଠାରେ ଉପସ୍ଥିତ ରହୁଛନ୍ତି । ଏତେ ପାଖାପାଖି ବସିଲେ ମଧ୍ୟ ସେମାନେ ତଥାପି ସତେଅବା ନିଜ ନିଜର ଅଲଗା ଅଲଗା ପୃଥିବୀ ଭିତରେ ନିବୁଇ ହୋଇ ବସିଛନ୍ତି । ହିସାବ କହୁଛି, ଦୂରଦର୍ଶନରେ ମୋଟ କାର୍ଯ୍ୟକ୍ରମର ଶତକଡ଼ା ପ୍ରାୟ ଷାଠିଏ ଭାଗ ହିଂସା ରହିଛି । କାହାଣୀମାନଙ୍କର ଦୁର୍ଦ୍ଦାନ୍ତମାନେ ତହୁଁ ବଳି ତହୁଁ ବଳି ହିଂସାମାନ କରୁଛନ୍ତି, ମାତ୍ର ସେଥିପାଇଁ କୌଣସି ଦଣ୍ଡ ପାଉନାହାନ୍ତି । ହିଂସା କରିଥିବା

ମଣିଷଟିର ମନରେ ମଧ କୌଣସି ପଶ୍ଚାତ୍ତାପ ନାହିଁ, ବରଂ ପ୍ରାୟ ସକଳ କ୍ଷେତ୍ରରେ ସିଏ ହିରୋ ପରି ଉତୁରି ଆସୁଛି । ଦୃଶ୍ୟଗୁଡ଼ିକୁ ପ୍ରାଣଲୋଭା କରି ଦେଖୁଥିବା ପିଲାମାନଙ୍କ ମନରେ ତାହା କିଭଳି ପ୍ରତିକ୍ରିୟା ସୃଷ୍ଟି କରୁଥିବ ? ସିଏ ତ ହିଂସା କରିବାଟାକୁ କ୍ରମେ ଏକ ବାହାଦୁରୀ ବୋଲି ବିଚାର କରିବାକୁ ଆରମ୍ଭ କରୁଥିବ । ଆମେ ଆମେରିକାରେ ଥିବାବେଳେ ପନ୍ଦର ବର୍ଷର ପୁଅଟିଏ ପିସ୍ତଲରୁ ଗୁଳି ଫୁଟାଇ ନିଜର ବାପାମାଆଙ୍କୁ ହତ୍ୟା କରିଥିବାର ପରବର୍ତ୍ତୀ କେତେଦିନ ସେଠି ଏହିସବୁ କଥାର ଆଲୋଚନା ହେଉଥିଲା ।

ପ୍ରତିଦ୍ୱନ୍ଦ୍ୱିତାର ପୁରୁଷପୁରୀ ଆମେରିକାରେ ପିଲାମାନଙ୍କ ପାଇଁ ଦେବାଲଗି ବଡ଼ମାନେ ଆଉ ବଳକା ସମୟ ମୋଟେ ପାଉନାହାନ୍ତି । ବଳାଇ ପାରିଲେ ସିନା ବଳକା ବୋଲି କିଛି ସମୟ ବାହାରି ପାରନ୍ତା ! ଲସ୍ ଆଞ୍ଜେଲସ୍‌ର କାଲିଫର୍ଣିଆ ବିଶ୍ୱବିଦ୍ୟାଳୟ ତରଫରୁ କରା ଯାଇଥିବା ଗୋଟିଏ ଗବେଷଣାରୁ ସୂଚନା ମିଳୁଛି ଯେ, ସେଠା ହାଇସ୍କୁଲର ଶିକ୍ଷକମାନେ ପିଲାମାନଙ୍କୁ ଆହୁରି ଅଧିକ ସୁବିଧା ସୁଯୋଗ ଦିଆଯିବାର ଘୋର ସପକ୍ଷରେ ମତ ବ୍ୟକ୍ତ କରିଛନ୍ତି । ଅର୍ଥାତ୍, ପିଲାଙ୍କ ପାଇଁ ଅଧିକ ଅମୃକର ଓ ଅଧିକ ସମୃକର ବ୍ୟବସ୍ଥା କରାଯାଉ । ଅଧିକ ଖେଳ ଓ ଅଧିକ ଆନନ୍ଦ ଓ ଅଧିକ ବିନୋଦନର ସରଞ୍ଜାମମାନ ଯୋଗାଇ ଦିଆଯାଉ । ଏପରିକି ବିଦ୍ୟାଳୟର ଲାଇବ୍ରେରୀକୁ ଅଧିକ ବହି ଆସୁ । ସବୁ ହେଉ ସିନା, ମାତ୍ର ପିଲାମାନଙ୍କ ପାଇଁ ଅଧିକ ସମୟ ଦେବାପାଇଁ ଶିକ୍ଷକମାନଙ୍କୁ ଆଦୌ କୁହାନଯାଉ । ଜୀବନଟା ଏକାନ୍ତ ଅନିତ୍ୟ, ତେଣୁ ପ୍ରତ୍ୟେକ ମନୁଷ୍ୟକୁ ଯଥାସମ୍ଭବ ଅଧିକ ସ୍ୱାଦଉପଭୋଗ ନିମନ୍ତେ ଏକାନ୍ତ ସ୍ୱାଧୀନ ଭାବରେ ଛାଡ଼ି ଦିଆଯାଉ । କେହି କାହାଲାଗି ଆଦୌ ଅଟକି ନରହନ୍ତୁ । ଗୋଟିଏ ପିଲା ଯେ ସବାଆଗ ସିଏ ଚିହ୍ନିଥିବା ବଡ଼ମାନଙ୍କର ସ୍ନେହ ଚାହେ, ସାନ୍ନିଧ ଚାହେ, ତା'ପାଇଁ ଦେବାଲାଗି ଯଥେଷ୍ଟ ସମୟ ରହିଥିବା ଆପଣାଲୋକ ମାନଙ୍କର ଉଷ୍ମତା ଚାହେ, ଜୀବନରୂପୀ ହାଟରେ ସର୍ବାଧିକ ପରିମାଣରେ ଲାଭବାନ୍ ହେବାଲାଗି ନିରନ୍ତର ଧାଇଁଥିବା ପିତାମାତା ଓ ଶିକ୍ଷକମାନଙ୍କୁ ସେକଥା କିଏ ବୁଝାଇ କହିପାରିବ ? ଆମେରିକାରେ ପାରିବନାହିଁ ବା ଭାରତବର୍ଷରେ ପାରିବନାହିଁ । ଭବ୍ୟ କୋଠାଘର ମାନଙ୍କରେ ଦ୍ରବ୍ୟର ଗୋଦାମମାନ ଖୋଲିବାରେ ହଜାର ହଜାର ଡ଼ଲାର ଖର୍ଚ୍ଚ କଲେ ମଧ ତଥାପି ଆମ ଘର ଓ ଆମ ସ୍କୁଲଗୁଡ଼ାକ ନିତାନ୍ତ ଅଲକ୍ଷଣା ହୋଇ ରହିଥିବେ । ମନୋବିଜ୍ଞାନୀମାନେ ଭୀଷ୍ମ ପିତାମହଙ୍କ ପରି ଉପଦେଶ ଦେଉଥିବେ ସିନା, ଆଉ ଅଧିକ କିଛିହେଲେ କରି ପାରିବେନାହିଁ । କୁବେର ଦେଶ ଆମେରିକାରେ ମଧ ବହୁତ କିଛି ଅପୂରଣ ହୋଇ ରହିଥିବ ।

ଇସ୍କୁଲ ଯାଉଥିବା ପୁଅ ଏବଂ ଝିଅମାନଙ୍କ ବିଷୟରେ ସେମାନଙ୍କର ସଂବେଗଗତ ସଙ୍କଟଗୁଡ଼ିକର କ୍ଷେତ୍ରରେ ଏବେ ଆମେରିକାରେ ଅଧିକ ଗମ୍ଭୀର ଗବେଷଣାମାନ ହେଲାଣି । କେତେ ଗବେଷକ କହୁଛନ୍ତି ଯେ, ବିଶେଷ ଭାବରେ ପୁଅପିଲାମାନେ ହିଁ

ସଙ୍କଟରେ ପଡ଼ିଛନ୍ତି । ସେମାନେ ନିଜ ଭିତରେ ନାନା ଅବସାଦ ଭୋଗୁଛନ୍ତି ଏବଂ ବାହାରେ ପ୍ରାୟ ଏକ କ୍ଷତିପୂରଣ ଖୋଜି ବଡ଼ ହିଂସ୍ର ହୋଇ ଯାଉଛନ୍ତି । ସେମାନଙ୍କର ଭିତର ବଳ ତୁଟିଯିବାରେ ଲାଗିଛି ଏବଂ ସମାଜର ବଡ଼ମାନେ ତାହା ମୋଟେ ବୁଝି ପାରୁନାହାନ୍ତି । ହୁଏତ ଅତ୍ୟନ୍ତ ପିଲାବୟସରୁ ହିଁ ସଙ୍କଟଟି ଆରମ୍ଭ ହୋଇଯାଉଛି । ମାଆମାନେ ଅନେକ କ୍ଷେତ୍ରରେ ଭାରି ଭୟ କରୁଛନ୍ତି ଯେ, ନିଜର ପୁଅମାନଙ୍କୁ ବେଶୀ ଗେହ୍ଲା କଲେ ଓ ସେମାନଙ୍କର ବେଶୀ ପାଖେ ପାଖେ ରହିଲେ ତଦ୍ୱାରା ସେମାନଙ୍କର ଅଭିବୃଦ୍ଧିରେ ବହୁ ବାଧା ସୃଷ୍ଟି ହେବା ହିଁ ପରିଣାମ ହେବ । ସେମାନେ ଲାଜକୁଳା ରହିଯିବେ ଓ ଅନ୍ୟ ପୁଅପିଲାମାନେ (ଝିଅପିଲାଏ ବି) ସେମାନଙ୍କୁ ମାଇଚିଆ ବୋଲି କହି ଚିଡ଼ାଇବେ । ଆମେରିକାର ସାମାଜିକ ବଜାରଟା ପୁଅମାନଙ୍କୁ ସିନା ଅଧିକ ଜିଜ୍ଞାସୁ ଓ ଅଧିକ ଗ୍ରହଣଶୀଳ ହେବାକୁ କହୁଛି, ମାତ୍ର ଅନ୍ୟ ପାଖରେ ମରଦଭଳି ହେବାଲାଗି ମଧ୍ୟ ସାବଧାନ ବି କରିଦେଉଛି । ମରଦ ପରି ବଢ଼ିବାର ଉତ୍ତାପଟା ଜଳବାୟୁଟା ଭିତରେ ଏତେ ଲୋକପ୍ରିୟତା ଲାଭ କରିଛି ଯେ, ପୁଅପିଲାଙ୍କର ହୃଦୟଟା ସେଇ ସାନ ବେଳୁଁ ହିଁ କଠିନ ହୋଇଯାଉଛି । ସେମାନେ ନିଜ ମାଆମାନଙ୍କୁ ମଧ୍ୟ ଆଉ ସେତେ ଆଦରି ପାରୁନାହାନ୍ତି । ବରଂ ସାନ ସାନ ଶକ୍ତିମାନ୍ ହେବାପାଇଁ ତାଲୀମ ନେବାରେ ଅଧିକ ମନୋଯୋଗ ଦେଉଛନ୍ତି । ସେମାନଙ୍କ ମନରେ ଏକ ଭୟ ରହୁଛି ଯେ, ମାଆମାନଙ୍କ ସହିତ ବେଶୀ ସମୟ କଟାଇଲେ ସେମାନେ ନରମା ହୋଇଯିବେ । ନିଜ ପୁଅର ହିତ ଚିନ୍ତା କରୁଥିବା ମାଆମାନେ ମଧ୍ୟ ଏହି ଦୃଷ୍ଟିରୁ ପୁଅକୁ ନିଜ କାନିରେ ବାନ୍ଧି ନରଖିବା ବିଷୟରେ ନିଜଆଡୁ ସାବଧାନ ହୋଇ ଯାଉଛନ୍ତି ; ଏଥିପାଇଁ ନିଜେ କଷ୍ଟ ବି ପାଉଛନ୍ତି, ତଥାପି ସାବଧାନ ରହୁଛନ୍ତି । ଏବଂ, ପୁଅମାନଙ୍କୁ ପାଞ୍ଚ ଛଅ ବର୍ଷ ହେବାବେଳକୁ ନିଜର ସମୁଚିତ କର୍ତ୍ତବ୍ୟଟିକୁ ପାଳନ କରୁଛନ୍ତି । ଏବଂ, ସେତିକିବେଳୁ ସତେଅବା ସବୁକିଛି ବିଗିଡ଼ି ଯାଉଛି । ସବୁ ଭର୍ତ୍ତି ହୋଇ ରହିଛି, ତଥାପି ଅସଲ କଥାଟି ଲାଗି ହୁଏତ ଥାନ ରହି ପାରୁନାହିଁ । ଏବଂ, ମାତୃସାନ୍ନିଧ୍ୟରୁ ବଞ୍ଚିତ ହୋଇ କୋଉ ପୁଅପିଲା କିପରି ସୁସ୍ଥ ଓ ସମ୍ପୂର୍ଣ୍ଣ ଭାବରେ ବଢ଼ିପାରିବ ? ତାକୁ ନାନାଭାବେ ଉପବାସୀ ହିଁ ରହିବାକୁ ପଡୁଛି । ଭିତରେ ବହୁତ କିଛି ଖଣ୍ଡିଆ ହୋଇ ରହିଯାଉଛି । ତେଣୁ, ମନୋବିଜ୍ଞାନୀ କହିଲେଣି ଯେ, ଶୈଶବ ତଥା ପ୍ରଥମ ବାଲ୍ୟ ସମୟରେ ପୁଅପିଲାମାନେ ନିଜ ମାଆମାନଙ୍କ ସହିତ ନାନା ଡ଼ୋରରେ ଓ ନାନା ସମ୍ପର୍କରେ ବାନ୍ଧି ହୋଇ ରହିବେ । ଏକ ନିର୍ଦ୍ଦିଷ୍ଟ ସମାଜ ପାଇଁ ମରଦ ହୋଇ ତିଆରି ହେବା ପୂର୍ବରୁ ମଣିଷର ସ୍ୱାଭାବିକ ଉଦ୍‌ଘାଟନରୀତିରେ ପୁଅଟିଏ ବଢ଼ିବ । ତାହାହିଁ ସ୍ୱାସ୍ଥ୍ୟ, ତାହାହିଁ ମାର୍ଗ । ଏକଥା ପୁଅ ପାଇଁ ଯେତିକି ସତ୍ୟ,ଗୋଟିଏ ଝିଅପାଇଁ ମଧ୍ୟ ସେତିକି ସତ୍ୟ ।

ଆମେରିକାରେ ସ୍କୁଲମାନଙ୍କରେ ପୁଅ ଝିଅ ଏକାଠି ପାଠ ପଢ଼ନ୍ତି । ପିଲାମାନେ ଯେ ସମ୍ପୂର୍ଣ୍ଣ ସହଜତା ସହିତ ସେଠାରେ ବଡ଼ ହୋଇ ପାରୁନାହାନ୍ତି ଓ ନିଜ ନିଜ ଗୁମ୍ପୀରେ ରହି ବିକାଶର କ୍ଷେତ୍ରରେ ଭାରି କୃଶ ହୋଇ ରହି ଯାଉଛନ୍ତି, ପୁଅ ଓ ଝିଅ ଏକାଠି ପାଠ

ପଡୁଥିବାରୁ ଆଜ ସେପରି ଘଟୁଛି କି ?- କେହି କେହି ଏପରି ଏକ ସଂଶୟ ମଧ ବ୍ୟକ୍ତ କଲେଣି । ପରସ୍ପର ସହିତ ଏତେ ଅଳପ ବୟସରୁ ଖାପ ଖୁଆଇ ଚଳିବାକୁ ପଡୁଥିବା ଫଳରେ ସେମାନଙ୍କର ସ୍ୱତନ୍ତ୍ର ବିକାଶ ବାଧାପ୍ରାପ୍ତ ହେଉଛି କି ? କହିବା ବାହୁଲ୍ୟ, ବିଜ୍ଞମାନେ ଏହିପରି ଅନୁମାନର ବାଡ଼ିଗୁଡ଼ିକୁ ବୁଲାଉଥିବା ସମୟରେ ତେଣେ ଅବସ୍ଥାଗୁଡ଼ିକ କ୍ରମେ ସଙ୍କଟଜନକ ହୋଇଯାଉଛି । ଏଠାରେ କେତୋଟି ଉଦାହରଣ ଦେଇ କହିଲେ : କିଶୋର ବୟସର ଝିଅମାନଙ୍କ ତୁଳନାରେ ପୁଅମାନଙ୍କ ଭିତରେ ହିଁ ଆତ୍ମହତ୍ୟା କରିବାପାଇଁ ପାଞ୍ଚଗୁଣ ଅଧିକ ପ୍ରବଣତା ରହିଛି । ଏହି ବୟସର ଝିଅମାନଙ୍କ ତୁଳନାରେ ପୁଅମାନେ ହିଁ ଦେଢ଼ଗୁଣ ଅଧିକ ପରିମାଣରେ ହିଂସାତ୍ମକ ନାନା ଅପରାଧର ଜାଲରେ ଯାଇ ପଡ଼ି ଯାଉଛନ୍ତି । ପୁଅପିଲାମାନେ ହିଁ ଅଧିକ ମାନସିକ ଅସୁବିଧା ଭୋଗ କରୁଛନ୍ତି, ବାହାରକୁ ଗୋଟାଏ ଗୋଟାଏ ବନ୍ୟ ଓ ନିର୍ମମ ଜନ୍ତୁପରି ଦେଖା ଯାଉଥିଲେ ମଧ ଭିତରେ ଅତ୍ୟନ୍ତ ଭୀତ ହୋଇ ରହିଛନ୍ତି, ସତେଅବା ଅଧିକ ସହାୟତା ଆବଶ୍ୟକ କରୁଛନ୍ତି । ଏବଂ, ସର୍ବୋପରି, ପୁଅମାନେ ହିଁ ନାନା ହିଂସାତ୍ମକ ଅପରାଧ କରିବାର କ୍ଷେତ୍ରରେ ବେଳେ ବେଳେ ବୟସ୍କମାନଙ୍କୁ ମଧ୍ ବଳି ଯାଉଛନ୍ତି । ଆଉଜଣେ ଗବେଷକ ଏହି ସବୁକିଛି ଜଟିଳ ସମସ୍ୟାକୁ ଅତିକ୍ରମ କରିବାର ଉପାୟରୂପେ ଘରେ କେବଳ ଗୋଟିଏ ସନ୍ତାନ ରହୁ ବୋଲି ପରାମର୍ଶ ଦେଇଛନ୍ତି । ତାଙ୍କ ମତରେ, ସେହି ସନ୍ତାନଟି ପୁଅ ବା ଝିଅ ଯାହା ହେଉ ପଛକେ, ସେଥିରେ ଆଦୌ କୌଣସି ବାଧା ନାହିଁ । ପୃଥିବୀର ବହୁ ବୃହତ୍ ପ୍ରତିଭା ପିତାମାତାଙ୍କର ଏକମାତ୍ର ସନ୍ତାନ ଥିଲେ ବୋଲି ଯେ ଏଡ଼େ ବଡ଼ ଓ ଏଡ଼େ ବିଖ୍ୟାତ ହୋଇପାରିଲେ, ସେ ସେହି କଥାଟିକୁ ବୁଝାଇ କହିବାପାଇଁ ଦୃଷ୍ଟାନ୍ତ ମଧ ଦେଉଛନ୍ତି । ସିଏ ବୁଝାଇ କହିଛନ୍ତି ଯେ, ପ୍ରତ୍ୟେକ ପରିବାରରେ ଗୋଟିଏ ପିଲା ରହିଲେ ତାହାଫଳରେ ପୃଥିବୀରେ ଲୋକସଂଖ୍ୟାର ଭାରା ଯେ କେବଳ କମିଯିବ ତା' ନୁହେଁ, ତଦ୍ୱାରା ପିଲାମାନେ ମଧ ଅଧିକ ସୁସ୍ଥ ହୋଇ ବଢ଼ିବେ, ଆଦୌ ଅସାମାଜିକ ହେବେନାହିଁ । ସେମାନେ ଇସ୍କୁଲରେ ପାଠ ଭଲ ପଢ଼ିବେ, କାରଣ ବାପାମାଆ ଓ ଅନ୍ୟ ଗୁରୁଜନମାନେ ସେମାନଙ୍କ ପାଇଁ ଅଧିକ ଦୃଷ୍ଟି ଓ ସମୟ ଦେଇ ପାରିବେ । ସେହି ପିଲାମାନେ ବିଜ୍ଞାନରେ ଭଲ କରିବେ, ସଙ୍ଗୀତ ବିଦ୍ୟାରେ ଭଲ କରିବେ, ଗଣିତ ଓ ସାହିତ୍ୟରେ ଭଲ କରିବେ ।

ଏବଂ, ଯଦି ଘରମାନଙ୍କରେ ଗୋଟିକରୁ ଅଧିକ ପିଲା ରହିବେ, ତେବେ ତାହା ଲେଖକଙ୍କ ମତରେ ସବୁଆଡୁ ଅତ୍ୟନ୍ତ ଅହିତକାରୀ ହେବ । ଆମେରିକାକୁ ଲୋକସଂଖ୍ୟାର ଅତିବୃଦ୍ଧିର ଯାବତୀୟ କୁପରିଣାମର ସମ୍ମୁଖୀନ ହେବାକୁ ପଡ଼ିବ । ପରିବେଶ ଆହୁରି ଅଧିକ ଦୂଷିତ ହେବ । ବର୍ତ୍ତମାନ ଯେତିକି ପ୍ରଦୂଷଣ ହେଲାଣି, ସେଥିରୁ ଉପୁଜୁଥିବା କ୍ଷତିର ହିସାବ ଦର୍ଶାଇ କୁହାଯାଇଛି ଯେ, ଏଥିପାଇଁ ସବୁଜ ଭୂଖଣ୍ଡକୁ ନଷ୍ଟ କରାଯାଇ ପ୍ରତିବର୍ଷ ଶହ ଶହ ବର୍ଗମାଇଲ୍ ପିଚୁରାସ୍ତା ତିଆରି କରିବାକୁ ପଡୁଛି, ଉତ୍ତର ଆମେରିକାର ପ୍ରତ୍ୟେକ ପରିବାରର ଗୃହ ଏବଂ ଗାଡ଼ୀରୁ ବର୍ଷକୁ ସାଢ଼େ ତିନି ଟନ୍ କାର୍ବନ୍ ନିର୍ଗତ ହୋଇ ବାୟୁକୁ

ବିଷାକ୍ତ କରୁଛି । ଆପରି କରି ହୁଏତ କେହି ପ୍ରଶ୍ନ କରିବେ ଯେ, ଭକ୍ଷ୍ୟହାର ହ୍ରାସ ନକରି ଭୋଗପରିମାଣକୁ କ୍ରମଶଃ ଊଣା କରି ଆଣିବା ଦ୍ୱାରା ନ ଏହିସବୁ ସୁଫଳ ମିଳିପାରନ୍ତା । ମାତ୍ର, ଆମେରିକା ସବୁ କରିବ ପଛକେ, ନିଜ ପଦାର୍ଥଭୋଗର ପରିମାଣକୁ ସିଏ କଦାପି କମ୍ କରି ପାରିବନାହିଁ । ସାମର୍ଥ୍ୟଭରା ଆମେରିକାରେ ଅସାମର୍ଥ୍ୟଗୁଡ଼ାକ ମଧ୍ୟ ମଣିଷର ଗୋଡ଼ରେ ସତେଅବା ପଥର ପରି ବନ୍ଧାହୋଇ ରହିଛି । ଯିଏ ଆବଶ୍ୟକତା ଅନୁସାରେ ନିଜକୁ ପ୍ରଲମ୍ବିତ ଏବଂ ସଙ୍କୁଚିତ କରିଆଣି ପାରିବ, ଆମେ ତାହାକୁ ସିନା ଜଣେ ସୁସ୍ଥ ମଣିଷ ବୋଲି କହିବା । ପୂର୍ବକାଳରେ ମଣିଷମାନେ ଅଳପରେ ଚଳୁଥିଲେ । ସେମାନେ ତଳ ପାହାଚ୍‌ଗୁଡ଼ିକରେ ଥାଇ ଉପର ପାହାଚଗୁଡ଼ିକୁ ନିଘା କରି ବାଟ ଚାଲୁଥିଲେ । ଏହିପରି ଭାବରେ ମନୁଷ୍ୟର ସଭ୍ୟତା ଅଗ୍ରଗତି କଲା ଏବଂ ତା'ର ସମ୍ପନ୍ନତା ବହୁଗୁଣିତ ହେଲା । ବାହାରର ସମର୍ଥତା ଏବଂ ବିଶ୍ୱାସଗୁଡ଼ିକ ସଂପ୍ରସାରିତ ହୋଇ ଯାଉଥିବା ସଙ୍ଗେ ସଙ୍ଗେ ନିଜଭିତରେ ମଧ୍ୟ ମନୁଷ୍ୟ ଏକ କେନ୍ଦ୍ରଟିଏ ରହିଛି ବୋଲି ଆବିଷ୍କାର କରିବାକୁ ଆରମ୍ଭ କରେ । ଭିତରୁ ଅମିତବଳ ପାଏ ଏବଂ ସେହି ବଳ ଏକ ଅନ୍ୟ ସାମର୍ଥ୍ୟକୁ ମଧ୍ୟ ଜନ୍ମ ଦିଏ, ଯାହାକୁ ଆମେ ତାହାର ବିବେକ ବୋଲି କହି ପାରିବା । ପଦାର୍ଥମାନେ ବଢ଼ିଲେ ବିବେକର ଅଭିବୃଦ୍ଧ ବାଧାପ୍ରାପ୍ତ ହୁଏ ବୋଲି ସଂସାରତ୍ୟାଗୀ ବୈରାଗୀମାନେ ସବୁକାଳେ କହି ଯାଇଛନ୍ତି । ପଦାର୍ଥର ଅଭାବରେ ବିବେକ ଅଳବତ ବଢ଼େ ବୋଲି ମଧ୍ୟ କେହି କଦାପି ଦୃଢ଼ତାର ସହିତ କୁହାଯାଇ ପାରିବନାହିଁ । ଆଧୁନିକ ବିଦ୍ୟାମାନେ ପଦାର୍ଥଗୁଡ଼ିକୁ ବଢ଼ାଇବା ବିଷୟରେ ମନୁଷ୍ୟକୁ କେତେ କେତେ ବାଟ ବତାଇ ପାରୁଛନ୍ତି । ଅନୁକୂଳ ଅବସ୍ଥାଗୁଡ଼ିକୁ ପାଇ ଆମେରିକାରେ ପଦାର୍ଥମାନେ ଯେତିକି ଅଧିକ ହେବାରେ ଲାଗିଛନ୍ତି, ନିଜ ଭିତରେ ବିବେକ ବୋଲି ସେହି ଅନ୍ୟ ସମ୍ପଦଟିର ମଧ୍ୟ ଅନୁଶୀଳନ ହୋଇପାରିଲେ ଯାଇ ଆମେରିକାରେ ସୁସ୍ଥତା ଆସିବ ଓ ତେବେ ଯାଇ ଆମେରିକା ପୃଥିବୀର ମଧ୍ୟ ବହୁତ କାମରେ ଆସିପାରିବ । ହୁଏତ ସମଗ୍ର ପୃଥିବୀକୁ ନେତୃତ୍ୱ ଦେଇପାରିବ । ଆମେରିକା ଦେଶରେ ଯିଏ ପିଲାମାନଙ୍କର ଶିକ୍ଷା ବିଷୟରେ ଚିନ୍ତା କରୁଛି, ତାକୁ ଏହି ବିଷୟରେ ମଧ୍ୟ ଆବଶ୍ୟକ ପରିମାଣରେ ମଥା ଖେଳାଇବାକୁ ପଡ଼ିବ । ଖାଲି ବିତ୍ତଦ୍ୱାରା ଯେ ଜୀବନ କଦାପି ପରିପୂର୍ଣ୍ଣତା ଲାଭ କରି ପାରିବନାହିଁ, ପ୍ରୟୋଜନରୁ ଅଧିକ ବିତ୍ତ ଗଦା ହୋଇ ରହିଥିବା ଗୋଟିଏ ଦେଶରେ ସେହି ସତକଥାଟିକୁ ନିଜ ପାଖରେ କହିବା ସକାଶେ ମଧ୍ୟ ବହୁତ ସାହସ ରହିଥିବା ଦରକାର ହେବ ।

ଯନ୍ତ୍ରକୁ ମାଗିଲେ ମିଳୁଥିବା ହିସାବରୁ ଜଣାଯାଉଛି ଯେ ଆମେରିକାର ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକରେ (ପ୍ରଥମରୁ ଅଷ୍ଟମ ଶ୍ରେଣୀ) ତିନି କୋଟିରୁ କିଛି ଅଧିକ ପିଲା ପାଠ ପଢୁଛନ୍ତି ଓ ପ୍ରାୟ ଦେଢ଼କୋଟି ପିଲା ମାଧ୍ୟମିକ ସ୍କୁଲମାନଙ୍କରେ ଅଛନ୍ତି । ପ୍ରାୟ ଛଅବର୍ଷ ତଳେ ନିଆ ଯାଇଥିବା ଏକ ହିସାବ କହୁଛି ଯେ, ଉପରର ଚାରୋଟିଯାକ ଶ୍ରେଣୀରେ ୪.୨% ଛାତ୍ରଛାତ୍ରୀ ମଝିରୁ ପାଠ ଛାଡ଼ି ଚାଲି ଯାଇଛନ୍ତି । ପାଠ ଛାଡ଼ି ଯାଇଥିବା ପୁଅ ଓ

ଝିଅଙ୍କର ପ୍ରତିଶତ ପରିମାଣରେ କୌଣସି ଫରକ ନାହିଁ ଅଥବା ଗୋରା, କଳା ଓ ସ୍ପେନୀୟ ପାଠଛଡ଼ା ପିଲାଙ୍କର ପ୍ରତିଶତରେ ମଧ୍ୟ କୌଣସି ଫରକ ପରିଲକ୍ଷିତ ହୋଇନାହିଁ । ଅବଶ୍ୟ, ପାରିବାରିକ ରୋଜଗାର ଦୃଷ୍ଟିରୁ ବିଚାର କରି ଦେଖିଲେ ପାଠ ଛାଡ଼ି ଚାଲି ଯାଉଥିବା ଛାତ୍ରଛାତ୍ରୀଙ୍କର ସଂଖ୍ୟାରେ ଏକ ଫରକ ରହିଛି । ଯେଉଁସବୁ ପରିବାରର ଆୟ କୋଡ଼ିଏ ହଜାର ଡ଼ଲାରରୁ ଊଣା, ସେଗୁଡ଼ିକର ପିଲାଙ୍କ ଭିତରୁ ଶତକଡ଼ା ସାଢ଼େ ସାତଜଣ ପାଠ ଛାଡ଼ିଛନ୍ତି ଓ ଯେଉଁସବୁ ପରିବାରର ଆୟ ଚାଳିଶି ହଜାରରୁ ଅଧିକ,ସେଗୁଡ଼ିକର ପିଲାଙ୍କ ଭିତରୁ ଶତକଡ଼ା ମାତ୍ର ଦେଢ଼ଜଣ ହିଁ ମଝିରୁ ପାଠ ଛାଡ଼ିଛନ୍ତି । ତେଣୁ, ପିଲାମାନେ ଯେ ନିଜର ପାଠ ଶେଷ କରି ପାରୁନାହାନ୍ତି ଓ ମଝିରୁ ବିଦ୍ୟାଳୟ ଛାଡ଼ି ଦେଉଛନ୍ତି, ଆର୍ଥିକ ଦାରିଦ୍ର୍ୟକୁ ତାହାର ଏକ ପ୍ରଧାନ କାରଣରୂପେ ଗ୍ରହଣ କରାଯାଇ ପାରିବ କି ? ଆମେରିକା ଭଳି ଏକ ଧନସମ୍ପନ୍ନ ରାଷ୍ଟ୍ରରେ ପିଲାମାନଙ୍କର ପାଠପଢ଼ା ନିମନ୍ତେ ଧନର ନିଅଣ୍ଟ ହେଉଛି ? ଅଥବା, ଏପରି ମଧ୍ୟ ହୋଇପାରେ ଯେ, ପଢ଼ା ଯାଉଥିବା ପାଠରେ ଛାତ୍ରଛାତ୍ରୀମାନଙ୍କର ଖୁବ୍‌ବେଶୀ ମନ ଲାଗୁନାହିଁ ଓ ସେମାନେ ରୋଜଗାରର ସୂତ୍ରଟିଏ ପାଇଗଲେ ପାଠକୁ ଛାଡ଼ିଦେଇ ବାହାରି ଆସୁଛନ୍ତି । ପାଠ ପଢ଼ିବାଠାରୁ ରୋଜଗାରକ୍ଷମ ହେବା ହିଁ ସେମାନଙ୍କୁ ଅଧିକ ନିରାପଦ ଏବଂ ନିର୍ଭରଯୋଗ୍ୟ ବୋଲି ହୁଏତ ମନେ ହେଉଛି । ଏକ ନିର୍ଦ୍ଦିଷ୍ଟ ବୟସ ପରେ ଆମେରିକାର ପିଲାମାନେ ପିତାମାତାଙ୍କ ଉପରେ ନିର୍ଭରଶୀଳ ହୋଇ ରହିବାକୁ ଇଚ୍ଛା ନକରୁଥିବାରୁ ହୁଏତ ଏପରି ହେଉଛି ।

ଆମେରିକାରେ ସ୍କୁଲଶିକ୍ଷକ ମାନଙ୍କର ଏକ ଶକ୍ତିଶାଳୀ ସଂଘ ରହିଛି । ସେହି ସଂଘ ଦେଶର ରାଜନୀତିକୁ ମଧ୍ୟ ପ୍ରଭାବିତ କରିପାରୁଛି । ଭୋଟ ସମୟରେ ଆଶାୟୀ ରାଷ୍ଟ୍ରପତିମାନେ ମଧ୍ୟ ଶିକ୍ଷକ ସଂଘର ସମର୍ଥନ ଲାଭ କରିବାକୁ ଭାରି ପ୍ରୟାସ କରୁଛନ୍ତି । ଶିକ୍ଷକସଂଘର ଏହି ପ୍ରଭାବ ପଛରେ ରାଜନୀତି ଆଦୌ କିଛି ନାହିଁ ଅର୍ଥାତ୍ ସେମାନେ ଏକ ସଂଘ ହିସାବରେ କୌଣସି ରାଜନୀତିକ ପକ୍ଷକୁ ସମର୍ଥନ କରୁନାହାନ୍ତି । ଯେଉଁ ପକ୍ଷ ସେମାନଙ୍କର କଥା ବୁଝିଲା, ସେମାନେ ସେହି ପକ୍ଷକୁ ସମର୍ଥନ କରୁଛନ୍ତି । କଥିତ ଅଛି, ରାଷ୍ଟ୍ରପତି ପଦପାଇଁ ନିର୍ବାଚନ ସମୟରେ ଯିଏ ଶ୍ରୀଯୁକ୍ତ କ୍ଲିଣ୍ଟନ୍‌ଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ, ସିଏ ନିର୍ବାଚନର ପ୍ରଚାର ସମୟରେ ଶିକ୍ଷକମାନଙ୍କୁ ସିଧା କହି ଦେଇଥିଲେ ଯେ, ରାଷ୍ଟ୍ରପତି ହେଲେ ସିଏ ଶିକ୍ଷକସଂଘର ପ୍ରଭାବଶାଳିତାକୁ ଆଦୌ ସ୍ୱୀକାର କରିବେନାହିଁ । ଅପର ପକ୍ଷରେ କ୍ଲିଣ୍ଟନ୍ ଅଧିକ ସତର୍କତା ଅବଲମ୍ବନ କରି କହୁଥିଲେ ଯେ ସିଏ ସର୍ବଦା ଆମେରିକାର ଶିକ୍ଷକମାନଙ୍କର ପଟେ ରହିବେ । ସେମାନଙ୍କର ସ୍ୱାର୍ଥପାଇଁ ସମ୍ପୂର୍ଣ୍ଣ ଦୃଷ୍ଟି ଦେବେ । ଏତିକିରେ କୁଆଡ଼େ ସବୁକିଛି ଓଲଟ ପାଲଟ ହୋଇଗଲା । ଶିକ୍ଷକମାନେ କ୍ଲିଣ୍ଟନ୍‌ଙ୍କ ପକ୍ଷରେ ନିଜର ସଂଘର ସମର୍ଥନ ଘୋଷଣା କଲେ ଏବଂ ପ୍ରତିଦ୍ୱନ୍ଦ୍ୱୀ ପ୍ରାର୍ଥୀଙ୍କୁ ଶିକ୍ଷକମାନଙ୍କୁ ଘୃଣା କରୁଥିବା ଜଣେ ବ୍ୟକ୍ତି ବୋଲି ପ୍ରଚାର କଲେ । ଇଏ ତ ଶିକ୍ଷକମାନଙ୍କୁ ଆଘାତ ଦେଲାପରି ଆଦୌ କିଛି କହୁନଥିଲେ,ସେମାନଙ୍କର ସଂଘ ବିଷୟରେ

ହିଁ ନିଜର ମନ୍ତବ୍ୟ ଦେଉଥିଲେ । ସଂଘ ଯେ'ସଦସ୍ୟ ଶିକ୍ଷକମାନଙ୍କର ସଂକୀର୍ଣ୍ଣ ସ୍ୱାର୍ଥଗୁଡ଼ିକୁ କାୟମ୍ ରଖିବା ସକାଶେ ନିଜର ରାଜନୀତିକ ତାକତ୍‌ଗୁଡ଼ିକୁ ଦେଖାଏ ଏବଂ ତାହାରି ବଳରେ ଲାଭବାନ୍ ହୁଏ, ସଂଘର କର୍ମକର୍ତ୍ତାମାନେ ମୁକ୍ତ ମଞ୍ଚ ଉପରେ ସେହି କଥାଟିକୁ ଅତ୍ୟନ୍ତ ନିଃସଙ୍କୋଚ ଭାବରେ ହିଁ କହିଥାନ୍ତି । ବିଦ୍ୟାଳୟଗୁଡ଼ିକ ବିଷୟରେ କିମ୍ବା ଶିକ୍ଷାର କୌଣସି ଉନ୍ନତି ବିଧାନ ବିଷୟରେ ପ୍ରକୃତରେ କ୍ୱଚିତ୍ କିଛି ସଂଘ ତରଫରୁ କୁହାଯାଏ । ମନେହୁଏ, ଶିକ୍ଷା ଅଥବା ଶିକ୍ଷାଳୟ ବିଷୟରେ ସତେଯେପରି ଶିକ୍ଷକସଂଘର କୌଣସି ଦାୟିତ୍ୱ ନାହିଁ, ନିଜ ଜୀବିକାଟି ବିଷୟରେ ହିଁ ସିଏ ଯାହାକିଛି ସଚେତନ ରହିଛି । କୋଉକାଳେ ସିନା ପୃଥିବୀରେ ଶିକ୍ଷାଦାନ କେତେକଙ୍କ ପାଇଁ ଏକ ବ୍ରତ ହୋଇ ରହିଥିଲା ; ମାତ୍ର ଏବେ ତାହା ଯେକୌଣସି ଅନ୍ୟ ବୃତ୍ତି ପରି ଏକ ବୃତ୍ତିରେ ହିଁ ପରିଣତ ହୋଇଗଲାଣି । ଆମେରିକା ମଧ ସେଥିରୁ ବାଦ୍ ଯାଉନାହିଁ ।

ଶିକ୍ଷକଟିଏ ହେବା ସକାଶେ ମନାସ କରି ଯେଉଁମାନେ ସେଥିଲାଗି ଆବଶ୍ୟକ ତାଲୀମ ନେବାକୁ ଆସୁଛନ୍ତି, ସେମାନେ କ'ଣ ସତକୁ ସତ ଶିକ୍ଷକଟିଏ ହେବେ ବୋଲି ନିଜ ଭିତରେ କୌଣସି ନିଷ୍ପତ୍ତି ଗ୍ରହଣ କରିଛନ୍ତି ? ଗୋଟିଏ ରାଜ୍ୟରେ ଥରେ ସେହି ତାଲୀମ ନେଇଥିବା ଗୁରୁଛାତ୍ରଙ୍କ ମଧ୍ୟରୁ ଶତକଡ଼ା ଷାଠିଏ ଭାଗ ପରୀକ୍ଷାରେ ଅକୃତକାର୍ଯ୍ୟ ହେବାରୁ ସେହି ବିଷୟରେ ଅନେକ ସଂଶୟ ପ୍ରକାଶ ପାଇଥିଲା । ଗୁରୁଛାତ୍ରମାନଙ୍କର ତାଲୀମ କାର୍ଯ୍ୟକ୍ରମଟି ପ୍ରକୃତରେ ଦେବାଳିଆ ହୋଇ ସାରିଲାଣି ବୋଲି ବୋଷ୍ଟନ୍ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ କର୍ତ୍ତା ଘୋଷଣା କରିଥିଲେ । ଏହି ତାଲୀମରେ ଉତ୍ତମ ଭାବରେ ଉତ୍ତୀର୍ଣ୍ଣ ହୋଇପାରିଲେ ସିନା କେହି କୌଣସି ବିଦ୍ୟାଳୟରେ ଶିକ୍ଷକ ହେବାକୁ ଯିବ ଓ ହୁଏତ ଜଣେ ଉତ୍ତମ ଶିକ୍ଷକ ହେବାକୁ ଚେଷ୍ଟା କରିବ ! ମାତ୍ର, ତାଲୀମ ପାଇଥିବା ଏହି ଶିକ୍ଷକମାନେ ସେମାନେ ପାଠ ପଢ଼ାଇବାକୁ ଯାଉଥିବା ଛାତ୍ରଛାତ୍ରୀମାନଙ୍କ ତୁଳନାରେ ଯଦି କମ୍ ଦକ୍ଷତା ସମ୍ପନ୍ନ ହୋଇଥାନ୍ତି, ତେବେ ତାହା କେଡ଼େ ନୀତିଗର୍ହିତ କଥାଟାଏ ନହେବ ? ଏହିଭଳି ପ୍ରମାଣମାନ ଆମେରିକାର କେତେ ଅନ୍ୟ ରାଜ୍ୟରୁ ମଧ ମିଳୁଛି । ଶିକ୍ଷଣ-କାର୍ଯ୍ୟକ୍ରମରେ ଆମେରିକାରେ ଯେଉଁ ଜାତୀୟ ଆୟୋଗଟି ରହିଛି, ତାହାର ଏକ ଅଧ୍ୟୟନ ଅନୁସାରେ ହାଇସ୍କୁଲରେ ପାଠ ପଢ଼ାଉଥିବା ଶିକ୍ଷକମାନଙ୍କ ମଧ୍ୟରୁ ଏକପଞ୍ଚମାଂଶଙ୍କର ସେମାନେ ପଢ଼ାଉଥିବା ବିଷୟଟି ଉପରେ ନିମ୍ନତମ ଦଖଲ ନାହିଁ ବୋଲି ଜାଣିବାକୁ ମିଳୁଛି । କାଲିଫର୍ଣ୍ଣିଆ ରାଜ୍ୟରେ ଯେଉଁମାନେ ଗଣିତ ଏବଂ ବିଜ୍ଞାନ ପଢ଼ାଉଛନ୍ତି, ସେମାନେ ଛାତ୍ରାବସ୍ଥାରେ ସେହି ବିଷୟଗୁଡ଼ିକୁ ଅଧ୍ୟୟନ କରିନାହାନ୍ତି । ଏବଂ, ନୂଆ ଶିକ୍ଷକ ହେଇ ବିଦ୍ୟାଳୟରେ ପ୍ରବେଶ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଆଠଭାଗରୁ ଏକଭାଗଙ୍କର ଆଦୌ କୌଣସି ଶିକ୍ଷକ ତାଲୀମ ନାହିଁ । ତଥାପି, ସଂଘ ରହିଛି ବୋଲି ଅଯୋଗ୍ୟ ଶିକ୍ଷକମାନଙ୍କର କେହି କିଛି କରି ପାରୁନାହିଁ । ଶିକ୍ଷକପଦ ହରାଇଲେ ଯେକୌଣସି ଶିକ୍ଷକର ନ୍ୟାୟାଳୟକୁ ଯିବା ନିମନ୍ତେ ଅଧିକାର ରହିଛି ଏବଂ ମାମଲାଟି ତୁଟିବା ପର୍ଯ୍ୟନ୍ତ ପ୍ରବିଧି ଅନୁସାରେ ରାଷ୍ଟ୍ରକୁ

ଯେତେ ଅର୍ଥବ୍ୟୟ କରିବାକୁ ପଡୁଛି, ତାହା ଅତ୍ୟନ୍ତ ମହରଗ ପଡୁଛି । ନିଲମ୍ବିତ ଶିକ୍ଷକଟିକୁ ବେତନ ଦେବାକୁ ପଡ଼ିବ, ସିଏ ନିଲମ୍ବିତ ହୋଇ ରହିଥିବା ସମୟରେ ତାଙ୍କ ଜାଗାରେ ଯିଏ ପାଠ ପଢ଼ାଇବା ପାଇଁ ନିଯୁକ୍ତ ହେବ, ତାକୁ ମଧ୍ୟ ପୂରା ବେତନ ଗଣିବାକୁ ପଡ଼ିବ । ଏବଂ, କଚେରୀରେ ଲଢ଼ିବାପାଇଁ ଆବଶ୍ୟକ ଓକିଲ ଖର୍ଚ୍ଚ ମଧ୍ୟ ବହନ କରିବାକୁ ହେବ । ସମ୍ଭବତଃ,ସତ କଥାଟି ହେଉଛି ଯେ, ଆମେରିକା ଭଳି ଏକ ଧନୀ ମୁଲକରେ ଶିକ୍ଷାର ତୁଳନାରେ ଧନଉପାର୍ଜନ ସାତପାହାଚ ଉପରେ ଯାଇ ରହିଛି ଓ ଧନଉପାର୍ଜନ କରିବାର ସାତଶହ ରାସ୍ତା ମଧ୍ୟ ଉନ୍ମୁକ୍ତ ରହିଛି । ତେଣୁ ସବୁକିଛି ଚଳି ଯାଉଛି ।

ଗୋଟିଏ ଗୋଟିଏ ଦେଶରେ ଓ ସମାଜରେ ପ୍ରତିଭାକୁ ଈଶ୍ୱରଦତ୍ତ ବୋଲି ବିଶ୍ୱାସ କରାଯାଏ, ବିଦ୍ୟାକୁ ଦେବୀ ସରସ୍ୱତୀଙ୍କର ବରଦାନ ବୋଲି ବିଚାର କରାଯାଏ । ଆମେରିକାରେ ତାହାକୁ ପ୍ରତ୍ୟେକ ଶିଶୁର ଅଧିକାର ବୋଲି କୋଉଦିନୁଁ ସ୍ୱୀକାର କରାଯାଇଛି ଏବଂ ପ୍ରାୟ ସେହି ଦିନଠାରୁ ସେଥିଲାଗି ବିଜ୍ଞାନକୁ ଆଣି କାମରେ ଲଗାଯାଇଛି । ସବୁପିଲା ପାଠ ପଢ଼ିବେ, କାରଣ ପାଠ ପଢ଼ିବା ହେଉଛି ପ୍ରତ୍ୟେକ ପିଲାଙ୍କର ଅଧିକାର । କ୍ରମେ ଶିକ୍ଷାକୁ ଏକ ବିଜ୍ଞାନ ବୋଲି କୁହାଗଲାଣି ଏବଂ, ଅନବରତ ଗବେଷଣା ଫଳରେ ଯାହା ଉଚିତ ବୋଲି ଦେଖାଯାଉଛି,ସେହି ଅନୁସାରେ ଦେଶର ଶିକ୍ଷାବ୍ୟବସ୍ଥାରେ ଆବଶ୍ୟକ ପରିବର୍ତ୍ତନମାନ କରାଯାଉଛି । ସବୁ ପିଲାଙ୍କୁ ପାଠ ପଢ଼ାଇ ଜଣେ ଜଣେ ପଣ୍ଡିତରେ ପରିଣତ କରିଦେବା କଥା କେହି କଦାପି ଗ୍ୟାରେଣ୍ଟି ଦେଇ କହି ପାରିବନାହିଁ ସତ, ମାତ୍ର କୌଣସି ପିଲା ଯେପରି କୌଣସି କାରଣରୁ ବିଦ୍ୟାଲାଭରୁ ବଞ୍ଚିତ ନହେବେ, ସେକଥା ଦେଖିବା ଆଧୁନିକ ପ୍ରତ୍ୟେକ ରାଷ୍ଟ୍ରର କର୍ତ୍ତବ୍ୟ । ସେହି ସୁଯୋଗଟିକୁ ଯୋଗାଇ ଦେବାରେ କୌଣସି ତ୍ରୁଟି କୋଉଠି  ରହିଯାଉଛି କି ?- ସେହି କଥାଟିକୁ ଅନୁସନ୍ଧାନ କରି ଆବଶ୍ୟକ ପ୍ରତିକାର କରିବା,- ଏଥିରେ ତ୍ରୁଟି କରିବା କେବଳ ଏକ ଅସୁସ୍ଥ ସମାଜରେ ହିଁ ପରିଲକ୍ଷିତ ହୋଇଥାଏ । ପାରମ୍ପରିକ କାଳରୁ ପୁଅ ଓ ଝିଅମାନଙ୍କୁ ଯେପରି ପାତରଅନ୍ତର ସହିତ ଦେଖାଯାଇ ଆସିଛି, ଶିକ୍ଷାବିଜ୍ଞାନ ତାହାକୁ ଅତିକ୍ରମ କରିବାଲାଗି ବହୁ ପ୍ରୟାସ କରିବାରେ ଲାଗିଛି । ଏକଥା ଅବଶ୍ୟ-ସତ ଯେ, ଶିକ୍ଷାବିଜ୍ଞାନ ହାତରେ ଗୋଟିଏ ସମାଜକୁ ବଦଳାଇ ଦେଇ ପାରିବା ନିମନ୍ତେ କୌଣସି ରାଜନୀତିକ ଆୟୁଧ ନାହିଁ । ମାତ୍ର ଶିକ୍ଷାବିଜ୍ଞାନ ଅଙ୍ଗୁଳିନିର୍ଦ୍ଦେଶ କରି ଅଭାବଗୁଡ଼ିକୁ ଦେଖାଇଦେଇ ପାରିବ । ଆମେରିକାରେ ସେହି ପ୍ରୟାସଟି କରାଯାଉଛି । ଗବେଷଣାରୁ ଉପଲବ୍ଧ ସତ୍ୟଗୁଡ଼ିକୁ ଶତକଡ଼ା ଶହେ ପରିମାଣରେ କଦାପି କ୍ରିୟାନ୍ୱିତ କରାଯାଇ ପାରୁନାହିଁ ସତ, ମାତ୍ର ଶିକ୍ଷାର କ୍ଷେତ୍ରରେ ସମସ୍ୟାସଚେତନତା ବୃଦ୍ଧି ପାଉଛି । ଅଭିଭାବକ, ଶିକ୍ଷକ ଓ ରାଷ୍ଟ୍ର ସମସ୍ତେ ଅଧିକ ସଚେତନ ହେଉଛନ୍ତି । ଏବଂ, ଏହାଛଡ଼ା ଆଧୁନିକ ପୃଥିବୀରେ ଶିକ୍ଷା ସମେତ ମନୁଷ୍ୟ ଜୀବନର ଯାବତୀୟ ବ୍ୟାପାରକୁ ବାଟକୁ ଆଣିବାଲାଗି ସମ୍ଭବତଃ ଅନ୍ୟ ବାଟ କିଛି ନାହିଁ ।

ସ୍କୁଲକୁ ଆସୁଥିବା ପୁଅପିଲାମାନଙ୍କ ବିଷୟରେ କିଏ ତନ୍ନ ତନ୍ନ କରି ସମୀକ୍ଷଣ କରୁଛି ତ ଆଉକିଏ ଝିଅପିଲାଙ୍କ କଥା ଅଧିକ ଗଭୀର ଭାବରେ ଭାବୁଛି । ଝିଅ ବା ପୁଅ ବୋଲି ନିଜକୁ ଭାବିବା ପୂର୍ବରୁ ଏହି ପିଲାମାନେ ନିଜକୁ ପ୍ରଥମେ ପିଲା ବୋଲି କାହିଁକି ଭାବି ପାରୁନାହାନ୍ତି କେଜାଣି ? ଆମ ପିଲାଙ୍କୁ ଝିଅ ବା ପୁଅ ବୋଲି ଦେଖିବା ଆଗରୁ ଆମେ ବାପା ଓ ମାଆ ସେମାନଙ୍କୁ ପିଲା ବୋଲି କାହିଁକି ଭାବି ପାରୁନାହୁଁ ? ସମାଜର ସଂସ୍କାରଗୁଡ଼ାକ ପୃଥିବୀର ପ୍ରାୟ ସବୁଠାରେ ମଣିଷର ବିବେକକୁ ଏପରି ଭାବରେ ଆଚ୍ଛନ୍ନ କରି ରଖିଛି ଯେ ମଣିଷମାନେ ଭାବନାର ସେହି ଗୁଳାଗୁଡ଼ିକ ମଧ୍ୟରୁ ମୋଟେ ବାହାରି ପାରୁନାହାନ୍ତି । ଗୁଳାଗୁଡ଼ାକୁ ନିତାନ୍ତ ଅବିବେକ ବୋଲି ବୁଝୁଥିଲେ ମଧ୍ୟ ଗୁଳା ଭିତରୁ ବାହାରି ପାରୁନାହାନ୍ତି । ମଣିଷର ସେହି ଦୁର୍ବଳତାଟାକୁ ଶିକ୍ଷାଦ୍ୱାରା କ'ଣ ଆଦୌ ବଦଳାଇ ହେବନାହିଁ ? ଏପରି ଏକ ଶିକ୍ଷାର ପ୍ରବର୍ତ୍ତନ କ'ଣ ସମ୍ଭବ ହେବନାହିଁ, ଯାହାକି ମଣିଷମାନଙ୍କୁ ନିଜ ଆଡ଼କୁ, ଜଗତ ଆଡ଼କୁ ଅର୍ଥାତ୍ ପରସ୍ପର ଆଡ଼କୁ ସିଧା ଅନାଇ ପାରିବାଲାଗି ସମର୍ଥତା ଆଣି ଦେଇପାରିବ ? ଶିକ୍ଷାବିଜ୍ଞାନ ଅଧିକରୁ ଅଧିକ ଶ୍ରଦ୍ଧାର ସହିତ ଏବେ ସେହିଗୁଡ଼ିକ ବିଷୟରେ ଅଧିକ ଚିନ୍ତାକରି ଶିଖୁଛି ? ଆମେରିକାରେ ମଧ୍ୟ ସେହିକଥା ହେଉଛି । ଧନର ଅଭାବ ନାହିଁ, ଆଗ୍ରହ ରହିଥିଲେ ଗବେଷଣାରେ ଅର୍ଥାତ୍ ଅଧିକତର ଜିଜ୍ଞାସାରେ ମଧ୍ୟ କାହିଁକି ଅଭାବ ରହିବ ? ଅଧିକ ଭାଗ ଶିକ୍ଷକ ପୃଥିବୀର ଯେକୌଣସି ଦେଶ ପରି ନିଶ୍ଚୟ ଆମେରିକାରେ ମଧ୍ୟ ସଂଘରେ ମାତିଥିବେ, ଆଖି ବୁଜି କ୍ଷୀର ପିଇବାରେ ଅଧିକ ଉତ୍ସାହ ଦେଖାଉଥିବେ, ତଥାପି ଗବେଷଣା ଚାଲିଛି, ସତ୍ୟଖୋଜା ଲାଗି ରହିଛି, ବୃହତ୍ତର ସତ୍ୟଗୁଡ଼ିକର ଅନ୍ଦାଜ ଓ ଅନୁଭବ ହୋଇ ଆସୁଥିବା ସଙ୍ଗେ ସଙ୍ଗେ ଅପେକ୍ଷାକୃତ କ୍ଷୁଦ୍ରଗୁଡ଼ିକୁ ପରିହାର ବି କରି ହେଉଛି ।

ଆମେରିକାରେ ଗବେଷଣା କହୁଛି ଯେ, କିଶୋରବୟସ ପାଖ ହୋଇ ଆସିବା ବେଳକୁ ଝିଅପିଲା ମାନଙ୍କର ଆଉ ଗଣିତ ଏବଂ ବିଜ୍ଞାନ ପାଇଁ ଆଗ୍ରହ ଆସୁନାହିଁ । ଏବଂ, ଗବେଷଣା ଆହୁରି କହୁଛି ଯେ, ବିଦ୍ୟାଳୟ ମାନଙ୍କରେ ଶିକ୍ଷକମାନେ ଶିକ୍ଷାଦାନର କାର୍ଯ୍ୟରେ ପୁଅମାନଙ୍କ ଅପେକ୍ଷା ଝିଅମାନଙ୍କ ପ୍ରତି କମ୍ ଦୃଷ୍ଟି ଦେଉଛନ୍ତି । ଏଠାରେ ସ୍ମରଣ କରାଯାଇ ପାରେ ଯେ, ଆମେରିକାର ପ୍ରାଥମିକ ଶିକ୍ଷାସ୍ତରରେ ଶିକ୍ଷକ କହିଲେ ସାଧାରଣତଃ ମହିଳାମାନଙ୍କୁ ହିଁ ବୁଝାଏ । ସେମାନେ କ'ଣ ସବୁ ସଙ୍କୋଚନ ହେତୁ ଝିଅମାନଙ୍କୁ ଅବହେଳା କରି ପୁଅମାନଙ୍କ ପ୍ରତି ଅଧିକ ଦୃଷ୍ଟି ଦେଉଛନ୍ତି, ସେହି କଥାଟିର ବି ଗୋଟିଏ ଚମତ୍କାର ଆଲୋଚନା କରାଯାଇ ପାରନ୍ତା । ଗବେଷଣାରୁ ଏପରି ବି ସୂଚନା ମିଳୁଛି ଯେ, ପାଠ୍ୟପୁସ୍ତକ ଗୁଡ଼ିକରେ ମଧ୍ୟ ପୁଅ ଓ ଝିଅମାନଙ୍କୁ ସତେଅବା ଦୁଇପ୍ରକାର ଅଲଗା ଜୀବପରି ଚିତ୍ରଣ କରାଯାଉଛି । କଲେଜରେ ପ୍ରବେଶ କରିବା ନିମନ୍ତେ ହେଉଥିବା ପରୀକ୍ଷାଗୁଡ଼ିକ ମଧ୍ୟ ପୁଅମାନଙ୍କ ଲାଗି ତାହା ଯେପରି ଅଧିକ ସୁବିଧାଜନକ ଏବଂ ଅନୁକୂଳ ହେବ, ସେପରି ପ୍ରୟାସ କରା ଯାଉଥିବାର ଆଭାସ ମିଳୁଛି । ହଁ, ଝିଅମାନଙ୍କୁ ସ୍କୁଲରେ ବି

ପୁଅମାନଙ୍କର ବହୁ ଯୌନସମ୍ବନ୍ଧୀ ବିଦ୍ରୂପର ସମ୍ମୁଖୀନ ହେବାକୁ ପଡୁଛି । ଝିଅମାନଙ୍କୁ ଏହିସବୁ ଯାବତୀୟ ଦୁର୍ଦ୍ଦଶାର ଦୂରରେ ରଖିବାର ଅଭିପ୍ରାୟରେ କେତେ କେତେ ରାଜ୍ୟରେ ପୁଅଝିଅଙ୍କୁ ଅଲଗା ଅଲଗା ସ୍କୁଲରେ ପାଠ ପଢ଼ାଯାଉ ବୋଲି ମତ ପ୍ରକାଶ ପାଇଲାଣି । ହଁ, ଆମେରିକାର ଘରୋଇ ଧର୍ମସଂସ୍ଥାମାନଙ୍କ ଦ୍ୱାରା ପରିଚାଳିତ ସ୍କୁଲଗୁଡ଼ିକରେ ଝିଅ ପୁଅଙ୍କ ପାଇଁ ଅଲଗା ବିଦ୍ୟାଳୟର ବ୍ୟବସ୍ଥା ରହିଛି । ଏବେ ସେହିସବୁ ଅନୁଷ୍ଠାନରେ ଛାତ୍ରଛାତ୍ରୀଙ୍କର ସଂଖ୍ୟା ବୃଦ୍ଧି ପାଉଥିବାର ବି ଦେଖାଯାଉଛି । ଏପରିକି ଝିଅ ଓ ପୁଅ ଉଭୟେ ପଢୁଥିବା କେତେ ବିଦ୍ୟାଳୟରେ ସେମାନଙ୍କୁ ଲିଙ୍ଗଭେଦରେ ଅଲଗା ଅଲଗା ଉପଶ୍ରେଣୀରେ ବିଭକ୍ତ ମଧ କରିବାର ଚେଷ୍ଟା ହେଲାଣି । ଝିଅମାନଙ୍କୁ ଅଧିକ ସୁରକ୍ଷା ଓ ସୁଯୋଗ ଦେବାର ଏହିସବୁ ନୂଆ ନୂଆ ପ୍ରୟାସ ପ୍ରତି ବେଶ୍ ପ୍ରତିକ୍ରିୟା ପ୍ରକଟ କରି ଆଉ ଏକ ଜନମତ ପୁଅମାନଙ୍କ ପକ୍ଷରେ ମଧ କ୍ରମେ ସୋଚ୍ଚାର ହୋଇ ଆସୁଛି । ସେମାନେ କହୁଛନ୍ତି, ଝିଅମାନଙ୍କ ପରି ପୁଅମାନଙ୍କୁ ମଧ ସେହିପରି ବିଶେଷ ସୁବିଧାମାନ ଦିଆଯାଉ । ଗବେଷଣାଲବ୍ଧ ତଥ୍ୟମାନେ ମଧ ଅନୁରୂପ ଭାବରେ ସେହି ଆଡ଼କୁ ଢ଼ଳିବାପରି ସିଦ୍ଧାନ୍ତମାନ ବ୍ୟକ୍ତ କରୁଛନ୍ତି । ସେମାନଙ୍କ ମତରେ, ବିଦ୍ୟାଳୟ ଗୁଡ଼ିକରେ କେବଳ ଝିଅମାନଙ୍କୁ ଯେ ପୁଅମାନଙ୍କ ଠାରୁ ଯୌନଯାତନା ସହ୍ୟ କରିବାକୁ ହେଉଛି ତା' ନୁହେଁ, ପୁଅମାନେ ବି ବହୁ କ୍ଷେତ୍ରରେ ଝିଅମାନଙ୍କ ଠାରୁ ଯାତନା ସହୁଛନ୍ତି । ଝିଅମାନେ ମଧ ପୁଅମାନଙ୍କୁ କମ୍ ଚିଡ଼ାଉନାହାନ୍ତି । ଏବେ ପୁଅପିଲାଏ ଯେପରି ବନ୍ଧୁକ ଚଳାଇ ହତ୍ୟାମାନ କଲେଣି, ସେଗୁଡ଼ିକୁ ରୋକିବା ଲାଗି ହିଂସାତ୍ମକ ଭିଡ଼ିଓ ପ୍ରଦର୍ଶନ ବନ୍ଦ କରିବା ଏବଂ ବିଶେଷଜ୍ଞମାନଙ୍କ ଦ୍ୱାରା ସେମାନଙ୍କୁ ସ୍ୱତନ୍ତ୍ର ପରାମର୍ଶମାନ ଦେବାପାଇଁ ମଧ ପ୍ରସ୍ତାବ ହେଲାଣି ।

ଆଗରୁ ଯେପରି କୁହାଯାଉଛି, ଆମେରିକା ବିଦ୍ୟାଳୟ-ବ୍ୟବସ୍ଥାର ପ୍ରାଥମିକ ସ୍ତରରେ ଆଉ ପ୍ରାୟ ପୁରୁଷଶିକ୍ଷକ ନାହାନ୍ତି । ଶିକ୍ଷକ ହେବାର ବାଟଟି ଯେ ପୁରୁଷମାନଙ୍କ ପାଇଁ କୌଣସି କାରଣରୁ ବନ୍ଦ ରଖାଯାଇଛି । ସେକଥା ଆଦୌ ନୁହେଁ । ମାତ୍ର, ସମ୍ଭବତଃ ପୁରୁଷମାନେ ଏପରି ଗୋଟିଏ କାର୍ଯ୍ୟକୁ ରୁଚିକର ବୋଲି ମନେ କରୁନାହାନ୍ତି ବା ସମ୍ଭବ ସମସ୍ତେ ଭାବୁଛନ୍ତି ଯେ, ଏହି ଭୂମିକାଟି ନିମନ୍ତେ ଜଣେ ନାରୀ ହିଁ ଜଣେ ପୁରୁଷଠାରୁ ଅଧିକ ଯୋଗ୍ୟ ହେବ । ସତେଯେପରି ପ୍ରାଥମିକ ଶିକ୍ଷା କେବଳ ଝିଅମାନଙ୍କ ସକାଶେ ଉଦ୍ଦିଷ୍ଟ, ସେଭଳି ଭାବି ଏପରି ଏକ ବ୍ୟବସ୍ଥା କରାଯାଇଛି କି ? ଅନ୍ତତଃ ପୁଅପିଲାଏ ଆମେରିକାରେ ଏହିପରି ଭାବୁନାହାନ୍ତି କି ? ମଝିରୁ ଇସ୍କୁଲ ଛାଡ଼ି ଚାଲି ଯାଉଥିବା ପିଲାଙ୍କ ଭିତରୁ ଶହେରେ ଏକସ୍ତରୀ ଜଣ ହେଉଛନ୍ତି ପୁଅ ପିଲା ଏବଂ, ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ୬୭% ଝିଅ ଇସ୍କୁଲ ସାରି କଲେଜ ଯାଉଥିବା ବେଳେ ମୋଟେ ୫୮% ପୁଅ ତାହା କରି ପାରୁଛନ୍ତି, ଏହି ଘଟଣାଟି ସହିତ ଉକ୍ତ କଥାଟିର କିଛି ସମ୍ବନ୍ଧ ରହିଛି କି ? ମାତ୍ର, ପୁଅ ଓ ଝିଅମାନଙ୍କ ପାଇଁ ଅଲଗା ଅଲଗା ଇସ୍କୁଲର ବ୍ୟବସ୍ଥା ହୋଇଗଲେ ଝିଅମାନେ ଯେ ପାଠରେ

ଅଧିକ ଭଲ କରିବେ ବା ସେମାନଙ୍କର ଭାବସମ୍ବନ୍ଧଗତ ଜୀବନ ମଧ୍ୟ ଅଧିକ ସୁସ୍ଥ ରହିବ, ଗବେଷଣାରୁ ତାହାର ଆଦୌ କିଛି ସୂଚନା ମିଳୁନାହିଁ । ଏପରି ମଧ୍ୟ ମତ ପ୍ରକାଶ ପାଇଲାଣି ଯେ, ଶିକ୍ଷାଳୟ-ବ୍ୟବସ୍ଥାରେ ଝିଅମାନଙ୍କ ପାଇଁ ଯାହା ଉପକାରୀ, ପୁଅମାନଙ୍କ ପାଇଁ ମଧ୍ୟ ତାହା ଅବଶ୍ୟ ଉପକାରୀ ହେବ ! ଶ୍ରେଣୀଗୁଡ଼ିକ ସାନ ହେବ, ପାଠ୍ୟବିଷୟ ଗୁଡ଼ିକ ପିଲାଠାରୁ କିଛି ସମୟ ଅବଶ୍ୟ ଦାବୀ କରୁଥିବେ ଏବଂ, ପୁଅ ହେଉ କି ଝିଅ ହେଉ, ସମ୍ପୃକ୍ତ ଶିକ୍ଷକମାନେ ସେମାନଙ୍କୁ ସର୍ବଦା ଆବଶ୍ୟକ ଉତ୍ସାହ ପ୍ରଦାନ କରି ପାରୁଥିବେ । ସେମାନଙ୍କୁ ଆଗ ଝିଅ ବା ପୁଅ ବୋଲି ନଦେଖି ମଣିଷ ପରି ଦେଖୁଥିବେ ଏବଂ ସେହିଭଳି ଏକ ଦୃଷ୍ଟିକୋଣ ସହିତ ସେମାନଙ୍କୁ ସାହାଯ୍ୟ କରି ପାରୁଥିବେ । ଖୁସୀ ହୋଇ ଶିକ୍ଷକତା କରିବାକୁ ଆସିଥିବା ଯେକୌଣସି ଶିକ୍ଷକ ତା' ସାଧାରଣ ଅନୁଭବରୁ ଯାହା କହିଦେଇ ପାରନ୍ତା, ଆମେରିକାରେ କେତେ ନା କେତେ ପଇସା ଖରଚ କରି କରା ଯାଉଥିବା ଗବେଷଣାରୁ ମଧ୍ୟ ସେହି ସମାଧାନ ବାହାରୁଛି ।

ଝିଅ ଓ ପୁଅ ଉଭୟଙ୍କୁ ସଫଳ ଭାବରେ ଗଣିତ ଏବଂ ବିଜ୍ଞାନ ପଢ଼ାଇ ପାରୁଥିବା ତିନୋଟି ରାଜ୍ୟର ଶିକ୍ଷକଙ୍କୁ ପ୍ରଶ୍ନ ପଚାରି ଆଉଗୋଟିଏ ଗବେଷଣା ଘୋଷଣା କରିଛି ଯେ,ଶିକ୍ଷାଦାନରେ କେହି କାହାକୁ ଅସମ୍ମାନ ବା ଅବହେଳା ପ୍ରଦର୍ଶନ କରିବେନାହିଁ : ଶିକ୍ଷକମାନେ ଛାତ୍ରମାନଙ୍କୁ ଅପମାନିତ ଓ ଆହତ ଲାଗିଲାଭଳି କୌଣସି ଆଚରଣ ଦେଖାଇବେ ନାହିଁ ଏବଂ ଛାତ୍ରମାନେ ମଧ୍ୟ ଏକ ଆରେକୁ ବାଧିଲା ବା ଅପମାନ ଲାଗିଲାଭଳି କିଛି କରିବେନାହିଁ । ହଁ,ପାଠ ଦାନରେ କଠୋର ଭାବରେ କୌଣସି ଗୋଟିଏ ଶିକ୍ଷାଦାନ-ପ୍ରଣାଳୀ ଅନୁସରଣ କରା ଯିବନାହିଁ,- କେତେବେଳେ ଶିକ୍ଷକ କହିବେ ଓ ପିଲାମାନେ ଶୁଣିବେ, ଆଉ କେତେବେଳେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ବାଣ୍ଟି ହୋଇଯାଇ ବିଷୟଗୁଡ଼ିକର ଆଲୋଚନା କରିବେ, ପିଲାମାନେ ନିଜ ଭିତରେ ମଧ୍ୟ ପରସ୍ପରକୁ ପାଠ ବତାଇଦେବେ ! ତେବେ, ଗୋଟିଏ ପ୍ରଣାଳୀଦ୍ୱାରା ଉପକୃତ ହୋଇ ପାରୁନଥିବା ପିଲାମାନେ ଆଦୌ ବଞ୍ଚିତ ହୋଇ ପଛରେ ରହି ଯିବେନାହିଁ । ହଁ, ଶିକ୍ଷାଦାନ ସମୟରେ ଯଥାସମ୍ଭବ ସବୁ ଛାତ୍ରଛାତ୍ରୀଙ୍କୁ ସେଥିରେ ସମ୍ପୃକ୍ତ କରାଯିବ । ସାଧାରଣତଃ ଅସଲ କୁଶଳତାଗୁଡ଼ିକ ନଥିବା ଜଣେ ଶିକ୍ଷକ, ମାତ୍ର କେତେକ ପିଲାଙ୍କୁ ହିଁ କେନ୍ଦ୍ର କରି ଯାହାକିଛି ପଢ଼ାଉଥାଏ ଏବଂ ବାକୀମାନଙ୍କୁ ଛାଡ଼ି ଚାଲି ଯାଉଥାଏ । ଏକା ଯଥାର୍ଥ ଶ୍ରେଣୀକକ୍ଷରେ ସେପରି ଆଦୌ ହେଉନଥିବ । ବରଂ ବିଶେଷ ପ୍ରୟାସ ଦ୍ୱାରା ପଛରେ ରହି ଯିବାକୁ ଇଚ୍ଛା କରୁଥିବା ପିଲାମାନଙ୍କୁ କ୍ରିୟାଶୀଳ କରାଇ ଅଣାଯାଇ ପାରୁଥିବ । ତେବେ ନିଜର କାର୍ଯ୍ୟଟିକୁ ଅଧିକ ଭଲ ଭାବରେ ତୁଲାଇ ପାରିବା ନିମନ୍ତେ ଜଣେ ଶିକ୍ଷକକୁ ମଧ୍ୟ ଅଧିକ ଉତ୍ସାହ ଓ ପ୍ରେରଣା ମିଳିପାରିବ ।

କିଶୋର ବୟସରେ ଜଣେ ଝିଅ ସ୍କୁଲ ଛାଡୁଥିବା ସମୟରେ ଆମେରିକାରେ ଚାରିଜଣ ପୁଅପିଲା ସ୍କୁଲ ଛାଡି ଦିଅନ୍ତି । ଏହାର ପ୍ରତିକାର ସ୍ୱରୂପ ଏବେ ବିଶେଷଜ୍ଞମାନେ

କହୁଛନ୍ତି ଯେ, ଏମାନେ ଯେପରି ନିଜକୁ ଅରକ୍ଷିତ ଏବଂ ଅବହେଳିତ ବୋଲି ଅନୁଭବ ନକରିବେ, ସେଥିଲାଗି ଚତୁର୍ଦ୍ଦିଗର ପରିବେଶରେ ଏକ ଅନୁକୂଳ ସଂପୃକ୍ତିଭାବର ସୃଷ୍ଟି କରାଯାଉ । ପରିବାରରେ ସୃଷ୍ଟି କରାଯାଉ, ବିଦ୍ୟାଳୟରେ ମଧ୍ୟ ସୃଷ୍ଟି କରାଯାଉ । ଏବଂ, ସେଥିଲାଗି ଆବଶ୍ୟକ ସମୟ ବାହାର କରାଯାଉ । ସେମାନଙ୍କ ପାଇଁ ଅନ୍ୟମାନଙ୍କର ସମୟ ମିଳୁ, ଘରେ ଏପରି ଏକାଧିକ ଅନୁଷ୍ଠାନ ଏବଂ ଅବସରର ପ୍ରବର୍ତ୍ତନ କରାଯାଉ, ଯେତେବେଳେ କି ସମସ୍ତେ, ବଡ଼ ଓ ସାନ, ଏକାଠି ହେବେ, ପଳାଇ ଯିବାକୁ ଆଦୌ ତରତର ହେବେ ନାହିଁ, ପିଲାମାନଙ୍କର ବିଭିନ୍ନ ସ୍ୱାଧୀନତା ରହିଥିବ ଏବଂ ଦାୟିତ୍ୱ ମଧ୍ୟ ରହିଥିବ । ଦୂରଦର୍ଶନ ଚାଲିବ ସତ, ମାତ୍ର ତାହାକୁ ଏକ ନିଶା ପରି ବା ଅନ୍ୟମାନଙ୍କୁ ଏଡ଼ି ରହିବାର ଏକ ସାଧନ ପରି ମୋଟେ ବ୍ୟବହାର କରା ଯିବନାହିଁ, ଏସବୁ ପୁଅମାନଙ୍କ ପାଇଁ ଉପକାରୀ ହେବ, ଝିଅମାନଙ୍କ ପାଇଁ ମଧ୍ୟ ଉପକାରୀ ହେବ । ପରିବାର ମଧ୍ୟରେ ଏପରି ଏକ ପାରସ୍ପରିକତା ବିରାଜମାନ କରିବ, ଯାହାକି ପରସ୍ପରର କ୍ଷତଗୁଡ଼ିକୁ, ଅଭାବଗୁଡ଼ିକୁ ଭରଣା କରି ଆଣିବାରେ ସତେଅବା ଏକ ଅଦୃଶ୍ୟ ଔଷଧ ପରି କାର୍ଯ୍ୟ କରିବ । ଅତ୍ୟନ୍ତ ତାତ୍ପର୍ଯ୍ୟର ବିଷୟ ଯେ ପୃଥିବୀଯାକର ପ୍ରଜ୍ଞା ପ୍ରାୟ ଯୁଗ ଯୁଗ ଧରି ଯାହା କହି ଆସିଥିଲା, ଏବେ ଶିକ୍ଷା ଭିତରେ ବିଜ୍ଞାନ ପ୍ରବେଶ କରି ପ୍ରାୟ ସେହି କଥାଗୁଡିକୁ କହୁଛି ! ସାର କଥାଟି ହେଉଛି ଯେ ପୁଅ ହେଉ କି ଝିଅ ହେଉ, ଉଭୟ ସ୍କୁଲରେ ଏବଂ ଘରେ ଆମେ ତାକୁ ଜଣେ ବ୍ୟକ୍ତି ପରି ହିଁ ଦେଖିବା । ବ୍ୟକ୍ତିର ସମ୍ମାନ ଦେବା । ସାମାଜିକ ଆଚାରର ଗୁଳାଭିତରେ ମାଡି ଯାଇ ସେମାନଙ୍କୁ ଆଦୌ କୌଣସି ମାର୍କା ଭିତରେ ବିଚାର କରିବାନାହିଁ । ଇଏ କ'ଣ କେବଳ ଆମେରିକାର କଥା, ଇଏ ହେଉଛି ସାରା ପୃଥିବୀର କଥା, ମଣିଷମାତ୍ରକେ ଆମ ପ୍ରତ୍ୟେକଙ୍କର କଥା, ସବୁ ଦେଶର କଥା । ଏତିକି ଆଗ ସମ୍ଭବ ହୋଇଗଲେ, ଗଣିତ, ବିଜ୍ଞାନ ବା ଆଉ କେଉଁ ବିଷୟ ପିଲାମାନଙ୍କୁ କିପରି ଭାବରେ ପଢାଇବାକୁ ହେବ, ଆଉ ସେବିଷୟରେ ବିଶେଷ ତଥ୍ୟଘଣା ବୁଲାଇବାକୁ ପଡ଼ିବନାହିଁ । ସମ୍ପର୍କଗୁଡିକ ସୁସ୍ଥ ହେଲେ ପାଠଦାନ ସୁସ୍ଥ ହେବ, ପାଠଗ୍ରହଣ ମଧ୍ୟ ସୁସ୍ଥ ହେବ । ରାଷ୍ଟ୍ରୀୟତା ଚକ୍ରବର୍ତ୍ତୀପ୍ରାୟ ମାଡ଼ି ବସିଥିବା ଆମର ଏହି ଯୁଗରେ ସମାଜ ଏବଂ ଶାସକ ମଣିଷମାନଙ୍କୁ ସବାଆଗ ଜଣେ ବ୍ୟକ୍ତି ବୋଲି ସ୍ୱୀକାର କରିବାଲାଗି ଏଭଳି ଅରାଜି କାହିଁକି ହେଉଛି କେଜାଣି ? ନିଜର ବ୍ୟକ୍ତିତ୍ୱଟିକୁ ଚିହ୍ନି ନିଜର ବିକାଶ କରିବାରେ ମନୋନିବେଶ କରିଥିବା ଜଣେ ମନୁଷ୍ୟ ଗୁଳାରେ ବାଟ ଚାଲୁଥିବା ବା ମେଣ୍ଢା ପରି ପଛେ ପଛେ ଆସୁଥିବା ମଣିଷଟି ଠାରୁ ଯେ ବହୁତ କମ୍ ବିପଜ୍ଜନକ, ପୃଥିବୀର ଇତିହାସ ସେହି କଥାଟିକୁ ବାରବାର ପ୍ରମାଣ କରିଛି । ଗୁଳାରେ ପଡି ବ୍ୟକ୍ତିତ୍ୱ ହଜାଇଥିବା ମଣିଷଟି ଅଧିକ ହିଂସ୍ର ହୁଏ, ଅଧିକ ଦାୟିତ୍ୱହୀନ ବି ହୁଏ । ଜଣେ ବ୍ୟକ୍ତି, ସମ୍ମାନବୋଧସମ୍ପନ୍ନ ସଚେତନ ବ୍ୟକ୍ତି ହିଁ ତା'ର ସମୂହଲାଗି ଅଧିକ ମୂଲ୍ୟବାନ୍ ସାବ୍ୟସ୍ତ ହୋଇଥାଏ । ଏକଥା ଆମେରିକାରେ ହୁଏ, ପାକିସ୍ତାନ ଓ ଭାରତବର୍ଷରେ ମଧ୍ୟ ହୁଏ । ପୃଥିବୀଯାକର ଶିକ୍ଷାବିଚାର ଆମ ସମସ୍ତଙ୍କୁ ସେହିପରି ଏକ

ନୂଆ ସକାଳ ଆଡ଼କୁ ନେଇଯିବା ପାଇଁ ନାନାମତେ ପ୍ରୟାସ କରୁଛି । ରାଷ୍ଟ୍ର ଓ ସମାଜମାନେ ସେଥିରେ କେବେ ପୂର୍ଣ୍ଣ ସାଧୁତାର ସହିତ ସହଯୋଗ କରିବେ ?

ଆମେରିକାରେ ସାଢେ ଚାରିମାସର ପ୍ରବାସ ମୋତେ ସତେଅବା ସାଢେ ଚାରିମାସର ବନବାସ ପରି ଲାଗିଲା । ବନ ପରି ଆକୃଷ୍ଟ କଲା । ବନରେ ସବୁ ପୂରି ରହିଥାଏ । ମହାଦ୍ରୁମ ଠାରୁ ଆରମ୍ଭ କରି ମହୌଷଧି ପର୍ଯ୍ୟନ୍ତ ସବୁକିଛି ଥାଏ । ତୁମେ ବାଛିବ, ଅକୃପଣ ଭାବରେ ବାଛିବାକୁ ସମର୍ଥ ହୋଇ ପାରୁଥିବ । ନିଜ ଦେଶ ବିଷୟରେ ସଦାସଚେତନ ରହିଥିବ ସିନା, ମାତ୍ର ଅତ୍ୟନ୍ତ ଅକୃପଣ ଭାବରେ ଚୟନ ଓ ସଂଗ୍ରହ ମଧ କରି ପାରୁଥିବ । ନିଜ ଦେଶ ଅର୍ଥାତ୍ ନିଜ ଘରଟିକୁ କିଏ କେତେ ଅନ୍ତରଙ୍ଗ ଭାବରେ ଚିହ୍ନିଛି, ସେହି ଅନୁସାରେ ହିଁ ହୁଏତ ସିଏ ବିଦେଶରେ ସମୁଚିତ ଭାବରେ ଚୟନ ଏବଂ ସଂଗ୍ରହ କରିପାରେ । ଅନେକ ସ୍ପର୍ଶକାତର ବ୍ୟକ୍ତି ଅଛନ୍ତି, ଯେଉଁମାନେ କି ନିଜର ଘରଟିକୁ କେବଳ ମୋ'ର ବୋଲି ଜାଣିଥାନ୍ତି । ସେମାନେ ପୃଥିବୀର ପାକଶାଳାକୁ ଯାଇ ମଧ ପ୍ରାୟ ଉପାସରେ ଫେରନ୍ତି ? କୌଣସି ଏକ ସହଜ ମୋହର ଫାଶଭିତରେ ଛନ୍ଦି ହୋଇ ରହିଥାନ୍ତି । ଯୁଆଡ଼େ ଯାଆନ୍ତି, ଖାଲି ବାରନ୍ତି, ଖାଲି ପ୍ରତ୍ୟାଖ୍ୟାନ କରନ୍ତି ; ମୋ' ଦେଶଟି ଏହି ଯାବତୀୟ ଦେଶଠାରୁ ଯେ ପୂରା ଫରକ, ସେହି କଥାଟିରୁ ସେମାନେ ବହୁତ ବଳ ପାଆନ୍ତି । ଭାରତବର୍ଷଠାରୁ ଆମେରିକା ବହୁତ ଫରକ ଏବଂ ଆମେରିକାଠାରୁ ଭାରତବର୍ଷ ମଧ ବହୁତ ଫରକ । ଫରକ ବୋଲି ତ ଆକର୍ଷଣଟା ଏତେ ଶକ୍ତିଶାଳୀ ଏବଂ ଫରକ ବୋଲି ତ ସେଠାକୁ ଗଲେ ସଂଗ୍ରହ ଓ ଚୟନ କରି ଘରକୁ ଆଣିବାର ଏତେ ଏତେ ଚିଜ ସେଠାରେ ଦୃଷ୍ଟିଗୋଚର ହୋଇଥାଏ । ଆମେରିକାର ଇତିହାସ ନାହିଁ, ତଥାପି ଇତିହାସ ରହିଛି । ଜଣେ ଭାରତୀୟ ପରି ଜଣେ ଆମେରିକାବାସୀ ତା'ର ଇତିହାସ ଓ ଅତୀତକୁ ନେଇ କଦାପି ଏତେବେଶୀ ଫୁଲେଇ ହୋଇ ପାରିବନାହିଁ ସତ, ମାତ୍ର ଆମେରିକାର ଏହି ସଂକ୍ଷିପ୍ତ ଅତୀତଟିରେ ଏପରି କେତୋଟି ଘଟଣା ଘଟିଛି ଏବଂ ଏପରି କେତେ ଗୌରବର ନିଦର୍ଶନମାନ ରହିଛି, ଯାହାକି ଆଗାମୀ ଏକାଧିକ ଶତାବ୍ଦୀର ବହୁବିଧ ପୃଥ୍ୱୀପ୍ରୟାସରେ ପୃଥିବୀର ଯେକୌଣସି ଦେଶକୁ ପ୍ରେରଣା ଦେଇପାରିବ ।

ଆମେରିକାର ଆବ୍ରାହାମ୍ ଲିଙ୍କଲନ୍, ସିଏ କ'ଣ ଖାଲି ଆମେରିକାର ? ଆମେରିକାର ଗଣତନ୍ତ୍ର, ସେଇଟା କ'ଣ ସେହି ଆମେରିକା ନାମକ ଗୋଦାମର କୌଣସି ଏକଚାଟିଆ ସମ୍ପତ୍ତି ? ଆମେରିକାକୁ ଅଧ୍ୟାତ୍ମଶିକ୍ଷା ଦେବାପାଇଁ ଭାରତବର୍ଷରୁ ପଠା ହୋଇଥିବା ସ୍ୱାମୀ ବିବେକାନନ୍ଦ ଆମେରିକାର ଗଣତନ୍ତ୍ର ମଧରେ କ'ଣସବୁ ସତ୍ୟସମ୍ଭାବନାର ପ୍ରତ୍ୟକ୍ଷ କରିପାରିଲେ ଯେ, ସିଏ ତଦ୍ୱାରା ଅତୀବ ଅଭିଭୂତ ହୋଇ ପଡ଼ିଥିଲେ ଏବଂ ସେହି ଭୂମିଟର ଉଚ୍ଚ ପ୍ରଶଂସା କରିଥିଲେ ? ବାହାରୁ ଦେଖିଲେ ଏବଂ ବିଜ୍ଞାପନର ମାଧମରେ ଆମେରିକାକୁ ଚିହ୍ନିବାକୁ ମନ କଲେ ମନେହେବ, ସତେ ଯେପରି ସେଠାରେ ସମସ୍ତେ ଗୋଟାସୁଦ୍ଧା ଫୁଙ୍ଗୁଳା । ନିୟମ ବୋଲି କିଛି ନାହିଁ, ଅଟକି ରହିବାପାଇଁ

କୌଣସି ଗାର ମଧ ନାହିଁ । ଭୋଗର ଅନ୍ତ ନାହିଁ, ଭୋଗ ମୁତାବକ ଭଣ୍ଡାରଗୁଡ଼ାକ ମଧ ବହୁବର୍ଣ୍ଣାଢ଼୍ୟ ପୁଲକରେ ବଢ଼ି ବଢ଼ି ଚାଲିଛି । ମନେହେବ, ତାହାରି ଭିତରେ ଆମେରିକାର ଅଧିବାସୀମାନେ ଏପରି ବାଇଆ ହୋଇ ପଶିଛନ୍ତି ଯେ, ମୋଟେ ବାହାରି ପାରୁନାହାନ୍ତି । କୋଉଦିନ କୋଉଠି ସେମାନଙ୍କର ଘରଟିଏ ଥିଲା ବୋଲି ସମ୍ପୂର୍ଣ୍ଣ ଭାବରେ ପାସୋରି ଦେଇଛନ୍ତି । ଆମ ନିଜ ଦେଶରେ କେତେ ଆକଟ, କେତେ ବହି, କେଢ଼େ କେଢ଼ ଶାସନ ଓ କେତେ କେତେ ଠାକୁର, ଯେଉଁମାନେ ବେଢ଼ା ଭିତରେ ଅଲଗା ଅଲଗା ଚିହ୍ନଟ ହୋଇ ରହିଛନ୍ତି । ଆମେରିକାରେ ମଧ ସେହି ସବୁକିଛି ଅଛି ; ମାତ୍ର ତଥାପି ଏହି ସବୁକିଛି ଭିତରେ ମଣିଷମାନେ ତଥାପି ମୁକ୍ତ ହୋଇ ବୁଲୁଛନ୍ତି । ଏହି ଯାବତୀୟ ସବୁକିଛି ମଣିଷ ନିମନ୍ତେ ହିଁ ବରାଦ ହୋଇ ରହିଛି ବୋଲି ସେଠାରେ ସାମୂହିକ ଜୀବନର ଯାବତୀୟ ବାର୍ତ୍ତା ଘୋଷଣା କରିବାରେ ଲାଗିଛନ୍ତି । ପ୍ରକୃତରେ ଏକ ଅଜବ ଦେଶ, ଏକ ଅଜବ ଆକାଶ । ସେହି ଆକାଶରେ ତୁମେ ଇଚ୍ଛାବିହାର କରିପାରିବ ଓ ଅନ୍ୟ ସମସ୍ତଙ୍କୁ ମଧ ଇଚ୍ଛାବିହାର କରିବାକୁ ବାଟ ଛାଡ଼ିଦେବ । ଯାବତୀୟ ନୈତିକତା କ'ଣ ଏହିପରି ଏକ ଶୀର୍ଷଦେଶରେ ପହଞ୍ଚି ଆପଣାର ପରିପୂର୍ଣ୍ଣତା ଲାଭ କରିବ କି ?

ଅନେକ ବହିରାଗତ ମଣିଷଙ୍କୁ ଆମେରିକା ସତେଅବା ଏକ ଅରାଜକତା ପରି ହିଁ ପ୍ରତୀତ ହେବ । ଆମେରିକାର ପ୍ରାୟ ଏହିଭଳି ଏକ କଳ୍ପନା କରି ଇଉରୋପରେ ମଧ ବହୁତ ଲୋକ ଆମେରିକାକୁ ଡ଼ରନ୍ତି, ଆମେରିକାର କଥା ପଡ଼ିଲେ ଭାରି ନାକ ଟେକନ୍ତି । ଆମେରିକାର ଚେର ବୋଲି କିଛି ନାହିଁ ବୋଲି ଅପବାଦ ଦିଅନ୍ତି । ଏକଥା ନିରାଟ ସତ୍ୟ ଯେ ଆମେରିକାରେ କେତେ କ'ଣ ଭାଙ୍ଗି ଯାଉଛି । ଘର, ପରିବାର, ଧର୍ମ, ଉପାସନା ପ୍ରଭୃତି ଯେତେ ଯାହା ବନ୍ଧନୀ ଭିତରେ ମଣିଷମାନେ କାଳକାଳରୁ ନିଜକୁ ଲୁଚାଇ ରଖିବାକୁ ଚେଷ୍ଟା କରି ଆସିଛନ୍ତି, ଆମେରିକାରେ ସେସବୁ କ୍ରମେ ଢ଼ିଲା ହୋଇ ଯାଉଛି । ଆମେରିକା କହିଲେ ଅନେକ ସମୟରେ ପୃଥିବୀଯାକର ନୂଆ ପୀଢ଼ିଟା ସବାଆଗ ଏହି ଢ଼ିଲା ହୋଇଯିବାର ଅବ୍ୟାପାରଟାକୁ ହୁଏତ ବୁଝୁଛି । ସବୁଆଡ଼େ ସମସ୍ତେ ଖାଲି ଗୋଟିଏ ଗୋଟିଏ କେନ୍ଦ୍ର ଭଳି ଦିଶୁଛନ୍ତି ଏବଂ ପରିଧି ବୋଲି କେଉଁଠି କିଛି ବି ନାହିଁ- ଇଏ ପୁଣି କି ସଂସାର, ଏବଂ ଇଏ ପୁଣି କି ସଂହତି । ଆମେରିକାରେ ଆପଣ ଏକାବେଳେକେ ସବୁକିଛି ଦେଖିବାକୁ ପାଇପାରିବେ । ସେଇ ଯୋଉଦିନ ସନ୍ଧ୍ୟା ସମୟରେ ଆମେ ନଈ ଏପାଖରୁ ନିଉୟର୍କକୁ ଦେଖିବାକୁ ଯାଇଥିଲୁ,- ଦିନ ରତରତ ହେଉଥିବାର ସେହି ଝାପ୍‌ସା ଝାପ୍‌ସା ସମୟରେ ଜଣେ ଯୁବକ ଆମ ହାତରେ ଗୋଟିଏ ପ୍ରଚାରପତ୍ର ଦେଇଗଲା । ସଂଜବାଟୋଇ ସମସ୍ତଙ୍କୁ ସିଏ ସେଇଟି ବାଣ୍ଟି ବାଣ୍ଟି ଯାଉଥିଲା । ମୁଁ ଘରେ ଆସି ସେଇଟିକୁ ପଢ଼ି ଜାଣିଲି ଯେ, ପୃଥିବୀରେ ଶାନ୍ତି ଏବଂ ଏକୀକରଣର ପ୍ରତିଷ୍ଠା ପାଇଁ ପରିବାରଗୁଡ଼ିକୁ ଐକ୍ୟବଦ୍ଧ କରି ଆରମ୍ଭ ହୋଇଥିବା ଏକ ଅଭିଯାନ ପକ୍ଷରୁ ସେହି ପ୍ରଚାରପତ୍ରଟି ବଣ୍ଟା ଯାଉଥିଲା । ଆମେ ମନ କଲେ ପାରିବାରିକ ଚିରମୂଲ୍ୟ ଗୁଡ଼ିକୁ କିପରି ଆମ ଦୈନନ୍ଦିନ ଜୀବନରେ

ଅଭ୍ୟାସ କରିପାରିବା, ସେଥିଲାଗି ବନ୍ଧୁପରି ପରାମର୍ଶ ଦିଆ ଯାଇଥିଲା । ପରିବାର ଭାଙ୍ଗି ଭାଙ୍ଗି ଯାଉଛି ବୋଲି ଯେତେବେଳେ କୁହାଯାଉଛି, ଆମେ କାହିଁକି ପାରିବାରିକ ଜୀବନରେ ଅନ୍ୟପ୍ରକାରେ ବଞ୍ଚିବାକୁ ଚେଷ୍ଟା ନକରିବା, ସମ୍ପୃକ୍ତ ସମସ୍ତଙ୍କୁ ସେହିଭଳି ଏକ ଆହ୍ୱାନ ଦିଆ ଯାଇଥିଲା । ଅନୁରୋଧ କରା ଯାଇଥିଲା, ଆମେ ସେଥିପାଇଁ ଏକାକୀ ଅଥବା ସମ୍ମିଳିତ ଭାବରେ ପ୍ରତ୍ୟହ ଏକ ଶପଥ ନେବା ଯେ, ଆମେ ନିଜର ବୈବାହିକ ଜୀବନକୁ ଭଗବାନଙ୍କ ପାଖରେ ସମର୍ପଣ କରିବା ଏବଂ ସତକୁ ସତ ଭଲ ପାଇ ଶିଖିବା । ସବୁଦିନ ପାଇଁ ନିଜର ବିବାହ ପ୍ରତି ବିଶ୍ୱସ୍ତ ରହିବା । ନିଜ ପିଲାମାନଙ୍କୁ ଶୁଦ୍ଧତା ଶିକ୍ଷା ଦେବା । ପୃଥିବୀରେ ଯେପରି ଯଥାର୍ଥ ଶାନ୍ତି ଓ ସଦ୍‌ଭାବ ସମ୍ଭବ ହୋଇ ପାରିବ, ଜାତି ଓ ଧର୍ମର କୌଣସି ବାରଣ ନରଖି ଏହିସବୁ ଆଦର୍ଶର ଅନୁଶୀଳନ ନିମନ୍ତେ ବନ୍ଧୁ ପରି ନିର୍ଦ୍ଦେଶ ଦିଆ ଯାଇଥିଲା । ଏବର ଏହି ପୁରୁଣା ପରିବାରର ଛାଞ୍ଚଟା ଭାଙ୍ଗିଯିବ, ଏକ ନୂଆ ପାରିବାରିକତା ଦ୍ୱାରା ଆଗାମୀ ସମ୍ବନ୍ଧ ଗୁଡ଼ିକର ନିରୂପଣ ହେବ,- ପ୍ରଚାରପତ୍ରଟିକୁ ପଢ଼ିବାବେଳେ ମୁଁ ସେହି କଥା ଚିନ୍ତା କରୁଥିଲି ।

ଆମେରିକାର ବିଶ୍ୱବିଦ୍ୟାଳୟ ଗୁଡ଼ିକ, - ସତେଅବା ସମସ୍ତ ବିଶ୍ୱଲାଗି ସମର୍ପିତ ଓ ଉଦ୍ଦିଷ୍ଟ ଗୋଟିଏ ଗୋଟିଏ ବିଦ୍ୟାଳୟ ପରି ବୋଧ ହୋଇଥାନ୍ତି । ଯେଉଁ ବିଶ୍ୱଟି ଆସୁଛି, ତାହାରି ବିଷୟରେ ସେଠାରେ କେତେ ନା କେତେ କଳ୍ପନା ଜଳ୍ପନା ଲାଗି ରହିଥାଏ । ଯେଉଁ ବିଶ୍ୱଟି ବର୍ତ୍ତମାନର ନାନା ଅଡୁଆ ଭିତରେ ପଡ଼ି ଯାଇଥିବାରୁ ନାନାଭାବେ ଛଟପଟ ହେଉଛି, ସେଇଟି ବିଷୟରେ ସେଠାରେ କେତେ ବିଚାର ଏବଂ ବିଶ୍ଳେଷଣ ହେବାରେ ଲାଗିଛି । ରଦି ଅଧାପକ ଅବଶ୍ୟ ପଲ ପଲ ରହିଥିବେ, ଯେଉଁମାନେ କି ଅଭ୍ୟସ୍ତ ରୁଟିନ୍‌ଟା ଭିତରେ କେଡ଼େ ହର୍ଷୋତ୍‌ଫୁଲ୍ଲ ଭାବରେ ବାନ୍ଧି ହୋଇ ରହିଥିବେ । ତଥାପି, ହାତରେ ଗଣି ଦେଇପାରିଲା ଭଳି ସଂଖ୍ୟାରେ ଅଳପ ହେଲେ ମଧ, ପ୍ରାୟ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ କେତେ ଜଣ ଚକ୍ଷୁଷ୍ମାନ୍ ବ୍ୟକ୍ତି ଅବଶ୍ୟ ରହିଥିବେ, ଯେଉଁମାନଙ୍କର ଚେରଗୁଡ଼ିକ ସ୍ଥାନୀୟ ଭୂମିଟିରେ ଲାଗିଥିଲେ ମଧ ନିଜ ଆଗ୍ରହର ଶାଖାଗୁଡ଼ିକୁ ସେମାନେ ବିଶ୍ୱତୋମୁଖ କରି ରଖିଥିବେ । ପୃଥିବୀ ବିଷୟରେ ଅଦ୍ୟତମ ଜ୍ଞାନ, ଅଦ୍ୟତମ ଅନୁଭବ ତଥା ଅଦ୍ୟତମ ଅନ୍ତର୍ଦୃଷ୍ଟି ଗୁଡ଼ିକ ଅଧିକତଃ କାହିଁକି ସେହି ବିଶ୍ୱବିଦ୍ୟାଳୟର ମନସ୍ୱୀମାନଙ୍କ ଦ୍ୱାରା ସମ୍ଭବ ହେଉଛି, ତାହାର ଶ୍ରେୟ ଆମେ କାହାକୁ ଦେବା କେଜାଣି ? ଗଣତନ୍ତ୍ରର ଶାସନରେ ଗଣର ଦୌରାତ୍ମ୍ୟ ପ୍ରବଳ ହେବାର ଆଶଙ୍କାଗୁଡ଼ିକ ସର୍ବଦା ନିହିତ ହୋଇ ରହିଥାଏ ସତ, ମାତ୍ର ତଦ୍ୱାରା ଜ୍ଞାନାନୁଶୀଳନର ହୃଦୟରେ କେଉଁସବୁ ଗବାକ୍ଷ କାହିଁକି ଖୋଲିଯାଏ କେଜାଣି, ଜ୍ଞାନକୁ ହିଁ ଜୀବିକା ତଥା ଶ୍ରଦ୍ଧାରେ ପରିଣତ କରିଥିବା କେତେଜଣ ବ୍ୟକ୍ତିଙ୍କର ସତେଅବା ଏକ ଦ୍ୱିତୀୟ ଜନ୍ମର ସୌଭାଗ୍ୟ ଆସି ପହଞ୍ଚିଯାଏ ଏବଂ ସେମାନଙ୍କୁ ମାଧ୍ୟମ କରି ଅନାଗତ ବି କଥା କହିବାକୁ ଆରମ୍ଭ କରେ । ଆପଣ ଯଦି ଆମେରିକାର ରାଜନୀତି, ଆମେରିକାର ଅସ୍ତ୍ରଖମାର ଏବଂ ଆମେରିକାର ଫୁଙ୍କୁଲାପଣ ଗୁଡ଼ାକରେ ସତକୁ

ସତ ଭାରି ବିରକ୍ତି ହୋଇ ପଡ଼ିଥିବେ, ତେବେ ସେତେବେଳେ ଆମେରିକାର ଭିନ୍ନ ଭିନ୍ନ ବିଶ୍ୱବିଦ୍ୟାଳୟରେ ବିଶ୍ୱନିୟତିକୁ ବୁଝିବାର ପ୍ରୟାସ କରୁଥିବା ମନସ୍ୱୀ ଅଧ୍ୟାପକମାନଙ୍କ ଉପରେ ଦୃଷ୍ଟିପାତ କରିବାକୁ କ୍ଷଣେ ଅଟକିଯିବେ । ତେବେ, ଆପଣ ପୃଥିବୀରେ ଯେଉଁ ଦେଶର ଅଧିବାସୀ ହୋଇଥାନ୍ତୁ ପଛକେ, ବହୁ ଅର୍ଥରେ ଆମେରିକା ମଧ୍ୟ ଆପଣଙ୍କର ନିଜର ଦେଶ, ନିଜର ଭୂମି ଓ ନିଜର ପୁଞ୍ଜି ପରି ଭାରି ମନେ ହେବ । ଆପଣ ଅଭ୍ୟନ୍ତ ସୀମାଗୁଡ଼ିକୁ ଡ଼େଇଁ ଖୁସୀ ହୋଇ କୁଆଡ଼େ ମନ କୁଆଡ଼େ ଯାଇ ପହଞ୍ଚିଯିବେ ; ଆମେରିକାର ନିୟତିଟି ଭିତରେ ସତେଅବା ନିଜର ନିୟତିଟିକୁ ପ୍ରତ୍ୟକ୍ଷ କରିବେ ଏବଂ ସେଥିରୁ ଆଶ୍ୱାସନା ଲାଭ କରିବେ, ଭାରି ଦମ୍ଭ ପାଇବେ । ଏତିକି କ'ଣ କମ୍ କଥା ?

ଆମେରକାର ସେହି ମୂଳ ସମ୍ବିଧାନଟିରେ ଲିପିବଦ୍ଧ ହୋଇ ରହିଛି : ସୃଷ୍ଟିର କର୍ତ୍ତା ସବୁ ମଣିଷଙ୍କୁ ସମାନ କରି ତିଆରି କରିଛନ୍ତି ଏବଂ ସେମାନଙ୍କୁ ସମାନ ଅଧିକାରମାନ ମଧ୍ୟ ପ୍ରଦାନ କରିଛନ୍ତି । ସେହି ଅଧିକାରଗୁଡ଼ିକ ସହିତ ଆଦୌ କୌଣସି ସାଲିଶ୍ କରାଯାଇ ପାରିବନାହିଁ । ଏହି କଥାଟି କ'ଣ ଖାଲି ଆମେରିକାର କଥା ନା ଖାଲି ପାଶ୍ଚାତ୍ୟ ସଭ୍ୟତାର କଥା ? ଇଏ ତ ଆମ ସମସ୍ତଙ୍କର କଥା । ସମଗ୍ର ମନୁଷ୍ୟସମୂହର ପ୍ରାଣର କଥା । ଆମେରିକା ସମେତ ଆମେ କେହି ସେହି ପରିପୂର୍ଣ୍ଣ ସ୍ଥିତିରେ ଆସି ମୋଟେ ପହଞ୍ଚି ପାରିନାହୁଁ । ପୃଥିବୀର ତିନିଚଉଠ ଦେଶ ତ ସେହି ସ୍ଥିତିଟି ଠାରୁ ଶତାବ୍ଦୀ ଶତାବ୍ଦୀ ପଛରେ ଯାଇ ପଡ଼ିଛନ୍ତି ଓ ଦିନେ ସିନ୍ଦୂର ଫାଟିବ ବୋଲି ବିଶ୍ୱାସ ମଧ୍ୟ କରୁନାହାନ୍ତି । ତଥାପି, ଆମେରିକାର ଆସ୍ପୃହାକାଶରେ ଜଳୁଥିବା ସେହି ଉଜ୍ଜ୍ୱଳ ଜ୍ୟୋତିଷ୍କଟି ଆମର ଏଠା ଆକାଶରୁ ଅନାଇଲେ ମଧ୍ୟ କେଡ଼େ ପ୍ରଭାଯୁକ୍ତ ହୋଇ ଦେଖାଯାଉଛି । ଆମ ଆକାଶଟା ସେହି ଆକାଶକୁ ଲାଗିକରି ରହିଛି ବୋଲି ଭାବିବା ବେଳକୁ ଭିତରୁ କେତେ ପ୍ରତ୍ୟୟ ଓ ବଳ ଆସିଯାଉଛି । ବିଶ୍ୱଯାକ ଆମେ ସମସ୍ତେ ଯେପରି ସେହି ଗୋଟିଏ ମନ୍ଦିରଚୂଡ଼ା ଉପରେ ଲୟ ରଖି ବାଟ ଚାଲି ଆସିଛୁ, ଏବଂ ପରସ୍ପରଠାରୁ ପ୍ରେରଣା ଲାଭ କରୁଛୁ । ଏବଂ, ଆବ୍ରାହାମ୍ ଲିନ୍‌କଲ୍‌ନଙ୍କର ସେହି ଅବିସ୍ମରଣୀୟ ଘୋଷଣାଟି, ''ଲୋକଙ୍କର, ଲୋକଙ୍କ ଦ୍ୱାରା ଏବଂ ଲୋକଙ୍କ ନିମନ୍ତେ ଯେଉଁ ଶାସନ, ତାହା କଦାପି ପୃଥିବୀପୃଷ୍ଠରୁ ଲୋପ ପାଇ ଯିବନାହିଁ''- ଏଇଟି କ'ଣ କେବଳ ସେଇ ଗୋଟିଏ ଦେଶ ଆମେରିକାର ସମ୍ପତ୍ତି ? ସେହିପରି ଏକ ଶାସନକୁ ସାକାର କରିବାର ପ୍ରୟାସ ଏବଂ ବିଶ୍ୱବାସୀ ପ୍ରତ୍ୟେକ ମନୁଷ୍ୟକୁ ସେଥିଲାଗି ଅନୁରୂପ ଭାବରେ ସଚେତନ ଓ ବଳଶାଳୀ କରି ଆଣିବାର ଏକ ମହାଭିଯାନ, -ମନୁଷ୍ୟର ଇତିହାସ କହିଲେ ମର୍ମତଃ ତାହାକୁ ହିଁ ବୁଝାଇବ ନାହିଁ କି ? ଏହି ଦୃଷ୍ଟିରୁ ବିଚାର କରି ଦେଖିଲେ ଅର୍ଥାତ୍ ସେହି ଶିଖରଟି ଉପରେ ଲୟ ରଖି ବାଟ ଚାଲିଥିବା ମଣିଷମାନଙ୍କୁ ଆମେରିକା ମୋଟେ ବହୁଦୂର ବୋଲି ମନେ ହେବନାହିଁ । ଜାତୀୟତାବାଦ ଆମେରିକାରେ ରହିଛି, ପୃଥିବୀର ଆଉ ଆଉ ଦେଶମାନଙ୍କରେ ରହିଛି । ଆମେରିକାର ରାଷ୍ଟ୍ରୀୟ ଶାସନ ନାନାବିଧ ତାତ୍କାଳିକ ଭୟ ହେତୁ ପୃଥିବୀଯାକର ମଣିଷମାନଙ୍କୁ ପଘାରେ ଯୋଚି ଚଳାଇବ ବୋଲି କିଛିଦ୍

ନିର୍ବୋଧତା ଦେଖାଉଛି ଏବଂ ଆମେରିକାର ସମ୍ପଦାଧିକ୍ୟ ସେହି ନିର୍ବୋଧତାକୁ ସାହାଯ୍ୟ ବି କରୁଛି ସତ, ତଥାପି ଜାତୀୟତାବାଦଟା ଯେ ମନୁଷ୍ୟ- ଅକାଂକ୍ଷାରେ ଶେଷ ଡ଼େରା ମୋଟେ ନୁହେଁ ଏବଂ ଅସଲ ସମ୍ପନ୍ନତାଗୁଡ଼ିକ ସହିତ ବଞ୍ଚିବାକୁ ହେଲେ ପୃଥିବୀଯାକ ଆମ ସମସ୍ତଙ୍କୁ ଯେ ଆହୁରି ଆଗକୁ ଯିବାକୁ ପଡ଼ିବ, ସମ୍ଭବତଃ ଆମେରିକାରେ ହିଁ ସେହି କଥାଟି ସତେଅବା ସର୍ବାଧିକ ପରିମାଣରେ ପ୍ରତ୍ୟକ୍ଷ ହୋଇ ଅନୁଭୂତ ହେବାପରି ମନେ ହେଉଛି ।

ଆରିଜୋନା ରାଜ୍ୟର ରାଜଧାନୀ ଫୋନିକ୍ସ ଠାରୁ ମୋଟରଗାଡ଼ୀ ରାସ୍ତାରେ ରାଜ୍ୟର ଉତ୍ତର ସୀମାରେ ଅବସ୍ଥିତ ଗ୍ରାଣ୍ଡ କାନିଅନ୍ ଆଡ଼କୁ ଯାଉଥିବା ସମୟରେ ଓକ୍ କ୍ରୀକ୍ ପର୍ବତାଞ୍ଚଳ ପଡ଼େ । ତାହାରି ପଡ଼ିଶାରେ ସେଡ଼ନ୍ ବୋଲି ଥାନଟିଏ, କ୍ରମେ ଏକ ସାନ ସହରବସତି ରୂପେ ଗଢ଼ି ଉଠିଲାଣି । ସେହିଠାରୁ ବାଟ ଭାଙ୍ଗି ଦଶ ବାର ମାଇଲ୍ ପୂର୍ବକୁ ଗଲେ ଆପଣ ହଠାତ୍ ଗୋଟିଏ ଗୀର୍ଜା ପାଖରେ ଆସି ହାବୁଡ଼ିଯିବେ । ରାସ୍ତା କଡ଼କୁ ନବେ ଫୁଟର ଗୋଟିଏ କ୍ରସ୍ ଠିଆ ହୋଇଛି । ଗୀର୍ଜାକୁ ଆସିବାକୁ ହେଲେ ଆପଣଙ୍କୁ ବୁଲାଣି ବାଟ ଉଠି ଦ୍ୱାରଦେଶରେ ପହଞ୍ଚିବାକୁ ପଡ଼ିବ । ଗୀର୍ଜାଟିର ନାଆଁ ରଖାଯାଇଛି Chapel of the Holy Cross,- ଏବଂ ୧୯୫୬ ମସିହାରେ ଏହି ସ୍ଥାନଟିର ରୁଦ୍ରକାନ୍ତ ରମଣୀୟତା ଦ୍ୱାରା ମୁଗ୍ଧ ହୋଇ ଏଣେ ବୁଲି ଆସିଥିବା ଏକ ଆମେରିକାନ୍ ଦମ୍ପତି କ'ଣ ଭାବି ଏଠାରେ ଚାପେଲ୍‌ଟିକୁ ତିଆରି କରାଇ ଦେଇଥିଲେ । ସାନ ଜାଗାଟିଏ,- ମାତ୍ର ଚତୁର୍ଦ୍ଦିଗର ପୃଥ୍ୱୀଦୃଶ୍ୟଟି ମଣିଷକୁ ଏକ ଅପୂର୍ବ ଧ୍ୟାନସଚେତନ ଅବସ୍ଥାରେ ନିମେଷ ମାତ୍ରକେ କେତେ କୁଆଡ଼େ ନେଇ ଅବଶ୍ୟ ଛୁଆଇ ଆଣିବ । ସେହି ଦମ୍ପତିଙ୍କର ଉକ୍ତି ଅନୁସାରେ, ଅସଲ ଚାପେଲ୍ ଅର୍ଥାତ୍ ଉପାସନାଥଳଟିଏ ସତକୁ ସତ ଏଭଳି ହେବା ଉଚିତ୍, where God can be worshipped as a contemporary,- ଯେଉଁଠାରେ କି ତୁମେ ଈଶ୍ୱରଙ୍କୁ ଜଣେ ସମସାମୟିକ କରି ଦେଖିପାରିବ, ସମ୍ମୁଖରେ ଦେଖିବ, ଚତୁର୍ଦ୍ଦିଗରେ ଦେଖିବ ଏବଂ ତୁମରି ସହିତ ହିଁ ଚରାଚର ବିହରଣ କରୁଥିବା ପରି ପ୍ରତ୍ୟକ୍ଷ କରିପାରିବ । ସେଠାରେ ଯାଇ ମୁଁ ସତକୁ ସତ ବିସ୍ମିତ ହେଲି । ଉଦୁଉଦିଆ ଖରାବେଳଟା, ବହୁ ମାଇଲ୍ ଧରି ବିସ୍ତୃତ ହୋଇ ରହିଥିବା ଶୂନ୍ୟଟାକୁ ଚକଚକ ସୂର୍ଯ୍ୟକିରଣ ପୂର୍ଣ୍ଣ କରି ରଖିଥାଏ, ଶୀତଳ ପବନ ଘୁ' ଘୁ' ହୋଇ ଚିତ୍ତକୁ ଦୋହଲାଇ ଦେଇ ଯାଉଥାଏ ; ତଥାପି ସବୁକିଛି ଥିର ହୋଇ ରହିଥାଏ, ଭିତରେ ତଥା ବାହାରେ ସବୁକିଛି ତାଙ୍କର ଏହି ସଂସାର ଭିତରେ ସବୁ କଥା ମାନିବା ନିମନ୍ତେ ସତେଅବା ଉପବୀତ ପରିଧାନ କରି ଅପେକ୍ଷା କରିଥାଏ । ସତକୁ ସତ ଏପରି ଏକ ମୁହୂର୍ତ୍ତରେ ସବୁକିଛି କେବଳ contemporary ରୂପେ ହିଁ ଅନୁଭବ ହେବ । ସବୁ ଏକ ଉନ୍ମୀଳନ ପରି ଲାଗିବ । ଭାରତବର୍ଷ ଆମେରିକାଠାରୁ ଆଦୌ ଦୂର ବୋଲି ଲାଗିବନାହିଁ ।



# ପରିଶିଷ୍ଟ

ଭାରତବର୍ଷକୁ ଆସିବା ପାଇଁ ବାଟ ଖୋଜି ବାହାରି ଏକ ଅନ୍ୟ ଭୂଖଣ୍ଡରେ ଆସି ପହଞ୍ଚି ଯାଇଛନ୍ତି ବୋଲି ଜାଣିବାପରେ ମଧ୍ୟ ଆମେରିକା ସହିତ ଭାରତବର୍ଷର ନାମଟାକୁ ଯୋଡ଼ିକରି ରଖିବା ସକାଶେ କଲମ୍ବସ୍‌ଙ୍କର କାହିଁକି ଆଗ୍ରହ ହୋଇଥିଲା, କେବଳ କଲମ୍ବସ୍ ହିଁ ସେହି କଥାଟିର ଉତ୍ତର ଦେଇ ପାରନ୍ତେ । ଆମେରିକା ଭୂଭାଗଟିର ଆଦ୍ୟ ଅଧିବାସୀମାନଙ୍କୁ ଏବେ ମଧ୍ୟ ଲୋହିତ ଭାରତୀୟ ବୋଲି କୁହାଯାଉଛି । ଆହୁରି ଆଶ୍ଚର୍ଯ୍ୟ ଲାଗିବା ଉଚିତ୍ ଯେ ସେହି ଅଧିବାସୀମାନେ ମଧ୍ୟ କ'ଣ ଭାବି ସେହି ଲୋହିତ ଭାରତୀୟ ନାମଟିକୁ ସ୍ୱୟଂ ସ୍ୱୀକାର କରି ନେଇଛନ୍ତି । ସେତେବେଳେ କିଏ କଳ୍ପନା ବି କରିଥିଲା ଯେ, ବିଂଶ ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧରୁ ଶହ ଓ ହଜାର ସଂଖ୍ୟାରେ ପ୍ରକୃତ ଭାରତବର୍ଷର ଅଧିବାସୀମାନେ ଆମେରିକାରେ ଆସି ପହଞ୍ଚିବେ ? ଆମେରିକାରେ ହିଁ ସ୍ଥାୟୀ ଭାବରେ ବସବାସ କରି ରହିବା ନିମନ୍ତେ ସେମାନେ ଭାରତ ଛାଡ଼ିଥିବେ ? ମାତ୍ର, ସେହି ଘଟଣାଟି ପ୍ରକୃତରେ ଘଟିଲା ।  ଆଗେ ଆମେରିକା ହିଁ ଭାରତବର୍ଷ ଦ୍ୱାରା ଆକୃଷ୍ଟ ହୋଇଥିଲା । ଭାରତବର୍ଷର ଶାସ୍ତ୍ର ଓ ଭାରତବର୍ଷର ଅଧ୍ୟାତ୍ମ ହିଁ ଆମେରିକାକୁ ଆକୃଷ୍ଟ କରିଥିଲା । ଏହି ଶତାବ୍ଦୀର ଆରମ୍ଭରେ ଯାଇ ଭାରତବର୍ଷ ଆମେରିକା ପ୍ରତି ଆକୃଷ୍ଟ ହେଲା । ତଥ୍ୟ କହୁଛି ଯେ ୧୯୦୧ ଖ୍ରୀଷ୍ଟାବ୍ଦରେ ଭାରତରୁ କିଛି ଛାତ୍ର ଅଧ୍ୟୟନ କରିବାଲାଗି କାଲିଫର୍ଣ୍ଣିଆରେ ଆସି ପହଞ୍ଚିଥିଲେ ; ୧୯୦୪ ମସିହାରେ ଆହୁରି ଚାରିଜଣ ଆସିଲେ ଏବଂ, ୧୯୦୮ ବେଳକୁ ଏମାନଙ୍କର ସଂଖ୍ୟା ସତରରେ ପହଞ୍ଚି ପାରିଥିଲା । ହଁ, ସେତେବେଳେ ଓ ତା'ପରେ ଭାରତବର୍ଷରୁ ଅଧିକରୁ ଅଧିକ ସଂଖ୍ୟାରେ ଯେଉଁମାନେ ଆମେରିକାକୁ ଆସୁଥିଲେ, ସେମାନେ ମୁଖ୍ୟତଃ ପାଠ ପଢ଼ି ଆସୁଥିଲେ । ପାଠ ପଢ଼ିସାରି ନିଜ ଦେଶକୁ ଫେରି ଯାଉଥିଲେ । ହୁଏତ ଆଉକେତେ ଆମେରିକାରେ ରହି ଯାଉଥିଲେ । କିଏ ବିବାହ କରି ରହି ଯାଉଥିଲେ ବା କିଏ ସାମ୍ବାଦିକତା କରି ମଧ୍ୟ ରହି ଯାଉଥିଲେ । ଭାରତବର୍ଷ ସ୍ୱାଧୀନ ହେବା ପରେ ସରକାର ବି ବହୁଳ ସଂଖ୍ୟାରେ ମେଧାବାନ୍ ଛାତ୍ରଙ୍କୁ ଉଚ୍ଚତର ଜ୍ଞାନପ୍ରାପ୍ତି ନିମନ୍ତେ ନିଜ ଖର୍ଚ୍ଚରେ ଆମେରିକା ପଠାଇଥିଲେ । ସେମାନେ ତ ଫେରିଯିବେ ବୋଲି ଚୁକ୍ତିପତ୍ର ଲେଖି ଆମେରିକାକୁ ଆସୁଥିଲେ । ଅଧିକାଂଶ ଫେରି ଯାଉଥିଲେ । ଫେରିଯାଇ ଆମେରିକାର ଅନୁଭୂତି ବିଷୟରେ ବହି ମଧ୍ୟ ଲେଖୁଥିଲେ । ଏହିଭଳି ଦୁଇ ତିନିଖଣ୍ଡ ବହି ସେତେବେଳେ ଓଡ଼ିଆ ଭାଷାରେ ମଧ୍ୟ ଲେଖା ହୋଇଥିଲା ।

ଯାହା ଜଣାଯାଉଛି, କେତେଜଣ ଫେରି ନଯାଇ ସେହି ଆମେରିକାରେ ହିଁ ରହିଯିବେ ବୋଲି ନିଷ୍ପତ୍ତି କରିଥିଲେ । ସେଇଠି ରହିଗଲେ । ସେଠାକାର ନାଗରିକତ୍ୱ ଗ୍ରହଣ କଲେ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ସେହି ସମୟର ଭାରତବର୍ଷର

ତୁଳନାରେ ବାହ୍ୟ ସୁଯୋଗ ଏବଂ ସମ୍ଭାବନାଗୁଡ଼ିକ ଆମେରିକାରେ ହିଁ ଅଧିକ ଭଲ ଥିଲା । ଭଲ ରୋଜଗାର, ଅଧିକ ସ୍ୱୀକୃତି । ଏବଂ, ସମ୍ଭବତଃ ସବୁଠାରୁ ବଡ଼ ପ୍ରଲୋଭନ ବା ଆକର୍ଷଣଟା ହେଉଛି, ସେଠି ସବୁକିଛି ଗୁଳା ଭିତରେ ପଡ଼ି ସ୍ଥିରନିର୍ଦ୍ଦିଷ୍ଟ ହୋଇ ରହିଥିଲା । ତୁମେ ସେଠି ରହିଲେ କେବଳ ଗୁଳାଟି ଭିତରେ ପଶିଯିବ ଏବଂ ଖାପ ଖାଇଯିବ । ସଫଳ ହେବ, ଅଳପରେ ସବୁକିଛି ମିଳିଗଲା ବୋଲି ଅନୁଭବ କରିପାରିବ । ସେତେବେଳକୁ ଭାରତବର୍ଷ ଏକ ନୂଆ ଦେଶ, ସବୁକିଛି ନୂଆ ହୋଇ ଗଢ଼ା ହେଉଥାଏ,- ରାଜନୀତି ମଧ ବସ୍ତୁତଃ ତରଳ ଅବସ୍ଥାରେ ରହିଥାଏ ଏବଂ ସେହି ଅନୁସାରେ ଯୋଜନାଗୁଡ଼ିକରେ ନାନା ଅନିଶ୍ଚିତତା ଭର୍ତ୍ତି ହୋଇ ରହିଥାଏ । ବ୍ୟକ୍ତିଗତ ଭାବରେ ନିଜ ଜୀବିକାଟିଏ ଆଦରି ନେଇ ଛିଡ଼ା ହେବାକୁ ମନ କଲେ ତୁମକୁ ବହୁ ପ୍ରତିକୂଳ ପରିସ୍ଥିତି ସହିତ ଲଢ଼ିବାକୁ ପଡ଼ିବ, କେତେ ଅପରିସ୍ଥିତିକୁ ମଧ କାଟି ଆଗକୁ ଯିବାକୁ ହେବ । ଗୋଟାଏ ଏଡ଼େ ବଡ଼ ଦେଶ ନୂଆ ହୋଇ ଗଢ଼ା ହେଉଥିବା ସମୟରେ ବ୍ୟକ୍ତିମାନଙ୍କୁ ମଧ ଦମ୍ଭ ହୋଇ ଛିଡ଼ା ହୋଇ ପାରିବାକୁ ହେଲେ ବହୁତ ବହୁତ ସୁରକ୍ଷା ଥିବା ଦରକାର, ଯାହାକି ଅବଶ୍ୟ ମିଳିବ ବୋଲି କଦାପି ସ୍ଥିରନିର୍ଭର ଭାବରେ ଆଶା କରି ହେଉନଥିଲା । ଆମେରିକାରେ ତ ଏସବୁ ପରିସ୍ଥିତିର ସମ୍ମୁଖୀନ ହେବାରେ କୌଣସି ପ୍ରଶ୍ନ ହିଁ ନଥିଲା । ହୁଏତ ଏହିସବୁ କଥାକୁ ତରାଜୁରେ ପକାଇ କେତେ କିଏ ଓଜନ କରି ଦେଖିଥିବେ ଏବଂ ଆମେରିକାରୁ ଭାରତବର୍ଷକୁ ଫେରିବାକୁ ଇଚ୍ଛା କରିନଥିବେ । ଯେପରି ଅନୁମାନ କରି ହେଉଛି, ସେହି ପୁରୋଗାମୀମାନେ ହିଁ ଆମେରିକା ତରଫରୁ ପୋଷାହାତୀ ହୋଇ ଭାରତବର୍ଷର ଅନ୍ୟ ହାତୀମାନଙ୍କୁ ତେଣେ ମୁହାଁଇବା ନିମନ୍ତେ ପ୍ରେରଣା ଦେଇଥିବେ । ପୃଥିବୀର ଭାଗ୍ୟାରଣ୍ୟରେ ଆମେରିକା ହେଉଛି ପ୍ରଥମ ଦେଶ, ଯେଉଁଠି କି କିଆକନ୍ଦାର ଆଦୌ କୌଣସି ଅଭାବ ନଥାଏ । ତେଣୁ, ପ୍ରାୟ ପୃଥିବୀଯାକର ହାତୀମାନେ ଯେ ଆମେରିକା ଦ୍ୱାରା ଆକୃଷ୍ଟ ହୋଇଛନ୍ତି ଓ ଏବେ ମଧ ହେଉଛନ୍ତି, ସେଥିରେ ବିଚିତ୍ର ବୋଲି କହିବାକୁ ମୋଟେ କିଛି ନାହିଁ ।

ଭାରତବର୍ଷ ସ୍ୱାଧୀନତା ଲାଭ କଲାପରେ ଏଠି ପୃଥିବୀଟି ନବଯୌବନର ସେହି ଦୁଃସାହସମୟ ରାଜ୍ୟଟି ଭିତରେ ଯାଇ ପ୍ରବେଶ କରିଥିବା କେତେ କେତେ ସ୍ୱପ୍ନ ଦେଖିଥିବ । ନିଜ ଭିତରେ ଗୋଟିଏ ଦେଶର ନିୟତିକୁ ଅନୁଭବ କରୁଥିବା ମନୁଷ୍ୟମାନେ ଭାରତବର୍ଷର ବାହାର ଭାଗ୍ୟଟାକୁ ମଧ ନେଇ କେତେ ଚିତ୍ର ଆଙ୍କିଥିବେ ଏବଂ କେଡ଼େ ଖୁସୀ ହୋଇ ନିଜକୁ ସେଥିପାଇଁ ନିମିତ୍ତରୂପେ ତିଆରି କରିବା ସକାଶେ ବ୍ୟଗ୍ର ହୋଇ ପଡ଼ିଥିବେ । ସେମାନଙ୍କୁ ପ୍ରତ୍ୟେକ ଦିନର ସକାଳ ନୂଆ ଉଦ୍‌ଘାଟନଟିଏ ପରି ବୋଧ ହୋଇଥିବ । ପୃଥିବୀଯାକରୁ ଶଗଡ଼ ଶଗଡ଼ ଜ୍ଞାନ ଆଉ କୌଶଳ ବୋହି ଆଣି ଏଇଠି ଦୁଆରେ ଜମା କରିବାକୁ ମନ ହୋଇଥିବ ଏବଂ, କିପରି ଯଥାସମ୍ଭବ ଅଳପ ସମୟରେ ନିଜ କଳ୍ପନାର

ସେହି ନୂଆ ଭାରତର ଅଟ୍ଟାଳିକାଟିକୁ ଗଢ଼ି ଥୋଇଦେଇ ହେବ, ସେଥିଲାଗି ଚିତ୍ତ ଛନ ଛନ ହୋଇ ପଡ଼ିଥିବ । ନିଜର ଏହି ଘରକୁ ପୃଥିବୀର ଆଉ କୌଣସି ଦେଶ ସହିତ ତୁଳନା କରିବାକୁ ଆଦୌ ମନ ହୋଉନଥିବ । ଯେଉଁଟି ମୋ' ନିଜ ଘର, ଯାହାକୁ ମୁଁ ନିଜେ ଗଢ଼ିବି ଓ ଗଢ଼ିବାପାଇଁ ନିତି ତିଆରି ହେଉଥିବି, ତାକୁ ମୁଁ ପୃଥିବୀର ଆଉ କେଉଁ ଦେଶ ସହିତ କ'ଣ ପାଇଁ ତୁଳନା କରିବାକୁ ଯିବି ? ତଥାପି, ସେତେବେଳେ ଭାରତବର୍ଷରେ ଏପରି କେତେ କେତେ ମଧ୍ୟ ରହିଥିଲେ, ଯେଉଁମାନେ କି ନିଜ ଘରଟିକୁ ନିଜର ବୋଲି ଆଦରିନେବା ପୂର୍ବରୁ ପୃଥିବୀର ଅନ୍ୟ ଦେଶଗୁଡ଼ିକର ଗାରିମାମାନ ଦେଖି ଆକୁଳ ହୋଇ ପଡୁଥିଲେ । ସେଠି ତ ସବୁକିଛି ଅଛି : ଧନ, ସୁଖ, ସ୍ୱାଚ୍ଛନ୍ଦ୍ୟ, ଭବିଷ୍ୟତ ସବୁ ରହିଛି ବୋଲି ଭାବିଲା ମାତ୍ରକେ ସତେଅବା ଏକ ଅଭୁତପୂର୍ବ କାମସ୍ପର୍ଶ ଲାଭ କରୁଥିଲେ । ଭାରତବର୍ଷ ନାମକ ଏହି ଶୃଙ୍ଖଳା ସେଁତରା ଦେଶଟାରେ ପ୍ରକୃତରେ କୋଉଠି କ'ଣ ରହିଛି ବୋଲି ସେମାନେ ହୁଏତ କେତେ ପ୍ରଶ୍ନ କରିଥିବେ ଏବଂ ଏହି ଦେଶରୁ ନିଜ ଗୋଡ଼କୁ ଖସାଇ ନେବାର ପାଞ୍ଚ ବି କରିଥିବେ । ପ୍ରକୃତରେ ଭାରତବର୍ଷରେ ଆମେରିକା ତୁଳନାରେ କ'ଣ ରହିଛି ? ସେଠି ତ ବଜାର ପରି ସବୁ ଥୁଆହୋଇ ରହିଛି : ଯୋଗ୍ୟତାର ଆଦର ରହିଛି, ଯୋଗ୍ୟତାର ପ୍ରଦର୍ଶନ ଲାଗି ସୁଯୋଗଗୁଡ଼ିକ ମହଜୁଦ ହୋଇ ରହିଛନ୍ତି, ସାକ୍ଷାତ ଲକ୍ଷ୍ମୀ ହିଁ ସେଠି ଅମାରଘର ଗୁଡ଼ାକୁ ମେଲାଇଦେଇ ବସିଛନ୍ତି,- ଏହି ବାସ୍ତବ ସତ୍ୟଗୁଡ଼ାକୁ ନେଇ କଣ୍ଢେଇ କରି ଖେଳୁ ଖେଳୁ କେତେବେଳେ ଯେ ସେହିଆଡ଼େ ଗୋଡ଼ଟା ପୂରା ଖସିଗଲା, ସେକଥା ମୋଟେ କିଛି ଜାଣି ହେଲାନାହିଁ । ପ୍ରାୟ ସେତିକିବେଳେ ଆମେରିକା ବି କ'ଣ ପାଇଁ ଆଗନ୍ତୁକମାନଙ୍କ ପାଇଁ ନିୟମଗୁଡ଼ିକୁ ବେଶ୍ କୋହଳ କରି ଦେଇଥିଲା । ଭାରତରେ ସବୁକିଛିକୁ ମୂଳରୁ ଆରମ୍ଭ କରିବାରେ ଯେ ଏକ ଅତୁଳନୀୟ ଆନନ୍ଦ ରହିଛି ଏବଂ ତାହା ଅନେକ ଅଧିକ ପୁରୁଷାର୍ଥ ତଥା ଦୁଃସାହସର ଦାବୀ କରୁଛି, ସେହି କଥାଟି ଭୁଲି ହୋଇଗଲା । ଯେଉଁମାନେ ପାରିଲେ, ଆମେରିକାରେ ଯାଇ ପହଞ୍ଚିଗଲେ । ଆଦର ପାଇଲେ, ମନୋମତ ଥଳଗୁଡ଼ିକୁ ପାଇଗଲେ, ରହିଗଲେ ।

ଭାଗ୍ୟୋନ୍ନତିର ସିଡ଼ିରେ ଆମେରିକା ଏଠି ଯେଉଁମାନଙ୍କର ଆଖିକୁ ଉପର କାଠିରେ ଯାଇ ରହିଥିବାର ଦେଖାଗଲା, ଯେଉଁମାନେ ନିଜର ଶିକ୍ଷା, ଯୋଗ୍ୟତା ଏବଂ ସାମର୍ଥ୍ୟକୁ ଭାରତବର୍ଷରେ ଉପଯୁକ୍ତ ପ୍ରକାରେ କାମରେ ଲଗାଇ ଇପ୍ସିତ ଫଳ ପାଇପାରିବେ ବୋଲି ବିଶ୍ୱାସ କରି ପାରିଲେନାହିଁ, ସେମାନେ ଯାଇ ଆମେରିକାରେ ପହଞ୍ଚିଗଲେ । ଏଠୁ ବିରକ୍ତ ହୋଇ ଯାଇଥିଲେ । ତେଣୁ ସେଠାରେ ଅଧିକ ତ୍ୱରା ତଥା ତତ୍ପରତା ସହିତ ନିଜର ପ୍ରତିଷ୍ଠାରେ ଲାଗିପଡ଼ିଲେ । ଭିତରେ ବିଦ୍ୟା ରହିଥିଲା, ମଥାରେ ବୁଦ୍ଧି ଥିଲା,- ତେଣୁ ସଫଳତା ବି ହାସଲ କଲେ । ପ୍ରଥମେ ନିଶ୍ଚୟ ସଂଘର୍ଷ କରିବାକୁ ପଡ଼ିଥିବ । ଭାରତବର୍ଷରେ ସାମାଜିକ ଗଢ଼ଣଟା ଯେପରି, ଏଠାରେ ସଂଘର୍ଷ କଲେ ମଧ୍ୟ ନାନା ଅକାରଣରୁ

ମଣିଷମାନେ ଆଗକୁ ଯାଇ ପାରନ୍ତିନାହିଁ । ଆମେରିକାରେ ଅନ୍ତତଃ ସେଭଳି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିନଥିବ । ତେଣୁ,ଅଧିକ ସାଧୁତାର ସହିତ ନିଜ ନୈପୁଣ୍ୟର ପରିଚୟ ମଧ୍ୟ ଦେଇ ହୋଇଥିବ । ଆହୁରି ଅଧିକ ନିଷ୍ଠାର ସହିତ ନିଜକୁ ସଂଘର୍ଷ ଭିତରକୁ ଅବତୀର୍ଣ୍ଣ କରାଇ ନେବାପାଇଁ ସେଥିରୁ ପ୍ରୋତ୍ସାହନ ମିଳିଥିବ । ଏହିପରି ଭାବରେ ଆମେରିକାରେ ଭାରତୀୟମାନଙ୍କର ଭିଡ଼ ଜମି ଆସିଲା । ଡ଼ାକ୍ତରଖାନାରେ ଭାରତୀୟ, ଯନ୍ତ୍ରୋଦ୍ୟୋଗ ମାନଙ୍କରେ ଭାରତୀୟ, ବିଜ୍ଞାନଶାଳାରେ ଭାରତୀୟ, ଅଧ୍ୟାପନାର ଉଚ୍ଚତର କ୍ଷେତ୍ରମାନଙ୍କରେ ଭାରତୀୟ,- ଏହିପରି ଭାବରେ ଆମେରିକାର ସାଧାରଣ ଜୀବନରେ ଭାରତୀୟ ଉପାଦନଟି କ୍ରମେ ବେଶ୍ ସ୍ୱତନ୍ତ୍ର ଭାବରେ ବାରି ହୋଇ ପଡ଼ିଲା । ଆମେରିକାର ସମ୍ଭ୍ରାନ୍ତ ଧାଡ଼ୀମାନଙ୍କରେ ସକଳଥାନରେ ଭାରତୀୟମାନେ ଦୃଶ୍ୟମାନ୍ ହେଲେ । ଅଧିକାଂଶ ଆମେରିକାର ନାଗରିକ ହୋଇଗଲେ, ଖ୍ୟାତି ଅର୍ଜନ କଲେ । ଭାରତବର୍ଷରେ ଭୂଇଁଟାକୁ କାମୁଡ଼ି ପଡ଼ି ରହିଥିଲେ ପୂରା ଟାକୁଆ ହୋଇ ଯାଇଥାନ୍ତେ, କୋଉଠୁ ସବୁ ନାତ ଖାଇ ହୁଏତ କୋଉଠି ଯାଇ ପଡ଼ିଥାଆନ୍ତେ, ନାନାମତେ ଅପମାନିତ ହୋଇଥାନ୍ତେ,- ଭଲ ହେଲା, ସେମାନେ ତେଣୁ ନିସ୍ତାର ପାଇ ଚାଲି ଆସିଲେ, ନିଜର ପୂର୍ଣ୍ଣତର ପରିଚୟ ଦେଇ ପାରିଲେ,- ଜୀବନରେ ଏତିକି ଆଦୌ କମ୍ କଥା ନୁହେଁ । ବେଳେ ବେଳେ ଭାରତବର୍ଷ ଖୁବ୍ ମନେ ପଡୁଥିବ ; ଦ୍ୱିତୀୟ ଦାରପରିଗ୍ରହ ପରେ ଅଧିକ ଭଲରେ ରହିଥିବା ବେଳେ ମଫସଲରେ ଛାଡ଼ି ଆସିଥିବା ପ୍ରଥମ ପତ୍ନୀଟି ଯେପରି ବେଳେ ବେଳେ ଖୁବ୍ ମନେପଡ଼େ, ଭାରି ଅସ୍ଥିର ଲାଗେ ଅଥଚ ଦ୍ୱିତୀୟ ସାଆନ୍ତାଣୀଙ୍କ ଆଗରେ ସେଗୁଡ଼ାକ କିଛି କହି ହୁଏନାହିଁ, ଅନେକଙ୍କ ଜୀବନରେ ଏଗୁଡ଼ାକ ଯେ ଅଙ୍ଗେ ନିଭାଇବାକୁ ପଡୁନଥିବ, ସେକଥା କିଏ ମନା କରି ପାରିବ ?

ଭାରତରୁ ସମ୍ଭ୍ରାନ୍ତମାନେ ଯାଇ ଆମେରିକାକୁ ଆଦରି ରହିଯିବା ସଙ୍ଗେ ସଙ୍ଗେ ସେମାନଙ୍କ ଜୀବନର ଯାବତୀୟ ଗୁଜରାଣ ମେଣ୍ଟାଇବା ନିମନ୍ତେ କ୍ରମେ ଭାରତୀୟ ସଂସାରଟିଏ ମଧ୍ୟ ଯାଇ ଆମେରିକାରେ ପହଞ୍ଚିଛି । ତାହାକୁ ଆପଣ ସୌଭାଗ୍ୟ ବୋଲି କହିବେ ନା ଦୁର୍ଭାଗ୍ୟ ବୋଲି କହିବେ ? ସୌଭାଗ୍ୟ ଏଇଥି ସକାଶେ ଯେ ସେଠାରେ ଏତେ ଦୂରରେ ଥାଇ ମଧ୍ୟ ସମ୍ଭ୍ରାନ୍ତମାନଙ୍କୁ ଭାରତରେ ରହିଥିବା ପରି ଲାଗୁଛି, ଏବଂ ଦୁର୍ଭାଗ୍ୟ ଏଇଥିଲାଗି ଯେ ଏହି କାରଣରୁ ସେଠାରେ ଭାରତଟା ସତେଅବା ଅଲଗା ଚେନାଏ ହୋଇ ରହିଛି, ଆମେରିକା ସହିତ ମୋଟେ ମିଶି ପାରୁନାହିଁ । ସିଏ ପ୍ରକୃତରେ ଏକ ଅଜବ ଘଟଣା ଘଟିଥିବା ପରି ହୋଇଛି । ଆମେରିକାର ଧନ ଆପଣଙ୍କୁ ଆକର୍ଷଣ କଲା, ଆମେରିକାର ସୁଖ ଆପଣଙ୍କୁ ଆକର୍ଷଣ କଲା, ଉଚ୍ଚାଶାର ଉଜ୍ଜ୍ୱଳ ବେଲୁନ୍‌ଟା ଆପଣଙ୍କୁ ଏଠା ଘରଟାରୁ କେଡ଼େ ବାଗରେ ନେଇ ଆମେରିକାରେ ପହଞ୍ଚାଇ ଦେଲା । ଆପଣ ନିଜ ଲୋଭାସକ୍ତ ଅଦୃଷ୍ଟର ବୋଲ ମାନି ଆମେରିକା ଗଲେ ; ଆମେରିକା ଆପଣଙ୍କୁ ଥାନ

ଦେଲା, କାମ ଯୋଗାଇ ଦେଲା, ଅର୍ଥ ଆଣି ଦେଲା, ସୁଖର ବହୁ ଡ଼େଣା ଆପଣଙ୍କ ପାଇଁ ମେଲାଇଦେଇ ଗଲା । ଆପଣ ଭାଷାରେ, ପୋଷାକରେ, ଘର ସରଞ୍ଜାମରେ ଏବଂ ବାକୀ ସତରଟା ଯାକ ଠାଣିରେ ଏବଂ ମାଣିରେ ଆମେରିକାକୁ ଅନୁସରଣ କଲେ । ନିଜର ଏହି ଘଟାନ୍ତରକୁ ବୈଧ ବୋଲି ଦର୍ଶାଇ ପାରିବାକୁ ଆମେରିକାର ନାଗରିକ ହେଲେ ; ତଥାପି ଆମେରିକାକୁ ଗ୍ରହଣ କରି ପାରିଲେନାହିଁ । ଆମେରିକାରେ ଏକାବେଳେକେ ନିଜର ଅଲଗା ଚେନାଏ ସଂସାର ବସାଇ ସେଇଥିରେ ନିବୁଜ ହୋଇ ରହିଲେ । ଆମେରିକା ଆପଣଙ୍କର ନିଃଶ୍ୱାସପବନ ପରି ହୋଇ ରହିଲା, ଅଥଚ ଆପଣଙ୍କ ଭିତରେ କିଏ ଗୋଟାଏ ଏମିତି ନାକ ଟେକି ରହିଲା ଯେ ଆପଣ ନିଜକୁ ସତ ଅନ୍ୟ ଆମେରିକାବାସୀଙ୍କର ଯୂଥଟି ଭିତରେ ଏକାଠି ମିଶାଇ କଳ୍ପନା ବି କରି ପାରିଲେନାହିଁ । ଆମେରିକାର ଜାତୀୟ ପର୍ବଦିନ ମାନଙ୍କରେ ଆପଣ ନିଜ ଭିତରେ ଆଦୌ କିଛିହେଲେ ଅନୁଭବ କଲେନାହିଁ । ଯେଉଁମାନଙ୍କ ସହିତ ହୁଏତ ଏକା କୋଠରୀରେ ବସି କାମ କଲେ, ସେମାନଙ୍କ ସହିତ ଆଦୌ କୌଣସି ଅନ୍ତର୍ଗତ ସଂହତି ଅନୁଭବ କରି ପାରିଲେନାହିଁ । ସତେ ଯେପରି ଦୁଇଟା ଜୀବନ ବଞ୍ଚିଲେ ।

ଆଧୁନିକ ଜୀବନକୁ ବୁଝୁଥିବା ଶାସ୍ତ୍ରୀମାନେ ସମ୍ଭବତଃ ଏହିପରି କୌଣସି ଏକ ଦୁଃଖକୁ ନିଃସଙ୍ଗତା ବୋଲି କହୁଛନ୍ତି । ସଙ୍ଗୀ ଭର୍ତ୍ତି ହୋଇ ରହିଛନ୍ତି ଅଥଚ୍ ଆପଣ କାହାରି ସାଙ୍ଗ ହୋଇ ପାରୁନାହାନ୍ତି ; ଖାଇବା ବଢ଼ା ହୋଇ ରହିଛି, ଅଥଚ୍ ଆପଣ ଖାଇ ପାରୁନାହାନ୍ତି ; କହୁଛନ୍ତି, ନାଇଁ, ମୁଁ ଘରକୁ ଯାଇ ଖାଇବି । ତାହା ସହିତ ହୁଏତ ଆଉପ୍ରକାରେ ଦୁଃଖ ଆପଣଙ୍କୁ ଥାଇ ଥାଇ ଖେଞ୍ଚି ଦେଇ ଯାଉଥିବା ପରି ଲାଗୁଛି । ଆପଣ ସତେଅବା କାହାକୁ ଝୁରୁଛନ୍ତି : ଯୋଉ ଜୀବନଟିକୁ ଛାଡ଼ି ଦେଇ ଆସିଛନ୍ତି, ସେହି ଜୀବନଟିକୁ ଝୁରୁଛନ୍ତି, ଭାରତବର୍ଷରେ ଥିବା ଆପଣଙ୍କର ଗାଆଁ ଓ ବହୁ ସମ୍ବନ୍ଧର ସେହି ଅନ୍ୟ ବସତିଟିକୁ ଝୁରୁଛନ୍ତି । ଆପଣ ସିନା ତାକୁ ଛାଡ଼ି ଦେଇ ଆସିଲେ ଏବଂ ଆପଣାର ଦିବାସ୍ୱପ୍ନ ମୁତାବକ ଆମେରିକାରେ ସବୁକିଛି ପାଇଲେ, ଖଟିଲେ ଏବଂ ସବୁକିଛି ପାଇ ପାରିଲେ ଏବଂ ତଥାପି ଝୁରିହେଲେ । ଇଏ ପ୍ରକୃତରେ ବେଳେ ବେଳେ ଭାରି ଦୁଃଖଦାୟକ ବି ହୋଇପାରେ ଓ ରାଜନଅରରେ ଆପଣଙ୍କୁ ଯୋଗୀ କରି ରଖିପାରେ । ଆପଣ ଏଠାରେ ପ୍ରତିଷ୍ଠିତ ହୋଇ ନିଜର ପତ୍ନୀ ଓ ପରିଜନଙ୍କୁ ମଧ୍ୟ ଆମେରିକାକୁ ନେଇ ଆସିଲେଣି । ସେମାନେ ବି କ୍ରମେ ପ୍ରତିଷ୍ଠିତ ହେଉଛନ୍ତି, ଗୋଟିଏ ଗୋଟିଏ ଚନ୍ଦ୍ରମା ପରି ବଢୁଛନ୍ତି । ଆପଣଙ୍କ ସହିତ ଆମେରିକା ଠାଣିରେ କେଡ଼େ ନିଖୁଣ ଭାବରେ କାରବାର କରି ପାରୁଛନ୍ତି । ଏସବୁ ଦେଖି ଆପଣଙ୍କୁ ନିୟମତଃ ଭଲ ଲାଗନ୍ତା, ତଥାପି ଭଲ ଲାଗୁନାହିଁ । ସେମାନେ ଆପଣଙ୍କ ଯୋଗୁଁ ଏଠାରେ ଆଉକୁଆଡ଼େ ଆସି ପଶି ଗଲେନାହିଁ ତ ? ସେମାନେ ଯେପରି ସମସ୍ତେ ନିଜର ଆଖି ପାଇଯିବା ମାତ୍ରକେ ନିଜ ନିଜ ଜଙ୍ଗଲ ଭିତରେ ଯାଇ ପଶିଗଲେ,- ଆପଣ ଦେଖିଲେ, ଉପରେ ହୁଏତ ଖୁସୀ ହେଲେ,- ତଥାପି ଏଣିକି ଯେତେ ଚେଷ୍ଟା କଲେ ବି

ଆପଣ ଯେପରି ସେମାନଙ୍କ ପାଖରେ ପହଞ୍ଚି ପାରିବେନାହିଁ, ଆପଣଙ୍କୁ ଭାରି ସେହିପରି ଲାଗୁଛି । ପତ୍ନୀ ବା ପତି ବୋଲି ଆପଣ ଭାରତବର୍ଷରେ ଯାହାଙ୍କ ସହିତ ଏକାଠି ବାଟ ଚାଲିବେ ବୋଲି ଦିନେ ଜବାବ ଦେଇଥିଲେ, ଏଠି ଆମେରିକା ଆସି ଆପଣ ଏଠାରେ ମଧ୍ୟ ଏକାଠି ଗୋଟିଏ ଘରେ ରହିଛନ୍ତି, ଦୁହେଁ ମିହନ୍ତ କରି ଏହି ଗୋଟିଏ ଘରକୁ କେତେ ଅଣନିଃଶ୍ୱାସୀ ହେଲାପରି ତିଆରି କରୁଛନ୍ତି, ତଥାପି ଯେପରି ପରସ୍ପରର ପହୁଞ୍ଚ ବାହାରକୁ ଚାଲି ଯାଉଛନ୍ତି, ମୋଟେ କିଛି ଠଉରାଇ ପାରୁନାହାନ୍ତି । ଇଏ ମଧ୍ୟ ଏକ ସଂସାର, ମାତ୍ର ଏଥିରେ ଆପଣ କେଜାଣି କ'ଣ ପାଇଁ ଗୋଡ଼ତଳେ ମୋଟେ ମାଟି ରହିଥିଲା ପରି ଅନୁଭବ କରି ପାରୁଛନ୍ତି । ନିଜକୁ କିଛି ବୁଝାଇ ପାରୁନାହାନ୍ତି ।

ଆମେରିକାର ଆକର୍ଷଣରେ ଆମେରିକାକୁ ଆସିଥିଲେ ହୁଏତ ବ୍ୟାପାରଟି ଅନ୍ୟପ୍ରକାରର ହୋଇଥାନ୍ତା । ଆମେରିକାକୁ ଆସି ଧନରେ ଅଥବା ଖ୍ୟାତି ଅର୍ଜନରେ ସିଦ୍ଧ ଲାଭ କରିବା ଯଦି ମୁଖ୍ୟ ପ୍ରସଙ୍ଗ ହୁଏ, ତେବେ ପରିଣାମ ନିଶ୍ଚୟ ଯାହା ଅଧିକାଂଶ ଭାରତୀୟଙ୍କ ଜୀବନରେ ଆମେରିକାରେ ହୋଇଛି, ଅନେକତଃ ତାହା ହିଁ ହେବ । ଅନେକ ଏଭଳି ମଣିଷ ରହିଛନ୍ତି, ଯେଉଁମାନେକି କନିଆଁ ଦ୍ୱାରା ଆକର୍ଷିତ ନହୋଇ କନିଆଁ ସହିତ ମିଳୁଥିବା ମାଲମତା ଦ୍ୱାରା ହିଁ ଅଧିକ ଆକୃଷ୍ଟ ହୁଅନ୍ତି ! ଏମାନେ ଉପରେ କେଡ଼େ ଟହଟହି ଦିଶୁଥାନ୍ତି, ମାତ୍ର ଭିତରେ କେଉଁଠି ଏକ ଅବସାଦରେ ଘାରି ହୋଇ ବି ରହିଥାନ୍ତି । ଆମେରିକାରେ ବାସ କରୁଥିବା କେତେ ଲକ୍ଷ ଭାରତୀୟଙ୍କ ମଧ୍ୟରୁ କେତେଜଣଙ୍କ ପରେ ଆବ୍ରାହାମ୍ ଲିଙ୍କଲ୍‌ନ୍‌ଙ୍କର ଛବି ଥିବ, ତାଙ୍କର ଜୀବନୀ ପୁସ୍ତକଟିଏ ଥିବ କିମ୍ବା ଆମେରିକାର ଇତିହାସ ବହିଟିଏ ରହିଥିବ, ସେକଥାଟି ଏକ ଗଣନା ଦ୍ୱାରା ଅବଶ୍ୟ କହିହୁଅନ୍ତା । ଯେଉଁ ଦେଶରେ ମୁଁ ରତ୍ନ ଖୋଜି ଗଲି, ସେହି ଦେଶଟିକୁ ନିଜର କରି ପାରିଲିନାହିଁ ; ସେଠାରେ କାମ କଲି, ପଇସା ଅର୍ଜିଲି, ନିଜ ଆଖିରେ କେଡ଼େ ବଡ଼ ଓ କେଡ଼େ କଅଣ ପରି ଦେଖାଗଲି, - ଅଥଚ ଏହି ଘରଟିକୁ ନିଜର ଘର ବୋଲି ଗ୍ରହଣ କରି ପାରିଲିନାହିଁ, ଏଇଟା ପ୍ରକୃତରେ ଏକ ପ୍ରାଣଘାତୀ ଅବସ୍ଥା ହୋଇଥିବ । ଏବଂ, ଭିତରେ ଏହି ଲକ୍ଷ୍ମୀଛଡ଼ା ହୋଇଥିବାର ଭାବନାଟିକୁ ଚାପି ରଖିଥିବାର କ୍ଷତିପୂରଣ ସ୍ୱରୂପ ଭାରତୀୟ ଗୁଣୀମାନଙ୍କ ସହିତ ସେବାକାରୀ ଭାରତବର୍ଷର ଗୋଟାଏ ଏଡ଼େବଡ଼ ଖଣ୍ଡ ଆମେରିକାରେ ଯାଇ ହାଜର ହୋଇ ଗଲାଣି । ପଇସା ପର୍ଯ୍ୟାପ୍ତ ହୋଇ ରହିଲେ ତୁମର ମନଲାଖି ଘରଟା ମଧ୍ୟ ତୁମ ପଛରେ ଅବଶ୍ୟ ଯାଇ ପହଞ୍ଚିବ । ଭାରତୀୟମାନଙ୍କର ପ୍ରୀତ୍ୟର୍ଥେ ସେଥିଲାଗି ଏବେ ଯାବତୀୟ ପ୍ରକାରର ଦୋକାନ ଯାଇ ଆମେରିକାରେ ପହଞ୍ଚି ଗଲାଣି । ଗୋଟିଏ ଗାଆଁ ବସାଇଲେ ଏକ କାଳରେ ରାଜାମାନେ ଯେପରି ବ୍ରାହ୍ମଣ ଓ କରଣ ପରିବାରମାନେ ଚଳିବା ସକାଶେ କେତେ କେତେ ଘର ସେବାକାରୀ ଏବଂ ଦରକାରୀ ପାଟକର ଲୋକଙ୍କୁ ମଧ୍ୟ ନେଇ ବସାଉଥିଲେ, ଆମେରିକାରେ ଭାରତୀୟମାନଙ୍କର ସଂସାରରେ ପ୍ରାୟ ସେହିପରି ଗୋଟିଏ ଘଟଣା ମଧ୍ୟ ଘଟିଛି । ତେଣୁ, ଅଭାବ ମୋଟେ ଲାଗୁନାହିଁ, ଆମେରିକାରେ ଥାଇ ମଧ୍ୟ ଭାରତରେ ରହିଥିବା ପରି ଲାଗୁଛି ।

ଭାରତୀୟ ସବୁ ସରଞ୍ଜାମ ଯାଇ ଆମେରିକାରେ ଭାରତୀୟମାନଙ୍କ ନିମନ୍ତେ ଠୁଳ ହେଲାଣି । ଭାରତୀୟ ଭୋଜନର ଭଳି ଭଳି ଦୋକାନ ଖୋଲିଗଲାଣି । ଭୋଜନାଳୟ ଗୁଡ଼ିକ ଆକର୍ଷକ ଭାରତୀୟ ନାମକରଣ ଦ୍ୱାରା ଉପଭୋକ୍ତାର ଅନ୍ତର ଭିତରେ ସିଏ ଭାରତବର୍ଷରେ ହିଁ ରହିଥିବା ପରି ଭ୍ରମ ସୃଷ୍ଟି କରି ପାରୁଛି । ଏବଂ ସେହି ଭ୍ରମ ଅପାର ସୁଖର କାରଣ ହୋଇଛି । ଯୋଉ ମିଠାଇମାନେ ସମ୍ଭବତଃ ଭାରତବର୍ଷରେ ଆପଣଙ୍କୁ ଗୋଟାଏ ଜାଗାରେ ନମିଳି ପାରନ୍ତି, କିନ୍ତୁ ଆମେରିକାରେ ଅଲବତ ମିଳିଯିବେ । ଖାସ୍ତା କଚୁରୀ, ପୁରୀ ଆଉ ସିଙ୍ଗଡ଼ା ମିଳିବ, ଗରମ ଉଜ୍ଜ୍ୱଳ ବର୍ଣ୍ଣର ମନଲୋଭା ଜଲିପି ଚାହିବା ମାତ୍ରକେ କିଣି ହେବ, ରସଗୋଲା, ଗୋଲାପଜାମୁ, ଗଜା, ଖଜା, ବରଫି ଏବଂ ହାଲୁଆ ସର୍ବଭାରତୀୟ ସଂହତିର ପ୍ରତ୍ୟକ୍ଷ ପରିବେଶଟିଏ ସୃଷ୍ଟି କରି ଆପଣଙ୍କ ପାଇଁ ଗୋଟିଏ ବିପଣିରେ ହିଁ ଅପେକ୍ଷା କରି ରହିଥିବେ । ଏହିସବୁ ଚିଜ ପ୍ରତି ସେଠା ଆମେରିକାବାସୀ ଆକୃଷ୍ଟ ହେଲେଣି କି ନାହିଁ କେଜାଣି ? ହୁଏତ ତେବେ ଯାଇ ତାହାକୁ ଆମେରିକୀୟ ଭୋଜନସଂସ୍କୃତିର ଏକ ଅଙ୍ଗ ରୂପେ ସ୍ୱୀକାର କରି ନିଆଯାଇ ପାରନ୍ତା । କେତେଜଣ ଗୋରା ବା ଆଫ୍ରିକୀୟ ଆମେରିକାବାସୀ ସକାଳେ ଦୋଷା, ବରା ବା ଇଡ଼ଲି ଭୋଜନ କରୁଥିବେ କେଜାଣି ? ନିଜର ଖାଦ୍ୟ ବିଷୟରେ ଆମେରିକାର ଅଧିକାଂଶ ଭାରତୀୟ ଯେପରି ଅନମନୀୟ ଭାବରେ ଗୃହମୁହାଁ ହୋଇ ରହିଛନ୍ତି, ମନେ ହେଉଛି, ଆହୁରି ବହୁକାଳ ପର୍ଯ୍ୟନ୍ତ ସେମାନେ ସେହିପରି ଅଲଗା ଗୁଳ୍ମ ଜଙ୍ଗଲଟିଏ ହୋଇ ରହିଥିବେ । ମୂଳ ବରଗଛଟିର ଓହଳଟିଏ ମଧ ହୋଇ ପାରିବେନାହିଁ ।

ଭାରତୀୟମାନଙ୍କର ପସନ୍ଦ ଲାଗି ସେହିପରି ଅଲଗା ଅଲଗା ଦୋକାନ । ସେଠାରେ ଆପଣ କେବଳ ଅଥବା ମୁଖ୍ୟତଃ ଭାରତୀୟମାନେ ବ୍ୟବହାର କରୁଥିବା ସରଞ୍ଜାମଗୁଡ଼ିକୁ ପାଇବେ । କେତେ କିସମର ଚାଉଳ ଏବଂ କେତେ କିସମର ଡ଼ାଲି ପାଇବେ,କେତେ କିସମର ଭାରତୀୟ ଶୈଳୀରେ ପ୍ରସ୍ତୁତ ହୋଇଥିବା ଆଚାର ପାଇବେ,ପାମ୍ପଡ଼ ଓ ବଡ଼ି ପାଇବେ, ଜିରା, ପାନମହୁରୀ, ସୁଣ୍ଠି,ସୋରିଷ, ଧନିଆ,ହଳଦୀ ମଧ ପାଇବେ । ମୁଣ୍ଡରେ ଲଗାଇବା ସାଦା ଏବଂ ବାସନା ତେଲ, ଶିଗେ କାଇ ପାଉଡ଼ର, ଭାରତରେ ତିଆରି ବାସନା ସାବୁନ୍,ଆୟୁର୍ବେଦୀୟ ଔଷଧ ବା ହଜମୀ ମୋଦକ, ମୁଖରୋଚକ ସୁପାରି, ପାନପରାଗ ଏବଂ ମହ ମହ ମାଦକସୃଷ୍ଟିକାରୀ ତମାଖୁ, - ଦୋକାନ ଭିତରେ ଆପଣଙ୍କ ନିମନ୍ତେ ସବୁ ଚିଜ ସୁସଜ୍ଜିତ ହୋଇ ରହିଥିବ । ହଁ, କୋଉ ଦୋକାନରେ ଶାଢ଼ୀ ଜମା ହୋଇଥିବ, ସଲୱାର୍, କମିଜ୍ ଏବଂ ଦୋପଟ୍ଟା ମଧ ଥିବ । ଏହିସବୁ ଦୋକାନ ଭିତରେ ପଶିଯାଇ ଚତୁର୍ଦ୍ଦିଗକୁ ଚାହିଁ ଦେଖିଲେ ଆପଣ ପ୍ରାୟ ସୁନିଶ୍ଚିତ ହୋଇଯିବେ ଯେ ଏହି ରୀତିରେ ହିଁ ହୁଏତ ଯୁଗ ଯୁଗ ଅତିବାହିତ ହୋଇଯିବ ଏବଂ ତଥାପି ଭାରତୀୟମାନେ ଏଠାରେ ଆମେରିକାରେ ଥାଇ ମଧ ଆମେରିକାକୁ ମୋଟେ ଆଦରି ନଥିବେ । ସେମାନେ ଲୁଧିଆନା, ପୁନା କିମ୍ବା ଦୁର୍ଗାପୁରରେ ଥିବାଭଳି ଭାବୁଥିବେ । ନିଜକୁ ଆମେରିକୀୟ ବୋଲି

କହିବା ବେଳକୁ କେମିତି ଅମ୍ଳ ଅମ୍ଳ ଅନୁଭବ କରୁଥିବେ । ସେହି ଆଦ୍ୟ କାଳରେ କଲମ୍ବସ୍ ଏହି ଭୂମିର ମୂଳ ବାସିନ୍ଦା ଯେଉଁମାନଙ୍କୁ ଭାରତୀୟ ବୋଲି କହିଥିଲେ, ସେମାନଙ୍କୁ ସିଏ ଖ୍ରୀଷ୍ଟିଆନ୍ କରିଦେବେ ବୋଲି ନିଜ ଦେଶ ସ୍ପେନ୍‌ରୁ ବାହାରିବା ସମୟରୁ ହିଁ ଆଣ୍ଟ କରି ଆସିଥିଲେ । ଆମେରିକାର କପାଳରେ ବିଂଶ ଶତାବ୍ଦୀରେ ଏମିତି ପଲେ ଭାରତୀୟ ଆସିବେ, ଯେଉଁମାନେ କି ବଉଁଶ ଭିତରେ ଗଣା ହୋଇ ମଧ୍ୟ ଭିନ୍ନପାକ ହୋଇ ରହିବାକୁ ହିଁ ଅଡ଼ି ବସିଥିବେ,- ଏକଥା ଜାଣିଥିଲେ କଲମ୍ବସ୍‌ଙ୍କ ମନରେ କିଭଳି ପ୍ରତିକ୍ରିୟାମାନ ହୋଇଥାଆନ୍ତା କେଜାଣି ? ଆମେରିକାରୁ ଆସିଥିବାର ପାଞ୍ଚଶହ ବର୍ଷପରେ ଆଫ୍ରିକୀୟ କଳାମାନଙ୍କର ଆମେରିକା ଦେଶରେ ମୂଳ ଚେ଼ରଟିର ପ୍ରାୟ କିଛିହେଲେ ନାହିଁ । ପାଞ୍ଚଶହ ବର୍ଷ ପରେ ଭାରତୀୟମାନେ ବି କ'ଣ ଏହିପରି ଏବପରି ଅଲଗା ଗୋଠ ହୋଇ ରହିଥିବେ ? ଖାସ୍ ଆମେରିକାବାସୀ ସେହି ଅଲଗା ଗୋଠଟାକୁ ସେତେବେଳେ କିଭଳି ଆଖିରେ ଦେଖୁଥିବେ କେଜାଣି ? ସେତେବେଳର କଥାଟିକୁ ଏବେ ଭାବିବାକୁ ମଧ୍ୟ କମ୍ ଆଗ୍ରହୋଦ୍ଦୀପକ ଲାଗିବନାହିଁ ।

ଅନୁସନ୍ଧାନରୁ ଜଣାପଡୁଛି ଯେ, ଅଧିକ ଦିନ ଆମେରିକାରେ ରହିବା ପରେ ଭାରତୀୟମାନଙ୍କର ଦେହର ଧାତୁଟା ସବାଆଗ ସତ ଆମେରିକୀୟ ମାନଙ୍କର ଦେହ ପରି ହୋଇଯାଉଛି । ଆମେରିକାରେ ଯେଉଁ ରୋଗମାନେ ପ୍ରାୟ ଚକ୍ରବର୍ତ୍ତୀ ହୋଇ ମନୁଷ୍ୟମାନଙ୍କ ଉପରେ ରାଜତ୍ୱ କରୁଛନ୍ତି, ଆମେରିକାରେ ବସବାସ କରୁଥିବା ଭାରତୀୟମାନଙ୍କୁ ମଧ୍ୟ ସେହିସବୁ ରୋଗ ଅଧିକ ଆକ୍ରାନ୍ତ କଲାଣି । ଅର୍ଥାତ୍ ସେଠାରେ ଥିବା ଭାରତୀୟମାନଙ୍କର ଦେହରେ ଆସି ପଶିବାକୁ ସେମାନଙ୍କୁ କ୍ରମେ ଅଧିକ ଅନୁକୂଳତା ପ୍ରାପ୍ତ ହେଲାଣି । ମଧୁମେହ, ହୃଦ୍‌ଯନ୍ତ୍ରର ନାନା ବେରାମ, ଅତ୍ୟୁଭେଜନା (Hypertension) ପ୍ରଭୃତି ତେଣିକାର ରୋଗ ଭାରତୀୟମାନଙ୍କ ଦେହକୁ ଆସିବାକୁ ଭାରି ପସନ୍ଦ କଲେଣି ।

କର୍ମ, କର୍ମରୁ ଅର୍ଥୋପାର୍ଜନ, ତା'ପରେ ଭୋଜନ ଏବଂ ତା'ପରେ ମନୋରଞ୍ଜନ । ମନୋରଞ୍ଜନ ନଥିଲେ ଆପଣ ଆଧୁନିକ ଜୀବନକୁ ମୋଟେ ଆଧୁନିକ ବୋଲି କହିବାକୁ ମନ କରିବେନାହିଁ । ଆଧୁନିକ ଜୀବନର ପ୍ରଖର ଦଉଡ଼ରେ ଧାଉଁ ଧାଉଁ ଜୀବନଟାରେ କୋଉଠାରେ କ'ଣ କଣା ହୋଇଯାଏ କେଜାଣି, କେବଳ ମନୋରଞ୍ଜନ ଦ୍ୱାରା ହିଁ ତାହାର ଭରଣା କରିବାକୁ ପଡ଼ିଥାଏ । ଆମେରିକାରେ ଭାରତୀୟ ଚ଼ଳଚିତ୍ର ଦେଖାଉଥିବା ନିୟମିତ ପ୍ରଦର୍ଶନଘର ଗୁଡ଼ିକ ସବୁଠାରେ ରହିଛି । ଯେଉଁଠାରେ ଗଦାଏ ଭାରତୀୟ ରହିଛନ୍ତି, ସେଠାରେ ରହିଛି । ମାତ୍ର, ବ୍ୟାପାରଟିକୁ ଅଧିକ ସୁଲଭ କରିବାକୁ କ୍ୟାସେଟ୍‌ର ବିପୁଳ ବିପଣିମାନ ମେଲାଇ ଦିଆ ହୋଇଛି । ଭାରତୀୟ ସଂଗୀତଗୁଡ଼ିକର କ୍ୟାସେଟ୍ ଏବଂ ଭାରତୀୟ ଚ଼ଳଚ଼ିତ୍ର ଗୁଡ଼ିକର କ୍ୟାସେଟ୍ । ଆପଣଙ୍କର ରୁଚି ଅନୁସାରେ ଆପଣଙ୍କୁ ସଙ୍ଗୀତର କ୍ୟାସେଟ୍ କିଣିବାକୁ ମିଳିପାରିବ । ଆପଣଙ୍କ ବାଛନ୍ଦ ପସନ୍ଦର ଗୀତ ବି ମିଳିବ

ଏବଂ, ଆପଣଙ୍କୁ ମୋଟେ ଭଲ ଲାଗୁନଥିବା ଅଥଚ୍ ଆପଣଙ୍କର ପୁତ-ପୌତ୍ରାଦିଙ୍କୁ ଭଲ ଲାଗୁଥିବା ସଙ୍ଗୀତ ମଧ୍ୟ ଆପଣ ଫରମାସ ଦେଇ କିଣିବାକୁ ପାଇପାରିବେ । ଚ଼ଳଚ଼ିତ୍ରର କ୍ଷେତ୍ରରେ ମଧ୍ୟ ଠିକ୍ ସେହିକଥା । ଏପରି କୌଣସି କ୍ୟାସେଟ୍ ହୋଇଥିବା ହିନ୍ଦୀ ଚ଼ଳଚ଼ିତ୍ର ନାହିଁ, ଯାହାକି ଆପଣଙ୍କୁ ଦୋକାନରେ ନମିଳିବ । ଖାଲି ହିନ୍ଦୀ ନୁହେଁ, ପଞ୍ଜାବୀ, ତେଲୁଗୁ ଓ ତାମିଲ ଆଦି ମଧ୍ୟ ମିଳିପାରିବ । ଏବଂ, ଏଗୁଡ଼ିକୁ ଆପଣ ମୋଟେ କିଣିବେ ନାହିଁ । ଭଡାରେ ନେଇପାରିବେ । ଅଭିଧାନର ଅକ୍ଷର ଅନୁସାରେ ଆପଣ ଆଖି ବୁଲାଇ ଆଣିବା ମାତ୍ରକେ ଥାକମାନଙ୍କରେ ଆପଣଙ୍କର ଇପ୍ସିତ କ୍ୟାସେଟ୍‌ଟିକୁ ବା କ୍ୟାସେଟ୍‌ଗୁଡ଼ିକୁ ଅବଶ୍ୟ ପାଇଯିବେ । ନିଜର ଘରେ ତ ଦୂରଦର୍ଶନ ଯନ୍ତ୍ରରେ ଚ଼ଳଚ଼ିତ୍ର ଦେଖି ପାରିବାର ଅନ୍ୟ ଯନ୍ତ୍ରଟି ମଧ୍ୟ ଖଞ୍ଜାହୋଇ ରହିଥିବ । ଦୋକାନରେ ଖାତାଟିଏ ଥିବ ଓ ଜଣେ ନିୟମିତ ଗରହାକ ହିସାବରେ ସେଥିରେ ଗୋଟିଏ ପୃଷ୍ଠାରେ ଆପଣଙ୍କର ନାଆଁ ରହିଥିବ । ଦୋକାନୀ ସେଇଠି ତାରିଖ ପକାଇ ଆପଣଙ୍କର ନାଆଁଟି ଲେଖିଦେବ ଓ ଆପଣଙ୍କୁ ଆପଣ ବାଛିଥିବା କ୍ୟାସେଟ୍‌କୁ ଆଣି ଦେଇଦେବ । ଆପଣ ତାହାକୁ ଦିନେ ବା କେତେଦିନ ପାଇଁ ଘରକୁ ନେଇ ପାରିବେ । ମାମୁଲି ଶୁଳ୍କ ଦେବାକୁ ପଡ଼ିବ । ଗୋଟିଏ କ୍ୟାସେଟ୍ ସକାଶେ ମାତ୍ର ଗୋଟିଏ ଡଲାର୍ ବା ତାଠାରୁ ଆହୁରି କମ୍ ଦେବାକୁ ପଡ଼ିବ ।

ଏହିପରି ଭାବରେ ଆପଣ ପ୍ରତ୍ୟହ ନିଜ ଘରେ ଗୋଟିଏ ବା ଦୁଇଟି ଫିଲ୍ମ ଦେଖିପାରିବେ । ବିଶେଷତଃ ଯଦି ଆପଣଙ୍କର ଘରେ ଏପରି ମହିଳା କିମ୍ବା ଆହୁରି ଅନ୍ୟମାନେ ଥିବେ, ଯେଉଁମାନେ କି କାମକୁ ଯାଉନଥିବେ, ସେମାନେ ସମସ୍ତେ ସମୟ ଚଳଚିତ୍ର ଦେଖି ଆନନ୍ଦରେ କାଟିଦେଇ ପାରିବେ । ନହେଲେ, ବିରାଟ ବିରାଟ ଆପାର୍ଟମେଣ୍ଟର ଦୁଇବଖରିଆ ଗୁମ୍ଫାଗୁଡ଼ିକରେ ଦିନମାନ ନିକିମା ବସି ସେମାନେ ନିଶ୍ଚୟ ପାଗଳ ହୋଇ ଯାଉଥାଆନ୍ତେ । ଆମେରିକାର ଦୂରଦର୍ଶନରେ ତ କୋଡ଼ି କୋଡ଼ି ଚ୍ୟାନେଲ୍, ସେଥିରୁ ଗୋଟିଏ ଭାରତବର୍ଷର ପରିବାର ଗୁଡ଼ିକ ପାଇଁ ସ୍ୱତନ୍ତ୍ର ଭାବରେ ରଖାଯାଇଛି । ରବିବାରକୁ ରବିବାର ସେଥିରେ ଲଗାତାର କେତେ ଘଣ୍ଟା ଧରି ହିନ୍ଦୀ କାର୍ଯ୍ୟକ୍ରମ ରହିଥାଏ । ସେଥିରେ ମଧ୍ୟ ହିନ୍ଦୀ ଚ଼ଳଚ଼ିତ୍ର ଥାଏ, ସଂଗୀତ ଥାଏ, ନାଟକ ଓ ଫାର୍ସ ରହିଥାଏ । ସଂବାଦ ମଧ୍ୟ ଥାଏ । ରବିବାରଟି ଛୁଟୀ ଦିନ, ତେଣୁ ବିଶେଷ ଚିନ୍ତା କରି ଏହିପରି ବ୍ୟବସ୍ଥାଟିଏ କରା ଯାଇଥିବ । ଏତଦ୍‌ବ୍ୟତୀତ ମଝିରେ ମଝିରେ ବିଭିନ୍ନ ଅଞ୍ଚଳରେ ସଂଗଠିତ ଅନ୍ୟାନ୍ୟ ମନୋରଞ୍ଜନର ବ୍ୟବସ୍ଥା ମଧ୍ୟ ହୋଇଥାଏ । ତଦ୍ଦ୍ୱାରା କେତେ ସଂସ୍ଥାକୁ ପ୍ରଚୁର ଅର୍ଥ ଉପାର୍ଜନ କରିବାରେ ସୁଯୋଗ ମଧ୍ୟ ମିଳିଯାଏ । ଭାରତବର୍ଷରୁ ଅଭିନେତାମାନେ ସଂଖୁଳା ହୋଇଯାଆନ୍ତି । ସଂଗୀତକାରମାନେ ଯାଆନ୍ତି । ବିଭିନ୍ନ ସ୍ଥାନରେ ବୁଲି ବୁଲି କାର୍ଯ୍ୟକ୍ରମମାନ କରନ୍ତି । ପକେଟ ଭର୍ତ୍ତିକରି ଦେଶକୁ ଫେରନ୍ତି । ଲତା ମଙ୍ଗେସ୍‌କର ଯାଆନ୍ତି, ଆଶା ଭୋଁସ୍‌ଲେ ଯାଆନ୍ତି, ପଂଜାବୀ ଏବଂ ଦକ୍ଷିଣୀ କଳାକାରମାନେ ମଧ୍ୟ ଯାଆନ୍ତି । ସେଥିପାଇଁ ଯଥାସମ୍ଭବ ବହୁ ପୂର୍ବରୁ ବିଜ୍ଞାପନ କରିବାକୁ ପଡ଼ିଥାଏ । ଏହି ଆୟୋଜନଗୁଡ଼ିକର ପଛରେ

ସତେଅବା ଏକ ର୍ୟାକେଟ୍ ପୂରା ସମୟ ସକ୍ରିୟ ହୋଇ ରହିଥିବା ପରି ମନେ ହୋଇଥାଏ । ସେହି ସକ୍ରିୟତା ଯୋଗୁଁ ହିଁ ନିରାଟ ଶୀତଦିନକୁ ଛାଡ଼ିଦେଲେ ବର୍ଷର ଅନ୍ୟ ସକଳ ସମୟରେ ଆମେରିକା କୌଣସି ନା କୌଣସି ଅଞ୍ଚଳରେ ଭାରତୀୟ କଳାକାର ମାନଙ୍କର ଗସ୍ତକ୍ରମ ଖୁବ୍ ଲାଗି ରହିଥାଏ । ମୋତେ ଖଣ୍ଡିଆ ଲାଗେନାହିଁ ।

ଭାରତୀୟମାନେ ବସବାସ କରି ରହିବା ସଙ୍ଗେ ସଙ୍ଗେ ଆମେରିକାରେ ସେହି ବସତିଗୁଡ଼ିକୁ ପରିଧିକରି ମନ୍ଦିରମାନେ ମଧ୍ୟ ରହିଛନ୍ତି । ମନ୍ଦିରରେ ବିଭିନ୍ନ ଦେବତାଙ୍କର ପ୍ରତିଷ୍ଠା କରାଯାଇଛି । ସେମାନଙ୍କର ଆହ୍ନିକ ନୀତିଗୁଡ଼ିକୁ ସମ୍ପନ୍ନ କରିବା ସକାଶେ ପୂଜକମାନେ ମଧ୍ୟ ଭାରତବର୍ଷରୁ ଆସିଛନ୍ତି । ଖୁବ୍ ଧୂମ୍‌ଧାମ୍‌ରେ ପର୍ବାଦିର ପାଳନ କରାଯାଉଛି । ପ୍ରାୟ ଶହେବର୍ଷ ତଳେ ବେଦାନ୍ତ ହିଁ ଭାରତବର୍ଷର ଅସଲ ଧର୍ମ ବା ଆଭିମୁଖ୍ୟ ବୋଲି ପ୍ରଚାର କରିବାକୁ ସ୍ୱାମୀ ବିବେକାନନ୍ଦ ଆମେରିକା ଆସିଥିଲେ । ସେତେବେଳେ ଭାରତୀୟ ବାସିନ୍ଦା ଆମେରିକାରେ କେହି ନଥିଲେ । ସ୍ୱାମୀଜୀ ପ୍ରଧାନତଃ ଆମେରିକାବାସୀଙ୍କୁ ହି ସେହି ସନ୍ଦେଶଟିକୁ ଦେଇଥିଲେ । କିଛି ଆମେରିକାବାସୀ ହିଁ ସେତେବେଳେ ତାଙ୍କର ସମ୍ପର୍କରେ ଆସିଥିଲେ, ତାଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଅନୁପ୍ରାଣିତ ମାନଙ୍କର ପ୍ରୟୋଜନ ପୂରଣ କରିବାକୁ ସ୍ୱାମୀଜୀ ସେତେବେଳେ ଏହି ଆମେରିକାରେ କେତୋଟି ବେଦାନ୍ତକେନ୍ଦ୍ର ମଧ୍ୟ ସ୍ଥାପନ କରିଥିଲେ । ଭାରତୀୟ ହିନ୍ଦୁମାନଙ୍କର ଯେ ଏତେଭଳି ଦେବତା ରହିଛନ୍ତି ଏବଂ ପ୍ରତ୍ୟେକଙ୍କ ନିମନ୍ତେ ଯେ ସ୍ୱତନ୍ତ୍ର ପୂଜାବିଧିମାନ ରହିଛି, ସାଧାରଣ ଆମେରିକାବାସୀ ଏହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ହିଁ ଭାରତରୁ ଏତେ ଏତେ ସଂଖ୍ୟାରେ ଜନସମୂହ ଯାଇ ସେଠାରେ ବସବାସ କରିବାପରେ ହୁଏତ ଜାଣିବାକୁ ପାଇଲେ । ଏବେ ସେମାନେ ସତକୁ ସତ କୋଉଟାକୁ ପ୍ରକୃତ ହିନ୍ଦୁଧର୍ମ ବୋଲି ବିଚାର କରୁଥିବେ କେଜାଣି ? ବେଦାନ୍ତ ମାର୍ଗ ସମଗ୍ର ପୃଥିବୀରେ ମାର୍ଗଦର୍ଶକ ହୋଇ ପାରିବ ବୋଲି ସ୍ୱାମୀ ବିବେକାନନ୍ଦ ସେତେବେଳେ ଆମେରିକାରେ କହି କେତେ କେତେ ଲୋକଙ୍କୁ ଚମତ୍କୃତ କରି ଦେଇଥିବେ । ଭାରତୀୟ ଜୀବନକୁ ମଧ୍ୟ ସେହି ମାର୍ଗଟି ଇତିହାସରେ କେବେ ପ୍ରକୃତରେ ଅନୁପ୍ରେରିତ କରିଥିଲା କି ନାହିଁ, ସେହି ବିଷୟରେ ମଧ୍ୟ ଏକ ବିତର୍କର ସମ୍ଭାବନା ରହିଛି । ଭାରତବର୍ଷରେ ପ୍ରାୟ ସବୁ ଯୁଗରେ ଏହି ଭୂମିର ଶତକଡ଼ା ନବେରୁ ଅଧିକ ଭାଗ ମନୁଷ୍ୟଙ୍କୁ ବିବଶ କରି କାମୁଡ଼ି ଧରିଥିବା ପୌତ୍ତଳିକତାକୁ ହିଁ ଏକ ସମର୍ଥକ ସମଗ୍ରାବରଣ ଦେଇ ଢାଙ୍କି ରଖିବାରେ ପ୍ରଧାନତଃ ଶାସ୍ତ୍ରରେ ଲେଖା ହୋଇ ରହିଥିବା ବେଦାନ୍ତ ଯୁଗେ ଯୁଗେ ଭାରତୀୟମାନଙ୍କର ହୁଏତ ଅଧିକ କାମରେ ଲାଗିଛି । ଯୁକ୍ତରାଜ୍ୟ ଆମେରିକାରେ ବର୍ତ୍ତମାନ ପୃଥିବୀର ପ୍ରାୟ ସବୁଯାକ ଧର୍ମର ଅନୁଗାମୀମାନେ ଆସି ରହିଲେଣି । ସେମାନେ ଆମେରିକା ଦେଶର ନାଗରିକତ୍ୱକୁ ଗ୍ରହଣ କରିନେଲେଣି । ସେମାନେ ବର୍ତ୍ତମାନ ଯେଝା ବାଟ ଯିଏ ଚାଲୁଛନ୍ତି । ବା, ଆହୁରି ଖୋଲି କହିଲେ, ଯେଝା ପଇତାକୁ ଯିଏ ବଡ଼ ନିଷ୍ଠାର ସହିତ ମାନିବାରେ ଲାଗିଛନ୍ତି ଏବଂ

ଯେଝା ଠାକୁରଙ୍କୁ ଯିଏ ପୂଜୁଛନ୍ତି । ଆମେରିକାରେ ହୁଏତ ଆହୁରି କିଛି ଘଟନ୍ତା, ଯାହା ଫଳରେ କି ସମସ୍ତେ ପରସ୍ପରର ଅଧିକ ନିକଟକୁ ଆସନ୍ତେ ଓ ନିଜ ଠାକୁରମାନଙ୍କର ମାୟାରୁ ମୁକ୍ତ ହୋଇ ପରସ୍ପର ମଧ୍ୟରେ ଆଉ କିଛିକୁ ଖୋଜନ୍ତେ । ଗଣତନ୍ତ୍ର ଉପରେ ଭିତ୍ତି କରି ଚାଲୁଥିବା ଆମେରିକୀୟ ଜୀବନ ଏହି ପ୍ରକ୍ରିୟାରେ ଯେ ପ୍ରଭୂତ ପରିମାଣରେ ସାହାଯ୍ୟ କରନ୍ତା, ସେଥିରେ କୌଣସି ସନ୍ଦେହ ନାହିଁ ।

ଏହି ଶତାବ୍ଦୀରେ ଯେଉଁମାନେ ଭାରତବର୍ଷରୁ ଯାଇ ଆମେରିକାରେ ନିଜର ନୂଆ ଜୀବିକାଗୁଡ଼ିକୁ ଧରିଛନ୍ତି ଏବଂ ସେହି ଜୀବିକାଗୁଡ଼ିକ ଅଧିକ ଦୃଢ ହୋଇ ପାରିବ ବୋଲି ଆମେରିକାର ନାଗରିକତ୍ୱକୁ ଗ୍ରହଣ କରି ନେଇଛନ୍ତି, ଆମେ ସେମାନଙ୍କର ଭୂମିକାକୁ ସ୍ୱାମୀ ବିବେକାନନ୍ଦଙ୍କର ଭୂମିକା ସହିତ ତୁଳନା କରି ପାରିବାନାହିଁ । ସ୍ୱାମୀ ବିବେକାନନ୍ଦ ତ ଆମେରିକାରେ ପ୍ରଭୂତ ସମ୍ମାନ ଭିତରେ ରହିଥିବା ସମୟରେ ମଧ୍ୟ ଭାରତବର୍ଷକୁ ଝୁରି ହେଉଥିଲେ । ଭାରତବର୍ଷରେ ଜଣେ ମଣିଷ, ଏପରିକି କୁକୁରଟାଏ ମଧ୍ୟ ଭୋକିଲା ରହିଥିବା ପର୍ଯ୍ୟନ୍ତ ସିଏ ବାର ବାର ଭାରତବର୍ଷରେ ହିଁ ଜନ୍ମ ହେବାପାଇଁ ତାଙ୍କର ଜୀବନଦେବତା ପାଖରେ ମାଗୁଣି କରୁଥିଲେ । ଏବେ ଭାରତୀୟ ଆମେରିକାବାସୀଙ୍କ ଚାହିଦା ମେଣ୍ଟାଇବା ନିମନ୍ତେ ଆମେରିକାରେ ଭାରତୀୟ ଗୁରୁମାନେ ଯାଇ ଭୟଙ୍କର ପଇଁତରା ମାରିଲେଣି । ଆମେରିକାରେ ଗୋଠ ଗୋଠ ଶିଷ୍ୟ ବି କଲେଣି । ତେଣୁ ଶିଷ୍ୟମାନଙ୍କ ଠାରୁ ଧନ ଆଣି ଭାରତବର୍ଷରେ ଭବ୍ୟ ମଠ ବା ପୀଠମାନ ସ୍ଥାପନ କଲେଣି, ସ୍ୱାଧୀନ ଭାରତରେ ଆଗ ଅପେକ୍ଷା ମଠସଂଖ୍ୟା ବଢ଼ିଛି, ଗୁରୁମାନଙ୍କର ସଂଖ୍ୟା ବଢ଼ିଛି ଏବଂ ସୌଖୀନ ଭକ୍ତମାନଙ୍କର ସଂଖ୍ୟା ମଧ୍ୟ ବଢ଼ିଛି । ଭାରତବର୍ଷରେ ଜଣେ ଜଣେ ରାଜାଙ୍କ ପରି ଦିଶି ପାରିବାକୁ କେତେ କେତେ ଗୁରୁ ସତେଅବା ଆମେରିକା ଯାଇ ଆପଣାଲାଗି ସୁବର୍ଣ୍ଣ ସଂଗ୍ରହ କରି ଆଣିଛନ୍ତି । ଆମେରିକାବାସୀ ଭାରତୀୟମାନେ ହିଁ ସେମାନଙ୍କର ସେହି ପ୍ରୟାସରେ ବହୁ ସୁଗମତା ଆଣି ଦେଇଛନ୍ତି । ଧର୍ମକୁ ଅଧିକ ରକ୍ଷଣଶୀଳ ଅର୍ଥାତ୍ ସ୍ପର୍ଶକାତର କରି ରଖିବାରେ ମଧ୍ୟ ସେମାନେ ଆଦୌ କମ୍ ସହାୟତା କରି ନଥିବେ । ଧର୍ମର ପ୍ରସାର ପାଇଁ ଯେଉଁମାନେ ପଇସା ଆଣି ଯୋଗାଇ ଦେଇଥାନ୍ତି, ସେମାନେ ଧର୍ମକୁ ଅଧିକ ସ୍ପର୍ଶକାତର କରିବା ବ୍ୟତୀତ ପ୍ରକୃତରେ ଆଉ କ'ଣ କରି ପାରିଥାନ୍ତେ ? ତାହାର ହୁଏତ ଏକ ପ୍ରଧାନ କାରଣ ହେଉଛି ଯେ, ପଇସା ବ୍ୟତୀତ ସେମାନଙ୍କ ପାଖରେ ଦେବାପାଇଁ ସଚରାଚର ପ୍ରାୟ ଆଉ କିଛିହେଲେ ନଥାଏ । ଏବଂ ସେଇଥିପାଇଁ ସେମାନେ ପଇସା ଦେଇ ଧର୍ମ ଅର୍ଜିବେ ବୋଲି ଏକ ମିଛ ଅଭିମାନର ଶିକାର ହୁଅନ୍ତି ଏବଂ କୁହୁଡ଼ି ଭିତରେ ରହିଯାଆନ୍ତି । ମନ୍ଦିର ତୋଳାନ୍ତି, ଉଚ୍ଚ ଓ ଆହୁରି ଉଚ୍ଚ ମୂର୍ତ୍ତିମାନଙ୍କର ବି ଥାପନା କରନ୍ତି, ଠାକୁରମାନଙ୍କର ନଅରରେ ସୁନାରୂପା ଖଞ୍ଜି ଦିଅନ୍ତି ଏବଂ ଲୋକଲୋଚନରେ ବଡ଼ ଦିଶନ୍ତି ।

ସଂସାରରେ ସଫଳ ହେଉଥିବା ମଣିଷମାନେ ହିଁ ହୁଏତ କ'ଣ ଗୋଟାଏ ସଂସ୍କାରର ବଶବର୍ତ୍ତୀ ହୋଇ ଭାବନ୍ତି ଯେ, ସେମାନଙ୍କୁ ସଫଳତା ବୋଲି ଇହକ୍ଷେତ୍ରରେ ଯାହାକିଛି ମିଳିଲା, ତାହା ମୂଳତଃ ଦେବତାପ୍ରସାଦରୁ ହିଁ ମିଳିଲା ଓ ତେଣୁ ସେମାନେ ଦେବତାମାନଙ୍କ ସକାଶେ ମନ୍ଦିର ନିର୍ମାଣ କରାଇ ଅଥବା ମୂର୍ତ୍ତିଥାପନା କରି ପ୍ରାୟ ଏକ ଋଣ ପରିଶୋଧର ସାନ୍ତ୍ୱନା ଲାଭ କରିଥାନ୍ତି କି ? ମନ୍ଦିର ବଢ଼ିଲେ କୋଳାହଳ ବଢ଼େ, ଠାକୁରଙ୍କୁ ନିମିତ୍ତ କରି ନିଶାଖିଆ ମଧ୍ୟ ବୃଦ୍ଧି ପାଇଥାଏ । ସେହି ନିଶାଟା କେତେବେଳେ ଯେ ଭଗବାନଙ୍କ ପାଖରୁ ବାହାରି ଆସି ରାଜନୀତିର ଅରଣ୍ୟଟା ଭିତରେ ପଶିଯାଏ, ସେହି କଥାଟା ନିଶାର ଜୋରରେ ସମ୍ଭବତଃ ଜଣା ମଧ୍ୟ ପଡ଼େନାହିଁ । ଭାରତବର୍ଷରେ ଚ଼ଳନ୍ତି ରାଜନୀତି ଭିତରେ ହିନ୍ଦୁଧର୍ମ ଆସି ପଶିଯିବା ପରେ ଆମେରିକାରେ ସଫଳ ଜୀବନବାଣିଜ୍ୟ କରି ପାରିଥିବା ବହୁ ହିନ୍ଦୁ ମଧ୍ୟ ସତେଅବା ସ୍ୱତଃପ୍ରେରିତ ଭାବରେ ବହୁତ ସାହାଯ୍ୟ କରୁଛନ୍ତି । ଧର୍ମର ଇଲାକାଟା ଭିତରେ ଏବେ ଯାହାକୁ ମୌଳବାଦ ବୋଲି କୁହାଯାଉଛି ଏବଂ ଯାହା ଭାରତବର୍ଷରେ ସାନ ଚାରାଗଛଟିଏ ହୋଇ ବଡ଼ ଗଛଟିଏ ପରି ହେବାପାଇଁ ମୁହାଁସ ପାଇଲାଣି, ତାହା ଆମେରିକାର ଧର୍ମପ୍ରେମୀ ସେହି ଧର୍ମର ସଫଳ ଭାରତବାସୀଙ୍କ ଠାରୁ ମଧ୍ୟ କ୍ରମେ ସହାନୁଭୂତି ଲାଭ କଲାଣି । ଏକଥା ପ୍ରତ୍ୟକ୍ଷଭାବେ କେହି ମୋତେ କହୁନାହାନ୍ତି ସତ, କିନ୍ତୁ ଆମେରିକାରେ ମନ୍ଦିର ତଥା ଧର୍ମସକ୍ରିୟତାର ଅନ୍ୟ ଥାନମାଙ୍କ ଭିତରେ ଯାଇ ଚତୁର୍ଦ୍ଦିଗକୁ ଘ୍ରାଣ କରିବା ମାତ୍ରକେ ସେହି କଥାଟି ଭାରି ଧରା ପଡ଼ିଯାଉଛି । ନିୟମିତ ଧର୍ମପ୍ରବଚ଼ନମାନ କରାଯାଉଛି, ରବିବାର ଦିନ ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ସବୁ ରହିଛି ଓ ଏକାବେଳେକେ କଞ୍ଚା ବେଳୁଁ ସେମାନଙ୍କର ମନକୁ ପ୍ରସୀମିତ କରି ଆଣିବାର ପ୍ରୟାସ କରାଯାଉଛି । ଏଗୁଡ଼ିକୁ ଚୁଲାଇବା ନିମନ୍ତେ ଆମେରିକାରେ ଗୈରିକଧାରୀ ଯତିବର୍ଗ ରହିଛନ୍ତି, ବିଶେଷ କାର୍ଯ୍ୟକ୍ରମରେ ଭାରତରୁ ମଧ୍ୟ ଖାସ୍ ସ୍ୱାମୀମାନେ ଯାଇ ପହଞ୍ଚି ଯାଉଛନ୍ତି ।

ଭାରତବର୍ଷରେ ଆଧୁନିକ ମୌଳବାଦୀ ହଲଚ଼ଲଟି ହିନ୍ଦୁଧର୍ମରୁ ନୁହେଁ, ଅଧିକ ଉଚ଼ିତ ଅର୍ଥରେ ଶିଖଧର୍ମରୁ ଆରମ୍ଭ ହୋଇଥିଲା । ଶିଖଧର୍ମର ପ୍ରଚାରକ ଚ଼ିରସ୍ମରଣୀୟ ନାନକଦାସ ସନ୍ଥ ଥିଲେ । ଅବସ୍ଥାଚ଼କ୍ରରେ ପଡ଼ି ଶିଖମାର୍ଗଟି ମୋଗଲ ବାଦଶାହ ମାନଙ୍କର ସମ୍ମୁଖୀନ ହେବାକୁ ଯାଇ କୃପାଣକୁ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲା । ଏବଂ, ଏବେ ମଧ୍ୟ ଶିଖଧର୍ମ କହିଲେ ସତେଅବା ଜଣେ ସାଧାରଣ ମନୁଷ୍ୟର ଅନ୍ଦାଜରେ କୃପାଣଟା ହିଁ ଆଗ ଦୃଷ୍ଟିଗୋଚ଼ର ହୋଇଥାଏ । ଗୁରୁ ନାନକ ସାମରିକ ବୀରମାନଙ୍କର ଭିଡରେ ସତେଅବା କୋଉ ପଛରେ ଯାଇ ରହିଥାଆନ୍ତି । ଭାରତୀୟ ସେନାବାହିନୀ କହିଲେ ପ୍ରାୟ ସେଥିପାଇଁ ଆମକୁ ଶିଖମାନେ ହିଁ ସବାଆଗ ଦିଶି ଦିଶି ଯାଆନ୍ତି । ଏବଂ, ଏବେ ସ୍ୱାଧୀନତା ପରେ ସଫଳତା ଖୋଜି ଭାରତରୁ ଆମେରିକା ବା ଇଂଲଣ୍ଡ ଯାଇଥିବା ଲୋକମାନଙ୍କ ମଧ୍ୟରେ ଏହି ଶିଖମାନେ ହିଁ ଅଗ୍ର ପଂକ୍ତିରେ ରହିଥିବା ପରି ମନେ ହୋଇଥାଏ । ସେମାନେ ଦେଶ

ବିଭାଜନ ପରେ ଭାରତରେ ବହୁ ଦୁରବସ୍ଥା ଭିତରେ ପଡ଼ିଲେ, ନାନାଭାବେ ବିସ୍ଥାପିତ ହେଲେ ଏବଂ ସତ୍ୱର ଏକ ଭାଗ୍ୟପରିବର୍ତ୍ତନର ଆଶାରେ ସବାଆଗ ବାହାରଆଡ଼େ ମନ ବଳାଇଲେ । ଏବଂ, ପ୍ରବାସକୁ ଯିବା କ୍ରମେ କୋହଳ ହୋଇ ଆସିବା ସହିତ ତେଣେ ଯାଇ ପହଞ୍ଚିଗଲେ । ଖୁବ୍ ସଫଳ ହେଲେ, ଗୁଚ୍ଛେ ଅର୍ଥ ଉପାର୍ଜନ କଲେ । ହୁଏତ ପୁନର୍ବାର ମୂଳ ଦିହଟିର ଚିନ୍ତା କଲେ । ଭାରତବର୍ଷ ଆଡ଼େ ଅନାଇଲେ । ନିଜେ ଠୁଳ କରିଥିବା ଅର୍ଥକୁ କାମରେ ଲଗାଇ ସେମାନେ ଭାରତବର୍ଷରେ ଶିଖମାନଙ୍କ ପାଇଁ ବହୁତ କିଛି କରିପାରିବେ ବୋଲି ପ୍ରାୟ ଅଙ୍କ କଷି ବୁଝିଗଲେ । ପଞ୍ଜାବରେ କେତେ ବର୍ଷ ଧରି ମୌଳବାଦର ଯେଉଁ ଝଂଜାଟା ବେଳେ ବେଳେ ସମଗ୍ର ଭାରତବର୍ଷକୁ ଦୋହଲାଇ ଦେଉଥିବା ପରି ମନେ ହେଉଥିଲା, ତାହାର ଏକ ବୃହତ୍ ପ୍ରେରଣା ଆମେରିକା ଓ କାନାଡ଼ାରୁ ବୋଇତରେ ବୋଝାଇ ହୋଇ ଏଣେ ଆସୁଥିଲା । ଏବେ ହିନ୍ଦୁ ଅତ୍ୟନୁରାଗୀମାନେ ସମ୍ଭବତଃ ସେହିମାନଙ୍କଠାରୁ ଶିକ୍ଷା କରି ନିଜ ହିସାବରେ ସେହିପରି କିଛି କରିବାକୁ ଚେଷ୍ଟା କରୁଛନ୍ତି । ବାବାଜୀମାନେ ସେଥିରେ ସାହାଯ୍ୟ କରୁଛନ୍ତି ଓ ଅନେକ ସମୟରେ କ୍ରୀଡ଼ନକ ସଦୃଶ ବ୍ୟବହୃତ ହେଉଛନ୍ତି । ଆମେରିକାରେ ଯେକୌଣସି ଅଞ୍ଚଳରେ ଭାରତୀୟ ହିନ୍ଦୁମାନଙ୍କ ସହିତ ଚଳପ୍ରଚଳ ହେଲେ ସେହି ଗନ୍ଧଟା ଅତ୍ୟନ୍ତ ପରିମାଣରେ ବାରି ହୋଇ ପଡିଥାଏ । ଆମେରିକାରେ ଏତେ ଦୂରରେ ରହିଥିଲେ ମଧ ସେମାନେ ଯେ ନିଜକୁ ଭାରତୀୟ ସନାତନ ଧର୍ମ ସହିତ ଯୋଡ଼ି କରି ରଖି ପାରିଛନ୍ତି, ସଂପୃକ୍ତ ସମସ୍ତେ ସେଥିରେ ଭାରି ଖୁସୀ ହେଉଥିବେ ।

ହିନ୍ଦୁ ଧର୍ମବାଦୀମାନେ କାରଣ ଅକାରଣରେ ସନାତନ ଧର୍ମ କଥା କହି ଆସିଛନ୍ତି । ସ୍ୱାମୀ ବିବେକାନନ୍ଦ ଏକଦା ଆମେରିକାରେ ସନାତନ ଧର୍ମ ବିଷୟରେ କେତେସବୁ କଥା କହିଥିଲେ । ଆମ ଗାଆଁରେ ପିଲାଦିନେ ଆମ ଗୋବିନ୍ଦଦାସ ବାବାଜୀ ମଧ ଆମ ବାପା ବଡ଼ବାପାଙ୍କର ମଣ୍ଡଳୀ ଭିତରେ ବସି ସନାତନ ଧର୍ମରୁ ସାରସଂଗ୍ରହ କରି ଧର୍ମକଥା ବୁଝାଉଥିଲେ । ସନାତନ ଧର୍ମର ମର୍ମକୁ ଘ୍ରାଣ କରି ପାରିବାକୁ ହେଲେ ଏହି ପିତୁଳାମାନଙ୍କର ମାୟା ଛାଡ଼ିବାକୁ ହୋଇଥାଏ, ଦେବଦେବୀ ମାନଙ୍କୁ କାଟି ବହୁତ ଆଗକୁ ଯିବାକୁ ପଡ଼ିଥାଏ । ସନାତନ ଧର୍ମ ଏକ ଚେତନାକୁ ହିଁ ବୁଝାଏ, ଯାବତୀୟ ଭେଦ ଏବଂ ମାର୍କା ସତ୍ତ୍ୱେ ସବୁ ମଣିଷଙ୍କୁ ବାନ୍ଧି ରଖିଥିବା ଗୋଟିଏ ମୂଳ ଡ଼ୋରକୁ ବୁଝାଏ । ସଫଳତା ନହିଲେ ଏକାବେଳେକେ ଏକ ଅନ୍ୟ ଉପଲବ୍ଧିକୁ ବୁଝାଏ । ମନୁଷ୍ୟମାନେ ସତ୍‌ରାତ୍‌ର ନିଜର ବ୍ୟକ୍ତିଗତ କୌଣସି ଅଭୀଷ୍ଟକୁ ପୂରଣ କରିବାପାଇଁ ଦେବତାମାନଙ୍କର ପରିତୋଷଣ କରିବାକୁ ଯାଇ ଯେଉଁ ପୂଜାବିଧି ଗୁଡ଼ିକର ଆଚରଣ କରିଥାନ୍ତି ଏବଂ ଯେଉଁ ଆଚରଣଟି ଭିତରେ ବାନ୍ଧି ହୋଇ ରହି କେବଳ ନିଜର ଲାଭ ଓ ନିଜର ପୁଣ୍ୟସିଦ୍ଧି ବ୍ୟତୀତ ଆଉ ପ୍ରାୟ କିଛିହେଲେ ଦେଖି ପାରନ୍ତିନାହିଁ, ସେଥିରେ ଭୀରୁଟା ହିଁ ମଙ୍ଗୁଆଳ ହୋଇ ବସିଥାଏ ଏବଂ, ଯେଉଁ ଧର୍ମର ବେଢ଼ଣ ଭିତରେ ରହିଥିଲେ ମଧ ଭୀରୁ ଓ ଆତ୍ମକାମୀମାନେ କଦାପି କୌଣସି ଅଧ୍ୟାତ୍ମର ଭାଜନ ହୋଇ ପାରେନାହିଁ । ତେଣୁ, ସାଂସାରିକ ସଫଳତା ପରେ

କିମ୍ୱା ଅଧିକ ସାଂସାରିକ ସଫଳତା ଲାଭ କରିବା ନିମନ୍ତେ ଯେଉଁଠି ଧର୍ମାର୍ଚ୍ଚନାର ଆଶ୍ରୟ ନିଆଯାଏ, ସେଥିରେ ସ୍ୱୟଂ ସିଦ୍ଧିକାମୀ ମଣିଷଟା ହିଁ ଏତେବେଶୀ ଜାଗା ମାଡ଼ି ବସିଥାଏ ଯେ, କୌଣସି ଭଗବାନଙ୍କ ପାଇଁ ସେଠାରେ ହୁଏତ ଫୁଟେ ଜାଗା ବି ନଥାଏ । ଆମେରିକାରେ ବାସ କରୁଥିବା ଭାରତୀୟମାନେ ଏବେ ଯତେଥିବା ଅଧିକ ବିଧିନିଷ୍ଠା ସହିତ ପୂଜାର୍ଚ୍ଚନାଦି କରିବାରେ ମନ ଦେଉଛନ୍ତି । ଭାରତରେ ସେମାନଙ୍କର ନିଜ ଘରେ ହୁଏତ ସେମାନଙ୍କର ପୂର୍ବବର୍ତ୍ତୀ ପୁରୁଷଟି ପ୍ରଧାନତଃ ଅର୍ଥାଭାବ ହେତୁ ଯାହା କରିବାକୁ ଆଦୌ ମନାସ କରି ପାରୁନଥିଲେ, ସେମାନେ ଭାଗ୍ୟଶାଳୀ ହୋଇ ଆମେରିକାରେ ତାହା କରି ପାରୁଛନ୍ତି । ହାତକୁ ପଇସା ଆସିବା ପରେ ପୃଥିବୀରେ ଧର୍ମାଚ଼ରଣ ଗୁଡ଼ିକୁ ପ୍ରାୟ ଏକ ପ୍ରଫେସନାଲ୍ ଉତ୍ସାହରେ କିପରି ଇହସର୍ବସ୍ୱ ଏକ ବେପାରରେ ପରିଣତ କରି ରଖାଯାଇଛି, ଆମେରିକାରେ ଭାରତୀୟମାନଙ୍କର ଘରୁ ମଧ ତାହାର ଦୃଷ୍ଟାନ୍ତ ମିଳିଯାଇ ପାରିବ ।

ଥରେ ଗୋଟିଏ ପରିବାରରେ ନବଗ୍ରହ ପୂଜା ହେଉଥିଲା ଏବଂ ନିମନ୍ତ୍ରଣ ପାଇଁ ଆମେ ସେଠାକୁ ଯାଇଥିଲୁ । ପୂଜା ସିନା ମାତ୍ର ଗୋଟିଏ ଘଣ୍ଟାରେ ସରିଗଲା, ମାତ୍ର ଆମେ ସେଠାରେ ଦିନତମାମ ରହିଲୁ । କ'ଣ ଗୋଟାଏ ଅରିଷ୍ଟ ରହିଥାଏ ବୋଲି ଲୋକେ ଗ୍ରହପୂଜା କରନ୍ତି । ସାଧାରଣତଃ ଶନି ବା ତାଙ୍କ କାଟର ଆଉକେତେ କୋପୀମାନଙ୍କର ପୂଜା ସିନା କେବଳ ତାଙ୍କରି ଉଦ୍ଦେଶ୍ୟରେ ହୋଇଥାଏ, ମାତ୍ର ଖୁସୀବାସିରେ ଏକାବେଳେକେ ନଅଟିଯାକ ଗ୍ରହଙ୍କର ପୂଜା ହୋଇଥାଏ । ଆମେ ବଡ଼ିସକାଳୁ ଯାଇ ସେଠାରେ ପହଞ୍ଚିଗଲୁ । କ୍ରମେ ଆଉମାନେ ବି ଆସିଲେ । ଅଧିକାଂଶ କାହିଁକି, ପ୍ରାୟ ସମସ୍ତେ ହେଉଛନ୍ତି ମହିଳା । ଶନି ବା ରବିବାର ସିନା ଛୁଟୀ, ଅନ୍ୟ ଦିନଗୁଡ଼ିକରେ ତ ନାକରେ ଦଉଡ଼ା ବନ୍ଧା ହୋଇଥାଏ ଓ ତେଣୁ ଫୁରସତ ମିଳେନାହିଁ । ସେମାନେ ହୁଏତ ସଂଜକୁ ଯାଇ ଆସିବେ । ପୂଜା ସିନା ଦେଖି ପାରିବେନାହିଁ, କିନ୍ତୁ ମଶୋହି କରି ପାରିବେ । ପୂଜାପାଇଁ ବ୍ରାହ୍ମଣ ପ୍ରାୟ ଦଶଟା ବେଳକୁ ଆସି ପହଞ୍ଚିଲେ । ସିଏ ପୂରା ପ୍ରଫେସନାଲ, ଜଣେ ମହିଳା । ପତଳା ମଠାବସ୍ତ୍ର ପରିଧାନ କରିଥାନ୍ତି ଏବଂ ପୂରାପୂରି ପୂଜକ ପରି ଦିଶୁଥାନ୍ତି । ସିଏ କାର୍‌ରେ ଆସି ପହଞ୍ଚିଲେ । କାର୍‌ଟି ତାଙ୍କର ନିଜର । ନିଜେ ଚ଼ଲାନ୍ତି । କେତେ ଆଡୁ ଏହି ପୂଜାର କାର୍ଯ୍ୟକ୍ରମରେ ଯିବାକୁ ପଡ଼େ । ତେଣୁ, ଗାଡ଼ୀଟି ନଥିଲେ ମୋଟେ ଚ଼ଳୁନଥାନ୍ତା । ଗାଡ଼ୀ ରହିଲା । ସିଏ ଓହ୍ଲାଇବା ମାତ୍ରକେ ଗାଡ଼ୀରୁ ଗୋଟାଏ ବାକ୍ସ ଓ କେତେଟା ସାନବଡ଼ ମୁଣି ମଧ ଓହ୍ଲାଇ ଅଣାଗଲା । ସେଇଥିରେ ଆଜିର ପୂଜା ପାଇଁ ଯାବତୀୟ ସରଞ୍ଜାମ ଭର୍ତ୍ତି ହୋଇ ରହିଥାଏ । ସବୁ ହିସାବ କରି ଅଣା ହୋଇଥାଏ । ଗୃହସ୍ଥକୁ ଆଦୌ କୌଣସି ଫିକର କରିବାକୁ ପଡ଼େନାହିଁ । କାଠ, କୁଶ, କମଣ୍ଡଳୁ, ଘିଅ, ଯୂପକାଠି, ବାଲି, ପୁଷ୍ପାଣି, କଳସ ନିମନ୍ତେ ଟିକିନିଖି ସବୁ ଦ୍ରବ୍ୟ ଓ ଆନୁଷଙ୍ଗିକମାନ ଏବଂ, ଯାହାଉପରେ ହୋମଟି ହେବ, ସେହିପରି

ଲୌହନିର୍ମିତ ଏକ ଚତୁଷ୍କୋଣୀ ପାତ୍ର । ବଜାର ମେଲାଇ ଦିଆଗଲା ଓ କେତେ ପିଛୁଳା ଭିତରେ ହୋମର infracture ଟି ପ୍ରସ୍ତୁତ ହୋଇଗଲା । ଦର୍ଶକବୃନ୍ଦ ଚାରିପାଖରେ ହାତ ଯୋଡ଼ି ବସିଲେ । ମନ୍ତ୍ରୋଚ୍ଚାରଣ ଆରମ୍ଭ ହୋଇଗଲା । ଆମେରିକା ତ, ମନ୍ତ୍ରଗୁଡ଼ିକ ଗୋଟିଏ ବହିରେ ଛପା ହୋଇ ରହିଥିଲା । ତିଳେ ବି ଅସୁବିଧା ହେଲାନାହିଁ । ହୋମ ହେଉଥାଏ, ବହି ଦେଖି ଗଳ ଗଳ ମନ୍ତ୍ର ବୋଲାହୋଇ ଚାଲିଥାଏ । ମୁଁ ଶ୍ରୋତାରୂପେ ସେଥିରୁ ଯେତିକି ବୁଝିଲି, ସେଥିରେ ନବଗ୍ରହପୂଜା ସଂକ୍ରାନ୍ତୀୟ ବିଶେଷ କିଛି ନଥିଲା । ଅତି ସାଧାରଣ ଭାବରେ ପରିଚିତ କେତେଗୋଟି ଆବାହନମନ୍ତ୍ର ରହିଥିଲା, ଯାହାକୁ କି ହୋମକର୍ତ୍ତା ଯେକୌଣସି ଉପଲକ୍ଷ୍ୟରେ ମଧ୍ୟ ବୋଲି ପାରୁଥିଲେ । ହୋମ ସରିଲା, ନଡ଼ିଆ ପୋଡ଼ା ହେଲା । କେବଳ ପୂଜାଟି କରିଦେବା ହେତୁ ଭଦ୍ରମହିଳା ଶହେ ଡ଼ଲାର ନେଲେ । ସିଏ ଆଣିଥିବା ସରଞ୍ଜାମଗୁଡ଼ିକ ନିମନ୍ତେ ଅଲଗା ଦେବାକୁ ପଡ଼ିଥିଲା । ଲୁଗା କପଡ଼ାଦି ମଧ୍ୟ ରହିଥିଲା ।

ଖାଲି ଧର୍ମଗୁରୁମାନେ ନୁହନ୍ତି, ଭାରତରୁ ରାଜନୀତିକ ନେତାମାନେ ମଧ୍ୟ ଆମେରିକା କମ୍ ଯାଉନାହାନ୍ତି । ଏହି ଯାତ୍ରାଗୁଡ଼ିକର ପ୍ରଚାରିତ ମତଲବ ଅବଶ୍ୟ କେତେ ପ୍ରକାରର ହୋଇପାରେ । ତଥାପି, ଆମେରିକା ଦେଖି ଆସିବାଟା କଦାପି ଗୌଣ ହୋଇ ନଥାଏ । ସେମାନେ ସରକାରୀ ଖର୍ଚ୍ଚରେ ଯେତେବେଳେ ଯାଆନ୍ତି, ସେତେବେଳେ ରାଜ୍ୟର ନିଶ୍ଚୟ କୌଣସି କାର୍ଯ୍ୟରେ ତ ସେମାନଙ୍କୁ ଯିବାକୁ ହିଁ ପଡ଼ିବ, ସର୍ବପ୍ରଧାନ କାମ ହେଉଛି ପୁଞ୍ଜି ସଂଗ୍ରହ । ନିଜ ରାଜ୍ୟରୁ ଆମେରିକାରେ ଯେଉଁମାନେ ମଞ୍ଜି ପୋତି ରହି ଯାଇଛନ୍ତି, ସଫଳ ହୋଇଛନ୍ତି, ଭାରତୀୟ ମୁଦ୍ରାରେ ସମମୂଲ୍ୟ କରି କହିଲେ ସେମାନେ ତ କୋଉଦିନରୁ ଲକ୍ଷପତି ବା କୋଟିପତି ହୋଇ ସାରିଲେଣି । ସେମାନେ ହୁଏତ ନିଜର ବଳକା ଅର୍ଥକୁ ଭାରତରେ ନିଜ ରାଜ୍ୟରେ ଲଗାଇବାକୁ ଇଚ୍ଛା କରିବେ । ନିଜର ଆୟରେ ଆହୁରି ବୃଦ୍ଧିସାଧନ କରିବା ସଙ୍ଗେ ସଙ୍ଗେ ସେମାନେ ନିଜ ମାତୃଭୂମିର ଅତ୍ୟାବଶ୍ୟକ ଆର୍ଥିକ ଉନ୍ନୟନରେ ମଧ୍ୟ ସାହାଯ୍ୟ କରୁଛନ୍ତି ବୋଲି ପ୍ରଶଂସା କରି କୁହାଯାଇ ପାରିବ । ସେହି ପ୍ରଶଂସାର ମଧ୍ୟ ଏକ ମୂଲ୍ୟ ଅବଶ୍ୟ ରହିଛି । ବିଶେଷତଃ, ଯେଉଁ ଭୂମିରେ ନିଜ ଭାଗ୍ୟଟି ଯଥେଷ୍ଟ ପରିମାଣରେ ଖୋଲିବା ଲାଗି ଅନୁକୂଳ ଅବସର ମିଳିଲାନାହିଁ ବୋଲି ଏକଦା ସେମାନେ ଭୂମିକୁ ଛାଡ଼ି ଆମେରିକା ପଳାଇ ଯାଇଥିଲେ, ପରିଶେଷରେ ସେହି ଭୂମିର ଯେ ସେମାନେ କୌଣସି ପ୍ରୟୋଜନରେ ଆସିଲେ, ସେହି କଥାଟି ସେମାନଙ୍କ ବିବେକକୁ ଅବଶ୍ୟ ବହୁତ ଆଶ୍ୱାସନା ପ୍ରଦାନ କରିବ । ଏବଂ, ଏହିପରି ଭାବରେ ସେମାନେ ଛାଡ଼ି ଯାଇଥିବା ଭୂମିଟି ସହିତ ତଥାପି ଗୋଟିଏ ନାଡ଼ ଲାଗିଛି ବୋଲି ଅନୁଭବ କରିବେ । ଆମେରିକାର ବିଲରେ ଭାଗ୍ୟର କର୍ଷଣ କରୁଥିବେ, ତଥାପି ଭାରତବର୍ଷରେ ଥିବା ନିଜ ରାଜ୍ୟଟିକୁ ଘର ବୋଲି ଭାବି ପାରୁଥିବେ । ଆଧୁନିକ ନିଃସଙ୍ଗତାର ଯୁଗରେ ସେତିକି ମଧ୍ୟ ଆଦୌ କମ୍ କଥା ନୁହେଁ ।

ଆମେରିକାରେ ଭାରତୀୟ ମାନଙ୍କର ସାପ୍ତାହିକ ବାର୍ତ୍ତାପତ୍ରିକାମାନ ମଧ୍ୟ ବାହାରେ । ପ୍ରାୟ ସବୁଗୁଡ଼ିକ ଆଞ୍ଚଳିକ ଭାବରେ ବାହାରେ । ସମ୍ଭବତଃ ପୁଞ୍ଜାଏ ପାଞ୍ଚଟାଙ୍କୁ ଛାଡ଼ିଦେଲେ ଖୋଦ ଆମେରିକାର ନିଜ ଖବରକାଗଜଗୁଡ଼ିକୁ ମଧ୍ୟ ଆଞ୍ଚଳିକ ବାର୍ତ୍ତାପତ୍ରିକା ବୋଲି କୁହାଯାଇ ପାରିବ । କାଗଜଗୁଡ଼ିକର ବପୁ ପୃଥୁଳ, ବହୁପୃଷ୍ଠାବିଶିଷ୍ଟ ; ତଥାପି ବିଜ୍ଞାପନର ପୃଷ୍ଠା ଦଶପଣ । ଆଉ ଯେଉଁ ଛଅପଣ ରହିଲା, ସେଥିରୁ ଆନ୍ତର୍ଜାତିକ ଖବର ହୁଏତ ପଣଟାଏ ମଧ୍ୟ ବାହାରେନାହିଁ । ପଡ଼ିଶା ଦେଶଗୁଡ଼ିକର ଖବରଗୁଡ଼ିକୁ ସତେଯେପରି ଜାଣି ଜାଣି ଛାଡ଼ି ଦିଆ ଯାଇଥାଏ । ପୃଥିବୀର ସେପାଖଟାରେ ଆମେରିକା ହେଉଛି ମୁଣ୍ଡ, ମନିଟର ଏବଂ ମ୍ୟାନେଜର । ମୁଁ ଅନୁମାନ କରୁଛି ଦକ୍ଷିଣ ଓ ମଧ୍ୟ ଆମେରିକାରେ ବାହାରୁଥିବା ସ୍ପେନୀୟ ଓ ପର୍ତ୍ତୁଗୀଜ୍ ଭାଷାର କାଗଜଗୁଡ଼ିକରେ ଆମେରିକା ସମ୍ବନ୍ଧରେ ହିଁ ଅଧିକତର ଖବର ବାହାରୁଥିବ । ଆମେରିକାର ରାଜନୀତି, ରାଷ୍ଟ୍ରନୀତି, ଯୁଦ୍ଧ ଓ ଶାନ୍ତିନୀତି, ଅସ୍ତ୍ରଶସ୍ତ୍ର ନୀତି ଏବଂ ଏପରିକି ଫେଶନନୀତି ବି ଯେଉଁସବୁ ଗୁଳାରେ ଯେତେବେଳେ ଚାଲିଛି, ସେହି ପଡ଼ିଶା ଦେଶଗୁଡ଼ିକ ସେଗୁଡ଼ିକ ବିଷୟରେ ଟିକିନିଖି ଖବର ରଖିବା ନିମନ୍ତେ ବାସ୍ତବ ପରିସ୍ଥିତି ଦ୍ୱାରା ବାଧ୍ୟ ହେଉଥିବେ । ଖାଲି କିଉବା ଦ୍ୱୀପଟି ଯାହା ବ୍ୟତିକ୍ରମ ହୋଇ ରହିଥିବ । ନହେଲେ ଆଉ ଯାବତୀୟ ଦେଶ ଆମେରିକାର ଝାଞ୍ଜଟି ଅନୁସାରେ ହିଁ ତାଳ ଦେବାକୁ ବାଧ୍ୟ ହେଉଥିବେ । ସେଇଟା ତ ଗତରେ ପଡ଼ି ଗଲାଣି, ତେଣୁ ସେତେ ବେଶୀ ଅସୁଖ ମଧ୍ୟ ଲାଗୁନଥିବ । ଆମେରିକାର ବ୍ୟବସ୍ଥାମାନେ ସେହି ବିଷୟରେ ସତେଅବା ଏଡ଼େ ନିଶ୍ଚିନ୍ତ ଯେ, ସେମାନେ ଅନ୍ୟ ପ୍ରତିବେଶୀ ଦେଶମାନଙ୍କରେ କ'ଣ ଘଟୁଛି, ତାହା ଜାଣିବା ଜରୁରୀ ବୋଲି ଆଦୌ ମନେ କରୁନଥିବେ । ସର୍ବୋପରି, ଖବରକାଗଜ ପଢ଼ିବାକୁ ବେଳ ବି କାହିଁ ? ଦୂରଦର୍ଶନରେ ଯେତିକି ଜାଣିବାକୁ ମିଳୁଛି, ସମ୍ବାଦପତ୍ରରେ ତା'ଠାରୁ କ'ଣ ଆଉ ଅଧିକ ବାହାରୁଥିବ ଯେ ! ତେଣୁ, ଅଧିକାଂଶ ପାଠକ ସ୍ଥାନୀୟ ଖବରଗୁଡ଼ିକର ଛବିଳ ବିବରଣୀଗୁଡ଼ିକ ଉପରେ ମୋଟାମୋଟି ଆଖି ବୁଲାଇ ଆଣୁଥିବେ । ଆଉ ଅଧିକର କୌଣସି ଆବଶ୍ୟକତା ପଡୁନଥିବ ।

କିନ୍ତୁ ଭାରତୀୟ ଖବରକାଗଜ ଗୁଡ଼ିକର କଥା ହେଉଚି ନିଆରା । ବହୁତ ଭାରତୀୟ ସେଗୁଡ଼ିକୁ ବେଶ୍ ତନ୍ନ ତନ୍ନ କରି ପଢୁଥିବେ । ଅବଶ୍ୟ ଭାରତବର୍ଷର ବହୁ ସମ୍ବାଦ ଇଣ୍ଟର୍‌ନେଟ୍‌ରୁ ଜାଣିହେବ ସତ, ମାତ୍ର ସେଥିପାଇଁ ଘରେ ସଭିଙ୍କୁ ଏତେ ସମୟ କାହୁଁ ମିଳିବ ? ହଁ, କାମ ଜାଗାରେ ଫାଙ୍କ ପାଇଲେ ଅନେକେ ହୁଏତ ଇଣ୍ଟର୍‌ନେଟ୍‌ରେ ହାତ ମାରି ଦେଉଥିବେ ଏବଂ ନିଜ ଦେଶ ବିଷୟରେ କିଛି ବାର୍‌ତା ପାଇ ଯାଉଥିବେ । ଆମ ଅଞ୍ଚଳରେ ମୋଟା ମୋଟା ଦୁଇଟି କାଗଜ ବାହାରୁଥିଲା । ସେଥିରେ ଭାରତର ପ୍ରଧାନ ପ୍ରଧାନ ଖବର ଖୁବ୍ ସ୍ଥାନ ପାଉଥିଲା । ଆନ୍ତର୍ଜାତିକ ସମ୍ବାଦ ବେଳେ ବେଳେ କିଛି କିଛି ରହୁଥିଲା ସତ, ମାତ୍ର ଆଞ୍ଚଳିକ ଖବରଗୁଡ଼ିକ ପାଇଁ ସର୍ବଦା ରାଜଅଂଶଟିକୁ ଛାଡ଼ି ଦିଆ ଯାଉଥିଲା । ସେହି ଅଞ୍ଚଳର ଭାରତୀୟମାନେ କୋଉଠି ସଭା କଲେ, କୋଉଠି ନାଚିଲେ,

ଗାଇଲେ, ଅଥବା ଭାରତବର୍ଷରୁ ଆଗତ ବୃହତ୍ ବ୍ୟକ୍ତିମାନେ କେଉଁଠାରେ କ'ଣ ସବୁ କଲେ ଏବଂ କହିଲେ, ଛବି ସହିତ ସେହି କଥାଗୁଡ଼ିକ ପ୍ରାଞ୍ଜଳ ଭାବରେ ବାହାରୁଥିଲା । ଭାରତୀୟ ଭାଷା ପଞ୍ଜାବୀ ଓ ଗୁଜରାଟୀରେ କାଗଜ ଦେଖିବାକୁ ମିଳିଲା, ସମ୍ଭବତଃ ଅନ୍ୟଗୁଡ଼ିକରେ ବି କେଉଁଠି କେଉଁଠି ବାହାରୁଥିବ । ଯେଉଁଠାରେ କୌଣସି ଏକ ଭାଷାଭାଷୀ ବହୁଳ ସଂଖ୍ୟାରେ ବାସ କରୁଥିବେ, ସେହି ଅଞ୍ଚଳରେ ସେହି ଭାଷାରେ ଅବଶ୍ୟ କାଗଜ ବାହାରୁଥିବ ଓ ସମ୍ପୃକ୍ତ ସମସ୍ତଙ୍କର ଆନନ୍ଦବର୍ଦ୍ଧନ କରୁଥିବ । ମାତ୍ର, ଏଗୁଡ଼ିକରେ ମଧ ସେହି ଆମେରିକୀୟ ଛାଞ୍ଚଟିକୁ ଅବଶ୍ୟ ଦେଖିବାକୁ ମିଳିଯିବ । ଅର୍ଥାତ୍, ମସଲା ଖୁବ୍ କମ୍, ବିଜ୍ଞାପନ ହିଁ ବେଶୀ । ଦୋକାନଗୁଡ଼ିକର ବିଜ୍ଞାପନ ଆଉ ସବୁକିଛିକୁ ପରାସ୍ତ କରିଦେବ । ପାଖଆଖର କେଉଁସବୁ ବିପଣିରେ କେଉଁ ତାରିଖରେ କେଉଁ ଦ୍ରବ୍ୟମାନ କେତେ ରିହାତିରେ ମିଳିବେ, ତାହାର ନିର୍ଭୁଲ ସମ୍ବାଦଗୁଡ଼ିକ ଆପଣ ଖବରକାଗଜର ବିଭିନ୍ନ ପୃଷ୍ଠାରେ ହିଁ ପାଇଯିବେ । ଭାରତୀୟ କାଗଜମାନଙ୍କରେ ଅବଶ୍ୟ କିଛି ବିଶେଷ ବର୍ଗର ବିଜ୍ଞାପନ ମଧ ରହିଥିବ ।

କୋଉ ଧର୍ମାତ୍ମା କେତେଦିନ ପାଇଁ ଆମେରିକାକୁ ଆସିଛନ୍ତି ଓ କେଉଁସବୁ ସ୍ଥାନରେ ତାଙ୍କର କେବେ ପ୍ରବଚନ ଓ ଭାଷଣର କାର୍ଯ୍ୟକ୍ରମସବୁ ରହିଛି, ତାହା ଆପଣ ଏହି ସମ୍ବାଦପତ୍ରରୁ ପାଇବେ । କେଉଁଠାରେ ଭାରତୀୟ ଶାସ୍ତ୍ରୀୟ ନୃତ୍ୟ ଏବଂ ଶାସ୍ତ୍ରୀୟ ବାଦ୍ୟର ଶିକ୍ଷା ଦିଆଯାଉଛି, ସେକଥା ମଧ କାଗଜରୁ ହିଁ ଜଣା ପଡ଼ିବ । ମାତ୍ର, ସବୁଠାରୁ ଅଧିକ ସ୍ଥାନ ଅଧିକାର କରିଥିବ ଏହି କାଗଜମାନଙ୍କରେ ଜ୍ୟୋତିଷୀମାନଙ୍କ ବିଷୟରେ ବିଜ୍ଞାପନ । ସେମାନେ ଅଳ୍ପ ଅର୍ଥ ନେଇ ଆପଣଙ୍କର ହାତ ବା ଜାତକ ଦେଖି ସବୁକଥା କହିଦେଇ ପାରିବେ । ବା, ଏତେଯାଏ ବି ମୋଟେ ଘାଣ୍ଟିବାକୁ ପଡ଼ିବନାହିଁ, ଆପଣ କେବଳ କୌଣସି ଫୁଲର ନାମ କହିଦେବେ, ଅଥବା ଗୋଟିଏ ସଂଖ୍ୟା ଦେବେ ଏବଂ ତାହାହିଁ ଚାବିକାଠି ପରି କାର୍ଯ୍ୟ କରିବ ଏବଂ ଆପଣଙ୍କର ଭାଗ୍ୟବାକ୍ସରେ ରହିଥିବା ଅନାଗତ ସବୁକିଛି ବ୍ୟାପାରକୁ ଆପଣଙ୍କ ପାଇଁ ଉନ୍ମୋଚିତ କରିଦେବ । ତା'ପରେ ହଠାତ୍ ଫଳ ଫଳାଇଦେଇ ପାରିବାର ବିଶିଷ୍ଟ ସମର୍ଥମାନେ ଅଛନ୍ତି । ଯେଉଁମାନଙ୍କୁ ସାଧାରଣତଃ ତାନ୍ତ୍ରିକ ବୋଲି କୁହାଯାଏ । ଭାରତୀୟମାନେ ଆମେରିକା ପ୍ରବାସୀ ହେବା ସଙ୍ଗେ ସଙ୍ଗେ ଏମାନେ ମଧ ନିଜ ଭାଗ୍ୟର ପରୀକ୍ଷା କରିବାପାଇଁ ଓ ନିଜର କରିସ୍ମା ଦେଖାଇବା ପାଇଁ ସେହି ଦୂର ଆମେରିକାରେ ଯାଇ ପହଞ୍ଚି ଗଲେଣି । ଯଜମାନ ଯେଉଁଠାରେ ଘର କରି ରହିଲା, ସେଠାରେ ବ୍ରାହ୍ମଣଟି ମଧ ଯାଇ ପହଞ୍ଚି ନପାରିଲେ ସିଏ ପୁଣି ଚଳିବ କେମିତି ? ସିଏ ଆପଣଙ୍କ ପାଇଁ ତାବିଜ ଗଢ଼ିଦେବ, ଆପଣଙ୍କ ହାତରେ ଖାସ୍ ଆପଣଙ୍କ ପାଇଁ କାମ ଦେଇ ପାରୁଥିବା ଡ଼େଉଁରିଆଟିଏ ତିଆରି କରି ବାନ୍ଧିଦେବ, ଆପଣଙ୍କ ସକାଶେ କେଉଁ ରଙ୍ଗର ପଥର ବିଶେଷ ଅନୁକୂଳ ହେବ, ସେହି କଥାଟିକୁ ଆପଣଙ୍କୁ କହିଦେଇ ପାରିବ । ପଥର ଖୋଜି ଆପଣଙ୍କୁ ଆଦୌ ବଜାରକୁ ଯିବାକୁ ପଡ଼ିବନାହିଁ । ସବୁ ସେଇଠି ମୁଣିରେ

ମହଜୁଦ୍ ରହିଥିବ । ଆପଣ ପଇସା ଦେଇ ତତ୍‌କ୍ଷଣାତ୍ କିଣିପାରିବେ । ଭାରତୀୟ ଜୀବନର ଏହି ବ୍ୟାପାରଟି ବହୁ ଶତାବ୍ଦୀ ଧରି ଭାରତବର୍ଷରେ ରହି ଆସିଛି, ସେହି କଥାଟି ତ ବୁଝି ହୋଇଯିବ, ମାତ୍ର ଭାରତୀୟମାନେ ଆମେରିକାରେ ଯାଇ ପହଞ୍ଚିବା ପଛେ ପଛେ ଏହି ଅନ୍ୟ ମହୋପକାରୀ ଗୋଷ୍ଠୀଟି ଯାଇ ସେଠାରେ ପହଞ୍ଚି ଗଲାଣି, ତାହା ଆପଣଙ୍କୁ ନିଶ୍ଚୟ ଅବାକ୍ କରିଦେବ । ଖାଲି ଶିକ୍ଷିତମାନେ ନୁହନ୍ତି, ଆମ ମହାଶିକ୍ଷିତମାନେ ଆମେରିକାରେ 'ନିଜ ବସତି' ସ୍ଥାପନ କରି ଏହି ତାବିଜବାଲା, ଡ଼େଉଁରିଆବାଲା ଓ ପଥରବାଲାଙ୍କର ଅଭାବ ଯେ ଅନୁଭବ କଲେ ଓ ବିଶ୍ୱ ବିଭୁଙ୍କର କୃପାରୁ ଯେ ସେହି ଅଭାବଟିର ସତ୍ୱର ପୂରଣ ହୋଇ ପାରିଲା, ସେହି ପ୍ରସଙ୍ଗଟି ଆପଣଙ୍କୁ ଅବାକ୍ କରିଦେବ । ଆମେରିକାର ଖୋଦ୍ ବାସିନ୍ଦାମାନଙ୍କୁ ଏସବୁ ସକ୍ରିୟତା କିଭଳି କ'ଣ ଲାଗୁଥିବ କେଜାଣି ? ସେମାନଙ୍କ ଭିତରେ ହୁଏତ ଏପରି କେହିଥିବେ, ଯେଉଁମାନେ କି କୌଣସି ଅବେଳରେ ପଡ଼ି ଏଣେ ଆକୃଷ୍ଟ ହେବେ । ତାବିଜ ଲଗାଇବେ, ଡ଼େଉଁରିଆ ପିନ୍ଧିବେ ଓ ମୁଦ୍ରିକାରେ ରଙ୍ଗପଥର ବସାଇବେ । ଭାରତୀୟ କଥାଟିଏ ଏହିପରି ଭାବରେ କ୍ରମେ ସେଠାରେ ମଧ୍ୟ ଆଦର ଲାଭ କରିବ । ଅନେକ ଭାରତୀୟ ହୁଏତ ଅତୀବ ନିଷ୍ଠା ସହିତ ଆମେରିକାକୁ ସେହି ଦିନଟି ଆସୁ ବୋଲି ଅପେକ୍ଷା କରି ରହିଥିବେ ।

ଯେଉଁ ଭାରତୀୟମାନେ ବିଗତ କେତେ ବର୍ଷ ଧରି ଆମେରିକାରେ ରହିଲେଣି, ସେମାନେ ଆମେରିକା ଯିବା ପୂର୍ବରୁ ଯେପରି ଥିଲେ, ଅନ୍ତତଃ ଆର୍ଥିକ ସ୍ଥିତି ଦୃଷ୍ଟିରୁ ସେମାନେ ବର୍ତ୍ତମାନ ତା'ଠାରୁ ବହୁତ ଭଲରେ ଅଛନ୍ତି । ସେମାନଙ୍କର ମନ ଓ ଅବଲୋକନ ଅଧିକ ପ୍ରଶସ୍ତ ହୋଇଛି, ଆଗରୁ ରହିଥିବା ସାନ ନଜର ଗୁଡ଼ିକର ସଂଖ୍ୟା ମଧ୍ୟ ବହୁପରିମାଣରେ ହ୍ରାସ ପାଇଛି । ମୂଳସ୍ଥ ଦୃଷ୍ଟିକୋଣ ଗୁଡ଼ିକରେ ମଧ୍ୟ କମ୍ ପରିବର୍ତ୍ତନ ହୋଇନାହିଁ । ଭାରତବର୍ଷରେ ସେମାନେ ନିଜ ଜୀବନ ତଥା କରଣିର ଅନ୍ଦାଜଗୁଡ଼ିକୁ ଯେଉଁକି ତରାଜୁରେ ମାପି ପାରୁଥିଲେ, ଆମେରିକାରେ ସ୍ୱସଂସ୍ଥାନର ଖୁଣ୍ଟଟିକୁ ପୋତି ସାରିବା ପରେ ସେମାନେ ବର୍ତ୍ତମାନ ଠାରୁ ଯଥେଷ୍ଟ ବଡ଼ ତରାଜୁରେ ନିଜକୁ ତଥା ନିଜର ସ୍ୱପ୍ନଗୁଡ଼ିକୁ ମାପି ପାରୁଛନ୍ତି । ସେମାନଙ୍କ ଭିତରୁ ଅଧିକାଂଶ ଆମେରିକାର ନାଗରିକ ହୋଇ ସାରିଲେଣି । ଅର୍ଥାତ୍, ସେମାନେ ସେଇଠାରେ ରହିବେ ଓ ଆଉ ଭାରତବର୍ଷକୁ ଫେରିବେନାହିଁ ବୋଲି ଫଇସଲା କରି ସାରିଲେଣି । କେତେକ ହୁଏତ ଏବେ ମଧ୍ୟ ଭାରତୀୟ ପାସ୍‌ପୋର୍ଟଟାକୁ ଛତା ପରି କାଖରେ ଜାକିଛନ୍ତି ମାତ୍ର, ଆପଣାର ଆଠପହରୀ ଜୀବନରେ ଆମେରିକୀୟ ହୋଇ ସାରିଲେଣି । ସେହି ଆମେରିକାରେ ହିଁ ଆପଣା ବିଷୟରେ ଓ ଆପଣାର ପିଲାପିଲିଙ୍କ ବିଷୟରେ ଆଗକୁ ଚିନ୍ତାମାନ ଓ ଯୋଜନାମାନ କଲେଣି । ସେହିଠାରେ ହିଁ କୋଳି ଖାଇ ମଞ୍ଜି ପୋତିଲେଣି । ତଥାପି କ'ଣ ପାଇଁ ନିଜକୁ ଆମେରିକୀୟ ଅପେକ୍ଷା ଭାରତୀୟ ବୋଲି ଭାବିବାକୁ ଏବଂ କହିବାକୁ ସେମାନଙ୍କୁ ହୁଏତ ଅଧିକ ଭଲ

ଲାଗୁଛି । ଏହି ଭାବଗତ ମିଜାଜଟି ସେମାନଙ୍କର ଆଉ କେତେ କାଳ ରହିବ କେଜାଣି ? ସେମାନଙ୍କର ପିଲାମାନେ ଆମେରିକାରେ ପାଠ ପଢୁଛନ୍ତି, ଆମେରିକାର ପିଲାଙ୍କ ସହିତ ଏକତ୍ର ପାଠ ପଢୁଛନ୍ତି । ଅନ୍ତତଃ ସେହି ଗୋଟିଏ କ୍ଷେତ୍ରରେ ଆମେରିକାରେ ଅବସ୍ଥିତ ଭାରତୀୟମାନେ ମୋଟେ ଦୋହରିଆ ବା ଦୋଘରିଆ ହୋଇ ରହିବାକୁ ଇଚ୍ଛା ବା ଚେଷ୍ଟା କରୁନାହାନ୍ତି । ସେମାନଙ୍କ ପରି ସେମାନଙ୍କର ପିଲାମାନେ ମଧ୍ୟ ଆମେରିକାରେ ରହନ୍ତୁ ଓ ନିଜର ଭାଗ୍ୟକୁ ଗଢ଼ନ୍ତୁ ବୋଲି ସେମାନେ ନିଜର ପାଞ୍ଚଟିଯାକ ମନରେ ସମ୍ପୂର୍ଣ୍ଣ ଭାବରେ ନିଷ୍ପତ୍ତି କରି ସାରିଛନ୍ତି । ଯଦି ଏକଥା କିଛି ଅନ୍ୟପ୍ରକାର ହୋଇ ଥାଆନ୍ତା, ତେବେ ଆମେରିକାରେ ଭାରତୀୟ ଉଦ୍ୟମରେ ଭାରତୀୟ ବାସିନ୍ଦାମାନଙ୍କର ପିଲାମାନଙ୍କ ନିମନ୍ତେ ନିଶ୍ଚୟ ସ୍ୱତନ୍ତ୍ର ଇସ୍କୁଲମାନ ଖୋଲି ଥାଆନ୍ତା । ମଧ୍ୟପ୍ରାଚ୍ୟର ବିଭିନ୍ନ ଦେଶ ଓ ରାଜ୍ୟରେ ବହୁସଂଖ୍ୟକ ଭାରତୀୟ ଅଛନ୍ତି ଓ କାମ କରୁଛନ୍ତି । ସେମାନେ ସେଠାରେ ନିଜ ପିଲାଙ୍କ ଲାଗି ସ୍ୱତନ୍ତ୍ର ବିଦ୍ୟାଳୟମାନ ଖୋଲିଛନ୍ତି । ଅର୍ଥାତ୍, ସେମାନଙ୍କର ପିଲାମାନେ ବଡ଼ ହୋଇ ସେହିସବୁ ରାଜ୍ୟର ଅଧିବାସୀ ହୋଇ ରହନ୍ତୁ ବୋଲି ସେମାନେ ଯେ ମୋଟେ ଇଚ୍ଛା କରନ୍ତିନାହିଁ, ସେଥିରୁ ଏହି ପ୍ରମାଣଟି ସ୍ପଷ୍ଟ ଭାବରେ ମିଳିଯାଉଛି ।

ଅର୍ଥାତ୍, ଆମେରିକାର ଜୀବନରେ ଭାରତୀୟମାନଙ୍କର ଏହି ଅନୁପ୍ରବେଶଟି ଶେଷକୁ ଏକ ସ୍ଥାୟୀ ଭାରତୀୟ ବସତିକୁ ଜନ୍ମ ଦେବ । ଆମେରିକା ସରକାର ବହିରାଗତ ମାନଙ୍କ ପାଇଁ ଯଦି ଏହିପରି କୋହଳ ନୀତି ହିଁ ଅବଲମ୍ବନ କରନ୍ତି, ତେବେ ସେହି ବସତିଟି ଉତ୍ତରୋତ୍ତର ବୃଦ୍ଧି ହିଁ ପାଇବ । ତଥାପି, ବର୍ତ୍ତମାନର ଲକ୍ଷଣଗୁଡ଼ିକରୁ ଯାହା ଅନୁମାନ କରି ହେଉଚି, ଭାରତୀୟମାନଙ୍କର ସେହି ସଂସାରଟି ବେଶ୍ ବହୁକାଳ ଲାଗି ଏକ ଅଲଗା ସଂସାର ହୋଇ ରହିଥିବ । ଚେହେରାରୁ ଅଲଗା ହୋଇ ବାରିହୋଇ ପଡୁଥିବ । ଆମେରିକାରେ ଥିବ, ତଥାପି ଆମେରିକୀୟ ହୋଇ ପାରୁନଥିବ । ଏମାନେ ମଝିରେ ମଝିରେ ଭାରତ ଆସୁଥିବେ, ଭାରତବର୍ଷର ସରକାରଙ୍କୁ ଆର୍ଥିକ ଉନ୍ନୟନରେ ବିଭିନ୍ନ ପ୍ରକଳ୍ପରେ ଅର୍ଥସାହାଯ୍ୟ କରୁଥିବେ, ଭାରତରୁ ବିଶିଷ୍ଟ ବ୍ୟକ୍ତିମାନେ ଯାଇ ସେମାନଙ୍କୁ ଉଦ୍‌ବୋଧନ ଦେଇ ଆସୁଥିବେ, ଭାରତୀୟ ବିଧି ଓ ଶୈଳୀରେ ପୂଜା ଏବଂ ଉପାସନାଦିର ପ୍ରକରଣ ଲାଗି ରହିଥିବ । ଗୃହାଭ୍ୟନ୍ତରର ସଜ୍ଜାରେ ଭାରତୀୟ କଳାତ୍ମକ ବସ୍ତୁମାନ ମୁଖ୍ୟ ସ୍ଥାନ ଅଧିକାର କରି ରହିଥିବେ । ଅର୍ଥାତ୍, କର୍ମସଂସ୍ଥାନରେ ଆମେରିକାର ଖାତାରେ ନାମ ଲେଖାଇ ସେମାନେ ସଂସ୍କୃତିର ସେହି ସାଧାରଣ ଦ୍ୱାରା ଗୃହୀତ ସଂଜ୍ଞାଟା ଅନୁସାରେ ତଥାପି ଭାରତୀୟ ସାଂସ୍କୃତିକ ଚେରଗୁଡ଼ିକୁ ମୋଟେ ଛାଡ଼ି ପାରିନଥିବେ । କିଛିତ୍ ତୀଖ ଭାବରେ ହୁଏତ କୁହାଯାଇ ପାରିବ ଯେ ସେମାନେ ଆମେରିକାର ଖାଉଥିବେ ଏବଂ ଭାରତବର୍ଷର ଗାଉଥିବେ । ଯାବତୀୟ ତାତ୍କାଳିକ ସିଦ୍ଧିପ୍ରାପ୍ତିରେ ଆମେରିକାରେ ଗୃହୀତ ହେବାଭଳି ପଇତାଟା ପିନ୍ଧିଥିବେ । କିନ୍ତୁ ନିଜର ଶ୍ରଦ୍ଧାଘରେ ଭାରତଟା ଆଡ଼କୁ ଭାରି

ଆଉଜି କରି ରହିଥିବେ । ଭାରତବର୍ଷ ତରଫରୁ ଏହି ବ୍ୟାପାରଟି ଉପରେ ଦୃଷ୍ଟିପାତ କଲାବେଳେ ହୁଏତ ଆମକୁ ଭାରି ଭଲ ଲାଗିବ, ନିଜକୁ ବୁଦ୍ଧିମାନ ଏବଂ କର୍ମକୁଶଳ ବୋଲି କହିବାକୁ ଖୁବ୍ ମନ ବି ହେବ ; ମାତ୍ର ଆମେରିକା ଆଡୁ ଏହି କଥାଟି କିପରି ଦେଖା ଯାଉଥିବ ? ଏହି ବିଷୟରେ ଚିନ୍ତା କରି ଆହୁରି ଆଗକୁ ଅନାଇଲେ ଦୃଶ୍ୟପଟଟି ପ୍ରକୃତରେ କିପରି ଦେଖାଯିବ ?

ଆମେରିକାରେ ଅଧିକାଂଶ ଭାରତୀୟ ଭଲରେ ଅଛନ୍ତି । ଭଲ ରୋଜଗାର କରୁଛନ୍ତି, ଭଲ ଖାଉଛନ୍ତି ଓ ଭଲ ଚଳପ୍ରଚଳ ଭିତରେ ରହିଛନ୍ତି । ଯେଉଁମାନେ ଅଧ୍ୟାପକ, ଡାକ୍ତର ଓ ଇଞ୍ଜିନିୟର୍ ଅଛନ୍ତି, ସେମାନଙ୍କୁ ଉଚ୍ଚବର୍ଗର ଆମେରିକାବାସୀଙ୍କର ସମବର୍ଗୀୟ ବୋଲି କୁହାଯାଇ ପାରିବ । ସାମୂହିକ ଜୀବନର ଯାବତୀୟ ସୁଖ ଓ ସଂସ୍ରବ ଦୃଷ୍ଟିରୁ ଏମାନେ ସେଠା ସାଧାରଣ ଜନସ୍ତରଗୁଡ଼ିକ ଠାରୁ ଯଥେଷ୍ଟ ଉଚ୍ଚରେ ଅଛନ୍ତି । ପ୍ରାୟ ଅଲଗା ହୋଇ ନିଜ ସ୍ୱର୍ଗମାନଙ୍କରେ ରହିଛନ୍ତି । ଖାସ୍, ଆମେରିକାର ନିତ୍ୟନୈମିତ୍ତିକ ସୁଖଦୁଃଖଗୁଡ଼ିକ ଏମାନଙ୍କୁ ହୁଏତ ସ୍ପର୍ଶ ବି କରିନାହିଁ । ଆମେରିକାରେ ଦରିଦ୍ର ଅଛନ୍ତି, କଳା ଅସନ୍ତୁଷ୍ଟମାନେ ବି ରହିଛନ୍ତି ; ଅର୍ଥାତ୍ ସେଠାରେ ମଧ୍ୟ ଅସନ୍ତୋଷ ରହିଛି, ଆହୁରି ବହୁତ କିଛି ସମାଧାନ ହେବାକୁ ବାକୀ ଅଛି । ନିର୍ଦ୍ଧକ୍ତିର ଏକ ଉଚ୍ଚ ଆନରେ ବହି ନିଜ ପିଲାମାନଙ୍କୁ ସଂସ୍କୃତ ସୁଭାଷିତମାନଙ୍କରେ ସୁଅବଗତ କରାଇ ନିଜକୁ ଉଭୟ ସଂସ୍ଥାନ ତଥା ସଂସ୍କୃତିର ସ୍ତରରେ ସୁଅବସ୍ଥିତ ହୋଇ ରହିଥିବା ଏବଂ ଭାଗ୍ୟର ଅଶେଷ କୃପା ଲାଭ କରିଛି ବୋଲି ଭାବୁଥିବା ଭାରତୀୟଟିଏ ସେଗୁଡ଼ିକରେ ନିଜକୁ ସମ୍ପୃକ୍ତ କରି କାହିଁକି ବା ରଖିବ ? ଦକ୍ଷିଣ ଆଫ୍ରିକାରେ ଯେତେବେଳେ ଭାରତୀୟ ବଂଶଜମାନେ ଗୋରାମାନଙ୍କର ଶାସନଗତ ସ୍ୱେଚ୍ଛାଚାର ବିରୋଧରେ ଲଢ଼ିଲେ, ସେତେବେଳେ ସେଠା କୃଷ୍ଣକାୟମାନେ ଅତ୍ୟନ୍ତ ପତିତ ସ୍ତରରେ ରହିଥିଲେ । ତଥାପି ଭାରତୀୟମାନେ ସେମାନଙ୍କର ଶିବିରରେ ନିଜକୁ ସାମିଲ୍ କରି ପାରିଲେନାହିଁ । ସେମାନେ କେବଳ ନିଜ ଅଧିକାରଗୁଡ଼ିକ ନିମନ୍ତେ ଲଢୁଥିଲେ ଏବଂ ନିଜକୁ କଳାମାନଙ୍କର ବହୁତ ଉଚ୍ଚରେ ବୋଲି ଭାବୁଥିଲେ । ଦକ୍ଷିଣ ଆଫ୍ରିକା ସେହି ଗୋରା ସ୍ୱେଚ୍ଛାଚାରିତାର ପର୍ଯ୍ୟାୟଟି ମଧ୍ୟରୁ ମୁକ୍ତ ହୋଇ ଆସିବା ପରେ ଏବେ ମଧ୍ୟ ସେହି ଭୂମିରେ ବାସ କରୁଥିବା ଭାରତୀୟମାନେ ନିଜକୁ ତଥାପି ଏକ ସ୍ୱତନ୍ତ୍ର ବର୍ଗ ବୋଲି ଭାବୁଛନ୍ତି । ସେମାନେ ଏବେ ମଧ୍ୟ ମୁଖ୍ୟ ସ୍ରୋତରେ ମିଶି ପାରିନାହାନ୍ତି । ସଂପ୍ରତି ଆମେରିକାରେ ଘର କରି ରହିବାକୁ ଯାଇଥିବା ଭାରତୀୟମାନଙ୍କୁ ସେହିପରି କୌଣସି ସମାନ୍ତର ସହିତ ଏକାଠି ମିଶାଇ ସ୍ଥିତିଟିର ଆଲୋଚନା କରିହେବ କି ?

କଳାମାନଙ୍କୁ ଦାସ କରି ରଖି ଆମେରିକାକୁ ଏକମାତ୍ର ଇନ୍ଦ୍ର ଭଳି ଭୋଗ କରିବାର ଅମାନୁଷିକତାକୁ ଲୋପ କରିବା ସକାଶେ ଶ୍ରୀଯୁକ୍ତ ଆବ୍ରାହାମ୍ ଲିନ୍‌କଲ୍‌ନ କ୍ରୀତଦାସ-ପ୍ରଥାକୁ ସମର୍ଥନ କରୁଥିବା ରାଜ୍ୟଗୁଡ଼ିକ ବିରୋଧରେ ଯୁଦ୍ଧଅଭିଯାନ କରିଥିଲେ ଏବଂ

ସେହି ଯୁଦ୍ଧରେ ଜୟଲାଭ କରିଥିଲେ । ଦାସତ୍ୱପ୍ରଥାର ବିଲୋପ ହେଲା । କଳାମାନେ ସେହି ଆମେରିକାରେ ରହିଲେ, ପୂର୍ଣ୍ଣ ନାଗରିକର ଅଧିକାର ପାଇଲେ । ତଥାପି କ'ଣ ବର୍ଗଗତ ଦୂରତାର ସେହି ସମସ୍ୟାଟିର ସମ୍ପୂର୍ଣ୍ଣ ସମାଧାନ ହୋଇ ପାରିଲା ? ଘାଆଟା ଶୁଖିଯିବା ପରେ ତଥାପି ଦାଗଟା ଦେହଉପରେ ରହିଗଲା । ହୁଏତ ଏବେ ମଧ ତାହା ସମ୍ପୂର୍ଣ୍ଣ ଭାବରେ ନିଭି ପାରିନାହିଁ, ନାନାଭାବେ ଆମେରିକାର ସମ୍ବନ୍ଧଗତ ଜୀବନକୁ ଅଶ୍ୱସ୍ତିମୟ କରି ରଖିଛି । ଗୋରାମାନଙ୍କର ହାରାହାରି ଧନସୀମା ଠାରୁ କଳାମାନଙ୍କର ହାରାହାରି ଧନସୀମା ଆଖିଦୃଶିଆ ଭାବରେ ନିମ୍ନରେ ରହିଛି । ମୁକ୍ତିଲାଭ ପରେ କୃଷ୍ଣକାୟମାନେ ଭୂମିର ମାଲିକାନା ଫେରି ପାଇବା ଏବଂ ଶିକ୍ଷାର ବହୁପ୍ରସାର ଉପରେ ସର୍ବାଧିକ ଗୁରୁତ୍ୱ ଦେଇଥିଲେ ସତ, ତଥାପି ବ୍ୟବଧାନଗୁଡ଼ାକ ବହୁତ ପ୍ରକାରେ ରହିଗଲେ । ତାହାର ଅଶ୍ୱସ୍ତିକାରୀ ନିଦର୍ଶନମାନ ଏବେ ମଧ ଆମେରିକାରେ ଦେଖିବାକୁ ମିଳିବ । ଗୋଟିଏ ଗୋଟିଏ ସ୍କୁଲରେ କଳା ଓ ଗୋରା ପିଲାମାନେ ସମାନ ସଂଖ୍ୟାରେ ରହିଥିଲେ ମଧ ପ୍ରାୟ ଶତକଡ଼ା ୮୫ କଳା ପିଲା ବିଭିନ୍ନ ବିଷୟରେ ଶହେରୁ କେବଳ ତିରିଶି ପଇଁତିରିଶି ଯାଏ ନମ୍ବର ପାଉଛନ୍ତି, ଅର୍ଥାତ୍ D ରୁ F ଶ୍ରେଣୀରେ ରହୁଛନ୍ତି । କେଉଁଠାରେ ଆଦୌ କିଛି ଅବିଚାର ହେଉନାହିଁ ସତ, ତଥାପି ଫଳ ଏହିପରି ହେଉଛି । କଳା ପିଲାଙ୍କୁ ସାହାଯ୍ୟ କରିବା ନିମନ୍ତେ ସ୍କୁଲରେ ବିଶେଷ ସହାୟକ ପ୍ରଚେଷ୍ଟାମାନ କରାଯାଉଛି, ତଥାପି ପରୀକ୍ଷାରେ କଳା ପିଲାମାନେ ଏତେ ତଳେ ଯାଇ ରହୁଛନ୍ତି । ଏକାଧିକ କାରଣରୁ ଶିକ୍ଷାପ୍ରତି ଆଗ୍ରହୀ ହେବାର କ୍ଷେତ୍ରରେ ଉଚିତ୍ ପରିମଳଟି ସମ୍ଭବ ହୋଇ ପାରିନାହିଁ । କୌଣସି କଳା ପିଲା ବିଶ୍ୱବିଦ୍ୟାଳୟର ସ୍ତରରେ ଅଧିକ ପରିଶ୍ରମ ଫଳରେ ଭଲ ଫଳ ଦେଖାଇବାକୁ ଚେଷ୍ଟା କଲେ ତା'ର କଳା ସାଙ୍ଗମାନେ ହୁଏତ ତାକୁ 'acting white' ବୋଲି କହି ଚିଡ଼ାଉଛନ୍ତି, ଏବଂ ନିରୁତ୍ସାହିତ କରୁଛନ୍ତି । ଏହାରି ଫଳରେ କର୍ମସୁଯୋଗର ଉଚ୍ଚ କ୍ଷେତ୍ରମାନଙ୍କରେ କଳାମାନେ ଯଥେଷ୍ଟ ସଂଖ୍ୟାରେ ପ୍ରବେଶ କରି ପାରୁନାହାନ୍ତି ଓ ବଞ୍ଚିତ ହୋଇ ରହିଛନ୍ତି । ସମାଜରେ, ପ୍ରତିଭା-ପ୍ରଦର୍ଶନରେ ବେତେ ପଛରେ ରହିଛନ୍ତି । ପ୍ରବୀଣତା ଏବଂ ପ୍ରତିଯୋଗିତା ଉପରେ ଏତେ ମହତ୍ତ୍ୱ ଦେଉଥିବା ଏକ ସମାଜରେ ସେମାନେ କେବେ ଯେ ଅନ୍ୟମାନଙ୍କ ସହିତ ସମାନ ଡ଼ାଳରେ ଆସି ବସିପାରିବେ, ସେକଥା କିଏ କହିବ ?

କେଉଁ ଆବହମାନ କାଳରୁ ହିଁ ଶ୍ରମ କରି ସଂସ୍ଥାନଟିଏ ଖୋଜି ଚୀନାମାନେ ପ୍ରଶାନ୍ତ ମହାସାଗର ପାରି ହୋଇ ଆମେରିକାର ଭୂଖଣ୍ଡଟିକୁ ଆସିଛନ୍ତି । ସେମାନଙ୍କର ଅବସ୍ଥା ହୁଏତ ସେହି ଆବହମାନ କାଳରୁ ହିଁ ଅତ୍ୟନ୍ତ ଶୋଚନୀୟ ହୋଇ ରହିଆସିଛି । ପ୍ରାୟ ଦେଢ଼ଶହ ବର୍ଷ ତଳେ ଯେତେବେଳେ ପରାକ୍ରମୀ ଗୋରାମାନେ ଲୋହିତ ଭାରତୀୟମାନଙ୍କୁ ମାରି ଗୋଡ଼ାଇବାରେ ଲାଗିଥିଲେ, ଏତେ ବେଶୀ ଦୁର୍ଗତି ମଧରେ ରହିଥିବା ସେହି ଲୋହିତମାନେ ମଧ ସେତେବେଳେ ଦରିଆ ସେପାଖରୁ ଆସି ପହଞ୍ଚୁଥିବା ଚୀନାମାନଙ୍କୁ

ସେମାନଙ୍କ ଠାରୁ ମଧ ଅଧିକ ହେୟ ଜ୍ଞାନ କରୁଥିଲେ । ସେମାନଙ୍କୁ ବାନ୍ଦର ବୋଲି ଚିଡ଼ାଉଥିଲେ । ବହୁତ ପରିମାଣରେ ଚୀନା ଲୋକେ ଇତିମଧରେ ଆମେରିକାର ଜୀବନରେ ନିଜଲାଗି ମଧ ମୂଳଟିଏ ଯୋଗାଡ଼ କରି ପାରିଲେଣି ସତ, ମାତ୍ର ଆହୁରି ଅନେକେ ସେହି ଆଗପରି ଅତ୍ୟନ୍ତ ଦୁର୍ଗତି ଅବସ୍ଥାରେ ରହିଛନ୍ତି । ଏବେ ମଧ ଚୀନ୍‌ର କେତେକ ପ୍ରଦେଶରୁ ହଜାର ହଜାର ଡ଼ଲାର ଲାଞ୍ଚଦେଇ ନିଜର ଭାଗ୍ୟଟିକୁ ପରୀକ୍ଷା କରି ଦେଖିବାର ପ୍ରଲୋଭନରେ ସେମାନେ ଆମେରିକା ଆସୁଛନ୍ତି । ସେମାନଙ୍କୁ ନିଉୟର୍କ ସହରର ବହୁବ୍ୟସ୍ତ ମାନ୍‌ହାଟାନ୍ ଅଞ୍ଚଳରେ ଘୁଷୁରି ପରି ରହିବାକୁ ପଡ଼େ ଏବଂ ଯାବତୀୟ କିସମର ମେହନତରେ ନିଯୁକ୍ତ ହେବାକୁ ହୋଇଥାଏ । ସେମାନେ ଦେହର ହାଡ଼କୁ ଚୂନା କରି ଶ୍ରମ କରନ୍ତି, ମାତ୍ର ବିଧି ଅନୁସାରେ ଶ୍ରମିକ ବୋଲି ସ୍ୱୀକୃତି ଲାଭ କରି ନଥିବାରୁ ସେମାନଙ୍କୁ ଅକଥନୀୟ ଅତ୍ୟାଚାର ତଥା ଅବିଚାର ଭୋଗ କରିବାକୁ ପଡ଼ିଥାଏ । ସେମାନେ ଅଧିକାଂଶତଃ ଠିକା କାମରେ ନିଯୁକ୍ତ ହୁଅନ୍ତି ଓ ଠିକାରେ ମଜୁରି ପାଆନ୍ତି । ସେତିକି ମଧ ନିୟମିତ ଭାବରେ ପାଇବା ସେମାନଙ୍କୁ ନିଯୁକ୍ତ କରୁଥିବା ମାଲିକମାନଙ୍କର ମର୍ଜି ଉପରେ ବି ନିର୍ଭର କରିଥାଏ । ସେମାନେ ମୁଖ୍ୟତଃ ସିନେଇ କପଡ଼ା ତିଆରି କରୁଥିବା କୋମ୍ପାନୀମାନଙ୍କରେ କାର୍ଯ୍ୟ କରୁଥାନ୍ତି । ବେଳେ ବେଳେ ଦିନକୁ ସତର ଘଣ୍ଟା କାମ କରୁଥିଲେ ମଧ ଉଦରଭରଣ ସମ୍ଭବ ହୋଇ ପାରେନାହିଁ । ଏହି ଦୁରବସ୍ଥାର ଦୌରାତ୍ମ୍ୟ ଭିତରେ ସେମାନେ ନିଜ ଦେଶକୁ ଝୁରି ହୁଅନ୍ତି,- ନିଜ ଦେଶରେ ନିଜର ପୈତୃକ ସ୍ଥାନରେ ତଥାପି ଭଲ ଥିଲେ ବୋଲି ପଶ୍ଚାତ୍ତାପ କରନ୍ତି । ମାତ୍ର ପୁନର୍ବାର ସେଠାକୁ ଫେରିଯିବାର ସମ୍ଭାବନା ହିଁ ନଥାଏ ।

ଆମେରିକାରେ ଆଉଗୋଟିଏ ଦଳିତ ବର୍ଗ ହେଉଛନ୍ତି ଲାଟିନ୍‌ମାନେ । ସେମାନେ ଆମେରିକାର ଦକ୍ଷିଣ ସୀମାକୁ ଲାଗିଥିବା ମେକ୍ସିକୋ ଠାରୁ ଆରମ୍ଭ କରି ପ୍ରାୟ ଦକ୍ଷିଣ ମେରୁ ଆଡ଼କୁ ଗୋଳିଆ ହୋଇ ଲମ୍ବି ଯାଇଥିବା ଚିଲି ଦେଶରୁ ଆମେରିକାକୁ ଆସିଛନ୍ତି । କୋଉ ଅମଳରୁ ଆସିଥିଲେ, ଏବେ ମଧ ଆସୁଛନ୍ତି । ଆମେରିକାର ଉତ୍ପାଦନପେଣ୍ଠ ପାଇଁ ସେମାନେ ଶସ୍ତା ଶ୍ରମ ଯୋଗାଇ ଦେଉଛନ୍ତି । ଆମେରିକାର ପଡ଼ିଶା ହୋଇଥିବାରୁ ନ୍ୟାୟତଃ ସେହି ସବୁ ଦେଶ ଆମେରିକାରୁ ପ୍ରେରଣା ଲାଭ କରି କେତେ ଉନ୍ନତ ହୋଇଥାଆନ୍ତେ । ମାତ୍ର, ଆମେରିକାର ଯାବତୀୟ ସ୍ୱାର୍ଥ ସେମାନଙ୍କୁ ଏପରି ଭାବରେ କାମୁଡ଼ି ଧରିଛି ଯେ, ସେହିସବୁ ଦେଶରେ ସୁସ୍ଥ ଜୀବନଟିଏ ବଞ୍ଚିବାର ନିର୍ଭରଯୋଗ୍ୟ ଭୂମିଟିଏ ଏବେ ମଧ ତିଆରି ହୋଇ ପାରିନାହିଁ । ଖାଲି ଗୋଟିଏ ଦ୍ୱୀପଦେଶ କିଉବା ଆମେରିକାର ପାଲରେ ପଡ଼ିନାହିଁ ବୋଲି ଆମେରିକା ତାକୁ ନିଜର ଶତ୍ରୁ ପରି ବ୍ୟବହାର ଦେଉଛି । ପ୍ରାୟ ଗୋଟାଏ ଶତାବ୍ଦୀ ଧରି ଆମେରିକା କିଉବାର ଗୋଟିଏ ଅଂଶକୁ ଦଖଲ କରି ରଖିଛି, ସେଠାରେ ସାମରିକ ସୈନ୍ୟ-ସରଞ୍ଜାମ ମହଜୁଦ କରି ରଖିଛି । ଅର୍ଥନୈତିକ ଦୃଷ୍ଟିରୁ କିଉବାକୁ ପ୍ରାୟ

ଚାରିଆଡ଼ୁ ବାସନ୍ଦ ହୋଇ ରହିବା ନିମନ୍ତେ ବାଧ କରିଛି । ଆମେରିକାର କଥା ମାନୁନାହିଁ ବୋଲି କିଉବାକୁ ଏହି ଦଣ୍ଡ ଭୋଗିବାକୁ ପଡୁଛି । ଅଥଚ୍, ପର୍ଯ୍ୟବେକ୍ଷକ ମାନଙ୍କର କହିବା ଅନୁସାରେ ସେହି ଅଞ୍ଚଳରେ କିଉବା ହେଉଚି ଏକମାତ୍ର ଦେଶ, ଯେଉଁଠାରେ ପିଲାମାନଙ୍କୁ ଖାଲି ଗୋଡ଼ରେ ଯିବାକୁ ହେଉନାହିଁ କିମ୍ବା ଉପାସ ରହିବାକୁ ପଡୁନାହିଁ । ରାସ୍ତାରେ ଅରକ୍ଷିତଙ୍କ ପରି ଶୋଇବାକୁ ପଡୁନାହିଁ ଏବଂ ସବୁପିଲା ପାଠ ପଢ଼ି ପାରୁଛନ୍ତି । ଦକ୍ଷିଣ ଆମେରିକାର ଅନ୍ୟ ଦେଶଗୁଡ଼ିକରେ ତାହା ସମ୍ଭବ ହୋଇନାହିଁ । ସେହି ଦେଶର ଲୋକେ ଶ୍ରମ ବିକି ସଂସ୍ଥାନଟିଏ ସମ୍ଭବ କରିବାର ଅଭିପ୍ରାୟରେ ଆମେରିକାକୁ ଆସୁଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ କାଳକ୍ରମେ ଏହି ଆମେରିକାର ବାସିନ୍ଦା ହୋଇ ରହି ଯାଇଛନ୍ତି । ସେମାନଙ୍କର ଜୀବନସଂଗ୍ରାମ ସେମାନଙ୍କୁ ତଥାପି ହାରାହାରି ଗୁଳାଟି ଉପରକୁ ଆଣି ପାରିନାହିଁ । ସର୍ବପ୍ରଥମେ ସେହିମାନଙ୍କର ମୂଳଭୂମିରୁ ତ କଲମ୍ବସ୍ ଏହି ମହାଦେଶଟିକୁ ଆସିଥିଲେ । ଏବଂ, ମୁଖ୍ୟତଃ ସେହିମାନେ ହିଁ ତତ୍କାଳୀନ ସ୍ଥାନୀୟମାନଙ୍କୁ ପରାଭୂତ କରି ଇଉରୋପୀୟ ସର୍ବପ୍ରଥମ ବସତିଗୁଡ଼ିକୁ ସ୍ଥାପନ କରିଥିଲେ । ଅନ୍ୟମାନେ ପରେ ସିନା ଆସିଲେ । ସେହି ସ୍ମୃତିଟା ମଧ୍ୟ ସେମାନଙ୍କୁ କମ ଖେଞ୍ଚା ଦେଉନଥିବ । ହୁଏତ ଆହୁରି ବହୁକାଳ ଲାଗି ସେମାନେ ଏହିପରି ପଛଧାଡ଼ୀରେ ରହିଥିବେ । ପ୍ରତିଯୋଗିତାରେ ଆଦୌ ପାରୁନଥିବେ । ନିଜକୁ ନ୍ୟୁନ ବୋଲି ମନେ କରୁଥିବେ ଓ ପରିଣାମତଃ ହିଂସ୍ର ହେବାପାଇଁ ଏକ ଅନୁକୂଳ ପ୍ରୋତ୍ସାହନ ପାଉଥିବେ । ସେମାନେ ତଥାପି ସମଗ୍ର ଆମେରିକାର ଗୋଟିଏ ଅଂଶ ହୋଇ ରହିଥିବେ ।

ଭାରତବର୍ଷର ସଂସାରଟିକୁ ଅନିଶ୍ଚିତ ମଣି ଯେଉଁ ଭାରତୀୟମାନେ ଆମେରିକା ଯାଇଛନ୍ତି ଓ ସେଠାରେ ଆପଣାର ଭାଗ୍ୟ ଡ଼ିହଟିକୁ ସମ୍ଭ୍ରାନ୍ତତାର ଏକ ଉଜ୍ଜ୍ୱଳ ପରିଚୟ ଦେଇ ପାରିଛନ୍ତି, ଆମେରିକାର କୃଷ୍ଣକାୟମାନେ, ଚୀନାମାନେ ଓ ଲାଟିନାମାନେ ସେମାନଙ୍କୁ କିପରି ଆଖିରେ ଦେଖୁଥିବେ ? ଏବଂ, ଅପର ପକ୍ଷରେ, ଆମେରିକାର ଭାଗ୍ୟମୟ ଆକାଶଟିରେ ଆପଣା ନିମନ୍ତେ ମନଲାଖି ଥାନଗୁଡ଼ିକୁ ତିଆରି କରିବାରେ ନିମଗ୍ନ ହୋଇ ରହିଥିବା ଭାରତୀୟମାନେ ମଧ୍ୟ ସେହି ଗୋଷ୍ଠୀଗୁଡ଼ିକୁ ପ୍ରକୃତରେ କିପରି ଦୃଷ୍ଟିରେ ଦେଖୁଥିବେ ? ଆମେରିକା କହିଲେ ଯେ ଏହି ସମସ୍ତଙ୍କୁ ହିଁ ବୁଝାଏ, ସେଠାରେ ସମାଗତ ହୋଇଥିବା ଭାରତୀୟମାନେ ସେକଥା ଉପଲବ୍ଧି କରି ପାରୁଥିବେ ତ ? ଆମେରିକାର ରାଜନୀତିକ ଜୀବନରେ ଭାଗ ନେବାକୁ ହେଲେ ଭାରତୀୟମାନେ ପ୍ରକୃତରେ କେଉଁ ପଟଟି ସହିତ ରହିବେ ? ଧନ ପାଇଁ, ଖ୍ୟାତି ପାଇଁ ଏବଂ ପଦ ପାଇଁ ସେଠାକୁ ଯାଇଥିବା ଭାରତୀୟମାନେ ସେମାନଙ୍କ ଠାରୁ ଅଧିକ ଧନ, ଅଧିକ ଖ୍ୟାତି ଏବଂ ଅଧିକ ବଡ଼ ପଦମାନ ଅଧିକାର କରି ରହିଥିବା ଗୋଷ୍ଠୀଟିକୁ ହିଁ ମଡ଼େଲ୍ ବୋଲି ଗ୍ରହଣ କରିବେ, ଆମେରିକା କହିଲେ ସେମାନେ ସେହିମାନଙ୍କୁ ହିଁ ବୁଝିବେ । ବର୍ତ୍ତମାନ ପ୍ରଧାନତଃ ତାହାହିଁ ହେଉଛି ।

ଯେକୌଣସି ପୁଞ୍ଜିନିଷ୍ଠ ସମାଜରେ ସଭିଙ୍କର ଆଖି ନିୟମତଃ ଉପର ଆଡ଼କୁ ହିଁ ହୋଇ ରହିଥାଏ, ସମସ୍ତେ କେବଳ ପାହାଚ ଉଠି ଚାଲିଯିବାକୁ ତତ୍ପର ହୋଇ ରହିଁଥାନ୍ତି ଏବଂ ଯେଉଁମାନେ ପଛରେ ରହିଲେ, ସେମାନଙ୍କୁ ସେମାନଙ୍କର ସଂଘର୍ଷ ଭିତରେ ହିଁ ରହିବାକୁ ଛାଡ଼ିଦେଇ ଚାଲିଯିବାରେ ଲାଗିଥାନ୍ତି । ଭାରତବର୍ଷରୁ ରାଜନୀତି କ୍ଷେତ୍ରର ନେତାମାନେ ଏବେ ଆମେରିକା ଯାଇ ସେଠାରେ ରହିଥିବା ଭାରତୀୟମାନଙ୍କୁ ଉତ୍ସାହ ଦେଇ କହିଲେଣି ଯେ, ଏଣିକି ଭାରତୀୟମାନଙ୍କର ମଧ୍ୟ ଆମେରିକାର ରାଜନୀତିରେ ସକ୍ରିୟ ଭାଗ ନେବାପାଇଁ ଉଦ୍ୟମ କରିବା ଉଚିତ୍ । ଆମେରିକାରେ ରାଜନୀତି କହିଲେ ନିର୍ବାଚନଟାକୁ ହିଁ ବୁଝାଏ । ଭାରତୀୟମାନେ ସଂଖ୍ୟାରେ ଓ ପ୍ରଭାବରେ ବଢ଼ିବା ସଙ୍ଗେ ସଙ୍ଗେ ସେମାନେ ଯଦି ଆଗ୍ରହ କରି ନିର୍ବାଚନରଣରେ ପ୍ରବେଶ କରିବେ, ତେବେ ସେମାନେ କେଉଁସବୁ ସ୍ୱାର୍ଥର ପ୍ରତିନିଧିତ୍ୱ କରିବେ ? ଅତ୍ୟନ୍ତ ସ୍ପଷ୍ଟ ଭାବରେ କୁହାଯାଇ ପାରିବ ଯେ ସେମାନେ ସବାଆଗ ଭାରତୀୟମାନଙ୍କର ସ୍ୱାର୍ଥପଟେ ରହିବେ । ସେଠାରେ ଯେଉଁମାନେ ଆହୁରି ତଳେ ରହିଛନ୍ତି, ନିଜକୁ ବଞ୍ଚିତ ବୋଲି ଅନୁଭବ କରୁଛନ୍ତି, ସେମାନଙ୍କର ପକ୍ଷ ସମର୍ଥନ କରିବା ଭାରତୀୟମାନଙ୍କ ପକ୍ଷରେ କେତେଦୂର ସମ୍ଭବ ହେବ କେଜାଣି ? ଏବଂ, ବଞ୍ଚିତ ତଳଗୁଡ଼ିକ ଯେ ଏବେ ମଧ୍ୟ ଭାରତୀୟ ଗୋଷ୍ଠୀଟିକୁ ଯାବତୀୟ ଅର୍ଥରେ ଉଚ୍ଚତରମାନଙ୍କ ସହିତ ସ୍ୱାର୍ଥ ଜଡ଼ାଇ ରହିଥିବା ପରି ଭାବିଲେଣି, ସେହି ଅଶୁଭ କଥାଟିର ସୂଚନା ମଧ୍ୟ ମିଳିବାକୁ ଲାଗିଲାଣି ।

ଖାଲି କଳାମାନେ ନୁହନ୍ତି, ଗୋରାମାନଙ୍କ ମଧ୍ୟରେ ବି ବେକାର ରହିଛନ୍ତି । ସେମାନେ ବହୁ ଅସନ୍ତୋଷରେ ଉତ୍ତପ୍ତ ହୋଇ ରହିଛନ୍ତି । ଭାରତୀୟମାନେ ହୁଁ କରି ସେମାନଙ୍କ ଦେଶକୁ ଆସି ଅଳ୍ପ କେତେଟା ବର୍ଷରେ ଯେ ସେମାନଙ୍କ ଦେଶରେ ଏତେ ସମ୍ପନ୍ନତା ଅର୍ଜନ କରିବେ ଓ ସମ୍ଭ୍ରାନ୍ତ ବୋଲାଇବେ, ସେମାନେ ଏହି ଘଟଣାଟିକୁ ଆଦୌ ସୁଖୀ ହୋଇ ଗ୍ରହଣ କରିବେ ନାହିଁ । ଈର୍ଷାନ୍ୱିତ ହେବେ, ଦ୍ୱେଷ କରିବେ, ଭାରତୀୟମାନଙ୍କ ପ୍ରତି ଅସହିଷ୍ଣୁତା ଆଚରଣ କରିବେ । ଏହିଭଳି ଆଭାସମାନ ଆମେରିକାରେ କ୍ରମେ ଦେଖିବାକୁ ବି ମିଳିଲାଣି । କେତେ ମାସ ପୂର୍ବେ ଜଣେ ଭାରତୀୟ ଯୁବକକୁ ତିନିଜଣ ଆମେରିକୀୟ ଆକ୍ରମଣ କରିଥିବାର ଓ ଚାବୁକରେ ପିଟି ଆହତ କରିଦେଇ ଥିବାର ସମ୍ବାଦଟିଏ ପ୍ରକାଶ ପାଇଥିଲା । ଯୁବକଟିର ବାପା ବହୁ ବର୍ଷତଳେ ଭାରତରୁ ଆମେରିକା ଯାଇ ପ୍ରତିଷ୍ଠିତ ହୋଇ ବସବାସ କରୁଛନ୍ତି । ସେମାନେ ଯୁବକଟିକୁ ଚାବୁକ୍ ପିଟି ଅଚେତ କରି ଦେଇଥିଲେ । ପିଟୁଥିବା ବେଳେ କହୁଥିଲେ : 'ତୁମ ଭାରତୀୟମାନଙ୍କୁ ଆମେ ଗୋଟି ଗୋଟି କରି ଆମ ପଡ଼ିଶାରୁ ବାହାର କରିଦେବୁ । ତୁମେମାନେ ସମସ୍ତେ ଏଠାରୁ ଚାଲି ନଗଲା ପର୍ଯ୍ୟନ୍ତ ଆମେ କଦାପି କ୍ଷାନ୍ତ ହେବୁନାହିଁ ।' ହିସାବରୁ ଜଣା ପଡ଼ିଯାଉଛି ଯେ, ଆମେରିକାରେ ବସବାସ କରୁଥିବା ଭାରତୀୟବର୍ଗ ହିଁ ସେହି ଦେଶର ସର୍ବାଧିକ ଶିକ୍ଷିତ ଏବଂ ସର୍ବାଧିକ ଧନବାନ୍‌ମାନଙ୍କ ଭିତରେ ସୁମାରି ହେଲେଣି । ଲସ୍ ଆଞ୍ଜେଲସ୍ ସହରରେ ଚାରିଜଣ ଅଳ୍ପବୟସ୍କ ଯୁବକ ଚାରିଜଣ

ଭାରତୀୟ-ଆମେରିକୀୟ ବ୍ୟବସାୟୀଙ୍କୁ ଆକ୍ରମଣ କରିଥିବାର ଆଉ ଏକ ସମ୍ବାଦ ମଧ୍ୟ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ସେମାନେ କୌଣସି ଏକ ବିଷାକ୍ତ ଏସିଡ୍ ଆଣି ଭାରତୀୟଙ୍କ ଉପରେ ଢ଼ାଳି ଦେଇଥିଲେ ଏବଂ ସେମାନଙ୍କୁ ଅତ୍ୟନ୍ତ ଉଦ୍‌କ୍ଷିପ୍ତ ଭାବରେ ଗାଳି ବି ଦେଉଥିଲେ । ବ୍ୟକ୍ତିଗତ ଭାବରେ ଏହି ତରୁଣମାନଙ୍କର ବ୍ୟବସାୟୀମାନଙ୍କ ସହିତ କୌଣସି କଳହ କିମ୍ବା ଶତ୍ରୁତା ନଥିଲା । ସେମାନେ ଭାରତୀୟ ଏବଂ ସେମାନଙ୍କ ଦୃଷ୍ଟିରେ ଏକ ଅବାଞ୍ଛିତ ଗୋଷ୍ଠୀର ପ୍ରତିନିଧିତ୍ୱ କରୁଛନ୍ତି, ସେତିକି ଯଥେଷ୍ଟ ଥିଲା ।

ଭାରତୀୟମାନଙ୍କ ତରଫରୁ ପ୍ରତିନିଧିମୂଳକ ଭାବରେ ଘଟଣାଦ୍ୱୟର ତୀବ୍ର ପ୍ରତିବାଦ ହୋଇଥିଲା ଏବଂ ଏକ ଗଣତନ୍ତ୍ରଶାସିତ ଦେଶରେ ସମସ୍ତଙ୍କର ନିରାପତ୍ତା ଅବଶ୍ୟ ରହିବା ଉଚିତ୍ ବୋଲି ଆପତ୍ତି ମଧ୍ୟ କରା ଯାଇଥିଲା । ତଥାପି ଗଣତନ୍ତ୍ର କହିଲେ ସମସ୍ତଙ୍କ ପାଇଁ ଏକ ନିର୍ଭରଯୋଗ୍ୟ ନିରାପତ୍ତାର ପ୍ରତିଶ୍ରୁତି ବ୍ୟତୀତ ସର୍ବତ୍ର ଆହୁରି ଅନେକ ଅଧିକ କଥାକୁ ଅବଶ୍ୟ ବୁଝାଇବ। ଭାରତବର୍ଷ ପରି ଏକ ନିତାନ୍ତ ପଛୁଆ ଦେଶରେ ଯେପରି ବୁଝାଇବ, ଆମେରିକା ପରି ଧନରେ, ସୁଯୋଗରେ ଏବଂ ସମ୍ପନ୍ନତାରେ ଏକ ବହୁତ ଆଗୁଆ ଦେଶରେ ମଧ୍ୟ ସେହିପରି ବୁଝାଇବ । କେବଳ ଭାରତୀୟ ନୁହନ୍ତି, ଅନ୍ୟ ଏକ ଦେଶକୁ ଭାଗ୍ୟ ନିର୍ମାଣ କରି ଯାଇଥିବା ପ୍ରତ୍ୟେକ ଗୋଷ୍ଠୀକୁ ସେହି ଦେଶର ସମଗ୍ର ସ୍ଥିତିଟି ସହିତ ବୁଝାମଣା କରି ରହିବାକୁ ହିଁ ପଡ଼ିବ । ଏବଂ, ଏକାବେଳେକେ ଦୁଇଟି ଦେଶର ନାଗରିକତ୍ୱ ଭିତରେ ଟାଣି ହେବାରେ ଲାଗିଥିବା ପର୍ଯ୍ୟନ୍ତ ଭାରତୀୟମାନଙ୍କୁ ଏକ ସୁସ୍ଥ ସମାଧାନରେ ଆସି ପହଞ୍ଚିବା ପ୍ରକୃତରେ ଅତ୍ୟନ୍ତ କଷ୍ଟକର ହୋଇ ରହିବାକୁ ବାଧ୍ୟ ହେବ । ଆମେରିକାରେ ଥିବା ଭାରତୀୟ ବଂଶଜମାନେ ଅଧିକ ଅନ୍ତରଙ୍ଗ ଭାବରେ ଆମେରିକା ସହିତ ନିଜକୁ ସମ୍ପୃକ୍ତ ଏବଂ ସଂଲଗ୍ନ କରି ରଖନ୍ତୁ, ଆମେରିକାର ଦୁଃଖସୁଖରେ ହିଁ ଅଧିକ ସାଧୁତାର ସହିତ ଭାଗୀ ହୋଇ ରହନ୍ତୁ, ତାହାହିଁ ସବୁଠାରୁ ଅଧିକ ସୁସ୍ଥ ହେବ । ନହେଲେ ସେଠାରେ ଏକାଧିକ ପୁରୁଷ ବାସ କରିବାପରେ ମଧ୍ୟ ସେମାନେ ଏକାଧିକ ଅର୍ଥରେ ବିଦେଶୀ ହୋଇ ରହି ଯାଉଥିବେ । ଆମେରିକାର ସ୍ଥାୟୀ ବାସିନ୍ଦାମାନେ ସେମାନଙ୍କୁ ମୋଟେ ସ୍ୱୀକାର କରିନେଇ ପାରିବେନାହିଁ । ଏବଂ, ଯେଉଁ ବିଶେଷ ଗୋଷ୍ଠୀଗୁଡ଼ିକ ସେଠାରେ ନିଜକୁ ବଞ୍ଚିତ ଏବଂ ଅବହେଳିତ ବୋଲି ଅନୁଭବ କରୁଛନ୍ତି, ସେମାନେ ମଧ୍ୟ ଭାରତୀୟମାନଙ୍କ ପ୍ରତି କ୍ରମେ ଅଧିକ ଈର୍ଷାନ୍ୱିତ ହୋଇ ଉଠିବେ । ଆମେରିକାରେ ଏହିପରି ଭାବରେ ଜାତି ଜାତି ଭିତରେ ବୈମନସ୍ୟ ଲାଗି ରହିଥିବ । କୁବେରଘରର ଅସୁମାରି ଧନସମ୍ପତ୍ତି ସେହିସବୁ ବୈମନସ୍ୟକୁ ସମ୍ଭବତଃ ଅଧିକ ଅନମନୀୟ ହେବାରେ ହିଁ ସହାୟତା କରୁଥିବ । ଆମେରିକା ପୃଥିବୀଯାକ ଅଭିଭାବକ ହୋଇ ବୁଲୁଥିବ ସିନା, ନିଜର ଘରଟିରେ ବିକ୍ଷୋଭ ଲାଗି ରହିଥିବ । ଆମେରିକାକୁ ନିଜର ଘର ବୋଲି ଗ୍ରହଣ କରି ନେଇଥିବା ଭାରତୀୟମାନଙ୍କୁ ମଧ୍ୟ ଏହି ବିଷୟରେ ଗମ୍ଭୀର ଭାବରେ ଭାବିବାକୁ ପଡ଼ିବ ।



ଏଠାରେ ଭାରତବର୍ଷରେ ଓଡ଼ିଶାକୁ ଚେ଼ନାଏ ବୋଲି କହିହେବା ପରି ଆମେରିକାରେ ମଧ୍ୟ ତାହାକୁ ଭାରତବର୍ଷର ଚେ଼ନାଏ ବା କେନାଏ ବୋଲି ଅବଶ୍ୟ କୁହାଯାଇ ପାରିବ । ଅବଶ୍ୟ ଏକଥା ମଧ ସତ ଯେ, ଆମେରିକାରେ ଭାରତବର୍ଷଟା ଯେତେ ଏକତ୍ର ଭାବେ ଦେଖି ନହୁଏ, ଏହି କେନାଗୁଡ଼ିକୁ ହୁଏତ ତା'ଠାରୁ ଅଧିକ ସଘନ ଭାବରେ ଦେଖିହୁଏ । ଏବେ ମଧ ସେଠାରେ ବିଭିନ୍ନ ରାଜ୍ୟବାସୀ ଅଲଗା ଅଲଗା କରି ଗଢ଼ିଥିବା କେନାଗୁଡ଼ିକ ହିଁ ପ୍ରଧାନ ହୋଇ ରହିଛନ୍ତି, ସେହିମାନେ ହିଁ ସବୁଠାରୁ ଅଧିକ କ୍ରିୟାଶୀଳ ଥିବା ପରି ମନେ ହୋଇଥାନ୍ତି । ଆମେରିକାରେ ଥିବା ଭାରତବାସୀଙ୍କୁ ଏକାଠି କରି ଔପଚାରିକ ଭାବରେ ସଂଗଠନ କେତୋଟି ଅଛନ୍ତି ଏବଂ ସେଗୁଡ଼ିକର ମଧ ବରଷର ଭିନ୍ନ ଭିନ୍ନ ସମୟରେ ଆନୁଷ୍ଠାନିକ ଉପଚାରମାନ ରହିଛି ସତ, ତଥାପି ରାଜ୍ୟ ଅନୁସାରେ ଗଠିତ ହୋଇଥିବା ସଂଗଠନଗୁଡ଼ିକ ହିଁ ସେଠାରେ ଅଧିକ ଖୁଡ଼୍‌ଖାଡ଼୍ ହୋଇଥାନ୍ତି । ବିଭିନ୍ନ ରାଜ୍ୟ ସଂଗଠନରୁ ପ୍ରତିନିଧି ନେଇ ଭାରତୀୟ ସଂଗଠନଟିଏ ସମ୍ଭବ କରିବା ସମ୍ଭବତଃ ଏପର୍ଯ୍ୟନ୍ତ ସମ୍ଭବ ହୋଇ ପାରିନାହିଁ । ଦେଶରୁ ଆସିବା ସମୟରେ ଅଧିକାଂଶ ଭାରତୀୟ ନିଜର ଜୀବିକାଗତ ବା ଜୀବିକାସମ୍ପୃକ୍ତ ଭାଗ୍ୟଟି ବିଷୟରେ ସବୁଠାରୁ ଅଧିକ ରୋମନ୍ଥନ କରିଥିବେ ଓ ଆମେରିକାରେ ପହଞ୍ଚି ଗୋଡ଼ଟା ଥଳରେ ଲାଗି ଆସୁଥିବା ପରି ଅନ୍ଦାଜ ହେବା ସଙ୍ଗେ ସଙ୍ଗେ ସେମାନେ ସବାଆଗ ନିଜ ଭାଷାଭାଷୀ ଅନ୍ୟମାନେ କେଉଁଠି ରହିଛନ୍ତି ବୋଲି ଖୋଜି ବାହାର କରିବାକୁ ଆଗ୍ରହୀ ହୋଇଥିବେ । ଏପରି ହେବା ଅତ୍ୟନ୍ତ ସ୍ୱାଭବିକ । ଭାଷା ଅନୁସାରେ ଭାରତୀୟ ମାନଙ୍କର ସଂଗଠନଗୁଡ଼ିକ ଖୁବ୍‌ସମ୍ଭବ ଏହିପରି ଭାବରେ ଅଣ୍ଡାରୁ ଛୁଆ ଫୁଟି ବାହାରିଥିବ । ମୂଳ କୁକୁଡ଼ାଟି ଆଡ଼କୁ ଝୁଙ୍କଟା ଯିବାଲାଗି ସମ୍ଭବତଃ ସେତେ ସମୟ ମିଳିନଥିବ ।

ଆମେରିକା ଓ କାନାଡ଼ାରେ ଓଡ଼ିଆମାନଙ୍କୁ ଗୋଟିଏ ସଂଗଠନରେ ଗୁନ୍ଥି ରଖିବାର ଅଭିପ୍ରାୟରେ ସେଠାରେ ବିଗତ ପ୍ରାୟ ତିରିଶି ବର୍ଷ ହେଲା Orissa Society of America ବା OSA ଗଠିତ ହୋଇଛି । ଆରମ୍ଭରେ ଅଳ୍ପ କେତେଜଣ ଉତ୍ସାହୀ ଓଡ଼ିଆ ତାହାକୁ ଗଠନ କରିଥିବେ । ସେହି ପ୍ରଥମ ପର୍ଯ୍ୟାୟରେ ସେମାନେ ବୟସରେ ସେତେ ବେଶୀ ହୋଇନଥିବେ, ଭାରତୀୟ ନାଗରିକତ୍ୱକୁ ତ୍ୟାଗ କରି ଆମେରିକାର ନାଗରିକ ହେବା ନିମନ୍ତେ ସେମାନଙ୍କର ଧାରଣାଟି ବି ହୁଏତ ସେତେ ଦାନା ବାନ୍ଧି ନଥିବ, -ସେତେବେଳେ ନିଶ୍ଚୟ ପରସ୍ପର ସହିତ ଯୋଡ଼ିହୋଇ ନିଜର ଏକ ଗୋଷ୍ଠୀଗତ ପରିଚିତି ରହିଛି ବୋଲି ଅନୁଭବ କରିବାଲାଗି ଭାରି ମନ ହୋଇଥିବ । ତିରିଶିବର୍ଷ ପରେ ମଧ ଆମେରିକା ଏବଂ କାନାଡ଼ାରେ ରହିଥିବା ସବୁ ଓଡ଼ିଆ ଏହି ସଂଗଠନର ସଦସ୍ୟ

ହୋଇନାହାନ୍ତି । କେତେକ ବିଶେଷ ଉତ୍ସାହୀ ରହିଛନ୍ତି, ଯେଉଁମାନେ କି ଆସିଲା ଓ ଗଲାମାନଙ୍କୁ ଠାବ କରୁଛନ୍ତି ଏବଂ ସଦସ୍ୟ-ତାଲିକା ବଢ଼ାଇବାର ପ୍ରୟାସ କରୁଛନ୍ତି । ପ୍ରତିବର୍ଷ ଜୁଲାଇ ମାସ ଚାରି ତାରିଖକୁ ସେମାନେ ନିଜ ସଂଗଠନଟିର ବାର୍ଷିକୀ ପାଳନ କରୁଛନ୍ତି । କୌଣସି ଏକ ସ୍ଥାନରେ ଏକତ୍ର ସମବେତ ହେଉଛନ୍ତି, ଦୁଇଦିନର ଏକ ଉତ୍ସାହପୂର୍ଣ୍ଣ କାର୍ଯ୍ୟକ୍ରମର ମାଧ୍ୟମରେ ଯାବତୀୟ ଦୁଃଖସୁଖ ହୋଇ ପାରୁଛନ୍ତି । ଜୁଲାଇ ଚାରି ତାରିଖ ହେଉଛି ଯୁକ୍ତରାଜ୍ୟ ଆମେରିକାର ସ୍ୱାଧୀନତା ଦିବସ । ଓଡ଼ିଶାର ଭାଇ ଓ ଭଉଣୀମାନେ ନିଜ ସଂସ୍ଥାଟିର ବାର୍ଷିକ ସମାବେଶ ପାଳନ କରିବା ପାଇଁ କାହିଁକି ଏହି ଦିନଟିକୁ ବାଛିଛନ୍ତି, ସେ ବିଷୟରେ ମୁଁ ପ୍ରଥମେ କିଞ୍ଚିତ୍ କୌତୁହଳ ପ୍ରକାଶ କରିଥିଲି । ପଚାରି ଜାଣିଲି ଯେ, ଆମେରିକାର ସ୍ୱାଧୀନତା ଦିବସ ହୋଇଥିବାରୁ ସେଦିନଟି ଦେଶଯାକ ଛୁଟୀ, ଅଫିସ୍ କଚେରୀ ସବୁ ବନ୍ଦ । ସମସ୍ତଙ୍କୁ ଏ ବୈଠକଟିରେ ଯୋଗଦେବାକୁ ସୁବିଧାଜନକ ହେବ ବୋଲି ସେହି ତାରିଖଟିକୁ ରଖା ଯାଇଛି ।

୧୯୯୮ ମସିହା ଜୁଲାଇ ଚାରି ତାରିଖର ବାର୍ଷିକ ବୈଠକ କାଲିଫର୍ଣ୍ଣିଆ ରାଜ୍ୟର ମଣ୍ଟେରେଠାରେ ଅନୁଷ୍ଠିତ ହେଉଥିଲା । ଉତ୍ସବଟି ତିନି ତାରିଖ ଆରମ୍ଭ ହେବ ଏବଂ ଚାରି ତାରିଖ ଅପରବେଳା ସରିବ । ସୋସାଇଟି ତରଫରୁ ଉତ୍ସବରେ ଯୋଗ ଦେବା ନିମନ୍ତେ କର୍ମକର୍ତ୍ତାମାନେ ଏଥର ମୋତେ ନିମନ୍ତ୍ରଣ କରିଥିଲେ । ପ୍ରତିବର୍ଷ ଏହି ଅବସରରେ ଓଡ଼ିଶାରୁ ଜଣେ ଦୁଇଜଣ ବ୍ୟକ୍ତିଙ୍କୁ ଶ୍ରଦ୍ଧାରେ ନିମନ୍ତ୍ରଣ କରା ଯାଇଥାଏ । ସେମାନେ ଥିଲେ ଓଡ଼ିଶାଟା ପାଖରେ ଥିବାପରି ହୁଏତ କିଛି ଅନୁଭବ ବି ହୋଇ ପାରୁଥିବ । ଆମେରିକା ଓ କାନାଡ଼ାରେ ଜାଗାଗୁଡ଼ାକ ଭାରି ଦୂର । ହାତରେ ବହୁତ ସମୟ ରହିଥିଲେ ଯାଇ ଏହିସବୁ ବୈଠକ ଏବଂ ଉତ୍ସବକୁ ଆସି ହୁଏ । ତେଣୁ ସବୁ ଓଡ଼ିଆ ଆସି ପାରନ୍ତିନାହିଁ । ମଣ୍ଟେରେ ବାର୍ଷିକ ସମାବେଶକୁ ପ୍ରାୟ ଛଅଶହ ସାତଶହ ବ୍ୟକ୍ତି ଆସିଥିଲେ । ଢ଼େର କେତେଜଣ ସପରିବାର ଆସିଥିଲେ । ସବାଆଗ ଔପଚାରିକ ଭାବରେ ଭାଷଣମାନ ହେଲା । ମଝିରେ ସମୟ ବାହାର କରି ତରୁଣ ଏବଂ ଅଳ୍ପବୟସ୍କ ମାନଙ୍କ ପାଇଁ କ୍ରୀଡ଼ା ପ୍ରତିଯୋଗିତା ମଧ୍ୟ ହୋଇଥିଲା । ପ୍ରାୟ ଯୁଗପତ୍ ଭାବରେ ବିଶେଷ ବିଷୟମାନଙ୍କୁ ରଖି କେତୋଟି ଆଲୋଚନାଚକ୍ରର ଆୟୋଜନ ବି ହୋଇଥିଲା । ଏହି ସବୁକିଛି ଇଂରାଜୀ ଭାଷାରେ ହିଁ ହେଉଥିଲା । କାରଣ, ସାନମାନେ, ଯେଉଁମାନେ ଆମେରିକାରେ ଇସ୍କୁଲ ବା କଲେଜରେ ପଢୁଛନ୍ତି, ସେମାନେ ତ ଇଂରାଜୀ ବ୍ୟତୀତ ଆଉ କିଛିହେଲେ ବୁଝିବେନାହିଁ । ଘରେ ବଡ଼ମାନେ ଓଡ଼ିଆରେ ଅବଶ୍ୟ କଥା ହେଉଥିବେ । ତଥାପି, ଆମ ଖାସ୍ ଓଡ଼ିଶାରେ ଶିକ୍ଷିତ ଧୋବମାନେ ବି ଯେତେବେଳେ ଔପଚାରିକ ଅବସରଗୁଡ଼ିକରେ ପ୍ରାୟ ଅଭ୍ୟସ୍ତ ଭାବରେ ଏକଭାଷୀ ଅର୍ଥାତ୍ ଇଂରାଜୀଭାଷୀ ହୋଇ ସାରିଲେଣି, ଯୋଉମାନେ ଏଡ଼େ ଏଡ଼େ ସମୁଦ୍ର ପାରି ହୋଇ ଆମେରିକା ଯାଇଛନ୍ତି ଏବଂ କେଡ଼େ କେଡ଼େ ମଥାନ ଉପରେ ଯାଇ ବସିଲେଣି, ସେମାନେ,ଓଡ଼ିଆ ମାଧ୍ୟମରେ କୌଣସି ସଭାସମିତିରେ କଥା କହି ପାରିବେ ବୋଲି ଆଦୌ

ଆଶା କରିବା ଯୁକ୍ତିଯୁକ୍ତ ହେବନାହିଁ । ଏହି ପୁରୁଷଟି ତ ହେଲେ ଯାହିତାହି ଓଡ଼ିଆରେ କଥାବାର୍ତ୍ତା କରିପାରୁଛି ; ମାତ୍ର, ବର୍ତ୍ତମାନର ପୀଢ଼ିଟି ଯେତେବେଳେ ବଡ଼ ହେବେ ଏବଂ ଓଡ଼ିଶା ସୋସାଇଟିର ମଙ୍ଗ ଧରି ଆସିବେ, ସେତେବେଳେ କାତ ଆହୁଲା ସମସ୍ତଙ୍କୁ ଇଂରାଜୀ ହୋଇଯିବାକୁ ପଡ଼ିବ । ସେମାନଙ୍କ ଭିତରୁ ହୁଏତ କେହି ଓଡ଼ିଶା ଦେଖି ନଥିବେ । ସେତେବେଳେ ଓଡ଼ିଶା ସୋସାଇଟି କେଉଁଭଳି ଚେହେରା ଧାରଣ କରିବ କେଜାଣି ? ହୁଏତ ସେମାନେ ସେତେବେଳେ ମଧ ପରମ୍ପରାକୁ ସମ୍ମାନ ଦେଇ ବରଷକେ ଥରେ ଏକାଠି ହେବେ, ଆନନ୍ଦ କରିବେ । କିନ୍ତୁ, ସେତେବେଳେ ଦୁଃଖସୁଖ ଅନ୍ୟ ପ୍ରକାରର ହେବ । ଓଡ଼ିଶା ଯାବତୀୟ ଅର୍ଥରେ ଇତିହାସ ହୋଇ ରହିଥିବ । ସେହି ଦିନଟି ପିଣ୍ଡଦିନ ପରି ବୋଧ ହେବ ।

ଟେନିସି ରାଜ୍ୟର ରାଜଧାନୀ ନାଶ୍‌ଭିଲ୍ ସହରର ଉପକଣ୍ଠରେ ଯେଉଁଠାରେ ଜଗନ୍ନାଥଙ୍କର ମୂର୍ତ୍ତିସ୍ଥାପନା ହୋଇ ବହୁବର୍ଷରୁ ପୂଜାର୍ଚ୍ଚନା ହୋଇ ଆସୁଛି । ସେଠାରେ ବର୍ଷକୁ ବର୍ଷ ରଥଯାତ୍ରା ବି ହୁଏ । ପୁରୀ ରଥଯାତ୍ରା ହିଁ ରଥଯାତ୍ରା । ଆମ ଆଧୁନିକ କାଳରେ ଓଡିଆମାନେ ଯହୁଁ ଯହୁଁ ଓଡିଶା ବାହାରକୁ ଗଲେ, ସମ୍ଭବତଃ ସେହି ପରମାସ୍‌ରେ ସେମାନଙ୍କ ସହିତ ଜଗନ୍ନାଥ ବି ସାଙ୍ଗରେ ଗଲେ । ଏହି ସଂସ୍କାରଟିର କ୍ଷେତ୍ରରେ ଭାରତବର୍ଷରେ ବଙ୍ଗଦେଶୀ ମାନଙ୍କୁ ହିଁ ସର୍ବପ୍ରଥମ ଶ୍ରେୟ ଦେବାକୁ ପଡ଼ିବ । ବଙ୍ଗାଳି ଯୁଆଡ଼େ ଗଲେ, କାଳୀଙ୍କୁ ସାଙ୍ଗରେ ନେଇ ଗଲେ । ଯୁଆଡ଼େ ଗଲେ, ଜଗଦ୍ଧାତ୍ରୀ ପୂଜା ମଧ ସେଠାକୁ ଗଲା । ରାଜଧାନୀ ଦିଲ୍ଲୀରେ କାଳୀବାଡ଼ି ହେଲା । ଭୁବନେଶ୍ୱରରେ ତ ଏତେ ଏତେ ଦେବୀ ଦୁର୍ଗାଙ୍କ ମନ୍ଦିର ବହୁ ଆଗରୁ ରହିଥିଲେ ମଧ ବଙ୍ଗାଳିମାନେ ସ୍ୱତନ୍ତ୍ର ଭାବରେ ଏକ କାଳୀମନ୍ଦିର ଗଢିଲେ ଏବଂ ତେବେଯାଇ ଶାନ୍ତି ଲାଭ କଲେ । ଓଡିଆମାନେ ତ ପୂର୍ବେ ସାଗର ପାରି ହୋଇ ଜାଭା, ସୁମାତ୍ରା, ବାଲିଦ୍ୱୀପ ପ୍ରଭୃତିକୁ ଯାଇଥିଲେ । ସେଠାରେ ହୁଏତ ରାଜ୍ୟର ବି ଥାପନା କରିଥିଲେ, କିନ୍ତୁ ଜଗନ୍ନାଥଙ୍କୁ ସାଙ୍ଗରେ ନେଇଥିଲେ କି ନାହିଁ, ଇତିହାସକୁ ଟାଢ଼ିଲେ ଯାଇ ହୁଏତ ସେହି କଥାର ସାକ୍ଷ୍ୟ କିଛି ମିଳିବ । ରାଜଧାନୀ ଦିଲ୍ଲୀରେ ଏବେ ଯାଇ ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠା ହେଲା । ଯେତେବେଳେ ଗଜପତି ରାଜବଂଶ ଭାଙ୍ଗି ପଡିଲା ଏବଂ ସେହି ବଂଶର ଅଂଶମାନେ ଓଡ଼ିଶାର ନାନା ଗଡ଼ଜାତ ଓ ଜମିଦାରୀରେ ଯାଇ ରାଜତ୍ୱ କଲେ , ହୁଏତ ନିଜନିଜର ପ୍ରୀତ୍ୟର୍ଥେ ସେହିମାନେ ହିଁ ନିଜ ନିଜର ମହକୁମାରେ ଜଗନ୍ନାଥ ମନ୍ଦିରମାନ ତୋଳାଇଲେ ଓ ପୁରୀରେ ରହିଥିବା ମୂଳ ମନ୍ଦିରର ଅନୁକରଣରେ ଯାବତୀୟ ରୀତିଗୁଡ଼ିକର ପ୍ରଦର୍ତ୍ତନ ହେଲା । ଏସବୁ ସ୍ଥାନରେ ସ୍ନାନଯାତ୍ରା ଓ ରଥଯାତ୍ରା ମଧ ଅନୁଷ୍ଠିତ ହେଲା । ଅଭଡ଼ା ରନ୍ଧା ହେଲା, ସେଥିପାଇଁ ସେବାୟତମାନେ ଯଥାରୀତି ନିଯୁକ୍ତ ହୋଇ ରହିଲେ । ପୁରୀର ଜଗନ୍ନାଥ ସେହି ପ୍ରକ୍ରିୟାଟି ଅନୁସାରେ ଗଡ଼ି ଗଡ଼ି କିପରି ଆମଗାଆଁର ଇଷ୍ଟଦେବତା ଦଧିବାମନଙ୍କ ଯାଏ ମାଡି ଆସିଛନ୍ତି, ସେହି କାହାଣୀଟିର ଅଧ୍ୟୟନ କମ୍ କୌତୁହଳୋଦ୍ଦୀପକ ହେବନାହିଁ ।

ନାଶ୍‌ଭିଲ୍‌ର ଜଗନ୍ନାଥ ମନ୍ଦିରକୁ ଆମେରିକାର ଉତ୍ସାହୀ ଓଡ଼ିଆମାନେ ତିଆରି କରାଇଛନ୍ତି । ଘଞ୍ଚ ଅରଣ୍ୟଦ୍ୱାରା ପରିବେଷ୍ଟିତ ଏକ ଗଡ଼ାଣିଆ ପାହାଡଜାଗା । ସାମନାର ଆଉଗୋଟିଏ ଡାଲୁରେ ଅରଣ୍ୟର ପୃଷ୍ଠଭୂମି ଉପରେ ଫରାସୀ ପୁରାତନ ଶୈଳୀରେ ସବୁଜରଙ୍ଗର ଗଡ଼ାଣିଆ ଛାତବିଶିଷ୍ଟ ଧାଉଡୀ ଧାଉଡୀ ବାସଗୃହ । ନୀଳ ଆକାଶର ପ୍ରସାରଟି ଉପରେ ଚ଼ତୁର୍ଦ୍ଦିଗର ଦୃଶ୍ୟଟି ପ୍ରକୃତରେ ଅତ୍ୟନ୍ତ ମନଲୋଭା ହୋଇଛି । ପ୍ରକୃତରେ ଦେବତାମାନଙ୍କ ପାଇଁ ଉପଯୁକ୍ତ ସ୍ଥଳଟିଏ । ସେଇଠି ପାହାଡ଼ କାନ୍ଥରେ ବୁଲିଥିବା ହତାଟି ମଧ୍ୟ ଭବ୍ୟ ଗଣେଶ ମନ୍ଦିର । ତାମିଲମାନଙ୍କର ଉଦ୍ୟମରେ ତିଆରି ହୋଇଛି । ଶଙ୍ଖମର୍ମର ପଥରରେ ପୂର୍ଣ୍ଣ ଗାମ୍ଭୀର୍ଯ୍ୟର ସହିତ ବପୁ ବିସ୍ତାର କରି ରହିଥିବା ଏହି ବୃହତ୍ ମନ୍ଦିରଟି ଭିତରେ ଗଣେଶଙ୍କ ବ୍ୟତୀତ ଅନ୍ୟ ଦେବତାମାନେ ମଧ୍ୟ ଅଛନ୍ତି । ଗଣେଶ ହେଉଛନ୍ତି ମୁଖ୍ୟ ଆଉମାନେ ଅନୁପୂରକ । ଗଣେଶଙ୍କର ଖୋଲଟି ହିଁ ପୂର୍ଣ୍ଣ ମନ୍ଦିରଟିଏ ଭଳି ଦେଖାଯାଉଛି । ଅନ୍ୟ ଦେବତାମାନଙ୍କର ଖୋଲଗୁଡିକ ଆକୃତି ଓ ଆବେଶରେ ସାନ ସାନ ବିମାନ ପରି ଦେଖାଯାଉଛି । ସବୁ ଖୋଲ ପୂରିବାପରେ ଯେଉଁଟି ସବାଶେଷକୁ ଥିଲା, ସେଇଟିରେ ଜଗନ୍ନାଥଙ୍କ ସକାଶେ ଥାନ କରି ଦିଆଯାଇଛି । ଗଣପତିଙ୍କ ମନ୍ଦିରକାନ୍ଥର ଚାରିପଟେ ଗଣପତିଙ୍କର ଭିନ୍ନ ଭିନ୍ନ ସଂସ୍କରଣର ଦେବକଳ୍ପନାମାନ ମୂର୍ତ୍ତି ହୋଇ ବସିଛନ୍ତି । ମଣିଷର ପ୍ରତିମାଦ୍ରଷ୍ଟା ବା ପ୍ରତିମାଶ୍ରଦ୍ଧାରେ ଡ଼େଣା ଲାଗିଲେ ଆମ ଦେବତାମାନେ ଯେ କେଡ଼େ ଭବ୍ୟ ଭାବରେ ବହୁ ପ୍ରକାରର ହୋଇପାରନ୍ତି, ବିଶେଷତଃ ହିନ୍ଦୁ ଦେବକଳ୍ପନାର ଶାସ୍ତ୍ରମାନଙ୍କରେ ଆମେ ତାହାର ଉଦାରତମ ନିଦର୍ଶନମାନ ଦେଖିବାକୁ ପାଇବା । କଳ୍ପନାର ପ୍ରକାର ଅନୁସାରେ ପୂଜା ଏବଂ ସ୍ତୋତ୍ରମନ୍ତ୍ରାଦିର ମଧ୍ୟ ଭିନ୍ନ ଭିନ୍ନ ବ୍ୟବସ୍ଥା । ସତେଅବା କବିତ୍ୱଟା ହିଁ ଏହି କ୍ଷେତ୍ରରେ ସର୍ବମୂଳ ପ୍ରେରଣାରୂପେ କାର୍ଯ୍ୟ କରି ଆସିଛି ଏବଂ ଏବେ ମଧ୍ୟ କରୁଛି । ଏହି ରୀତିରେ ରାମଙ୍କର ଭଳି ଭଳି କଳ୍ପନା, ଦେବୀଙ୍କର ଭଳି ଭଳି କଳ୍ପନା ଓ ଶିବଙ୍କର ବି ଭଳି ଭଳି କଳ୍ପନା । ହନୁମାନଙ୍କର ମଧ୍ୟ ବହୁବିଧ ଦୁଃସାହସିକ କଳ୍ପନା । ନରସିଂହଙ୍କର ଶ୍ରେଣୀବିଭାଜନ କରାଯାଇ ତାଙ୍କର ଗୋଟିଏ କିସମକୁ କେତେ କୃତଜ୍ଞ ଭାବରେ ଜ୍ୱରନାଶନ ନୃସିଂହ ବୋଲି କୁହାଯାଇଛି । କୌଣସି କୃପଣତା କରା ଯାଇନାହିଁ ।

ପରିକ୍ରମା କରିବା ସମୟରେ ସ୍ୱାମୀରିରୁ ଜାଣିଲି ଯେ ଏହି ମନ୍ଦିରରେ ଗଣପତିଙ୍କର ଷୋହଳ ପ୍ରକାରର ମୂର୍ତ୍ତିକଳ୍ପନା କରାଯାଇଛି । ସେହି ଅନୁସାରେ ଯେଉଁ ମୂର୍ତ୍ତିଗୁଡ଼ିକ କାନ୍ଥରେ ଥିବା ଖୋଲମାନଙ୍କରେ ରହିଛନ୍ତି, ସେମାନେ ହେଉଛନ୍ତି : ଶ୍ରୀ ବାଳ ଗଣପତି, ଶ୍ରୀ ତରୁଣ ଗଣପତି, ଶ୍ରୀ ଭକ୍ତ ଗଣପତି, ଶ୍ରୀ ବୀର ଗଣପତି, ଶ୍ରୀ ଶକ୍ତି ଗଣପତି, ଶ୍ରୀ ଦ୍ୱିଜ ଗଣପତି (ଅଥବା ଧ୍ୱଜା ଗଣପତି), ଶ୍ରୀ ପିଙ୍ଗଳ ଗଣପତି, ଶ୍ରୀ ଉଚ୍ଛିଷ୍ଟ ଗଣପତି, ଶ୍ରୀ ବିଙ୍ଘ ଗଣପତି, ଶ୍ରୀ କ୍ଷିପ୍ର ଗଣପତି, ଶ୍ରୀ ହେରମ୍ବ ଗଣପତି, ଶ୍ରୀ ଲକ୍ଷ୍ମଣ ଗଣପତି, ଶ୍ରୀ ମହା ଗଣପତି,

ଶ୍ରୀ ବିଜୟ ଗଣପତି, ଶ୍ରୀ ନିରୁକ୍ତ ଗଣପତି, ଏବଂ ଶ୍ରୀ ଊର୍ଦ୍ଧ୍ୱ ଗଣପତି । ଏହି ନାମଗୁଡ଼ିକ ଆଦୌ କୌଣସି ଖିଆଲରୁ ପ୍ରସୂତ ହୋଇନାହାନ୍ତି । ବିଷ୍ଣୁ, ଶିବ ଓ ଦେବୀଙ୍କର ଯେଉଁ ସହସ୍ର ନାମ ରହିଛି, ସେଇଟିକୁ ମଧ କେହି ଖିଆଲ ଅନୁସାରେ କବିତ୍ୱ କରି ବାହାର କରିନାହାନ୍ତି । ଓଡ଼ିଶାର ଜଗନ୍ନାଥଙ୍କୁ ନେଇ କାହିଁକି ଏପରି କୌଣସି ପ୍ରୟାସ କରା ଯାଇନାହିଁ, ସେହି ମନ୍ଦିରରେ ଆଉଗୋଟିଏ ଖୋଲରେ ଥିବା ଜଗନ୍ନାଥଙ୍କର ମୂର୍ତ୍ତି ସନ୍ନିଧାନରେ ବସି ମୁଁ ସେହିକଥା ଭାବୁଥିଲି । ଜଗନ୍ନାଥ ସେକାଳର କୌଣସି ଶାସ୍ତ୍ରୀୟ ଦେବତା ହୋଇଥିଲେ ସମ୍ଭବତଃ ତାହା ପ୍ରାୟ ସେହି କାଳରୁ ହିଁ ଫନ୍ଦା ହୋଇ ସାରିଥାନ୍ତା । ଆମ ଭାଗ୍ୟ ଓ ଜଗନ୍ନାଥଙ୍କର ଭାଗ୍ୟ ଯେ, ସିଏ ସମ୍ଭବତଃ ସେହି ମୂଳ ପର୍ଯ୍ୟାୟଟିରୁ ହିଁ ଲୋକଦେବତା ହୋଇ ରହିଲେ । ଲୋକମାନେ ତାଙ୍କୁ ନାନାବିଧ ନାମ ଦେଇ ଡ଼ାକିଲେ, ଗୁହାରି କଲେ ଓ ଏପରିକି ଗାଳି ଦେଲେ ସିନା, ମାତ୍ର ସେହି ନାଆଁଗୁଡ଼ିକ ଶାସ୍ତ୍ର ମଧକୁ ଯାଇ ପାରିଲାନାହିଁ । ଲୋକମୁଖରେ ହିଁ ରହିଗଲା । ଜଗନ୍ନାଥ ବହୁ କଳବଲରୁ ରକ୍ଷା ପାଇଗଲେ । ପୁରୀ ମନ୍ଦିରକୁ କେତେ କେତେ ବିଦ୍ୱାନ୍ ଓ ପଣ୍ଡିତ ଆସିଲେ, ନିଜ ମାର୍ଗର ବିଧିଗୁଡ଼ିକୁ ସେମାନେ ଜଗନ୍ନାଥଙ୍କର ଦେଉଳ ଭିତରେ ପ୍ରବିଷ୍ଟ କରାଇ ଦେଇଥିଲେ ସତ, କିନ୍ତୁ ତାଙ୍କୁ ମୂଳ ଶରବ୍ୟ କରି କୌଣସି ବିକଳ୍ପ ଦେବକଳ୍ପନା ସମ୍ଭବ ହୋଇ ପାରିନଥିଲା । ଜଗନ୍ନାଥ ଦାଣ୍ଡର ଦେବତା ହୋଇ ରହିଲେ । ମଣିଷମାନଙ୍କର ଶ୍ରଦ୍ଧାନୁସାରେ ସ୍ନାନ କଲେ, ଭିନ୍ନ ଭିନ୍ନ ବେଶ ହେଲେ, ଖରାଦିନେ ନାବରେ ବସିଲେ ଓ ଏପରିକି ଜ୍ୱର ଭୋଗିଲେ ସିନା, ମାତ୍ର ପ୍ରବରମାନଙ୍କର ପାଲରେ ପଡ଼ି ଅନ୍ୟ ଦେବତାଟିଏ ହୋଇ ପାରିଲେନାହିଁ ।

ପଡିଶା ରାଜ୍ୟ ଆଲାବାମାର ଗୋଟିଏ ସ୍ଥାନରେ ମଧ ଜଗନ୍ନାଥଙ୍କର ମୂର୍ତ୍ତିସ୍ଥାପନା ହୋଇ ସାରିଲାଣି । ସେଠାରେ ଗୋଟିଏ ସଂପୂର୍ଣ୍ଣ ଜାଗାରେ ଧୀରେ ଧୀରେ ଦେଉଳଟିଏ ତୋଳା ହେବ ବୋଲି ଜଗନ୍ନାଥପ୍ରେମୀ ବନ୍ଧୁମାନଙ୍କର ମାନସିକ ରହିଛି । ଏହି ଜାଗାରେ ଆଗରୁ ଗୀର୍ଜାଟିଏ ଥିଲା ; ଗୀର୍ଜାବାଲା ଏକ ନୂଆ ଜାଗାକୁ ଗୀର୍ଜା ଉଠାଇ ନେଇଯିବା ପରେ ସେହି ଜାଗାଟିକୁ ଅଭିପ୍ରେତ ମନ୍ଦିରଟି ପାଇଁ ଖରିଦ କରାଯାଇଛି । ଅବଶ୍ୟ ମୂର୍ତ୍ତିସ୍ଥାପନା ହୋଇ ପୂଜାନୀତି ଆରମ୍ଭ ହୋଇ ଗଲାଣି । ସେଥିଲାଗି କର୍ଣ୍ଣାଟକ ରାଜ୍ୟରୁ ଜଣେ ତରୁଣ ପୂଜକଙ୍କୁ ନିଯୁକ୍ତି ଦେଇ ଏଠାକୁ ଅଣାଯାଇଛି । ରଥଯାତ୍ରା ପୂର୍ବ ଦିନ ଆମେ ସେଠାକୁ ଯାଇଥିଲୁ । କିଞ୍ଚିତ୍ ଭାଷଣର କାର୍ଯ୍ୟକ୍ରମ ପରେ ପ୍ରଶ୍ନୋତ୍ତରୀ ତଥା ପ୍ରସାଦସେବନ ମଧ ହେଲା । ରାତିଟା ସେହିଠାରେ ଜଣେ ଓଡିଆ ଡାକ୍ତରଙ୍କର ଘରେ କଟିଲା ଓ ତହିଁଆରଦିନ ସକାଳୁ ଆମେ ଦୀର୍ଘ ପଥ ଅତିକ୍ରମ କରି ନାଶ୍‌ଭିଲ୍ ଆସିଲୁ । ସେତେବେଳକୁ ପୂର୍ବାହ୍ନରେ ଯଜ୍ଞମନ୍ଦିରରେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହୋମ ହେଉଥାଏ । ଗଣପତି ମନ୍ଦିରର ଦକ୍ଷିଣ ଭାରତୀୟ ପୂଜକ ହୋତାର ଭୂମିକାରେ ବସିଥାନ୍ତି ଏବଂ ଦୁଇଜଣ ଓଡିଆ ବନ୍ଧୁ ତାଙ୍କୁ ସାହାଯ୍ୟ କରୁଥାନ୍ତି । ପରେ ଜାଣିଲି, ସେମାନଙ୍କ ଭିତରୁ ଜଣେ ହେଉଛନ୍ତି

ସେହି ଦେଶର ଗୋଟିଏ ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟରେ ଜ୍ୟୋତିର୍ବିଜ୍ଞାନର ଅଧ୍ୟାପକ ଏବଂ ଆଉଜଣେ ପଶୁ ଡ଼ାକ୍ତର । ପୂରାପଣେ ପୁରୋହିତଙ୍କ ପରି ଦିଶୁଥାନ୍ତି ଏବଂ ସଂସ୍କୃତ ସ୍ତୋତ୍ରଗୁଡିକୁ ବୋଲି ଯାଉଥାନ୍ତି ।

ଭଉଣୀମାନେ ଜଗନ୍ନାଥଙ୍କର ସମୀପରେ ବସି ଫୁଲ ଗୁନ୍ଥିବାରେ ଲାଗିଥାନ୍ତି । ରଥଯାତ୍ରାର ମୁହୂର୍ତ୍ତଟି ଆସନ୍ନ ହୋଇ ଆସୁଥାଏ । ଭିଡ଼ ମଧ୍ୟ ଜମି ଆସିଲାଣି । ମାତ୍ର ଅଳ୍ପ କେତେଜଣଙ୍କୁ ଛାଡିଦେଲେ ସମସ୍ତେ ଓଡିଆ ଘଣ୍ଟଧ୍ୱନି ଏବଂ ଆନୁଷଙ୍ଗିକ ଅନ୍ୟ କୋଳାହଳ ମଧ୍ୟରେ ଜଗନ୍ନାଥ ପହଣ୍ଡିବିଜେ ହୋଇ ବାହାରକୁ ଆସିଲେ । ରଥ ଚାଲିବା ପାଇଁ ଏଠାରେ କୌଣସି ବଡ଼ଦାଣ୍ଡ କୁଆଡୁ ଆସିବ ? ସାଧାରଣ ରାସ୍ତାକୁ ଏପରି ଗହଳ ଲଗାଇ ଯିବା ନିମନ୍ତେ ଆମେରିକାର ଆରକ୍ଷୀ ଆଇନ୍ ଅନୁମତି ଦେବନାହିଁ । ବିମାନଟିଏ ସଜ୍ଜିତ ହୋଇ ରହିଥାଏ । ସେଥିରେ ଚ଼କ ଲାଗିଥାଏ । ଯଥାରୀତି ଦଉଡ଼ି ବି ରହିଥାଏ । ସେହି ହତା ଭିତରେ ଗଡ଼ାଣିଆ ରାସ୍ତାରେ ଯାହା ଘେରାଏ ଖେଦି ଆସିବା କଥା । ଭାରସାମ୍ୟ ରଖିବାକୁ ଆଗ ପଛ ଉଭୟ ପଟେ ଦୁଇ କେରା ଦଉଡ଼ି ରହିଥାଏ । ଆଗବାଲା ଥରି ଥରି ଆଗକୁ ଟାଣିବେ ଏବଂ ଡାଲୁ ରାସ୍ତାରେ ରଥଟି ଯେପରି ଓଲଟି ନପଡେ ସେଥିଲାଗି ପଛରେ ମଧ୍ୟ କେତେ ଲୋକ ରହିଥିବେ, ଯେଉଁମାନେ କି ଆଣ୍ଠ କରି ଦଉଡ଼ିକୁ ଟାଣି ଧରିଥିବେ ଏବଂ ଭାରସାମ୍ୟ ରକ୍ଷା କରିବେ । ପହଣ୍ଡିବିଜେ ପରେ ଛେରା ପହଁରା । ଗୋଟାଏ ଝାଡୁ ବି ଯୋଗାଡ଼ ହୋଇ ଆସିଥାଏ, ଏବଂ ସେଥିରେ ସୁନେଲି ରଙ୍ଗ ବୋଳା ହୋଇ ଚ଼କଚ଼କ ଦେଖା ଯାଉଥାଏ । ଉତ୍ସବର ଅତିଥି ଅର୍ଥାତ୍ ମୋତେ ହିଁ ଛେରା ପହଁରା କରିବାକୁ ହେଲା । ସିଏ ପ୍ରକୃତରେ ଏକ ବିଚ଼ିତ୍ର ଅନୁଭୂତି । ଦେଶ, କାଳ,ପାତ୍ର କିଛି ନାହିଁ, କେବଳ ଏକ ଅନୁଭୂତି । ସମ୍ଭବତଃ ତାହାହିଁ ଯଥାର୍ଥତମ ଅନୁଭୂତି । ସତକୁ ସତ ଜଗତର ନାଥଙ୍କର ରଥ ଆଗରେ ସମ୍ମତ ପାଦଗୁଡ଼ିକୁ ପକାଇ ଚାଲି ଯାଉଥିବାର ଅନୁଭୂତି । ରଥଟଣା ସରିବାକୁ ଘଣ୍ଟାଏ ସମୟ ମଧ୍ୟ ଲାଗିଲାନାହିଁ । ଏଠାରେ ତ ଗୁଣ୍ଡିଚା ଘର ନାହିଁ, ତେଣୁ ଯାହାକିଛି ହେବ ଏହି ହତାଭିତରେ ହିଁ ହେବ । ଠାକୁର ରଥରୁ ଓହ୍ଲାଇଲେ ତଳ ମହଲାର ଗୋଟିଏ ବଖରାରେ ଯାଇ ଆସୀନ ହେଲେ । ବାହୁଡା ଯାଏ ସିଏ ଏହି ଘରେ ରହିବେ । ତା'ପରେ ଯାଇ ଔପଚାରିକ ଭାବରେ ଆପଣାର ସ୍ଥାୟୀ ଆସ୍ଥାନଟିକୁ ଫେରିବେ ।

ଠାକୁର, ଆସୀନ ହୋଇ ସାରିବାପରେ ସ୍ତୋତ୍ର ଏବଂ ଭଜନମାନ ବୋଲା ହେଲା । ସଂସ୍କୃତ ବେଦମନ୍ତଠାରୁ ଆରମ୍ଭ କରି ଆହେ ନୀଳ ଶଇଳ ପର୍ଯ୍ୟନ୍ତ କେତେ କ'ଣ ଏକାଠି ଗୋଟିଏ ସଂକଳନରେ ବହିଟିଏ କରାଯାଇଛି । ହିନ୍ଦୀ ଓ ବଙ୍ଗଳାର ମଧ୍ୟ କେତୋଟି ଗୀତ ସ୍ଥାନ ପାଇଛି । ସବୁଗୁଡ଼ିକୁ ରୋମାନ୍ ଲିପିରେ ମଧ୍ୟ ଛାପି ଦିଆଯାଇଛି ଯେପରିକି ଓଡ଼ିଆ ନଜାଣିଥିବା ବ୍ୟକ୍ତିମାନେ ମଧ୍ୟ ବହିଟିକୁ ବ୍ୟବହାର କରିପାରିବେ । ସ୍ତୋତ୍ର ଏବଂ ଭଜନ

ପରେ ମନୋରମ ଓଡ଼ିଶୀ ନୃତ୍ୟର ଏକ କାର୍ଯ୍ୟକ୍ରମ ଓ ତା'ପରେ ଭାଷଣ । ଅତିଥି ହିସାବରେ ମୁଁ ଜଗନ୍ନାଥ ଓ ଜଗନ୍ନାଥ-ଚେତନା ବିଷୟରେ କିଛି କହିବି । ଆମେ ପ୍ରତ୍ୟେକେ ଯେଉଁ ଚେତନାରେ ଥାଉ, ସେହି ଅନୁସାରେ ଜଗନ୍ନାଥ ମଧ କିପରି ଭିନ୍ନ ଭିନ୍ନ ପ୍ରେରଣାର ଦ୍ୟୋତକ ହୋଇ ଆମ ଜୀବନରେ ଅନୁଭୂତ ହୋଇଥାନ୍ତି, ମୁଁ ସେହି ବିଷୟରେ କେତେ ପଦ କଥା କହିଥିଲି । ଏହି ଭାଷଣଟା ପ୍ରକୃତରେ ଏକ ବିଷମ ପରିସ୍ଥିତିରେ ଆଣି ପକାଇ ଦେଇଥାଏ । ବିଶେଷତଃ ଯେଉଁଠାରେ ଶ୍ରୋତାମାନେ ଗୋଟାଏ ଖାସ୍ ସ୍ତରର କଥା ଶୁଣିବା ନିମନ୍ତେ ଏକ ପର୍ବଦିନର ଆନନ୍ଦରେ ଏକତ୍ର ହୋଇଥାଆନ୍ତି । ସେଠାରେ ତୁମେ ଚେତନା ବିଷୟରେ କାହିଁକି କ'ଣ କହିବ ? ପୁରୀ ରଥଯାତ୍ରାରେ ଯେଉଁ ନିର୍ବାଚିତମାନେ ରେଡ଼ିଓ ପାଇଁ ଧାରାବାହିକ ବିବରଣୀ ଦେଉଥାନ୍ତି, ସେମାନେ ସମ୍ଭବତଃ ସେହି କଥାଟିକୁ ଉତ୍ତମ ପ୍ରକାରେ ଜାଣି ଥାଆନ୍ତି ଏବଂ ତେଣୁ ସଂପୃକ୍ତ ସମସ୍ତଙ୍କର ମନ ତୋଷିହେଲା ପରି କଥାଗୁଡ଼ିକୁ ଗୁଛି କହିଦେଇ ପାରନ୍ତି । ସେମାନେ ସତେ ଯେପରି ସେହି ଅନୁସାରେ ହିଁ ତିଆରି ହୋଇଥାନ୍ତି । ଯେଉଁଦିନ ରଥଯାତ୍ରା ନଥାନ୍ତା, ଆଦୌ କୌଣସି ଯାତ୍ରା ନଥାନ୍ତା, ହୁଏତ ସେହିପରି ଗୋଟିଏ ଅବସରରେ କେବଳ ଅନୁରାଗୀମାନେ ଏକାଠି ବସିପାରନ୍ତେ ଓ ଜଗନ୍ନାଥଙ୍କ ବିଷୟରେ ନିଜନିଜର ଅନୁଭବ ଗୁଡ଼ିକୁ ବଖାଣି ପାରନ୍ତେ, କୌଣସି ଭାବପ୍ରବଣତା ରହନ୍ତାନାହିଁ, -ପ୍ରତ୍ୟେକେ ଅନ୍ୟ ସମସ୍ତଙ୍କର ହାତ ଧରି ପରସ୍ପରକୁ ପାହାଚ ପାହାଚ ଉଠାଇ ନେଉଥାନ୍ତେ । ସିଏ ପ୍ରକୃତରେ ଏକ ଅନ୍ତର୍ଯାତ୍ରା ହୋଇପାରନ୍ତା, କୌଣସି ମାନଦଣ୍ଡରେ ମାପି ଦେଖିଲେ ମଧ ପ୍ରକୃତରେ ଏକ ମହୋତ୍ସବ ବା ମହାନ୍ ସ୍ପର୍ଶାନୁଭବର ପର୍ବ ପରି ଲାଗନ୍ତା । ଜଗନ୍ନାଥ ଓଡ଼ିଶାର ସୀମା ଡେଇଁ ଭିତରେ ବାହାରେ କେତେ କୁଆଡ଼କୁ ଚାଲିଯାଆନ୍ତେ, ଆମ ସମସ୍ତଙ୍କୁ ଧନ୍ୟ କରିଦିଅନ୍ତେ । ସମ୍ଭବତଃ ଏହି ଅସଲ ଅନୁଭବଟିକୁ ଆମ ପହଞ୍ଚ ଭିତରେ ଆଣି ଦେଇ ପାରିବାକୁ ମଣିଷର ଶୁଭାକାଙ୍କ୍ଷୀମାନେ ପୃଥିବୀଯାକର ସକଳ ଧର୍ମରେ ଏହି ଠାକୁରମାନଙ୍କୁ ସୃଷ୍ଟି କରିଥିଲେ, ଆରାଧନା ଓ ଉପାସନା ପାଇଁ ସ୍ଥାନଟିଏ ରଖିଥିଲେ । ଯାବତୀୟ ପର୍ବ, ଉତ୍ସବ ତଥା ଯାନିଯାତ୍ରାର ଭିଆଣ ସମ୍ଭବତଃ ଏଇଥି ସକାଶେ ହୋଇଥିଲା । ଆମ ଭିତରେ କୋଉ ଇତର ଅଂଶଟା ଏପରି ବଳୀୟାର ହୋଇ ବାହାଦୁରୀ ଦେଖାଇଲା ଏବଂ ଆମଠାରୁ ଅସଲ ଅବସରଗୁଡ଼ିକୁ ଅନ୍ତର କରି ରଖିଲା କାହିଁକି କେଜାଣି ? ପ୍ରତ୍ୟେକ ଧର୍ମରେ କେତେ କେତେ ଏପରି ମନୁଷ୍ୟ ବି ଯୁଗେ ଯୁଗେ ରହିଛନ୍ତି । ଯେଉଁମାନେ କି ସେହି ପ୍ରଶ୍ନଟିକୁ କରିଛନ୍ତି । ସେମାନେ ମନ୍ଦିର ଭିତରେ କିଳି ହୋଇ ରହିବାକୁ ଦେବଦ୍ରୋହ ଅର୍ଥାତ୍ ଆତ୍ମଦ୍ରୋହ ବୋଲି ଘୋଷଣା କରିଛନ୍ତି ।

ସ୍ୱାଧୀନତା ପରେ ଯେଉଁମାନେ ଓଡ଼ିଶାରୁ ଆମେରିକା ଯାଇଥିଲେ, ସେମାନେ ଉଚ୍ଚ ଶିକ୍ଷା ଏବଂ ଉଚ୍ଚ ତାଲୀମ ପାଇଁ ଯାଇଥିଲେ । ସରକାରୀ ଖରଚରେ ଯାଇଥିଲେ ।

ପରାଧୀନ ଦେଶରେ ଅଗ୍ରଗତିର ଭିତ୍ତିଭୂମି ବୋଲି ପ୍ରାୟ କିଛି ନଥିଲା । ପିନ୍‌କଣ୍ଟାଟିଏ ମଧ୍ୟ ବିଲାତରୁ ଆସୁଥିଲା । ସେହି ଶୋଚନୀୟ ନିର୍ଭରଶୀଳତାକୁ ଯଥାଶୀଘ୍ର ଦୂର କରିବା ସକାଶେ ଯେଉଁ ଅତ୍ୟାବଶ୍ୟକ ଭିତ୍ତିଭୂମିଟି ଗଢ଼ାହେବାର କଥା, ଉଚ୍ଚ ଶିକ୍ଷା ଲାଭ କରି ଏହି ବାବୁମାନେ ଘରକୁ ଫେରିବେ ଓ ସେଥିପାଇଁ ଦୃଢ଼ ମୂଳଦୁଆ ପକାଇବେ ବୋଲି ପାଞ୍ଚ କରି ସରକାର ସେମାନଙ୍କୁ ବିଲାତ ଅଥବା ଆମେରିକା ପଠାଇଥିଲେ । ଯେଉଁମାନେ ସେତେବେଳେ ଯାଇଥିଲେ, ସେମାନଙ୍କ ମଧ୍ୟରୁ ଥୋକେ ଅବଶ୍ୟ ଫେରିଲେ । ଥୋକେ ରହିଗଲେ । ଆମେରିକାରେ ନିଜର ଭାଗ୍ୟ ଗଢ଼ିବା ଏବଂ ଭାରତବର୍ଷରେ ସମଗ୍ର ସମୂହଟି ପାଇଁ ଯେପରି ଏକ ନୂଆ ଭାଗ୍ୟର କବାଟ ଫିଟିଯିବ, ସେଥିଲାଗି ଏକାବେଳେକେ ମୂଳରୁ ହିଁ ମୂଳଦୁଆଟିଏ ଗଢ଼ିବା, ଏଇ ଦୁଇଟା କଥା ଆଦୌ ଏକା କଥା ନୁହେଁ । ତେଣୁ ଥୋକେ ସେହିଆଡ଼େ ରହିଗଲେ । ଅବଶ୍ୟ ବହୁତ ସଫଳ ହେଲେ । ସେହିମାନଙ୍କର ସଫଳତାର କାହାଣୀଗୁଡ଼ାକ ଏଠି ଆମ ଭୂମିଟିର କେତେକ ଯୁଆନ ମଣିଷଙ୍କୁ ହୁଏତ ବଡ଼ ଉଚ୍ଛନ୍ନ କରି ପକାଇଥିବ । ସେମାନେ ଯେକୌଣସି ପ୍ରକାରେ ତେଣେ ବାହାରି ଯିବାକୁ ନିଜ ଆକାଶର ନକ୍ଷତ୍ରମାନଙ୍କ ପାଖରେ ଲମ୍ବ ହୋଇ ଅଧିଆ ପଡ଼ି ଯାଇଥିବେ । ଏକମାତ୍ର ଆମେରିକା ହିଁ ସେମାନଙ୍କୁ ପୃଥିବୀର ଗୋଟିଏ ବୋଲି ଯୁଆନ୍ ଦେଶ ବୋଲି ବୋଧ ହୋଇଥିବ । ଏମିତି ଗୋଟାଏ ବେଳ ଆସି ପହଞ୍ଚିଲେ ଆଉ ଘରେ ମୋଟେ ମନ ଲାଗିବନାହିଁ । ରଜା ପୁଅ ପରି ରୁଷି ବାହାରି ଯିବାକୁ ମନ ହେବ । ସେତେବେଳେ କେବଳ ନିଜର ଭବିଷ୍ୟତଟା ଛଡ଼ା ଆଖିକୁ ଆଉ କିଛିହେଲେ ଦେଖା ଯାଏନାହିଁ । ଭାରତବର୍ଷ ଭଳି ଗୋଟାଏ ପଛୁଆ ଦେଶରେ ଏହି ଓଡ଼ିଶାଟା ତ ଚିରକାଳ ଆହୁରି ଅଧିକ ପଛୁଆ । ଏଠି ଭାଗ୍ୟର ପରୀକ୍ଷା କରି ବସିଲେ ଛିଡ଼ା ହେବାପରି ଛିଡ଼ା ହୋଇ ପାରିବାକୁ ହୁଏତ ସାତ ଜନମ ବି ଲାଗିଯିବ । ସବୁବେଳେ ଖାଲି ବାଧା ଆଉ ବାଧା ପହଞ୍ଚିଯିବ । ଏହିପରି ଭାବି ଆଶୁଫଳକାମୀ ଉଚ୍ଚାଶୀମାନେ ସେତେବେଳେ ଆମେରିକା ଯିବାକୁ ନିଜ ଭିତରୁ ହିଁ ଚଙ୍ଗଚଙ୍ଗ ହେଲାପରି ଅନୁଭବ କରିଥିବେ ଓ ମଉକା ପାଇବା ମାତ୍ରକେ ବାହାରି ଯାଉଥିବେ । ପୃଥିବୀର ପରିସ୍ଥିତିଟା ବି କ୍ରମେ ଏପରି ହେଲା ଯେ ଆମେରିକା ସଂପୂର୍ଣ୍ଣ ମନୁଷ୍ୟଗ୍ରାମଟିର ସର୍ବସ୍ୱୀକୃତ ଏକ ଗଉଁତିଆରି ଭୂମିକାରେ ଅବତୀର୍ଣ୍ଣ ହେଲା, ପୃଥିବୀଯାକର ହାଟ ସତେଅବା ତାହାରି ବରାଦରେ ଚାଲିଲା । ତେଣୁ, ବାହାର ଲୋକମାନେ ସେଠାକୁ ଯିବା ବିଷୟରେ ଆଗରୁ ରହିଥିବା କଟକଣାଗୁଡ଼ାକ ମଧ୍ୟ କୋହଳ ହୋଇଗଲା । ସାହାଣ ମେଲା ହୋଇଗଲା ପରି ଲାଗିଲା । ସେହି ହାୱାରେ ସୁରାଖ ପାଇ କିଛି ଓଡ଼ିଆ ମଧ୍ୟ ଆମେରିକା ଯାଏ ଯିବାକୁ ମାର୍ଗ ପାଇ ଯାଇଥିଲେ ।

କାହାଣୀ କହୁଛି, ଓଡ଼ିଶାରୁ ଆଗେ ସାଧବମାନେ ବଣିଜ କରି ବୋଇତ ନେଇ ସମୁଦ୍ର ପାରିହୋଇ ଦୂରଦୂରର ଦ୍ୱୀପମାନଙ୍କୁ ଚାଲି ଯାଉଥିଲେ । ବଣିଜ କରୁଥିଲେ, ଫେରି

ଆସୁଥିଲେ । ଘରକୁ ଧନରତ୍ନ ବୋହି ଆଣୁଥିଲେ । ପୁଣି ଯାଉଥିଲେ ଓ ପୁଣି ଘରକୁ ବୋହି ଆଣୁଥିଲେ । ସେହିସବୁ କାହାଣୀକୁ ଆମେ ଓଡ଼ିଆମାନେ ଏକାଳେ ମଧ୍ୟ ଗର୍ବର ସହିତ ସ୍ମରଣ କରୁଛୁ ଏବଂ ଛାତି ଫୁଲାଇ ପିଉଛୁ । ମାତ୍ର, ଏହି ଯେଉଁ ଥୋକେ ମଣିଷ ଏବେ ଓଡ଼ିଶାରୁ ଆମେରିକା ଗଲେ, ସେମାନେ ମୋଟେ ଫେରି ଆସିବାକୁ ଯାଇନଥିଲେ । ଆମେରିକାରେ ସବୁ ପାଇଲେ । ଘରକୁ ରୁଷିଥିବା ମଣିଷଙ୍କୁ ପରଟା ଭାରି ଭଲ ଲାଗେ ବୋଲି ଏକ ଅପବାଦ ସବୁକାଳେ ରହିଆସିଛି । ଓଡ଼ିଶା ଛାଡ଼ି ଚାଲି ଗଲାବେଳେ ସେମାନଙ୍କୁ ଓଡ଼ିଶାଟା ମୋଟେ ଦେଖା ଯାଇନଥିବ । ଖାଲି ସେହି ଆମେରିକାଟା ଦିଶିଥିବ । ଆଗେ ଓଡ଼ିଶାରୁ ଜୀବିକାଟିଏ ଖୋଜି ବହୁ ମଣିଷ ବ୍ରହ୍ମଦେଶକୁ ପଳାଉଥିଲେ । ମୋ' ପିଲାଦିନେ ଆମ ଗାଆଁର କେତେ ଲୋକ କାଳିମାଟି ଚାଲି ଯାଉଥିଲେ । ମାତ୍ର, ସେମାନେ ହୁଏତ ତଥାପି ସବାଆଗ ନିଜ ଗାଆଁକୁ ଅଥବା ଓଡ଼ିଶାରେ ରହିଥିବା ନିଜର ଭୂଇଁଟିକୁ ଦେଖୁଥିଲେ । କାଳିମାଟିରେ ଥାଇ ମଧ୍ୟ ନିଜ ଗାଁ ବାଗଲପୁରକୁ ଦେଖୁଥିଲେ ଓ ନିଜ ଗାଆଁର ଦେବତା ଦଧିବାମନଙ୍କୁ ସ୍ମରଣ କରୁଥିଲେ । ମାତ୍ର, ଆମେରିକା ବେଳକୁ ସବୁ ଓଲଟା ହୋଇଗଲା । ଭୂଇଁର ପୁଅକୁ କ'ଣ ସବୁ ଅନ୍ୟ ଅନୁରାଗ ଏବଂ ଆନୁଗତ୍ୟର ବିରୁଡ଼ିମାନେ ଆସି ମାଡ଼ି ବସିଲେ କେଜାଣି, ତାକୁ ଓଡ଼ିଶାଟା ମୋଟେ ଦେଖା ଗଲାନାହିଁ । ଆମେରିକାରେ ଗୁଳାଗୁଡ଼ିକ ପଦ୍ମାପଣେ ବନ୍ଧା ହୋଇ ରହିଛି । ସେଠାରେ ତୁମେ ଯାଇ ନିଜପାଇଁ ଗୁଳାଟିଏ ଆଦରିନେବ ଓ ସୁନାପିଲାଟି ପରି କଥା ମାନିବ । ତେବେ ମୁଠା ମୁଠା ରୋଜଗାର କରିବ । ପୃଥିବୀର ସବୁଠାରୁ ଅଧିକ ଧନୀ ଦେଶରେ ନାଗରିକ ହୋଇ ରହିବାର ସୌଭାଗ୍ୟ ଅର୍ଜନ କରିବ । ତୁମକୁ ତୁମ ବାପାମାଆ ଯାହା ଦେଇ ପାରିଲେନାହିଁ, ତୁମର ନିଜ ଦେଶଟା ବି ଯାହା ଦେଇ ପାରିଲାନାହିଁ, ଧାଡୀ ଭିତରେ ସାମିଲ ହୋଇଯିବା ମାତ୍ରକେ ଯଦି ଆମେରିକାରେ ତାହା ଉପଲବ୍ଧ ହୋଇପାରିଲା, ତେବେ ଚିନ୍ତା କରିବାର ଆଉ କ'ଣ ଅଛି, ପଛକୁ ଅନାଇବାର କାରଣ ବା ଆଉ କ'ଣ କାହିଁକି ରହିବ ? ଏବଂ, ସଂପ୍ରତି ତ ସମଗ୍ର ବିଶ୍ୱ ଘୋଷି ହେଉଛି ଯେ, ଆମେରିକା ହିଁ ପୃଥିବୀର ସେହି ଏକମାତ୍ର ଦେଶ, ଯିଏ କି ମୋଟେ ପଛକୁ ଅନାଉନାହିଁ, କେବଳ ଆଗକୁ ହିଁ ଦେଖୁଛି, ଆଗଟାକୁ ଦେଖୁଛି ଓ ଆଖିବୁଜି ଧାଇଁବାରେ ଲାଗିଛି

ଆମେରିକାରେ ପ୍ରାୟ ପ୍ରତ୍ୟେକ ଓଡ଼ିଆଙ୍କର ଜୀବନ ପଛରେ ଏକ ଦୁଃସାହସର କାହାଣୀ ଅବଶ୍ୟ ରହିଛି । ଘରୁ ଗୋଡ କାଢ଼ିବା ସମୟରେ ସେମାନଙ୍କୁ ନାନା ଶଙ୍କା ମଧ୍ୟରେ ଏକ ନିଷ୍ପତ୍ତି ନେବାକୁ ପଡ଼ିଥିଲା । ସମସ୍ତେ ଯେ ରାଜି ହେଉଥିଲେ ସେକଥା ଆଦୌ ନୁହେଁ । ନାନା କ୍ଷୋଭ ଏବଂ ବିକ୍ଷୋଭ ଘେରି ରହିଥିଲେ ମଧ୍ୟ ସମସ୍ତେ ଯେ ଏପରି ନିଷ୍ପତ୍ତିଟିଏ ଗ୍ରହଣ କରନ୍ତି । ସେ କଥା ଆଦୌ ନୁହେଁ । ଘରୁ ଗୋଡ଼ କାଢ଼ିବାପରେ ମଧ୍ୟ ରାସ୍ତାଟି ସଂପୂର୍ଣ୍ଣ ଭାବରେ ସଳଖ ଓ ସମତଳ ହୋଇ ଯେ ଦେଖା ଯାଉଥାଏ, ସେ କଥା ମଧ୍ୟ ନୁହେଁ

। କେତେ ସେଣାରେ ପାଣି ଉଠାଇବାକୁ ପଡ଼େ, ନିଜର କେତେ କେତେ ଜାଗାରେ ପରୀକ୍ଷା ଦେବାକୁ ହୁଏ ଏବଂ କେତେ କେତେ ପରୀକ୍ଷା ଦେଇ ନିଜର ଶକ୍ତି ଓ ସାମର୍ଥ୍ୟଗୁଡ଼ିକୁ ଜାଣିବାକୁ ପଡ଼େ । ଗୋଟିଏ ନୂଆ ଦେଶକୁ ଆସି ଝଟ୍ କରି ଖାପ । ଖାଇଯିବା, ସେକଥାଟି ମଧ ମୋଟେ ସହଜ ନୁହେଁ । ଭାଗ୍ୟକୁ, ଏବେତ ଆମେରିକାରେ ଓଡ଼ିଆ କ୍ରମେ ଅନେକ ହୋଇଗଲେଣି, ତେଣୁ ସେମାନେ ନବାଗତମାନଙ୍କୁ ବହୁପ୍ରକାରେ ସାହାଯ୍ୟ କରି ପାରୁଛନ୍ତି । ଓ ଆବଶ୍ୟକ ପରାମର୍ଶ ଦେଇ ପାରୁଛନ୍ତି । ମାତ୍ର, ଯେଉଁମାନେ ସେହି ପ୍ରଥମ କାଳରେ ଅମେରିକାକୁ କର୍ମଭୂମି ରୂପେ ଆଦରିନେଇ ଏଠାରେ ସ୍ଥାୟୀ ଭାବରେ ରହିବା ନିମନ୍ତେ ସ୍ଥିର କରିଥିବେ, ସେମାନଙ୍କୁ ନାନା ଆଘାତ ପାଇବାକୁ ପଡ଼ିଥିବ, ଥାନରୁ ଥାନ ବୁଲିବାକୁ ପଡ଼ିଥିବ । ଆମେରିକାକୁ ଯିବା ଲାଗି ଆଶାୟୀମାନଙ୍କୁ ସେହି ଦିଗରେ ସାହାଯ୍ୟ କରିବାଲାଗି ଓଡ଼ିଶାରେ ମଧ ଔପଚାରିକ ଭାବେ କେତେ ଅନୁଷ୍ଠାନ ଓ ସଂଗଠନ ଗଠିତ ହେଲାଣି । ତେଣୁ ଆଉ ହୁଏତ ଅକାରଣରେ ମୋଟେ ବାଡ଼ି ବୁଲାଇବାକୁ ପଡୁନାହିଁ । ଆମେରିକା-ପ୍ରବାସୀ ଓଡ଼ିଆମାନେ ମଧ ବେଳେ ବେଳେ ଓଡ଼ିଶା ଆସୁଛନ୍ତି, ସେମାନେ ମଧ ସାହାଯ୍ୟ କରୁଛନ୍ତି । ଓଡ଼ିଶାରେ ଆଖି ଥିବା ପିଲାମାନେ ବୃତ୍ତିଗତ ଯୋଗ୍ୟତା ହାସଲ କରିସାରିବା ପରେ ଚତୁର୍ଦ୍ଦିଗର ନାନା ପ୍ରତିକୂଳତା ଦ୍ୱାରା ଯେଉଁଭଳି ବାଧାସବୁ ପାଉଛନ୍ତି, ସେଥିରେ ଆମେରିକା ଆଡ଼କୁ ଅନାଇବା ସେମାନଙ୍କ ପାଇଁ ହୁଏତ ଏକାଧିକ ଦୃଷ୍ଟିରୁ ଏକ ସମାଧାନ ପରି ମନେ ହେଉଥିବ । ସେହି ସମାଧାନଟି ମଧ ସେମାନଙ୍କୁ ସେହିଆଡେ ଟାଣିହୋଇ ଯିବାଲାଗି ଖୋରାକ ଯୋଗାଇ ଦେଉଥିବ । ଓଡିଶା ଆଁ କରି ଅନାଇଥିବ, ଏମାନେ ଯାଇ ସେଠା ଗୁହାଳରେ ବାନ୍ଧି ହୋଇ ଯାଉଥିବେ ।

ଗୋଟିଏ ନୂଆ ଦେଶରେ ଜୀବିକାଟିଏ ଆଦରି ନେଇ ଖାପ ଖାଇ ରହିଯିବ । ହୁଏତ ଆଦୌ ଏତେ କଷ୍ଟସାଧ ହେବନାହିଁ । ମାତ୍ର ଗୋଟିଏ ଦେଶରୁ ଆଉ ଗୋଟିଏ ଦେଶରେ ଯାଇ ପହଞ୍ଚିଲେ ଯେଉଁ ସ୍ଥିତିବଦଳଟି ମଧ ଘଟିଥାଏ ଏବଂ ସେହି ସ୍ଥିତିବଦଳ ଯେଉଁ ଦୃଷ୍ଟିବଦଳଟି ଆବଶ୍ୟକ କରିଥାଏ, ସେଗୁଡ଼ିକରେ ମଣ ହେବା ଆଦୌ ସହଜ ହୋଇ ପାରେନାହିଁ । ଆମେରିକାରେ ଜଳବାୟୁ ପରି ହୋଇ ଯେଉଁ ସ୍ଥିତିଟି ରହିଛି, ତାହା ଓଡ଼ିଶା ଓ ଭାରତବର୍ଷ ଠାରୁ ଯାବତୀୟ ଅର୍ଥରେ ବହୁତ ଫରକ ହୋଇ ରହିଥାଏ ଏବଂ ସେହି କ୍ଷେତ୍ରରେ ହିଁ ହୁଏତ ନବାଗନ୍ତୁକ ଯେକୌଣସି ଜଣେ ମନୁଷ୍ୟକୁ ପ୍ରାୟ ଏକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼େ । ତୁମେ ଭଲ ରୋଜଗାର କରୁଛ, ତେଣୁ ସେଠା ଦୋକାନଗୁଡ଼ିକ ଭିତରେ ପଶି ସଉଦା କିଣିବା ନିମନ୍ତେ ମୋଟେ ସାଧନା କରିବାକୁ ପଡ଼େନାହିଁ । ଆମ ଓଡ଼ିଶାରେ ମୋଟରଗାଡ଼ି ଚଳାଇ ଯାଉଥିବା ବାବୁମାନଙ୍କୁ ରାଜା ପରି ଗାଡ଼ୀ ଚଳାଇଲେ ମଧ ବାଡ଼ବତା କିଛି ନଥାଏ । ମାତ୍ର, ଆମେରିକାରେ ତ ସମସ୍ତଙ୍କୁ ନାଗରିକଙ୍କ ପରି ଆଚରଣ କରିବାକୁ ପଡ଼େ ଏବଂ ତେଣୁ ରାସ୍ତାର ଅନେକାନେକ ନିୟମ ମାନିବାକୁ

ହୋଇଥାଏ । ନିୟମ ଓ ନିର୍ଦ୍ଦେଶଗୁଡ଼ିକତ ନିଖୁଣ ଭାବରେ ରାସ୍ତାଉପରେ ତୁମ ଆଖି ସାମନାରେ ହିଁ ବିଜ୍ଞାପିତ ହୋଇ ରହିଥାଏ । ତେଣୁ,ବୁଦ୍ଧିମାନ ମଣିଷମାନେ ସେଗୁଡ଼ିକୁ ମଧ୍ୟ ଖୁବ୍ ବେଶୀ ହେଲେ ଗୋଟିଏ ମାସରେ ଆୟତ୍ତ କରିନେଇ ପାରନ୍ତି । ତଥାପି, ଆମେରିକାରେ ଜଣେ ଆମେରିକାବାସୀ ମନୁଷ୍ୟ ପରି ଚଳିବା ବେଳେ ବେଳେ ଅନେକଙ୍କ ସକାଶେ କାଠିକର ପାଠ ହୋଇ ରହିଯାଏ । ଓଡ଼ିଶାରୁ ଆମେରିକାକୁ ଯାଇଥିବା ଅଧିକାଂଶ ଲୋକ ଆମ ଏଠିକାର ଥିଲା ଘରମାନଙ୍କରୁ ଯାଇଥାନ୍ତି ଏବଂ ତେଣୁ ଥିଲା ଦେଶ ଆମେରିକାରେ ସମ୍ଭ୍ରାନ୍ତ ପରିମଳଗୁଡ଼ିକ ଭିତରେ ଚଳପ୍ରଚଳ ହେବା ମଧ୍ୟ ମୋଟେ ଗୁଡ଼ାଏ କସରତର ଦାବୀ ଆଦୌ କରେନାହିଁ । ଆୟ ବଢ଼େ, ପାହିଆ ବଢ଼େ, ସୁଖ ଖୋଜିବାର ଏବଂ ସୁଖ କରିବାରେ ନଜରଗୁଡ଼ାକ ମଧ୍ୟ ବୃଦ୍ଧି ପାଏ , -ଏହିସବୁ ପ୍ରକାରେ ନିଜକୁ ପ୍ରାୟ ଏକ ଆମେରିକାନ୍ ପରି ଅନୁଭବ କରିହୁଏ ଓ ସେଥିରୁ ଆନନ୍ଦ ମଧ୍ୟ ମିଳୁଥାଏ । ତଥାପି, ନିଜ ଭିତରେ କ'ଣ ସବୁ ରହିଥାଏ, ଯାହାକି ଆଦୌ ମଙ୍ଗି ପାରେନାହିଁ ଏବଂ ତେଣୁ ବାହାରେ ସବୁକିଛି ଠିକ୍ ଓ କାଇଦାମୁତାବକ ହୋଇ ରହିଥିଲେ ମଧ୍ୟ ଭିତରେ କ'ଣଟାଏ ଭାରି ଏହି ସବୁକିଛିରୁ ଅଲଗା ହୋଇ ରହିଥାଏ । ମୋଟେ ମିଶି ପାରେନାହିଁ ଓ ମୋଟେ ସୁସ୍ଥ ଅନୁଭବ କରେନାହିଁ । ଓଡ଼ିଶାରୁ ଗୋଡ଼ ଛାଡ଼ି ହୋଇ ଯାଇନଥାଏ ଅଥଚ ଆମେରିକାରେ ଗୋଡ଼ ଠିକଣା ହୋଇ ଲାଗିନଥାଏ, -ତାହା ପ୍ରକୃତରେ ଏକ ବଡ଼ ଦୁର୍ଗତ ଅବସ୍ଥା, ଏକ ଦୁଃଖଦ ଅବସ୍ଥା । ଓଡ଼ିଆମାନଙ୍କର ବାର୍ଷିକ ସମ୍ମିଳନୀରେ ବହୁତଙ୍କ ସହିତ କଥା ହେଲାବେଳେ ବାରବାର କାହିଁକି ସେହିପରି ଏକ ସଂଶୟ ହୋଉଥାଏ ।

ମନେ ହୁଏ, ସେମାନେ ଏଇଟାକୁ ଛାଡ଼ି ପାରିନାହାନ୍ତି ବା ଏଇଟାକୁ ଗ୍ରହଣ କରି ପାରୁନାହାନ୍ତି । ଏଇଟାର ପୂରା ହୋଇପାରିବେ ବୋଲି ସେଇଟାକୁ ଛାଡ଼ିଦେବା ଲାଗି ସଚେତନ ଭାବରେ ଯେତେ ଚେଷ୍ଟା କରିବାରେ ଲାଗିଥିଲେ ମଧ୍ୟ ତଥାପି ଯେ ପାରୁନାହାନ୍ତି, ସେଇଟା ଭାରି ଅସହଜ ଭାବରେ ପ୍ରକଟ ହୋଇଯାଏ । ପଚାରୁ ପଚାରୁ ସେହି ବାର୍ଷିକ ସମ୍ମିଳନୀରେ ମୁଁ ସେଠାରେ ବହୁ ବର୍ଷ ରହି ଆସିଥିବା ଜଣେ ଓଡ଼ିଆ ବନ୍ଧୁଙ୍କୁ ପଚାରିଥିଲି । ସିଏ ଉତ୍ତର ଦେଲେ ଯେ ଓଡ଼ିଶାରେ ସେମାନେ ଯେଉଁ ସାମାଜିକ ସମ୍ବନ୍ଧ ସଂସ୍କୃତିରେ ସାନରୁ ବଡ଼ ହୋଇଥିଲେ, ତାହାରି ସଂସ୍କାରଗୁଡ଼ାକୁ ନେଇ ଆମେରିକା ଆସିଥିଲେ । ଗୋଟିଏ କଥାରେ କହିଲେ, ସେମାନେ ତେଣୁ ଏକ ବାବୁସଂସ୍କୃତିକୁ ସାଙ୍ଗରେ ନେଇ ଆମେରିକା ଆସିଥିଲେ । ଆମେରିକାରେ ମଧ୍ୟ ବାବୁ ଅଛନ୍ତି ସିନା, ମାତ୍ର ଓଡ଼ିଶା ବା ଭାରତ ଭଳି କୌଣସି ବାବୁସଂସ୍କୃତି ଆଦୌ ନାହିଁ । ଆମେରିକାରେ ଏକ ଅନ୍ୟ ପ୍ରକ୍ରିୟା ଦ୍ୱାରା ପରିଚାଳିତ ହୋଇ ଶ୍ରମସଂସ୍କୃତି ଏବଂ ମାନସିକ ଉତ୍କର୍ଷ ସାଧନ ଏକାଠି ମିଶି କରି ରହିଛି । ଦେହ ବିଷୟରେ କୌଣସି କାତରତା ନାହିଁ ଅଥବା ଦୈହିକ ଶ୍ରମ ବିଷୟରେ କୌଣସି ଲଜ୍ଜା ମଧ୍ୟ ନାହିଁ । ଏବଂ ଓଡ଼ିଆ ଓ ଭାରତୀୟମାନେ ଏଇଟିକୁ ଗ୍ରହଣ କରି

ପାରିନାହାନ୍ତି, ତେଣୁ ଏଠା ମୁଖ୍ୟସ୍ରୋତରେ ତଥାପି ମିଶି ପାରୁନାହାନ୍ତି । ଯେତିକି କ୍ୱରାକ୍ରାନ୍ତ ହେଲାପରି ସେଥିପାଇଁ ଚେଷ୍ଟା କରୁଛନ୍ତି, ସେତିକି ଧରା ପଡ଼ି ଯାଉଛନ୍ତି । ନିଜ ପାଖରେ ଅପ୍ରସ୍ତୁତ ହୋଇ ରହିଛନ୍ତି । ଦୁଃଖ ପାଉଛନ୍ତି । ମନେ ମନେ କାଇଲି ହୋଇ ଯାଉଛନ୍ତି । ଅଲଗା ହୋଇ ରହି ଯାଉଛନ୍ତି ।

ତେଣୁ ଭାରି ସଚେତନ ଭାବରେ ଅଲଗା ଗଡ଼ଟିଏ ତିଆରି କରି ରହିବାକୁ ଚେଷ୍ଟା କରୁଛନ୍ତି । ନିଜ ଦେଶରେ ହୁଏତ ନିଜକୁ ଯେତେ ଓଡ଼ିଆ ବୋଲି ମନେ ପଡୁନଥିଲା । ଆମେରିକାରେ କ'ଣ ପାଇଁ ନିଜକୁ ଓଡ଼ିଆ ବୋଲି ଅନୁଭବ କରିବାରେ ଭାରି ତତ୍ପରତା ଦେଖାଉଛନ୍ତି । ଓଡ଼ିଆମାନଙ୍କର ଏହି ସଂଘ, ଏହି ସମ୍ମିଳନୀ, ଏହି ଜଗନ୍ନାଥ ମନ୍ଦିର, ରଥଯାତ୍ରା ଏବଂ ସ୍ତୋତ୍ରପାଠ, ଏସବୁକୁ ସେହି ଦିଗରେ ଗୋଟିଏ ଗୋଟିଏ ପ୍ରଚେଷ୍ଟା ବୋଲି କୁହାଯାଉ ପାରିବ କି ? ମନ୍ଦିରର ପ୍ରତିଷ୍ଠା ପାଇଁ ଯେତେବେଳେ ସେମାନେ ହାତରୁ ବ୍ୟୟ କରି ଗଜପତି ମହାରାଜାଙ୍କୁ ପୁରୋଧା କରି ବସାଉଛନ୍ତି, ଭୋଜୀଭାତ କରିବା ସମୟରେ ଯେତେବେଳେ କାଞ୍ଜି ପରଷିବାକୁ ଦେଇ ପୁଲକ ଅନୁଭବ କରୁଛନ୍ତି ଅଥବା ତାଆସ ପାଲି ପକାଇ ଯେତେବେଳେ ମାଗଣ ବା ଟ୍ୱେଣ୍ଟି ନାଇନ୍ ଖେଳିବେ ବୋଲି କହୁଛନ୍ତି, ସେତେବେଳେ ସେମାନେ ନିଜଭିତରେ କ'ଣସବୁ କ୍ଷତିପୂରଣ କରିବାକୁ ଚେଷ୍ଟା କରୁଛନ୍ତି କି ? ଘର ଭିତରେ କାନ୍ଥରେ ପିପିଲିର କନାକାମସବୁ ମରା ହୋଇ ବଡ଼ ଘଟଣ ଦିଶୁଛି, ଟେବୁଲ୍ ଉପରେ କଟକର ସିଙ୍ଗତିଆରି ଦିଇଟା ବଗ ମାଛ ଧରି ବସିଛନ୍ତି ଏବଂ ତାରକସୀ କାମର କୃଷ୍ଣ ଅର୍ଜୁନ ଦୂରଦର୍ଶନର ବାକ୍ସଟା ଉପରେ ଶୋଭା ପାଇବାରେ ଲାଗିଛନ୍ତି, -ଏହି ସବୁକିଛି କ'ଣ ସେହି ଗୋଟାଏ ଦୁଃଖର ଦ୍ୟୋତନା ଦେଇଯାଉଛି କି ? ଓଡ଼ିଶାକୁ ଛାଡ଼ି ଓଡ଼ିଶାକୁ ଝୁରିହେବା, -ଇଏ ପ୍ରକୃତରେ ଏକ ବିଚିତ୍ର ଜୀବନ ଓ ଏକ ବିଚିତ୍ର କସରତ । ଦେହ ଓ ମନ ପୂରା ଏହି ନୂଆ ଘରଟା ଭିତରେ ବିକି ହୋଇ ଯାଇଛି । ନିଜର ପିଲାମାନେ ଏଇଠି ରହନ୍ତୁ ଓ ଏଇଠି ସଫଳ ହୁଅନ୍ତୁ ବୋଲି ଏକ ଦୁରନ୍ତ ଆକାଙ୍କ୍ଷା, -ଅଥଚ ହୃଦୟର କୃଶ ଖିଅଟିଏ ତଥାପି ସିଆଡ଼େ ଯାଇ ଲାଗିରହିଛି, -ଇଏ ପ୍ରକୃତରେ ଏକ ମର୍ମନ୍ତୁଦ ଅବସ୍ଥା । ସବୁ ଥାଇ ସବୁକିଛି ଖାଲି ପଡ଼ିଥିବାର ଏକ ଅନୁଭବ । କୋଟି କୋଟି ଡ଼ଲାର ଆଣି ଏକାଠି ଜମା କରିଦେଲେ ମଧ୍ୟ ତଥାପି ସେହି ଅନୁଭବଟା ସେହିପରି ହିଁ ରହିଥିବ । ଯେତେ ଯାହା ଚେଷ୍ଟା କଲେ ମଧ୍ୟ ତୁମେ ଓଡ଼ିଶାକୁ ଆମେରିକାର ସୁଖସଂସାର ଭିତରକୁ ଉଡ଼ାଇ ନେଇଯାଇ ପାରିବନାହିଁ । ସଫଳ ହେବ, କ୍ଷତିପୂରଣ ନିମନ୍ତେ ଅସଲି ଓ ଦରଅସଲି କେତେ ଟନିକ୍ ଖାଉଥିବ ସିନା, ତଥାପି କୋଉଠି ଖାଲି ଖାଲି ଲାଗୁଥିବ । ଏକାବେଳେକେ ଓଡ଼ିଶା ଓ ଆମେରିକାରେ ଅଖଣ୍ଡ ହୋଇ ରହି ପାରିବାକୁ ହେଲେ ତୁମକୁ ପ୍ରକୃତରେ ଆଉକିଛି କରିବାକୁ ହେବ । ଏକାବେଳେକେ ଏକ ଅନ୍ୟ ଆହ୍ୱାନରେ ପୃଥିବୀରେ ତୁମକୁ କେତେ ପାହାଚ ଉଠି ପାରିବାକୁ ପଡ଼ିବ । ସିଏ ହେଉଛି ଏକ ଅନ୍ୟ ପାଠ, ଏକ ଅନ୍ୟ

ଅଧାମ୍ । ଖାଲି ଓଡ଼ିଶା ବା ଖାଲି ଆମେରିକାକୁ ଝୁରିଲେ କିମ୍ବା ଓଡ଼ିଶା ଓ ଆମେରିକା ମଧ୍ୟରେ ବିଭାଜିତ ହୋଇ ରହିଥିଲେ ତୁମେ ସେହି ପାହାଚଗୁଡ଼ିକର ପତ୍ତା ବି ପାଇବ ନାହିଁ । ଓଡ଼ିଶାରେ ଥାଇ ଯେପରି ଥୋକେ ମଣିଷ ଆମେରିକାକୁ ଝୁରି ହେଉଛନ୍ତି ଓ ଆମେରିକାରେ ଥାଇ ଯେପରି ଆଉ ଥୋକେ ମଣିଷ ଓଡ଼ିଶାକୁ ଝୁରି ହେଉଛନ୍ତି । ତୁମେ ଠିକ୍ ସେହିପରି ଝୁରି ହେଉଥିବ । ହଁ, ଭାରି ଦୁଃଖ ପାଉଥିବ ।

କେତେ ବର୍ଷ ତଳେ ରାଜଧାନୀର ଗୋଟିଏ ଖବରକାଗଜରେ ଆମେରିକାରେ ଥିବା ଓଡ଼ିଆମାନଙ୍କ ବିଷୟରେ ଧାରାବାହିକ ଭାବରେ କେତୋଟି ଲେଖା ବାହାରିଥିଲା । ନିଜ ନିଜ କ୍ଷେତ୍ରରେ ଆମେରିକାରେ ବାସ କରୁଥିବା କେତେଜଣ ଓଡ଼ିଆ କିପରି ବିଶେଷ ସାମର୍ଥ୍ୟ ଓ ସଫଳତାର ପରିଚୟ ଦେଇଛନ୍ତି, ସେଗୁଡ଼ିକରେ ଉଚ୍ଛ୍ୱସିତ ଭାଷାରେ ତାହାର ବର୍ଣ୍ଣନାମାନ ଦିଆ ଯାଇଥିଲା । କିଏ ବିଜ୍ଞାନର କ୍ଷେତ୍ରରେ ବ୍ୟୁତ୍ପତ୍ତି ଦେଖାଇଛନ୍ତି, ଆଉ କିଏ ଅଧ୍ୟାପକ ହିସାବରେ ତାଙ୍କର ବିଶ୍ୱବିଦ୍ୟାଳୟରେ ସର୍ବଜନମାନ୍ୟ ହୋଇ ପାରିଛନ୍ତି, କେଉଁ ଓଡ଼ିଆଙ୍କ ନାମ ନୋବେଲ ପୁରସ୍କାର ଲାଗି ଏକାଧିକ ବାର ପ୍ରସ୍ତାବିତ ହୋଇ ସାରିଲାଣି, ଇତ୍ୟାଦି, ଇତ୍ୟାଦି । ଯଦି ସେମାନେ ସମସ୍ତେ ବାହାରକୁ ନଯାଇ ଓଡ଼ିଶାରେ ରହିଥାନ୍ତେ, ତେବେ କଦାପି ଏତେ ଏତେ ଶୀର୍ଷରେ ଯାଇ ପହଞ୍ଚି ପାରି ନଥାନ୍ତେ, ଲେଖାଗୁଡ଼ିକରୁ ଏହିପରି ଧାରଣାଟିଏ ଏମୁଣ୍ଡରୁ ସେମୁଣ୍ଡ ଯାଏ ପ୍ରକାଶ ପାଉଥିଲା । ଓଡ଼ିଆଏ ସୁଦୂର ଆମେରିକାରେ ଯାଇ ନାମ ଅର୍ଜନ କଲେ, ସେଥିରେ ପ୍ରତ୍ୟେକ ଓଡ଼ିଆ ଗର୍ବ ଅନୁଭବ କରିବାର କଥା, ଲେଖାଗୁଡ଼ିକର ଛଳରେ ବାରମ୍ବାର ସେହି କଥାଟିକୁ ସୂଚାଇ ଦିଆ ଯାଇଥିଲା । ଏଠି ସେଗୁଡ଼ିକୁ ପାଠ କରି କାହାର ମନରେ କିଭଳି ପ୍ରତିକ୍ରିୟା ହୋଇଥିବ କେଜାଣି ? ଓଡ଼ିଶା ବାହାରେ ଓଡ଼ିଆଙ୍କର କୃତିତ୍ୱ ବିଷୟରେ ଅନେକ ସମୟରେ ଏହିଭଳି ଚର୍ଚ୍ଚାମାନ ହୋଇଥାଏ । ଅତ୍ୟନ୍ତ ସିଧା କଥାଟା ହେଉଛି ଯେ, ନିଜ ଗୁଣସମ୍ଭାବନାଗୁଡ଼ିକୁ ଜାଣି ସେଗୁଡ଼ିକର ବିକାଶ ଘଟାଇ ପାରିବା ନିମନ୍ତେ ପୃଥିବୀଯାକରେ ଯୁକ୍ତରାଜ୍ୟ ଆମେରିକାରେ ହିଁ ସବୁଠାରୁ ଅଧିକ ସୁବିଧାମାନ ରହିଛି । ଆମେରିକାରେ ସ୍ୱାତନ୍ତ୍ର୍ୟ ରହିଛି, ପ୍ରୟୋଗଶାଳା ରହିଛି, ଉଦାର ଭାବରେ ସେଥିପାଇଁ ଅର୍ଥ ଉପଲବ୍ଧ ହୋଇପାରୁଛି ଏବଂ ସର୍ବୋପରି, ବୈଜ୍ଞାନିକ ପ୍ରୟୋଗର କ୍ଷେତ୍ରରେ ପ୍ରୟୋଗକାରୀଙ୍କ ମଧ୍ୟରେ ଚମତ୍କାର ସହଯୋଗ ମଧ୍ୟ ରହିଛି । ଏସବୁ ଅନୁକୂଳତା ଆମେରିକା ବ୍ୟତୀତ ଇଉରୋପର କେତୋଟି ଦେଶ ଓ ଜାପାନରେ ସିନା ରହିଛି, ମାତ୍ର ଆମେ ଯେଉଁ ଦେଶଗୁଡ଼ିକୁ ଏବେ ତୃତୀୟ ବିଶ୍ୱ ବୋଲି ଗ୍ଣମାରି କରୁଛୁ । ସେଗୁଡ଼ିକରେ ଏହି ଦିଗରେ ଅତ୍ୟାବଶ୍ୟକ ଭିତ୍ତିଭୂମି ଗୁଡ଼ିକ ମଧ୍ୟ ସମ୍ଭବ ହୋଇ ପାରିନାହିଁ । ହୋଇ ପାରନ୍ତା, ତଥାପି ହୋଇ ପାରୁନାହିଁ । କାରଣ ଅନେକ, ଏବଂ ଅର୍ଥ ଏପରି ହେବାର ପ୍ରତିବନ୍ଧକ ମୋଟେ ନୁହେଁ । ତେବେ ପୃଥିବୀଯାକ ସବୁ ପ୍ରତିଭା କ'ଣ ଆସି ଆମେରିକାରେ ରୁଣ୍ଡ ହେବେ ଏବଂ ସେଇଠୁ ଗୋଟିଏ ଦେଶରୁ ହିଁ

ପୃଥିବୀକୁ ଆଲୁଅ କରିବେ ? ଏହିପରି ଯୁକ୍ତିଟିଏ ଆରମ୍ଭ କରିଦେଲେ ପ୍ରକୃତରେ ଆଦୌ କୌଣସି ଥଳକୂଳ ହିଁ ମିଳିବା ପରି ମନେ ହୁଏନାହିଁ ।

ପୃଥିବୀରେ ସବୁ ଦେଶର ପୃଷ୍ଠଭୂମି କଦାପି ସମାନ ନୁହେଁ । ଗୋଟିଏ ଦେଶରେ ରହିଥିବା ଭିନ୍ନ ଭିନ୍ନ ସମାଜରେ ମଧ୍ୟ ପୃଷ୍ଠଭୂମି ମୋଟେ ସମାନ ନୁହେଁ । ଖୋଦ ଆମେରିକାରେ ମଧ୍ୟ ସବୁ ସମୂହର ପୃଷ୍ଠଭୂମି ସମାନ ନୁହେଁ ଅଥବା ସର୍ବାଗ୍ର ଆବଶ୍ୟକତା ମଧ୍ୟ ସମାନ ନୁହେଁ । କେଉଁଠି ସବୁ ମଣିଷଙ୍କ ସକାଶେ ସର୍ବନିମ୍ନ ପ୍ରୟୋଜନଗୁଡ଼ିକର ଯୋଗାଡ଼ କରି ପାରିବା ଏବେ ମଧ୍ୟ ବାକୀ ରହିଛି । ସେହି ଦୃଷ୍ଟିରୁ ବିଚାର କରି ଦେଖିଲେ ଭାରତବର୍ଷରେ ଅରାଏ ଆମେରିକା ରହିଛି ଓ ଆମେରିକାରେ ମଧ୍ୟ ଅରାଏ ଭାରତବର୍ଷ ଓ ବାଂଲାଦେଶ ମଧ୍ୟ ରହିଛି । ବଡ଼ ଓ ବିଶେଷମାନେ ବଡ଼ ସ୍ୱପ୍ନମାନ ଦେଖୁଛନ୍ତି । ସେହି ସ୍ୱପ୍ନଗୁଡ଼ିକୁ ଚରିତାର୍ଥ କଲେ ଯାଇ ଦେଶ ସତକୁ ସତ ନାମ ଅର୍ଜନ କଲା ବୋଲି ସେମାନେ ଭାବୁଛନ୍ତି । ଯୁକ୍ତରାଜ୍ୟ ଆମେରିକାର ଦକ୍ଷିଣ ସରହଦକୁ ମେକ୍ସିକୋ ବୋଲି ଯେଉଁ ପଡ଼ିଶାଟି ରହିଛି, ସେହି ଦେଶରେ ଦଳେ ମଣିଷଙ୍କୁ ସେଠି Los perfumados ବୋଲି କୁହାଯାଏ । ସିଧା ଇଂରାଜୀରେ ଅନୁବାଦ କରାଗଲେ ସେମାନଙ୍କୁ ଆମେ The perfumed boys ବୋଲି କହିପାରିବା । ଅର୍ଥାତ୍ ସୁବାସିତ ବର୍ଗ ବୋଲି କହିବା । ସେମାନେ ସମସ୍ତେ ଦେଶବ୍ୟବସ୍ଥାର ସର୍ବୋଚ୍ଚ ସ୍ଥାନ ଓ ସ୍ତରମାନଙ୍କରେ ରହିଛନ୍ତି । ଦେଶକୁ ଶାସନ କରୁଛନ୍ତି । ଦେଶଜୀବନର ମ୍ୟାନେଜର ହୋଇ ରହିଛନ୍ତି । ସରକାରୀ ତଥା ବେସରକାରୀ ଉଭୟ କ୍ଷେତ୍ରରେ ଦେଶବାସୀଙ୍କୁ ଚରାଉଛନ୍ତି । ସେମାନେ ମେକ୍ସିକୋରେ ଥାଇ ମଧ୍ୟ ଆମେରିକାକୁ ଲଡୁ କରି ପାଟିରେ ଭରିଛନ୍ତି, ଆମେରିକାକୁ ରଙ୍ଗଚଷମା କରି ଆଖିରେ ଲଗାଇଛନ୍ତି । ଏମାନେ ସମସ୍ତେ ଆମେରିକାରୁ ଉଚ୍ଚ ପାଠ ପଢ଼ି ଆସୁଛନ୍ତି । ସେମାନେ ମେକ୍ସିକୋରେ ରହି ସବାବଡ଼ ଶଗଡ଼ମାନଙ୍କରେ ବସି ଦେଶବ୍ୟବସ୍ଥାକୁ ବାହୁଥିଲେ ମଧ୍ୟ ତଦ୍ୱାରା ମେକ୍ସିକୋର ଶହେରୁ ନବେ ଭାଗ ମଣିଷଙ୍କର ଆଦୌ କୌଣସି ଲାଭ ହେଉନାହିଁ ତଥା ଏମାନେ ସମସ୍ତେ ଉତ୍ତମତର ସୁଯୋଗ ପାଇ ଆମେରିକାକୁ ଚାଲିଗଲେ ମଧ୍ୟ ତଦ୍ୱାରା ମେକ୍ସିକୋର ବିଶେଷ କୌଣସି କ୍ଷତି ମଧ୍ୟ ହେବନାହିଁ ।

ପୃଥିବୀର ସବୁ ଦେଶରେ ସୁବାସିତ ବର୍ଗ ଅବଶ୍ୟ ରହିଛନ୍ତି । ମହ ମହ ବାସୁଛନ୍ତି । ଗହ ଗହ ଦିଶୁଛନ୍ତି । ଏଠି ଆମ ମନରେ ଆମେରିକାର ଭ୍ରମ ଜନ୍ମାଉଛନ୍ତି । ଏମାନେ ସମସ୍ତେ ଆମେରିକାରେ ରହିଥିଲେ ମଧ୍ୟ ଆମ ଓଡ଼ିଶାର ବିଶେଷ କିଛି ଲୋକସାନ ହୁଅନ୍ତା ନାହିଁ । ଆମ ଡିହଗୁଡ଼ାକୁ ଏମାନେ ମୋଟେ ଚଷି ପାରିବେନାହିଁ; ଏମାନେ ମୋଟେ ଆମର ବଳଦ ହୋଇ ପାରିବେନାହିଁ । ଏବଂ, ଆମେରିକାରେ ଥାଇ ମଧ୍ୟ ଏଠୁ ଯାଇଥିବା ଯେଉଁ ଓଡିଆମାନେ ଘରେ ଏହି ଓଡ଼ିଶାରେ ଥିବା ଆମ ନାକକୁ ବାସିବାରେ ଲାଗିଛନ୍ତି, ସେମାନେ

ଓଡ଼ିଶା କହିଲେ ସତକୁ ସତ କୋଉମାନଙ୍କୁ ଆଗ ଦେଖୁଛନ୍ତି ? ସେମାନେ ଘରକୁ ଫେରିଆସିଲେ ଘରଟା ପୂରିଗଲା ପରି ଅବଶ୍ୟ ଦେଖାଯାଆନ୍ତା ସତ ଓ ସେଥିରେ ଆମେ ସମସ୍ତେ ଖୁସୀ ହୁଅନ୍ତେ ସତ, ମାତ୍ର ସେମାନେ ପ୍ରକୃତରେ କୋଉ ଓଡ଼ିଶାଟାକୁ ନିଜର ବାପମାଆ ବୋଲି ସ୍ୱୀକାର କରନ୍ତେ ? ସେମାନେ ଯଦି ସୁବିଧା ହେବ ଭାବି ସେଠା ଆମେରିକାରୁ ପୁଳାଏ ସାଙ୍ଗରେ ନେଇ ଏଠାରେ ଆସି ପହଞ୍ଚି ଯାଆନ୍ତେ, ତେବେ ଏଠି ହୁଏତ ପ୍ରାୟ ଏକ ଆତଙ୍କ ଆସି ପହଞ୍ଚନ୍ତା ଓ ଆମ ସମସ୍ତଙ୍କୁ ଗିଳିପକାନ୍ତା । ଆମର ଏଠି ବାସନାମାନଙ୍କୁ ଆହୁରି ଅଧିକ ଉପରମୁହାଁ ହେବାରେ ସାହାଯ୍ୟ କରନ୍ତା । ଭଗବାନ କରନ୍ତୁ ସେପରି କୌଣସି ମହାର୍ଘ ଅଭିଜ୍ଞତାର ଦୁର୍ଭାଗ୍ୟ ଆମର ଆଦୌ ନହେଉ । ବରଂ, ଅନେକ ଅଧିକ ଭଲ ହେଉଛି, ସେମାନେ ଏବେ ଯେଉଁଠାରେ ଅଛନ୍ତି ସେହିଠାରେ ଥାଆନ୍ତୁ, ନାମ କରନ୍ତୁ, ଯଶସ୍ୱୀ ହୁଅନ୍ତୁ । ସେମାନଙ୍କର ଯଶୋଗାଥା ଗୁଡ଼ିକୁ ଏଠି ପାଠ କରି ଆମେ ଓଡ଼ିଆମାନେ ଉଲ୍ଲାସ ଅନୁଭବ କରୁଥାଉ । ସେମାନେ ଦିନେ ଏଇଠି ଏତୁରୁ ଏତୁଟିଏ ହୋଇଛନ୍ତି ଏବଂ ଅନ୍ୟ ଏକ ଗହନର ମହକରେ ମହକିବା ନିମନ୍ତେ ସେଠାକୁ ଯାଇଛନ୍ତି ବୋଲି ସେମାନଙ୍କୁ ସ୍ମରଣ କରୁଥାଉ । ହଁ, ସେମାନେ ମନ କଲେ ଓଡିଶାରୁ ପୁଳାଏ ସାଙ୍ଗରେ ଧରି ସେଠାରେ ମରମୀ ଜୀବନଟିଏ ମଧ ବଞ୍ଚିବାର ବିଶେଷ ଭାଗ୍ୟଟିକୁ ଲାଭ କରନ୍ତୁ । ସେଠାରେ ବି ଦେଉଳ ତୋଳା ହେଉ, ରଥ ଟଣା ହେଉଥାଉ । ଜଗନ୍ନାଥ ସେମାନଙ୍କର ମଙ୍ଗଳ କରନ୍ତୁ । ସେମାନେ ଆମେରିକା ପାଖରେ କୃତଜ୍ଞ ହୋଇ ରହିବାକୁ ସମର୍ଥ ହୁଅନ୍ତୁ ।

ଓଡ଼ିଶାରୁ ବିରୁଡ଼ି କାମୁଡ଼ି ଗୋଡ଼ାଉଥିବା ପରି ବାହାରି ଆସିବା ସମୟରେ ଆମେରିକା ବ୍ୟତୀତ ସିନା ଆଉକିଛି ଦେଖା ଯାଉନଥିଲା । କିନ୍ତୁ ଏଠି ଆମେରିକାରେ ଗୋଡ ତଳେ ଲାଗି ଆସିବାଭଳି ଲାଗିବା ସଙ୍ଗେ ସଙ୍ଗେ ଆମେରିକାବାସୀ ଓଡ଼ିଆଙ୍କର ଓଡ଼ିଆ କଥା ମନେ ପଡ଼ିଲାଣି । ମଣିଷମାତ୍ରକେ ସମ୍ଭବତଃ ଆଗ ନିଜକୁ ସମ୍ଭାଳି ନେବା ପରେ ସତେଅବା କୌଣସି ଧରାବନ୍ଧା ନିୟମର ବଶବର୍ତ୍ତୀ ହୋଇ ଅନ୍ୟମାନଙ୍କର କଥା ଚିନ୍ତା କରନ୍ତି । ହାଲୁକା ହୁଅନ୍ତି, ତେଣୁ ଉଦାର ହୁଅନ୍ତି । ଓଡ଼ିଶା ଛାଡ଼ି ବାହାରି ଆସିଥିଲେ ହେଁ ତଥାପି ଓଡ଼ିଶା ସହିତ ଲାଗିଥିବା ସୂତ୍ରଗୁଡ଼ାକୁ ଛିଣ୍ଡାଇ ହେବନାହିଁ ବୋଲି ଉପଲବ୍ଧି କରନ୍ତି । ଏତିକିକୁ ମଧ ଆମେ କଦାପି କମ୍ ବୋଲି ଭାବିବାନାହିଁ । ପ୍ରଥମେ ବ୍ୟକ୍ତିଗତ ଭାବରେ କେତେକ ଆମେରିକାରେ ପ୍ରତିଷ୍ଠିତ ଓଡ଼ିଆ ଓଡ଼ିଶା କଥା ମନେ ପକାଇଲେ ଓ ନିଜ ଗାଆଁରୁ ଆରମ୍ଭ କରି ଓଡ଼ିଶା ନିମନ୍ତେ କିଛି କରୁଛନ୍ତି ବୋଲି ଅନୁଭବ କରିଥିଲେ । ଆମେରିକାରେ ଡାକ୍ତର ଚାକିରି କରୁଥିବା ଜଣେ ଓଡ଼ିଆ ନିଜ ଗାଆଁରେ ଡାକ୍ତରଖାନା ବସାଇଲେ ଏବଂ ନିଜ ବାପାଙ୍କ ନାଆଁରେ ହାଇସ୍କୁଲଟିଏ ଆମେବ! ଗଢିଥିଲେ ! ଗାଆଁବାଲା ସତକୁ ସତ ତାଙ୍କ ପାଖରେ କେତେ କୃତଜ୍ଞ ବି ନିଶ୍ଚୟ ହୋଇଥିବେ । ଆଉମାନେ ମଧ

ସେମିତି କେତେ କ'ଣ କରିଥିବେ । ଓଡ଼ିଶା ଆଡ଼କୁ ମନ ଢ଼ଳିଲା ବୋଲି ଯେ ସେମାନେ ଆମେରିକାରୁ ଏଣେ ଫେରି ଆସିବାକୁ ମନ କଲେ । ସେକଥା ଆଦୌ ନୁହେଁ । ଆମେରିକାରେ ହଜାର ହଜାର ବ୍ୟକ୍ତି ଯେପରି ନିଜ ଆଖିରେ ବଡ଼ସିଙ୍ଗାର ବେଶ ପିନ୍ଧି ବଞ୍ଚୁଥିବା ପରି ଦେଖାଯିବା ନିମନ୍ତେ ଅଦମ୍ୟ ପ୍ରଚେଷ୍ଟା କରୁଛନ୍ତି । ଓଡ଼ିଶାରୁ ଯାଇଥିବା ଆମ ସ୍ୱଜନମାନେ ସଫଳତାର ସ୍ୱାଦ ମିଳିବାପରେ ତେଣୁ ଯେ ଓଡ଼ିଶାକୁ ଫେରି ଆସିବାକୁ ମନ କଲେ, ସେକଥା ମୋଟେ ନୁହେଁ । ସେମାନେ ଗୋଟାପଣେ ସେହି ପ୍ରତିଯୋଗିତା ଭିତରେ ରହିଲେ, ଆମେରିକାର ଲକ୍ଷ୍ମୀଙ୍କୁ ଧାୟିଲେ, ତଥାପି ଏଣେ ବି କିଞ୍ଚିତ୍ ସଦିଚ୍ଛା ପ୍ରଦର୍ଶନ କଲେ । ସେତିକି ମଧ୍ୟ ସମସ୍ତେ କଦାପି କରନ୍ତେନାହିଁ ।

ଏବେ ଏହି ଓଡ଼ିଶାଚିନ୍ତାଟା କ୍ରମେ ବ୍ୟକ୍ତିଗତ ସ୍ତରରୁ ଅଧିକ ସାଂଘିକ ତଥା ସଂଗଠନଭିତ୍ତିକ ହେବାର ଲକ୍ଷଣ ଦେଖାଯାଉଛି । ମନ୍ଟେରେଠାରେ ଓଡ଼ିଆମାନଙ୍କର ଯେଉଁ ବାର୍ଷିକ ସମାବେଶ ହୋଇଥିଲା, ସେଠାରେ ମଧ୍ୟ ଓଡ଼ିଶାର ସମସ୍ୟାଗୁଡ଼ିକୁ ନେଇ ସାନ ଆକାରରେ ଗୋଷ୍ଠୀ-ଆଲୋଚନାମାନ କରା ଯାଇଥିଲା । ମହାକାଶରେ ନିଜର ଅନ୍ତରୀକ୍ଷ ଯାନରୁ ପୃଥିବୀଟା ଯେତିକି ଦେଖାଯାଏ ଓ ଜଣେ ଅନ୍ତରୀକ୍ଷଚାରୀକୁ ସଂପୃକ୍ତ କରି ରଖେ, ଆଲୋଚନାଗୁଡ଼ିକୁ ଶୁଣୁଥିବା ସମୟରେ ବାର ବାର ସେହିପରି ଏକ ଧାରଣା ହେଉଥିଲା ଏବଂ ତେଣୁ ସେଗୁଡ଼ିକୁ ଖୁବ୍ ଗମ୍ଭୀର ଭାବରେ ଗ୍ରହଣ ନକରିବାକୁ ସତର୍କ କରାଇ ଦେଉଥିଲା । ଜଣେ ତ ନିଜର ଯେଉଁ ଲେଖାଟି ସେଠାରେ ପାଠ କଲେ, ସେଥିରେ ଅଙ୍କ କଷି ଓ ହିସାବର ଗାରମାନ ଟାଣି ଓଡ଼ିଶା ଯେପରି ଉପାୟରେ ଦଶ ବା ପଚିଶି ବର୍ଷ ଭିତରେ ସମସ୍ୟାମୁକ୍ତ ଓ ସମୃଦ୍ଧ ହୋଇଯାଇ ପାରିବ, ସିଏ ତାହାରି ଗୋଟିଏ ନିରୋଳା ବିବରଣୀ ଶୁଣାଇଥିଲେ । ଏହି ସବୁକିଛି କିମିଆକୁ ସାଧ୍ୟ କରିବାରେ କମ୍ପ୍ୟୁଟର ବ୍ୟବସ୍ଥାଟି ହିଁ ମୁଖ୍ୟ ଭୂମିକା ଗ୍ରହଣ କରିବ ବୋଲି ପୂର୍ଣ୍ଣ ପରତେ ଦେବାଭଳି କେତେକ'ଣ ପ୍ରମାଣ ବାଢ଼ି ଦେଇଥିଲେ । ଯୁବକସୁଲଭ ଉତ୍ସାହରେ ସିଏ ଏକାବେଳେକେ ସରଗରୁ ସବୁଯାକ ଫୁଲକୁ ହେଲିକପ୍ଟର ଯୋଗେ ଗୋଟିଏ ନିମିଷରେ ଓଡ଼ିଶାକୁ ବୋହି ଆଣିବାକୁ ବାହାରି ପଡ଼ିଲେଣି ବୋଲି ତାଙ୍କର ଭାବଭାବରୁ ପୂରା ଅନୁମାନ କରି ହେଉଥିଲା । ଏହି ଉତ୍ସାହ ସକଳ ପରିସ୍ଥିତିରେ ଅବଶ୍ୟ ସ୍ୱାଗତଯୋଗ୍ୟ । ମୁଁ ଭାବୁଥାଏ, ଆମ ରାଜ୍ୟରେ ସରକାରୀ ମହକୁମାର ସର୍ବୋଚ୍ଚ ସାହେବମାନେ ବି ତ ପ୍ରାୟ ଏତିକି ଉତ୍ସାହ ଦେଖାଇ କାଗଜ ମାଧ୍ୟମରେ କେତେ କ'ଣ ପ୍ରମାଣ କରି ଦେଇଛନ୍ତି ଏବଂ ତଥାପି ସବୁକିଛି କାହିଁକି ଫସରଫାଟି ଯାଇଛି, ଏଠି ଆମେରିକାବାସୀ ଓଡ଼ିଆମାନେ ଥରେ ଆଗ୍ରହ କରି ସେହି ବିଷୟରେ ଯଦି ଚର୍ଚ୍ଚା କରିପାରନ୍ତେ, ତେବେ କଦାପି ଏତେ ଡଗଡଗ ହୋଇ ସମାଧାନଗୁଡ଼ାକୁ ଦୁହିଁ ଆଣିବାପାଇଁ ମନ କରନ୍ତେନାହିଁ । ଘରକୁ ଜାଣିଥିବା ମଣିଷମାନେ ସିନା ଘରର ଦୁଃଖକୁ ବୁଝିପାରନ୍ତେ ଏବଂ ବାଟପରି କିଛି ବାଟ ଠାବ କରିପାରନ୍ତେ । ଏଠି ଆମେରିକାରୁ ବାଢ଼ି ପକାଇ ତୁମେ

ଯେତେ ଯାହା ସାଧ କରିବାକୁ ବାହାରି ପଡୁଥିଲେ ତଥାପି ସତକୁ ସତ କ'ଣ କରିପାରିବ କହିଲ ।

ଆଉ କେତେ ବନ୍ଧୁ ଓଡ଼ିଶାରେ ପ୍ରାୟ ବିରଳ ସ୍ତରର ଗୋଟାଏ ଡାକ୍ତରଖାନା ବସାଇବାର ପ୍ରସ୍ତୁତିରେ ବହୁତ ବାଟ ଆଗେଇ ଗଲେଣି । ଓଡ଼ିଶାରେ ରୋଗମାନେ ଯାହାକୁ ଯେତେ ରହିଛନ୍ତି, -ଗରିବଙ୍କର ରୋଗ ରହିଛି, ଧନୀମାନଙ୍କର ରୋଗମାନେ ମଧ୍ୟ କ୍ରମେ ପ୍ରଭାବଶାଳୀ ହୋଇ ବାହାରିଲେଣି । ତିନି ତିନିଟା ମେଡ଼ିକାଲ କଲେଜ ରହିଛି । ସେଗୁଡ଼ିକ ଚିକିତ୍ସା ରାଜାଙ୍କର ନଅର ପରି ଦେଖା ଯାଉଛି । ତଥାପି ଚିକିତ୍ସା ଘରେ କବାଟ ପଡ଼ିଛି । ପଇସା ଖରଚ ହେଲେ ମଧ୍ୟ ଚିକିତ୍ସା ଉପରେ ପ୍ରତ୍ୟୟ ଆସୁନାହିଁ । ଡାକ୍ତରମାନଙ୍କର ଚେହେରା, ଚାହାଣି ଏବଂ ଚହଟଗୁଡ଼ାକୁ ଦେଖିଲେ ଅନେକ ସମୟରେ ହାଲୁକ ଶୁଖିଯାଉଛି । ତେଣୁ, ରୋଗ ହେବା ପରି ରୋଗରୁ ମୁକ୍ତ ହେବାରେ ଦାୟିତ୍ୱଟାକୁ ମଧ୍ୟ ଭାଗ୍ୟ ଉପରେ ହିଁ ଛାଡ଼ି ଦିଆଯାଇଛି । ଆମେରିକାରେ ଥିବା ଓଡ଼ିଆ କେତେକ ଡାକ୍ତର ଓ ଅନ୍ୟମାନେ ଚିନ୍ତା କରି ଆମେରିକାର ପରିମଳକୁ ଖଟାଇ ଏଠାରେ ଓଡ଼ିଆଙ୍କ ପାଇଁ ଡାକ୍ତରଖାନାଟିଏ ଚାଲୁ କରିବାକୁ ଉଦ୍ୟମ କରୁଛନ୍ତି । ଘର ଭିତରେ ପଶିବା ପୂର୍ବରୁ ଚାଳରେ କେତେଥର ମୁଣ୍ଡ ବାଜିଲାଣି । ଦରବାରୀ ଚେକ୍‌ଗେଟ୍ ମାନଙ୍କରେ ରାଜନୀତିର ବଡ଼ହେଟାମାନେ ହାତ ପତାଇ ବସିଛନ୍ତି ଓ "ଆଗ ଦିଅ, ଦେଇ ଭିତରକୁ ଯାଅ" ବୋଲି କହୁଛନ୍ତି । ତଥାପି ଲାଗିଥିବା ଲୋକେ ଲାଗିଛନ୍ତି । ସେମାନେ ଯଦି ଅନ୍ତତଃ ଆଠପଣ ସଫଳ ହେବେ, ତେବେ ତାହା ହୁଏତ କେଡ଼େ ବଡ଼ କଥା ହେବ । ବହୁତ ତଥାକଥିତ ଘରୋଇ ଚିକିତ୍ସା ଗୋଦାମଙ୍କର ଆଣ୍ଠ ଭାଙ୍ଗିଯିବ । ମାତ୍ର, ଯେଉଁଠି ସ୍ୱୟଂ ସରକାର ପାରୁନାହାନ୍ତି ଏବଂ ସରକାରୀ ଡାକ୍ତରଖାନା ମାନଙ୍କରେ କୁଆ କୁକୁର ପଶି ଯାଉଛନ୍ତି, ପୁରୁଣା ଭୂଇଁଟା ପ୍ରତି ଖାଲି କିଞ୍ଚିତ ଦରଦ ରହିଛି ବୋଲି ଆମେରିକାରେ ଥାଇ ଏହି ବନ୍ଧୁମାନେ କେତେଦୂର ତାହାକୁ ସାଧ କରିପାରିବେ କେଜାଣି ? ଏବଂ, ଗୋଟାଏ ଜାଗାରେ ବଢ଼ିଆ କରି କ'ଣଟିଏ ଖୋଲିଦେଲେ ତାହା ସମଗ୍ର ବ୍ୟବସ୍ଥାଟିକୁ ବଦଳାଇବାରେ କେତେଦୂର ସମର୍ଥ ବି ହେବ ? ଉଦ୍ୟମୀମାନଙ୍କର ଉଦ୍ୟମ ଉପରେ ପୁଷ୍ପବୃଷ୍ଟି ହେଉ । ଏବଂ, କେବଳ ଶ୍ରୀମନ୍ତମାନେ ହିଁ ସେହି ଉଦ୍ୟମଟି ଦ୍ୱାରା ଉପକୃତ ନହୁଅନ୍ତୁ । ଶ୍ରୀମନ୍ତମାନେ ତ ମୁମ୍ବାଇ ବା ଦିଲ୍ଲୀ ଯାଇ ପାରୁଛନ୍ତି । ସେପରି କୌଣସି ଲାଗି ଯେଉଁମାନଙ୍କର ବଳ ନାହିଁ, କୌଣସି କିମିଆଁ କିମ୍ବା ଭଗବଦ୍‌କୃପା ଦ୍ୱାରା ସେହିମାନଙ୍କୁ ଭରସା ଦେବାପରି ଏହି ଅଭିନବ ଉଦ୍ୟମଟି ଦ୍ୱାରା କିଛି ସମ୍ଭବ ହୁଅନ୍ତା ନାହିଁ ? ଖାଲି ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ମଧ୍ୟ ସେହି ସମ୍ବଳହୀନ ମନୁଷ୍ୟମାନଙ୍କର ସଂଖ୍ୟ ଅଧିକ । ଆଧୁନିକ ବିଜ୍ଞାନ ପ୍ରବୀଣମାନଙ୍କୁ ମାଧ୍ୟମ କରି ଯେଉଁ ଭରସାଗୁଡ଼ିକୁ ଯୋଗାଇ ଦେବାର ବିଚାର କରୁଛି, ତାହା କିପରି ସେହି ସଂଖ୍ୟାଧିକମାନଙ୍କର ହାତପାଆନ୍ତାକୁ ଆସିପାରିବ, ତାହା ହେଉଛି ଭାରତବର୍ଷ ସମେତ

ସମଗ୍ର ପୃଥିବୀର ମଧ୍ୟ ସର୍ବପ୍ରଧାନ ସମସ୍ୟା । ଆମେରିକାବାସୀ ଓଡ଼ିଆମାନେ ଏଠି ଓଡ଼ିଶାର ସମ୍ବଳହୀନ ମାନଙ୍କ ବିଷୟରେ କିଛି ଚିନ୍ତା କରିବେ, ଏଇଟିକୁ ମଧ୍ୟ ଏକ ଅଭିନବ ଉଦ୍ୟମ ବୋଲି କୁହାଯିବ ।

ସୁଖର କଥା ଏହି ଅଭିନବ ଚିନ୍ତାଗୁଡ଼ିକ ମଧ୍ୟ କେହି କେହି କରିବାକୁ ଆରମ୍ଭ କଲେଣି । କାନାଡ଼ାରେ ବାସିନ୍ଦା ହୋଇ ରହିଥିବା କେତେକ ଓଡ଼ିଆ ବନ୍ଧୁ ଓଡ଼ିଶାରେ ଆହୁରି ତଳକୁ ପହଞ୍ଚି ସାନ ସାନ ସହଯୋଗିତାର ଚିନ୍ତା ମଧ୍ୟ କଲେଣି । ବଡ଼, ଡ଼ାକ୍ତରଖାନାଟାଏ ତିଆରି କରିଦେଲେ ତାହା କେଡ଼େ ବଡ଼ କାମଟାଏ ପରି ଅବଶ୍ୟ ଦେଖାଯିବ ଏବଂ ସେଇଟିର ମଧ୍ୟ ପ୍ରୟୋଜନ ରହିଛି । ମାତ୍ର, ଆହୁରି ବହୁତ କାର୍ଯ୍ୟ ରହିଛି, ଯାହା ବାହାରକୁ ଆଦୌ ସେଡ଼େ ବଡ଼ ବୋଲି ଦେଖା ଯିବନାହିଁ, ଅଥଚ ଯାହା ଅଧିକ ସୁଦୂରପ୍ରସାରୀ ଭାବରେ ଫଳ ଦେଇ ପାରୁଥିବ । ଅସଲ ନିର୍ମାଣ ତଳୁ ହିଁ ହୁଏ ଓ ଭାରତବର୍ଷରେ ତଳଟା ହିଁ ସବୁଠାରୁ ଅଧିକ ଯୋଜନାବଦ୍ଧ ଭାବରେ ଅବହେଳିତ ହୋଇ ରହିଛି । ଶିକ୍ଷାରେ ଅବହେଳିତ ହୋଇ ରହିଛି, ଏବଂ ପ୍ରଧାନତଃ ସେହି କାରଣରୁ ଯାବତୀୟ ସୁଯୋଗର କ୍ଷେତ୍ରରେ ମଧ୍ୟ ଅବହେଳିତ ଏବଂ ପ୍ରବଞ୍ଚିତ ହୋଇ ରହିଛି । ସରକାରଙ୍କ ତରଫରୁ ଲୋକହିତକର ଅନେକ କାର୍ଯ୍ୟ ହେଉଛି । ମାତ୍ର ତାହା ଉପରୁ ହେଉଛି, ଉପରର ଦୟାପ୍ରଦର୍ଶନ ସ୍ୱରୂପ ହେଉଛି ଏବଂ ଉଦ୍ଦିଷ୍ଟ ତଳ ଯାଏ ଆସି ପହଞ୍ଚିବା ପୂର୍ବରୁ ହୁଏତ ସେହି ଉପରେ ହିଁ ମାଡ଼ ଖାଇ ଯାଉଛି । ଉପରେ ଅଳପ ଅଛନ୍ତି ଏବଂ ସେହିମାନେ ହିଁ ପ୍ରାୟ ସବୁଯାକ ସୁଯୋଗକୁ ମାଡ଼ି ବସିଛନ୍ତି । ଏକ ସମ୍ଭ୍ରାନ୍ତତନ୍ତ୍ରର ଉଦାସୀନତା ଉଦ୍ୟମର ସହସ୍ର କ୍ଷେତ୍ରକୁ ପଙ୍ଗୁପ୍ରାୟ କରି ରଖିଛି । ତଥାପି, ସରକାର ବାହାରେ, ସମ୍ଭ୍ରାନ୍ତମାନଙ୍କର ଦୟାପ୍ରଦର୍ଶନର ବାହାରେ ସାନ ସାନ ଗୋଷ୍ଠୀଦ୍ୱାରା ନାନାବିଧ ପ୍ରୟୋଗ ଭାରତବର୍ଷରେ ହେଉଛି । ଓଡ଼ିଶାରେ ମଧ୍ୟ କମ୍ ହେଉନାହିଁ । ସରକାରୀ କଳ ସେମାନଙ୍କୁ ବାଧା ଦେଉଛି, ପୁରୁଣା ଗୁଡ଼ାକୁ ଚିରସ୍ଥାୟୀ କରି ରଖି ଅନ୍ଧାରଗୁଡ଼ିକ ଭିତରେ ସବୁକିଛିକୁ ଭୋଗ କରିବ ବୋଲି ସମ୍ଭ୍ରାନ୍ତମାନେ ମଧ୍ୟ ସେହିସବୁ ପ୍ରୟୋଗକୁ ବାଧା ଦେଉଛନ୍ତି । ଆମେରିକା ଏବଂ କାନାଡ଼ାର ଓଡ଼ିଆମାନେ ଯଦି ପ୍ରକୃତରେ ଓଡ଼ିଶାରେ ଯଥାର୍ଥ ପରିବର୍ତ୍ତନ ବୋଲି କିଛି ହେଉ ଏବଂ ଏକାବେଳେକେ ତଳ ସ୍ତରରୁ ହିଁ ଏକ ଗଠନସଚେତନ ନୂତନ ନେତୃତ୍ୱ ସୃଷ୍ଟି ହେଉ ବୋଲି ଇଚ୍ଛା କରୁଥାନ୍ତି, ତେବେ ସେମାନଙ୍କର ମଧ୍ୟ ଓଡ଼ିଶାର ଅବଶ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି କୁହାଯାଇ ପାରିବ ।

ସେହି ଭୂମିକାଟିରେ ଅବତୀର୍ଣ୍ଣ ହେବା ସେମାନଙ୍କ ପକ୍ଷରେ ମୋଟେ ସହଜ ହେବନାହିଁ । ସେମାନଙ୍କ ପାଖରେ ପଇସା ଅଛି, ତେଣୁ ସେମାନେ ପଇସା ଅବଶ୍ୟ ଦେଇପାରିବେ । ମଣିଷମାନଙ୍କର ହିତଲାଗି ଓଡ଼ିଶାରେ କ'ଣ କମ୍ ପଇସା ଖରଚ ହେଲାଣି

ଏବଂ କମ୍ ପଇସା ଖରଚ ହେଉଛି ? ମାତ୍ର, ସବୁକିଛି ସତେଅବା ରଙ୍ଗମଞ୍ଚର ଅଭିନୟ ପରି ସେହି ରଙ୍ଗମଞ୍ଚରେ ହିଁ ସରିଯାଉଛି । ଆମେରିକା ବା କାନାଡ଼ାରୁ କେହି ଯେତେବେଳେ ଓଡ଼ିଶାକୁ ସଂଖୋଜି ତେଣୁ ଆସନ୍ତି, ସେମାନେ ଅଧିକାଂଶତଃ ଉପରବାଲାଙ୍କ ସଂସ୍ରବ ଭିତରେ ହିଁ ଆବଦ୍ଧ ହୋଇ ରହିଯାଆନ୍ତି । ଆପଣାର ସଂସ୍କାରଗତ ନାନା ସୀମାରେ ସେମାନେ ଭାରି ବାନ୍ଧି ହୋଇ ରହିଥାଆନ୍ତି । ତେଣୁ, ସତେଅବା ଘଟଣା ସୃଷ୍ଟି କରିବା ନିମନ୍ତେ ସେମାନେ ଭୁବନେଶ୍ୱରରେ କୌଣସି ମନ୍ତ୍ରୀ ବା ହାକିମମାନଙ୍କ ସହିତ ସାକ୍ଷାତ କରନ୍ତି, ଓଡ଼ିଶାର କୁଶଳ ବାଘମାନଙ୍କୁ ପଚାରି ଜାଣିବାକୁ ଚାହାନ୍ତି । କୌଣସି ପାଣ୍ଠି ପାଇଁ ମୋଟା ଚେକ୍‌ଟାଏ ସେହିମାନଙ୍କ ହାତରେ ଧରାଇ ଦେଇ ପୁଣ୍ୟ ଅର୍ଜନ କରନ୍ତି । ତଳଯାଏ ଯାଇ ପାରନ୍ତିନାହିଁ । ବିଗତ ପଚାଶ ବର୍ଷରେ ଲୋକୋଦୟର କ୍ଷେତ୍ରରେ ପ୍ରଧାନତଃ ପ୍ରତିବନ୍ଧକ ସୃଷ୍ଟି କରି ରଖିଥିବା ସରକାରୀ ତଥା ବେସରକାରୀ ନ୍ୟସ୍ତ ସ୍ୱାର୍ଥମାନଙ୍କର ଚଳନ୍ତି ବ୍ୟବସ୍ଥା ଗୁଡ଼ିକର ପ୍ରତିବାଦ କରି ଓଡ଼ିଶାରେ ଯେଉଁମାନେ କିଛି ବିକଳ୍ପର ସନ୍ଧାନରେ କାର୍ଯ୍ୟ କରୁଛନ୍ତି, ପ୍ରବାସୀ ଏମାନେ ସେମାନଙ୍କ ଯାଏ ପହଞ୍ଚି ପାରନ୍ତି ନାହିଁ । ସେମାନଙ୍କୁ ଖୋଜନ୍ତି ନାହିଁ । ସେମାନେ ପ୍ରକୃତରେ ଅଛନ୍ତି ବୋଲି କୌଣସି ବାରତା ପାଇନଥାନ୍ତି । ବିକଳ୍ପ ଖୋଜୁଥିବା ସେହି ବ୍ୟକ୍ତିମାନେ ଭୁବନେଶ୍ୱରରେ ବା କଟକରେ ନଥାନ୍ତି ; ସେମାନେ ନେଉଳଭାଇ ପରି ଜଙ୍ଗଲ ଭିତରେ ରହିଥାନ୍ତି । ଫୁଲବାଣୀରେ ଥାଆନ୍ତି, କଳାହାଣ୍ଡିରେ ବା କୋରାପୁଟରେ ଥାଆନ୍ତି । ଅଳପ ଦିନ ପାଇଁ ପ୍ରାୟ ଛୁଟୀ କଟାଇବାର ମିଜାଜରେ ଓଡ଼ିଶାକୁ ଆସିଥିବା ବାବୁମାନଙ୍କ ପାଖରେ ଫୁଲବାଣୀ ବା କଳାହାଣ୍ଡି ସକାଶେ କୌଣସି ସମୟ ନଥାଏ । ସେମାନେ ବିହଙ୍ଗ ପରି ଉଡ଼ି ଚାଲିଯାଆନ୍ତି, ମାଟିକୁ ଓହ୍ଲାଇବାକୁ ବେଳ ନଥାଏ ।

ବିକଳ୍ପ ପ୍ରୟାସ ଆମେରିକାରେ ମଧ୍ୟ ଅଛି । ବିକଳ୍ପ ଗୋଷ୍ଠୀମାନେ ଅଛନ୍ତି । ଯେକୌଣସି ଗତିଶୀଳ ଅର୍ଥାତ୍ ସମ୍ମୁଖମୁଖୀ ସମାଜରେ ବିକଳ୍ପ ପ୍ରୟାସମାନ ଅବଶ୍ୟ ରହିବ । ନାନାବିଧ କାରଣରୁ ଆଧୁନିକ ଭାରତର କର୍ତ୍ତୃତ୍ୱ ତଥା ନେତୃତ୍ୱଗୁଡ଼ିକ ମଣିଷମାନଙ୍କୁ ପଶ୍ଚାଦମୁଖୀ କରି ରଖିବାଦ୍ୱାରା ଅଧିକ ଲାଭବାନ ହେଉଛନ୍ତି । ମାତ୍ର କୁବେରପୁରୀ ଆମେରିକାରେ ସେପରି ହେଉନାହିଁ, ଆତ୍ମସମୀକ୍ଷା ଚାଲିଛି, ସାଂପ୍ରତିକ କାଳରେ ମଧ୍ୟ ସମୀକ୍ଷା ହେଉଛି ଏବଂ ସ୍ୱୀକୃତ ଜୀବନମୂଲ୍ୟ ଗୁଡ଼ିକର ନିତ୍ୟସମୀକ୍ଷା ଲାଗିରହିଛି । ସେଇଥିଲାଗି ଆମେରିକା ବଞ୍ଚିଛି ଓ ଭାରତବର୍ଷ ସୁକୁ ସୁକୁ ହେଉଥିଲେ ମଧ୍ୟ ଅଲବତ ସାରା ପୃଥିବୀର ଶୀର୍ଷସ୍ଥାନରେ ରହିଛି ବୋଲି ଆସ୍ଫାଳନ କରିବାରେ ଲାଗିଛି । ଆମେରିକାର ବିଶ୍ୱବିଦ୍ୟାଳୟ ମାନଙ୍କରେ ବିକଳ୍ପର ଅନ୍ୱେଷଣ ଅବ୍ୟାହତ ରହିଛି । ଏକ ଗଣତନ୍ତ୍ରରେ ସମ୍ଭବତଃ ତାହାକୁ ହିଁ ସବୁଠାରୁ ବଡ଼ ଏବଂ ଅଧିକ ସମ୍ଭାବନାପୂର୍ଣ୍ଣ ଶ୍ରେୟ ବୋଲି କୁହାଯିବ । ଅର୍ଥନୀତି, ସାମାଜିକ ବ୍ୟବସ୍ଥା, ଲୋକୋତ୍ତରୀୟ ନୈତିକତା ପ୍ରଭୃତି ଯାବତୀୟ ସ୍ତରରେ ପ୍ରଚଳିତ ଛାଞ୍ଚଗୁଡ଼ିକର କଠୋରତମ ଟୀକା ସେହି ଆମେରିକାରେ ହେଉଛି । ଅସୁମାରି

ସାନ ସାନ ଗୋଷ୍ଠୀ ପରିବେଶ, ଧର୍ମ, ପୃଥିବୀଭବିଷ୍ୟ ତଥା ଆହୁରି କାହାଣ କାହାଣ ବିଷୟରେ ବିକଳ୍ପ ଚିନ୍ତାମାନ କରୁଛନ୍ତି । ପୃଥିବୀ ଯେ ଏପର୍ଯ୍ୟନ୍ତ ବୁଢ଼ା ହୋଇନାହିଁ, ଲଗାମ ଛାଡ଼ି ଦେଇନାହିଁ, ପୃଥିବୀଯାକରେ ସର୍ବପ୍ରଥମେ ଆମେରିକାରେ ସେହି ବିକଳ୍ପ ଅନ୍ୱେଷଣର କ୍ଷେତ୍ରରେ ହିଁ ତାହାର ସବୁଠାରୁ ଅଧିକ ଚାକ୍ଷୁଷ ପ୍ରମାଣ ମିଳିଯାଉଛି । ବୁଢ଼ା ରାଷ୍ଟ୍ରଟା ରହିଛି ସତ, ମାତ୍ର ରାଷ୍ଟ୍ର ଯେତେ ଇଚ୍ଛା କଲେ ମଧ ବିକଳ୍ପଗୁଡ଼ିକର ମୁହଁକୁ ବନ୍ଦ କରିଦେଇ ପାରୁନାହିଁ । ଉପରେ ଆମେରିକା ନାମକ ଏକ ସାଧାରଣ ସତ୍ୟକୁ ସମସ୍ତେ ମାନି ନେଇଛନ୍ତି, ତଥାପି ବିବିଧ ଚିନ୍ତା ଓ ବିବିଧ ପ୍ରୟୋଗ ଲାଗିରହିଛି । ଆମେରିକାର ଅସ୍ତ୍ରାଗାର, କୋଟି କୋଟି ଡ଼ଲାର୍ ଋଣ ଦେଇ ପୃଥିବୀରେ ସାହୁକାର ବୋଲି ଖ୍ୟାତିଲାଭ କରିଥିବା ଆମେରିକାର ଧନରାଶି, ଆମେରିକାର ବ୍ୟବସାୟିକ ବୃହତ୍‌କ୍ଷମତା,- ଏହି ସବୁକିଛି ଅପେକ୍ଷା ଆମେରିକାର ବିକଳ୍ପ ଅନ୍ୱେଷଣର ସ୍ଥାନୀୟ କ୍ଷୁଦ୍ର କ୍ଷୁଦ୍ର ଦୃଷ୍ଟାନ୍ତଗୁଡ଼ିକ ହିଁ ପୃଥିବୀରେ ହୁଏତ ବହୁତ କାମରେ ଲାଗିବ । ଆଗାମୀ ବହୁ ବର୍ଷ ଯାବତ୍ କାମରେ ଲାଗିବ । ବିଶ୍ୱ ରାଜନୀତିର ସେହି ଅନ୍ୟ କ୍ଷେତ୍ରଟିରେ ହୁଏତ ପୃଥିବୀଯାକ ବହୁ ଶତ୍ରୁ ସୃଷ୍ଟି କରୁଥିବ ଏବଂ ବହୁ ନିର୍ବୋଧତାର କାରଣ ହେଉଥିବ, ତଥାପି ନିତ୍ୟ ନାନା ଅଭିନବ ପ୍ରକାରେ ସତ୍ୟଗୁଡ଼ିକୁ ପାଥେୟ କରି ପ୍ରାୟ ଅସୀମ ବିଶ୍ୱାସ ସହିତ ବିକଳ୍ପ ଖୋଜିବାର ଏହି ସାମର୍ଥ୍ୟଟି ହିଁ ବିଶ୍ୱବାସୀଙ୍କୁ ଆମେରିକା ଆଡ଼କୁ ନିରନ୍ତର ଆକୃଷ୍ଟ କରି ଆଣୁଥିବ । ଆମେରିକାର ସେହି ଭୂମିକାଟିକୁ ଆମେ ଆଦୌ ଗୌଣ କରି ଦେଖିବାନାହିଁ ।

ସବାବଡ଼ ଅଡୁଆଟା ସମ୍ଭବତଃ ଏହିଠାରେ ହିଁ ରହିଛି । ଓଡ଼ିଶାରୁ ଯେଉଁମାନେ ଆମେରିକା ଯାଏ ଯାଇଛନ୍ତି, ସେମାନେ ନିଜ ଘରୁ ଆମେରିକାର କୁବେରରୂପଟାକୁ ଦେଖି ସବାଆଗ ତାହାରିଦ୍ୱାରା ହିଁ ମୁଗ୍‌ଧ ହୋଇ ସେଠାକୁ ଯାଇଛନ୍ତି । ସେମାନେ ସମ୍ପନ୍ନତା ଅର୍ଜନ କରିବାକୁ ଯାଇଛନ୍ତି । ଆମେରିକାରେ ସଫଳ ହେବା ନିମନ୍ତେ ସେଠାକୁ ଯାଇଛନ୍ତି । ଆମେରିକାରେ ବସବାସ କରି ରହୁଥିବା ସମୟରେ ସେମାନେ ଦୈନନ୍ଦିନ ଜୀବନର ବିବିଧ ବେହରଣରେ ଯେଉଁ ଆମେରିକାକୁ ଭେଟୁଥିବେ, ସେଇଟା ହେଉଛି ଗୁଳାର ଆମେରିକା । ଏବଂ, ବିକଳ୍ପ ଅନ୍ୟ ଆମେରିକାଟିର ମୁହାଁମୁହିଁ ହେବାଲାଗି ସେମାନଙ୍କୁ ହୁଏତ ଆଦୌ କୌଣସି ଅବକାଶ ମିଳୁନଥିବ । ସେମାନେ ସମ୍ଭ୍ରାନ୍ତ ଆମେରିକାଟି ସହିତ ଅତ୍ୟନ୍ତ ଅଙ୍ଗାଙ୍ଗୀ ଭାବରେ ଛନ୍ଦି ହୋଇ ଯାଇଥିବେ ଏବଂ ତାହାରି ଭିତରେ ରହି ହିଁ ଉଶ୍ୱାସ ଅନୁଭବ କରୁଥିବେ । ସେଠାରେ ମଧ ବିକଳ୍ପ ପ୍ରୟାସମାନ ହେଉଛି ବୋଲି ସେମାନଙ୍କର ଗୋଚରକୁ ମଧ ଆସୁନଥିବ । ଗୁଳାରେ ପଡ଼ି ଯାଇଥିବା ଓ ତଦ୍ୱାରା ଲାଭବାନ୍ ହେଉଥିବା ମଣିଷମାନେ କାହିଁକି ବିପଦ ମୂଳାଇ ଗୁଳାଭିତରୁ ବାହାରକୁ ବାହାରିବାକୁ ମନ କରିବେ ? ଓଡ଼ିଶାର ଆମେରିକାବାସୀ ମାନଙ୍କର ମୁଖ୍ୟ ଅସୁବିଧାଟି ପ୍ରକୃତରେ ସେଇଆ ହୋଇଥିବ । ହଁ, ଓଡ଼ିଆମାନଙ୍କ ଭିତରୁ ଅନେକ ବିଶ୍ୱବିଦ୍ୟାଳୟ ମାନଙ୍କରେ ଅଧାପନା

ଅବଶ୍ୟ କରୁଛନ୍ତି ଏବଂ ସେଠାରେ ସେମାନେ ମନ କଲେ ହୁଏତ ବିକଳ୍ପମାନଙ୍କର ସଂସ୍ପର୍ଶରେ ମଧ୍ୟ ଆସି ପାରୁଥାନ୍ତେ । ମାତ୍ର, କୌଣସି ବିଶ୍ୱବିଦ୍ୟାଳୟରେ ବିକଳ୍ପମାନେ ଆଦୌ ଅଧିକ ସଂଖ୍ୟାରେ ନଥିବେ । ଗୁଳାର ପ୍ରତିନିଧିତ୍ୱ କରିଥିବା ବ୍ୟକ୍ତିମାନେ ହିଁ ଅଧିକ ସଂଖ୍ୟାରେ ରହିଥିବେ । ଏବଂ, ସମ୍ପନ୍ନତା ଓ ସଫଳତା ଅର୍ଜନ କରିବା ନିମନ୍ତେ ଆମେରିକାର ଜୀବନହାଟରେ ଯାଇ ପହଞ୍ଚିଥିବା ମନୁଷ୍ୟଟି ଗୁଳାରେ ଚାଲିବାକୁ ହିଁ ସର୍ବଦା ନିରାପଦ ଅବଶ୍ୟ ମଣିବ । ଆମେରିକାରେ ଭାରତୀୟମାନେ ଏକ ଶ୍ରେଣୀ ହିସାବରେ ପ୍ରଧାନତଃ ଉଚ୍ଚମଧ୍ୟମ ବା ଉଚ୍ଚମାନଙ୍କ ଭିତରେ ହିଁ ଅନ୍ତର୍ଭୁକ୍ତ ହୋଇ ରହିଥିବେ । ନିଜ ପିଲାମାନଙ୍କ ପାଇଁ ସେମାନେ ସୁନିଶ୍ଚିତ ଭାବରେ ଠିକ୍ ସେହି ଶ୍ରେଣୀଟି ଭିତରେ କେଉଁଠାରେ ଖୋଲଟିଏ ବାଛିନେବାରେ ହିଁ ସେମାନଙ୍କୁ ତାଲୀମ ଦେଉଥିବେ । ଏବଂ, ଅନ୍ୟ ଯେଉଁମାନେ ଏବେ ଯାଇଛନ୍ତି ଏବଂ ତଳେ ଥାଇ ସଂଗ୍ରାମ କରୁଛନ୍ତି, ସେମାନେ ମଧ୍ୟ ସେହି ଉପର ଉଚ୍ଚ ଶ୍ରେଣୀଟିରେ ଯାଇ ଯେକୌଣସି ମତେ ପହଞ୍ଚି ଯିବାର ସ୍ୱପ୍ନ ଦେଖୁଥିବେ । ବିକଳ୍ପ ଗାରଗୁଡ଼ାକ ଠାରୁ ସ୍ୱଭାବତଃ ଦୂରରେ ରହୁଥିବେ । ଆପେ ଆପେ ଆପଣାକୁ ଅନୁରୂପ ଭାବରେ ପ୍ରସୀମିତ କରି ନେଉଥିବେ ।

ତେଣୁ, ଏମାନଙ୍କର ସହାନୁଭୂତି ଦେଖାଇବା ଏବଂ ସାହାଯ୍ୟ କରିବାର ପ୍ରକାରଟା ମଧ୍ୟ ନିୟମତଃ ଅନ୍ୟଭଳି ହେବ ହିଁ ହେବ । ସେମାନେ ଦୂରରେ ଥାଇ ସହାନୁଭୂତି ପ୍ରକାଶ କରିବେ ; ତୁମକୁ ସାହାଯ୍ୟ କରିବାର ଅଭିପ୍ରାୟରେ ତୁମ ଲାଗି ଏଇଟା ଗଢ଼ିଦେବେ ଅଥବା ସେଇଟା କିଣିଦେବେ । ମାତ୍ର ଗୁଳାମାନଙ୍କୁ ଭାଙ୍ଗିବାର ହରକତ ଭିତରେ ପଶିବାକୁ ମୋଟେ ମନ କରିବେନାହିଁ । ବହୁବର୍ଷ ଧରି ପୃଥିବୀରେ ରେଡ଼କ୍ରସ୍ ଯେତିକି କରିଛି ଅଥବା ରୋଟାରି କ୍ଲବ୍ ଯେତିକି କରିଛି,ସେମାନେ ସେଇଯାଏ ଆସିବେ ଓ ସେତିକି କରିବେ । ପୃଥିବୀରେ ବଦାନ୍ୟତା ମହଜୁଦ ଥାଉ ଥାଉ ଅକୃତଜ୍ଞ ମଣିଷମାନେ କାହିଁକି ସେତିକିରେ ଶାନ୍ତ ହୋଇ ରହୁନାହାନ୍ତି ବୋଲି ହୁଏତ ବିସ୍ମୟ ପ୍ରକାଶ କରିବାକୁ ବାହାରିବେ । ସାଧୁତା ଥିବ, ସଦିଚ୍ଛା ଭରପୂର ହୋଇ ରହିଥିବ, ତଥାପି ମଜ୍ଜାଭିତରେ କେଉଁଠି ଏକ ଅନିଚ୍ଛୁକତା ମଧ୍ୟ ରହିଥିବ ଯାହାକି ସେମାନଙ୍କୁ ଗାରଗୁଡ଼ିକୁ ମୋଟେ ଡ଼ିଆଁଇ ଦେଇ ପାରୁନଥିବ । ଖାସ୍ ଏହି ଓଡ଼ିଶାରେ ଏବଂ ଭାରତବର୍ଷରେ କ'ଣ ସଦିଚ୍ଛାସମ୍ପନ୍ନ ଭଲ ମଣିଷ କମ୍ ଅଛନ୍ତି ? ସେମାନଙ୍କୁ ଭଗବାନ ଭୟରେ ରଖିଛନ୍ତି । ସେମାନେ ସେଥିଲାଗି ଭଗବାନଙ୍କ ପାଖରେ କେତେମତେ କୃତଜ୍ଞ ହୋଇ ରହିଛନ୍ତି । ମାତ୍ର, ଏତେ ଏତେ ସଦିଚ୍ଛା ଓ ସାଧୁତା ସତ୍ତ୍ୱେ ପୃଥିବୀରେ ଆମ ଆଖିଆଗରେ ମଧ୍ୟ କାହିଁକି କୋଟି କୋଟି ମଣିଷ ନିରକ୍ଷ ଏବଂ ଅସହାୟ ହୋଇ ରହିଛନ୍ତି, ସେହି ପ୍ରଶ୍ନଟିକୁ ଭଲ ଓ ସମ୍ପନ୍ନ ମଣିଷମାନେ ପଚାରିବା ଲାଗି ହୁଏତ ଏବେ ମଧ୍ୟ ନିଜ ଭିତରେ ତିଆରି ହୋଇ ପାରିନାହାନ୍ତି । ସେକଥା ବିକଳ୍ପମାନେ କରୁଛନ୍ତି । ସେଇଥିପାଇଁ ବିକଳ୍ପ ହେବାକୁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ସମ୍ଭବତଃ ସେଇମାନେ ପାରିବେ,

ସବା ତଳଯାଏ ଯାଇପାରିବେ ; ପୃଥିବୀରୂପକ ଆମର ଏହି ଘରଟିରେ ଯେପରି ସବୁ ମଣିଷଙ୍କ ନିମନ୍ତେ ଥାନ ହୋଇପାରିବ, ସେଥିଲାଗି ସେମାନେ ସେହି ତଳୁ ହିଁ ମୂଳଦୁଆ ତିଆରି କରି ଆଣିବେ । ପ୍ରଚଳିତ ଗୁଳାଗୁଡ଼ିକୁ ଭାଙ୍ଗିବେ, ନୂଆ ଅନ୍ଦାଜରେ ସମ୍ବନ୍ଧଗୁଡ଼ିକୁ ଗଢ଼ିବେ । ତେବେ ଯାଇ ଅସହାୟତାର ଅନ୍ତ ହେବ ।

ଆମେରିକାରେ ରହୁଥିବା ଓଡ଼ିଆମାନେ ଓଡ଼ିଶାର ଏହି କାମଟିରେ କେତେଦୂର ସହାୟତା କରିପାରିବେ କେଜାଣି ? ତା' ନହେଲେ ବାର୍ଷିକ ସମାବେଶମାନଙ୍କରେ ଓଡ଼ିଶା ନିମନ୍ତେ ସେମାନଙ୍କର ଭାଳେଣିଗୁଡ଼ିକ ଓଡ଼ିଶାରେ ଅସଲ ସମାଧାନଗୁଡ଼ିକୁ ସମ୍ଭବ କରିବାରେ ଖୁବ୍‌ବେଶୀ ସହାୟକ ହୋଇ ପାରିବନାହିଁ । ଅସଲ ପରିବର୍ତ୍ତନ ନିମନ୍ତେ ବଦାନ୍ୟ ଦାତାମାନଙ୍କ ଅପେକ୍ଷା ସହାନୁଭବୀ ବନ୍ଧୁମାନଙ୍କର ହିଁ ଅଧିକ ଆବଶ୍ୟକତା ରହିଛି । ସାରା ପୃଥିବୀରେ ରହିଛି, ଆମ ସାନ ଓଡ଼ିଶାଟିରେ ମଧ ରହିଛି । ପୃଥିବୀର ବଞ୍ଚିତ ମନୁଷ୍ୟମାନେ ଆଉ ଉପରେ ଥିବା କାହାଦ୍ୱାରା ଅନୁଗୃହୀତ ହେବାକୁ ଚାହୁନାହାନ୍ତି, ସେମାନେ ସାଙ୍ଗରେ ଏକାଠି ହୋଇ ବାଟ ଚାଲିବାକୁ ଇଚ୍ଛା କରୁଛନ୍ତି ; ସ୍ୱୀକୃତି ଚାହୁଛନ୍ତି,ଆତ୍ମପରିଚିତ ଇଚ୍ଛା କରୁଛନ୍ତି । ତେଣୁ ଅସଲ ପରିବର୍ତ୍ତନଗୁଡ଼ିକ ସେହିମାନଙ୍କ ଠାରୁ ଆରମ୍ଭ ହେବ ବୋଲି ଅପେକ୍ଷା ରହିଛି । ଏକ ଭୂମି ହିସାବରେ ଭାରତବର୍ଷ କେବେ କୌଣସି ଯୁଗରେ ମଧ ନିଜର ସବୁ ଅଧିବାସୀଙ୍କୁ ଗୋଟିଏ ଶ୍ରଦ୍ଧାଯୁକ୍ତ ଏବଂ ଅସୂୟାମୁକ୍ତ ମଣ୍ଡଳ ଭିତରେ ଏକତ୍ର କରି ବିଚାର କରିନାହିଁ । ଯାହା ଶାସ୍ତ୍ରରେ ଲେଖା ହୋଇଛି, ତାହା ମାଟିର ବାସ୍ତବସ୍ତରକୁ ଆସି ପାରିନାହିଁ । ମନୁଷ୍ୟମାନେ ଅତ୍ୟନ୍ତ ଦୟନୀୟ ଭାବରେ ପରସ୍ପରଠାରୁ ଦୂରଛଡ଼ା ହୋଇ ରହିଛନ୍ତି । ଅତ୍ୟନ୍ତ ନିର୍ଦ୍ଦୟ ଭାବରେ ଉଚ୍ଚ ନୀଚ ହୋଇ ରହିଛନ୍ତି । ଭଗବାନଙ୍କର ଅଣ୍ଟାକୁ ଭାଙ୍ଗିଦେଇ ତାଙ୍କୁ ଅକର୍ମଣ୍ୟ କରି ଦିଆଯାଇଛି । ତେଣୁ, ଯାହାକିଛି ହେବ, ତାହା ତଳୁ ହେବ, ନଗଣ୍ୟମାନଙ୍କୁ ଗଣନା ଭିତରକୁ ଆଣିବାକୁ ପଡ଼ିବ । ତେଣୁ, ସେମାନଙ୍କ ଯାଏ ଯାଇପାରିଲେ ଯାଇ ଆମେ ପରିବର୍ତ୍ତନର ସେହି ପର୍ବଟିରେ ସତକୁ ସତ କିଛି କାମରେ ଆସିପାରିବା । ନଚେତ୍‌, ସଜ୍ଜନ ହୋଇ ରହିଥିବା, ବର୍ଜ୍ୟ ବି ହୋଇ ରହିଥିବା । ଏଡ଼େ ବଡ଼ ଭବିଷ୍ୟପ୍ରତିଶ୍ରୁତି ଭିତରେ ତଥାପି ନିଜର କୌଣସି ଅଲଗା ଗୁମ୍ପାରେ ଖାସ୍ ନିଜର ଉହ୍ନେଇଟିଏ ସଜ କରି ନିଆଁ ପୁଇଁବାରେ ଲାଗିଥିବା ।

ଆମେରିକାରେ ଗଣତନ୍ତ୍ର ଭାରତବର୍ଷ ତୁଳନାରେ ଅଧିକ ପୋଖତ ହୋଇ ସାରିଛି । ସେଥିଲାଗି ଆବଶ୍ୟକ ଭିତ୍ତିଭୂମିଟିଏ ଅଧିକ ସୁଦୃଢ଼ ହୋଇ ତିଆରି ହୋଇ ପାରିଛି । ଆମେରିକାରେ ଓଡ଼ିଆମାନେ ସବାଆଗ ଓଡ଼ିଆ ହୋଇ ଦ୍ୱୀପଟିଏ ପରି ରହିଯିବା ଯାଏ ସେହି ଗଣତନ୍ତ୍ରକୁ ଆଦୌ ମୋହମୁକ୍ତ ହୋଇ ବୁଝିପାରିବେ ନାହିଁ । ଯେଉଁ ଆମେରିକା ସେମାନଙ୍କୁ ସ୍ଥାନ ଦେଇଛି, ସିଦ୍ଧି ଆଣି ଦେଇଛି, ସେମାନେ ସେହି ଆମେରିକାକୁ ମଧ

ବୁଝନ୍ତୁ, ନିଜ ଜୀବନରେ ସେହି ଆମେରିକାର ଆତ୍ମାଟିକୁ ଅଧିକ ପ୍ରତିବଦ୍ଧ ହୋଇ ଚିହ୍ନନ୍ତୁ । ସମ୍ଭବତଃ ସେମାନେ ତାହାରି ମାଧ୍ୟମରେ ଏଠି ଓଡ଼ିଶାର ସର୍ବପ୍ରଥମ ଆବଶ୍ୟକତାଗୁଡ଼ିକୁ ଚିହ୍ନିବାରେ ସମର୍ଥ ହେବେ । ଗୁଳାଗୁଡ଼ାକୁ ନଦେଖି ମନୁଷ୍ୟମାନଙ୍କୁ ଆଗ ଦେଖିବେ । ମନୁଷ୍ୟମାନଙ୍କ ଯାଏ ଯାଇ ବି ପାରିବେ । ବିକଳ୍ପମାନେ କେଉଁସବୁ ସ୍ଥାନରେ କାର୍ଯ୍ୟ କରୁଛନ୍ତି, ତାହା ଜାଣିବା ନିମନ୍ତେ ସେମାନେ ସତକୁ ସତ ଆଗ୍ରହୀ ହେବେ । ପ୍ରକୃତ ସାହାଯ୍ୟ କରିପାରିବେ । ଆପଣାର ଭଗବଦ୍ ଅନ୍ତର୍ବସ୍ତ୍ରରେ ଓଡ଼ିଆଟିଏ ହୋଇ ରହିଥିବା ପର୍ଯ୍ୟନ୍ତ ଫି ମାସରେ ଗୋଟାଏ ଗୋଟାଏ ନୂଆ ଆମେରିକା ମାର୍କା ଭାଲୁକୋଟ୍‌କୁ ଉପରେ ଦେହରେ ପିନ୍ଧିବାରେ ଲାଗିଥିଲେ ମଧ ସେମାନେ ଏଠି ବା ସେଠି ଉଭୟ ଭୂମିକାରେ କୁଣିଆ ସଦୃଶ ହୋଇ ରହିଥିବେ । ଆମେରିକାରେ ନିଜର ଅଲଗା ଖଞ୍ଜାଟିଏ କରି ରହିଥିବେ ଏବଂ ଓଡ଼ିଶାକୁ ଆସିଲେ ଅସଲ ସାନ୍ନିଧଗୁଡ଼ିକରୁ ଦୂରରେ ରହିଥିବେ । ଆମେରିକାରେ ପ୍ରାୟ ଅଣଆମେରିକାନ୍ ବୋଲି ଗଣାଉଥିବେ ଏବଂ ଓଡ଼ିଶାରେ ମଧ ଭାରି ଆମେରିକାନ୍ ଆମେରିକାନ୍ ପରି ଲାଗୁଥିବେ । ଏଇଟାକୁ ସତକୁ ସତ ଏକ ବିଷମ ସ୍ଥିତି ବୋଲି ହିଁ କୁହାଯିବ । ଆମେ ଇଚ୍ଛା କଲେ ଯାଇ ସେହି ସ୍ଥିତିକୁ ଅତିକ୍ରମ କରିଯାଇ ପାରିବା । କ'ଣ ବା କିପରି ହୋଇପାରିଲେ ଆମକୁ ଆମେରିକା ଏବଂ ଓଡ଼ିଶା ଉଭୟେ ଘର ପରି ଲାଗିବେ, ଆମ ଭିତରେ କ୍ରମେ ସେହିଭଳି ଏକ ଜିଜ୍ଞାସାର ଅନୁଶୀଳନ ହୋଇପାରିବା ଉଚିତ୍ । ଏପରି କୌଣସି ଭାଷା ଅଛି, ଯାହାକୁ ଆୟତ୍ତ କରି ପାରିଲେ ସେଠା ଓ ଏଠା କୌଣସି ଭାଷାଟିକୁ ମଧ କଦାପି ଭୁଲି ହେବନାହିଁ ? ହୁଏତ ଅଛି । ଯଦି ଥାଏ, ତେବେ ଚାଲନ୍ତୁ, ଆମେ ସେହି ଭାଷାଟିକୁ ଶିଖିବା । ଆମର ଅସଲ ଥଇଥାନ ସେତିକିବେଳେ ହେବ ।

ଫେରନ୍ତି ବାଟରେ ଆମେ ସାନ୍‌ଫ୍ରାନ୍‌ସିସ୍କୋ ଛାଡ଼ିବା ବେଳକୁ ରାତ୍ରି ତୃତୀୟ ପହର ହୋଇ ଯାଇଥିଲା । ତା'ପରେ ବାୟୁଯାନର ଖିଡ଼ିକିଗୁଡ଼ିକୁ ପୂରା ବନ୍ଦ କରି ଦିଆଗଲା । ଆମେ ତ ଆଗକୁ ଆଗକୁ ପଶ୍ଚିମ ଦିଗକୁ ଯିବୁ । ତେଣୁ ବାଟଯାକ କୁଆଡ଼େ ଖାଲି ରାତି ପଡ଼ିବ । ଯାନ ଭିତରଟା ଆଲୁଅରେ ତୋରା ଦିଶୁଥାଏ । ତାହାରି ଭିତରେ ଆମକୁ ଦୁଇ ତିନିଥର ଖାଇବାକୁ ଦିଆଗଲା । ସିଏ ଏକ ଅଦ୍‌ଭୁତ ଅନୁଭୂତି,- ଯାହାର ଯେତେବେଳେ ଇଚ୍ଛା ସିଏ ସେତିକି ବେଳ ଢୁଳାଇ ନେଉଥାଏ, ପୁଣି ଚାଉଁକିନା ଚେଇଁ ବସୁଥାଏ । ଆଖି ଆଗରେ ତୁହାକୁ ତୁହା ଆମର ଯାତ୍ରାପଥଟାକୁ ସ୍ପଷ୍ଟ କରି ଏକ ପର୍ଦ୍ଦାରେ ଦେଖାଇ ଦିଆ ଯାଉଥାଏ । ଆମର ଉଡ଼ାଜାହାଜ ସିଧା ବାଟ କାଟି ପ୍ରଶାନ୍ତ ମହାସାଗର ପାରି ହୋଇ ଯାଉନାହିଁ ବୋଲି ଆମେ ସେଥିରୁ ଜାଣିବାକୁ ପାଇଲୁ । ପ୍ରଥମେ ଉତ୍ତର ଆଡ଼କୁ ମୁହାଁଇ ଜାହାଜ ଆଲାସ୍କା ପର୍ଯ୍ୟନ୍ତ ଗଲା । ତା'ପରେ ବେରିଂ ପ୍ରଣାଳୀଠାରେ ଦକ୍ଷିଣକୁ ଭାଙ୍ଗିଲା । ବେରିଂ ପ୍ରଣାଳୀ ହେଉଛି ସେହି ଜାଗା, ଯେଉଁଠାରେ ଏସିଆ ଓ ଉତ୍ତର ଆମେରିକା ନିଜର ମୁନିଆଁ ଦାନ୍ତଟାକୁ ଦେଖାଇ ଏକ ଆରେକ ଆଡ଼କୁ ଅନାଇ ରହିଛନ୍ତି । ତା'ପରେ

ସାଇବିରିଆର ଦାଢ଼ ବାଟେ ଆମେ କାମସ୍କଟ୍‌କା ଅନ୍ତରୀପ ଦେଇ ଦୁଇ କୋରିଆକୁ ଦୁଇ ଆଡ଼େ ରଖି ଦକ୍ଷିଣ ଦିଗକୁ ଗତି କଲୁ । ବିଚରା ଜାପାନ ବାଆଁଆଡ଼କୁ ରହିଗଲା । ଏଗୁଡ଼ାକ ସିନା ଆମେ ସେହି ମାନଚିତ୍ରଟିରୁ ଜାଣୁଥାଉ ଓ ଏତେଆଡ଼େ ବୁଲି ବୁଲି ଯାଉଛୁ ବୋଲି ସାନ୍ତ୍ୱନା ଲାଭ କରୁଥାଉ । ମାତ୍ର ଖିଡ଼ିକିଟାକୁ ଖୋଲି ଦେଲେ ମଧ୍ୟ କେବଳ ରାତି ଏବଂ ଅନ୍ଧାର ବ୍ୟତୀତ ଆଉ କିଛିହେଲେ ଦେଖାଯାଇ ନଥାନ୍ତା । ହଠାତ୍ ଧଡ଼୍‌ଧାଡ଼୍ କରି ଖିଡ଼ିକିଗୁଡ଼ାକୁ ଉଠାଇ ଦିଆଗଲା । ଘୋଷଣା ହେଲା ଯେ ଆମେ ହଂକଂରେ ଭୂମିକୁ ଓହ୍ଲାଇବୁ ।

ସେତେବେଳେ ସିନ୍ଦୂର ଫାଟିବାର ସମୟ । ଚାଲି ଯାଉଥିବା ଅନ୍ଧାରଟା କ୍ରମେ ଦିଗ୍‌ବଳୟଟାକୁ ଫରଚା କରିଦେଇ ଯାଉଥାଏ । ମୁଁ ଖିଡ଼ିକି ବାଟେ ବାହାରକୁ ଅନାଇଲି । ପ୍ରାୟ ଷୋଳ କି ସତର ଘଣ୍ଟା ପରେ ଆକାଶ ସହିତ ପୁନର୍ବାର ଭେଟ ହେଲା । ଠିକଣା ଜାଗାରେ ଓହ୍ଲାଇବ ବୋଲି ଜାହଜ ଗତିକୁ ମନ୍ଥର କରି ଭୂଇଁର ପାଖକୁ ପାଖକୁ ଲାଗି ଆସୁଥାଏ । ପୂର୍ବ ବଳୟରେ ପ୍ରଭାତପୂର୍ବ ସମୟର ସରୁ ସିନ୍ଦୂରସୁଛାଟିଏ ଝଲ୍‌ସି ଉଠିଥାଏ । ଏକାବେଳେକେ ଏମୁଣ୍ଡରୁ ସେମୁଣ୍ଡ ଯାଏ ଲମ୍ବି ରହିଥାଏ । ଶିହରଣ ଆଣି ଦେଲାଭଳି ଦୃଶ୍ୟଟିଏ । ଯେଉଁ ଦେଶରେ କିମ୍ବା ଯୋଉ ସମୁଦ୍ରରେ ଦେଖିଲେ ମଧ୍ୟ ନିଶ୍ଚୟ ଶିହରଣ ଆଣିଦେବ । ହଂକଂରେ ଘଣ୍ଟାଏ ରହିବାପରେ ସେଠାରୁ ସିଙ୍ଗାପୁର ଏବଂ ସିଙ୍ଗାପୁରରୁ କଲିକତା ଓ ଭୁବନେଶ୍ୱର । ଗୋଟାଏ ଦେଶକୁ ବୁଲିଯିବାର ଅର୍ଥ ହେଉଛି କାହାକୁ ବା କୋଉମାନଙ୍କୁ ଭେଟିବାକୁ ଯିବା । ନିଜ ଦେଶରୁ ଯୋଜନ ଯୋଜନ ଦୂରକୁ ଚାଲିଗଲେ ମଧ୍ୟ ସେଠାରୁ ନିଜ ଦେଶଟିକୁ ମଧ୍ୟ ଖୁବ୍ ଦେଖିହୁଏ । ହୁଏତ ଅଧିକ ନିବିଡ଼ ଭାବରେ ଦେଖିହୁଏ । ନିଜର ଚିହ୍ନା ଘରଟିକୁ ପ୍ରସାରିତ କରି ଦେଖିହୁଏ । ଦେଶଗୁଡ଼ାକ ସିନା ଅଲଗା, ଭୂଇଁଟି ସେଇ ଗୋଟିଏ ଭୂଇଁ । ଭୂଇଁକୁ ଭୂଇଁ ଲାଗିଛି । ନିୟତି ସହିତ ନିୟତି ଲାଗିଛି, ସତକୁ ସତ ଯୋଡ଼ା ହୋଇ ରହିଛି । ତାହାହିଁ ଆମ ପୃଥିବୀଟି ବିଷୟରେ ସବାବଡ଼ ସୁସମାଚାର । ଯଦି କଲମ୍ବସ୍ ସେହି ସତ୍ୟଟିକୁ ଜାଣିଥାଆନ୍ତେ, ତେବେ ମନୁଷ୍ୟମାନଙ୍କର ଗୋଟାଏ ପଲକୁ ନିପାତ କରି ଆଉଗୋଟାଏ ପଲ ପାଇ ନିରାପଦ ଉପନିବେଶଟିଏ ସ୍ଥାପନ କରାଇବାର ବାଟଟିକୁ ମୋଟେ ସୂଚି ନଥାନ୍ତେ । ତା'ପରେ ଆମେରିକାରେ କେତେ କ'ଣ ସବୁ ଘଟି ନଯାଇଛି । ସେହିକାଳର ଚକ୍ରୀମାନେ ପୃଥିବୀରେ ତଥାପି ରହିଛନ୍ତି । ଖାଲି ପୃଥିବୀଟାକୁ ନୁହେଁ, ଆମର ଏହି ଦେଶଗୁଡ଼ାକୁ ମଧ୍ୟ ବହୁ ସ୍ୱାର୍ଥ ଓ ବହୁ ଭାଗ କରି ରଖିଛନ୍ତି ।

ତେଣୁ, ଆମେ ବାରବାର ପୃଥିବୀ ଭିତରକୁ ଯାଉଥିବା, ଆମ ସମସ୍ତଙ୍କର ଏହି ବୃହତ୍ତର ଘରଟିକୁ ଆବିଷ୍କାର କରୁଥିବା, ହୃଦୟର ବାଡ଼ି ପକାଇ ତାହାକୁ ଛୁଇଁ ପାରୁଥିବା । ତଥାକଥିତ ଦୂରମାନଙ୍କୁ ଆମ ନିଜ ଅଗଣାଟିକୁ ଆମନ୍ତ୍ରଣ କରି ଆଣି ପାରୁଥିବା । ପୃଥିବୀରେ ଏତେ ଏତେ ଭାଷା, ଏତେ ଏତେ ସଂସ୍କୃତି, ଏତେ ଏତେ ଶୈଳୀ ମଧ୍ୟଦେଇ ଯେଉଁ ବୈଚିତ୍ର୍ୟ

ଉତ୍ସବ ଜମାଇ ବ୍ୟାପ୍ତ ହୋଇ ରହିଛି, ଆମେ ସେହି ଉତ୍ସବଟିରେ ସାମିଲ ହେଉଥିବା । ଏବଂ, ନିଜର ସର୍ବୋତ୍ତମ ଗୁଡ଼ିକୁ ଆଉମାନଙ୍କ ଆଗରେ ବାଢ଼ି ଦେଇ ପାରୁଥିବା । ମାତ୍ର, ସେଥିଲାଗି ସମ୍ଭବତଃ ସର୍ବପ୍ରଥମ ସର୍ତ୍ତ ହେଉଛି ଯେ ଆମେ ଅନ୍ୟମାନଙ୍କର ସର୍ବୋତ୍ତମଗୁଡ଼ିକୁ ଘ୍ରାଣ କରିପାରିବା ଲାଗି ମଧ୍ୟ ନିଜକୁ ଉନ୍ମୋଚିତ କରି ରଖିଥିବା । ପାର୍ଥକ୍ୟ ଖୋଜିଲେ ତ ପାର୍ଥକ୍ୟ ବହୁତ ମିଳିବ । ତଥାପି ଏକତ୍ୱର ସୂତ୍ରଟିଏ ଯେ ମନୁଷ୍ୟମାନଙ୍କୁ, ଦେଶଗୁଡ଼ିକୁ ଏବଂ ସଂକଳ୍ପଗୁଡ଼ିକୁ ସଂଲଗ୍ନ କରି ରଖିଛି, ବୃହତ୍ତର ପୃଥିବୀ ସହିତ ପରିଚୟ ବଢୁଥିଲେ ଯାଇ ଆମେ ସେହି ସତ୍ୟଟିର ଅଧିକାରୀ ହୋଇପାରିବା । ମୁଁ ଆମେରିକାରୁ ଆଗକାଳର ସେହି ସାଧବଙ୍କ ଭଳି ଫେରି ଆସିଲି । ସାଙ୍ଗରେ ବୋଇତ ଭରି ଅନୁଭବ, ବୋଇତ ଭର୍ତ୍ତି ଧନ । ସାଧବ ଯାଉଥିବ, ବାଣିଜ୍ୟ କରୁଥିବ ଏବଂ ବୋଇତ ଭର୍ତ୍ତି କରି ଘରକୁ ବାହୁଡ଼ି ଆସୁଥିବ । ଆଖିଗୁଡ଼ିକୁ ନୂଆ କରି ପାରୁଥିବ । ସମ୍ପଦବାନ୍ ହେବାରେ ଲାଗିଥିବ । ଘର ସହିତ ବାହାରକୁ ଗଅଁଠାଇ ପାରୁଥିବ । ବାହାରଟାକୁ ଦେଖି ଘରକୁ ପାସୋରି ହେବନାହିଁ ଅଥବା ନିଜଘରେ ନିଦା ହୋଇ ରହିପାରିବ ବୋଲି ବାହାରଟାକୁ ଅସ୍ୱୀକାର କରିବନାହିଁ । ଆମ ସହିତ ଆମ ପୃଥିବୀଟା ମଧ୍ୟ ଅଧିକରୁ ଅଧିକ ଧନୀ ହେବାରେ ଲାଗିଥିବ ।



## AMERICA

(1888)

Centre of equal daughters, equal sons,
All, all alike endeared, grown, ungrown,
young or old,
Strong, ample, fair, enduring,
capable, rich,
Perennial with the Earth, with Freedom,
Law and Love,
A grand, sane, towering, seated Mother,
Chaired in the adamant of Time.

**Walt Whitman**
1819-1892

